ଅମୃତସ୍ୟ ପୁତ୍ର
ଲେଖକ :
ଜଗନ୍ନାଥ ମଲ୍ଲିକ
ପ୍ରଥମ ସଂସ୍କରଣ :
ପବିତ୍ର ଦୀପାବଳୀ - ୨୦୧୨
ପ୍ରକାଶକ :
ରୁପା ମଲ୍ଲିକ
୮୩, ଖାରବେଳ ନଗର, ୟୁନିଟ୍ -୩, ଭୁବନେଶ୍ୱର
ମୁଦ୍ରଣ :
ବିଭୁତି ପ୍ରିଣ୍ଟର୍ସ
ଏରୋଡ୍ରମ ଏରିଆ, ଭୁବନେଶ୍ୱର - ୨୦
ମୋ.: ୯୩୩୭୨୦୩୯୩୧
ମୂଲ୍ୟ : ଟ୩୫୦ଙ୍କା (ତିନିଶହ ପଚାଶ ଟଙ୍କା ମାତ୍ର)

AMRUTASYA PUTRA
Writer :Jagannath Mallik
First Edition : Diwali 2012
Published by :Rupa Mallik
83, Kharvela nagar, unit - 3,
Bhubaneswar
Printed :BIBHUTI PRINTERS
Aerodrome Area, Bhubaneswar - 20
Price :Rs. 350/-
(Three hundred fifty only)

# -: ଲେଖକଙ୍କର ଅନ୍ୟାନ୍ୟ ରଚନା :-

- ସମ୍ବିତ
- ଜରାସନ୍ଧ
- କୈବର୍ତ୍ତକନ୍ୟା
- The Man of Epoch
- ରାମାୟଣ ଦର୍ଶନ
- ମହାଭାରତ ଦର୍ଶନ
- ଭବିତବ୍ୟ
- କ୍ଷୁଧିତ ଖାରବେଳ
- କୃଷ୍ଣସ୍ତୁ ଭଗବାନ ସ୍ୱୟମ୍
- ପ୍ରତିବାଦ
- ମାଟିର ମୂର୍ତ୍ତିକାର ଓ ଝଡର ଇଗଲ୍ ବିଜୁ
- ଗୀତା ଦର୍ଶନ
- ଉପନିଷଦ
- ବିପନ୍ନ ଗଣତନ୍ତ୍ର
- ଶିକ୍ଷା ଓ ସମାଜ
- ତୃତୀୟ ବିଶ୍ୱଯୁଦ୍ଧ
- ବୈଦିକ ଦର୍ଶନରେ ବିଶ୍ୱଚେତନା
- ଅନ୍ଧକାରର ସୂର୍ଯ୍ୟ

# ଉତ୍ସର୍ଗ

ବିଶ୍ବର ଶ୍ରେଷ୍ଠମାନବ ଅହିଂସାର ପ୍ରତୀକ, ମଣିଷର ସେବା
ପାଇଁ ଉତ୍ସର୍ଗୀକୃତ ସେବାର ଅମୃତମୟ ଦିବ୍ୟ ପୁରୁଷ
ଯିଏ ପୃଥିବୀର ଜନମାନସରେ ପାରମ୍ପରିକ
ରାଜତନ୍ତ୍ର ଶାସନ ବଦଳରେ ଗଣତନ୍ତ୍ର
ଶାସନ ପ୍ରବର୍ତ୍ତନ କରିବା ପାଇଁ
ବୈପ୍ଲବିକ ଦିଗଦର୍ଶନ ଦେଇ
ସଫଳକାମ ହେଲେ ସେଇ
ମହାତ୍ମାଙ୍କ ଉଦ୍ଦେଶ୍ୟରେ....

ଲେଖକ

# ପୂର୍ବାଭାଷ

ଜାତିର ପିତା ମହାତ୍ମା ଗାନ୍ଧିଙ୍କ ସଂପର୍କରେ ସମସ୍ତେ ଜାଣନ୍ତି । ତଥାପି ତାଙ୍କୁ ନେଇ ବହିଟିଏ ଲେଖିବା କ'ଣ ଆବଶ୍ୟକ, ଏ କଥା ଅନେକ ଭାବିବେ । କିନ୍ତୁ ଓଡ଼ିଆ ଭାଷାରେ ତାଙ୍କ ବିଷୟରେ ଉପଯୁକ୍ତ ବହିଟିଏ ନାହିଁ ବୋଲି ମନେ ହେବାରୁ ଲେଖିଲି । ହୁଏତ ଭଲ ବହିଟିଏ ଥାଇପାରେ, କିନ୍ତୁ ମୋ ଆଖିରେ ତାହା ପଡ଼ିନାହିଁ । ଏ ବହି ଖଣ୍ଡିକ ଯେ ଭଲ ହୋଇଛି, ସେ କଥା ମୁଁ କହି ପାରିବି ନାହିଁ । ମାତ୍ର ମୋର ଏ ଉଦ୍ୟମଟି ତାଙ୍କ ପ୍ରତି ଭକ୍ତିର ଅର୍ଘ୍ୟଟିଏ ମାତ୍ର । ପୁଣି ହଜାର ହଜାର ବର୍ଷଧରି ପୃଥିବୀରେ ଅଭ୍ୟସ୍ତ, ରାଜତନ୍ତ୍ର ବଦଳରେ ଗଣତନ୍ତ୍ର ଚେତନା ସୃଷ୍ଟି କରିବା ଥିଲା ତାଙ୍କର ବିସ୍ମୟର କଥା । ଏହାହିଁ ମୋର ଧ୍ୟାନର ବିଷୟ । ସବୁଠାରୁ ବଡ଼ କଥା ହେଲା ତାଙ୍କର ଅହିଂସା ତତ୍ତ୍ୱ । ଭଗବାନ ବୁଦ୍ଧ କହୁଥିଲେ ଅହିଂସା ନିର୍ବାଣର ମାର୍ଗ । ଗାନ୍ଧି କିନ୍ତୁ ସାରା ଜୀବନ ଅହିଂସାବ୍ରତ ପାଳନ କରି ପୃଥିବୀର ସର୍ବଶକ୍ତିମାନ ବ୍ରିଟିଶ ସାମ୍ରାଜ୍ୟର ପତନ ଘଟାଇଥିଲେ ଏହି ଅହିଂସା ବଳରେ । ପ୍ରେମ ଓ ଅହିଂସାର ଏତେ ଶକ୍ତି ଦେଖି ସାରା ବିଶ୍ୱ ସ୍ତବ୍ଧ ଚକିତ ହୋଇଥିଲା । ତେଣୁ ବୁଦ୍ଧଙ୍କ ପରି ତାଙ୍କୁ ମଧ୍ୟ ଭଗବାନଙ୍କର ଅହିଂସା ଅବତାର କହିବା ଯଥାର୍ଥ । ପ୍ରକୃତରେ ଅହିଂସା ଓ ବ୍ରହ୍ମଚର୍ଯ୍ୟ ପାଳନ ଦ୍ୱାରା ଆତ୍ମାରୁ ଯେଉଁ ଶକ୍ତି ଉତ୍ସ ନିର୍ଗତ ହୁଏ, ତାହା ଯେ କୌଣସି ଶକ୍ତିକୁ ପରାସ୍ତ କରିବା ପାଇଁ ଯଥେଷ୍ଟ । ଏ କଥା ସେ ବାସ୍ତବରେ ପ୍ରମାଣ କରି ଦେଖାଇଛନ୍ତି । ଏ ଉତ୍ତେଜନା ପ୍ରବଣ ସଂସାରରେ ଶାନ୍ତି ପ୍ରତିଷ୍ଠା କରିବାକୁ ଅହିଂସା ହିଁ ଏକମାତ୍ର ବାଟ କହି ସେ ଯେଉଁ ସତ୍ୟର ଉଦ୍‌ଘାଟନ କରିଛନ୍ତି, ତାହା ଅନନ୍ୟ ଓ ଅନବଦ୍ୟ । ସେଥିପାଇଁ ସେ ଭଗବାନ ସଦୃଶ କରୁଣାର ଜୀବନ୍ତ ପ୍ରତିମୂର୍ତ୍ତି । ଭଗବାନ ଶ୍ରୀକୃଷ୍ଣ ଜରାସନ୍ଧର ବନ୍ଦିଶାଳାରୁ ଅନେଶ୍ୱତ ରାଜାଙ୍କୁ ମୁକ୍ତ କରିଥିଲେ, ଗାନ୍ଧି କିନ୍ତୁ

ପୃଥିବୀର କୋଟି କୋଟି ଆର୍ତ୍ତ ଦୁର୍ଗତଙ୍କୁ ପରାଧୀନତାର ବନ୍ଦିଶାଳାରୁ ମୁକ୍ତ କରି ଭଗବାନଙ୍କ ପରି ଅମର କୀର୍ତ୍ତି ଅର୍ଜନ କରିଛନ୍ତି। ତେଣୁ ଯଥାର୍ଥରେ ସେ ଭଗବାନଙ୍କର ଅହିଂସା ଅବତାର। ଭଗବାନ ବୁଦ୍ଧଙ୍କର ଅହିଂସା ଓ ଯୀଶୁ ଖ୍ରୀଷ୍ଟଙ୍କର ପ୍ରେମର ସେ ହେଉଛନ୍ତି ସମନ୍ୱିତ ଆତ୍ମା। ମାନବ ଇତିହାସରେ ସେ ହେଉଛନ୍ତି ପ୍ରଥମ ଦେବଦୂତ, ଯାହାଙ୍କର ପ୍ରେମ ପୃଥିବୀର କୋଟି କୋଟି ନିରନ୍ନ କଙ୍କାଳ ସାର ନରନାରୀଙ୍କ ଦେହରେ ପ୍ରାଣ ସଂଚାର କରି ରାଜତନ୍ତ୍ରର ଅନ୍ୟାୟ ଓ ଶୋଷଣ ବିରୁଦ୍ଧରେ ସଂଗ୍ରାମ କରିବା ପାଇଁ ଶକ୍ତି ଓ ସାହସର ସହିତ ଗଣ ବିପ୍ଲବ କରି ଗଣତାନ୍ତ୍ରିକ ଶାସନର ଶୁଭାରମ୍ଭ କରିଛନ୍ତି। ଫଳରେ ଶଗଡ଼ର ଚକ ଓଲଟିଲା ପରି ମୂକର ତୁଣ୍ଡରେ ପ୍ରତିବାଦର ସ୍ୱର ଶୁଣାଯାଉଛି ଓ ପ୍ରଗତିର ଧାରା ସାଧାରଣ ବର୍ଗଙ୍କ ଭିତରେ ବାଣ୍ଟି ହୋଇ ଯିବାର ପ୍ରକ୍ରିୟା ଆରମ୍ଭ ହୋଇଛି। ଖାଲି ସେତିକି ନୁହେଁ, ସାମନ୍ତବାଦ ବଦଳରେ ସହଯୋଗ ଓ ସହାବସ୍ଥାନର ଯୁଗ ଆରମ୍ଭ ହୋଇଛି। ଉପଦ୍ରବ ନୁହେଁ, ଶାନ୍ତିପୂର୍ଣ୍ଣ ସହାବସ୍ଥାନର ବାର୍ତ୍ତା ରୁଷିଆ ଓ ଆମେରିକା ପରି ଯୁଦ୍ଧଖୋର ଶକ୍ତି ମାନଙ୍କୁ ପ୍ରଭାବିତ କରି ପୃଥିବୀରେ ଶାନ୍ତି ପ୍ରତିଷ୍ଠା କରିବା ପାଇଁ ପ୍ରେରଣା ଦେଇଛି। ଦକ୍ଷିଣ ଆଫ୍ରିକାରେ ବ୍ରିଟିଶ ସରକାରଙ୍କ ଲାଠିମାଡ଼ କିମ୍ୱା ଭାରତରେ କାରାବରଣ ଅଥବା ଉଗ୍ର ହିନ୍ଦୁତ୍ୱର ନିର୍ମମ ଗୁଳିଚୋଟ, ସବୁ କିଛି ପରାଜୟ ସ୍ୱୀକାର କରିଛି ତାଙ୍କ ତେଜସ୍ୱୀ ବ୍ୟକ୍ତିତ୍ୱର ବିପ୍ଳବ ଆଗରେ। ସେ ଅଜେୟ, ସେ ପୃଥିବୀରେ ଅଦ୍ୱିତୀୟ ଜନନେତା, ସେ ଅମର। ଯେତେଦିନ ପର୍ଯ୍ୟନ୍ତ ଏ ପୃଥିବୀରେ ସୂର୍ଯ୍ୟ ଚନ୍ଦ୍ର ଆତଯାତ କରୁଥିବେ ସେ ପର୍ଯ୍ୟନ୍ତ ଗାନ୍ଧି ମାନବ ଶ୍ରେଷ୍ଠ ବୋଲି ପୂଜା ପାଉଥିବେ। ସେ ଦିବ୍ୟାତ୍ମା ସମସ୍ତଙ୍କ ଅଗ୍ରପୂଜା। ପୁଞ୍ଜିବାଦ, ସମାଜବାଦ କିମ୍ୱା ସାମ୍ୟବାଦ ଠାରୁ ଗାନ୍ଧିବାଦ ଆଜି ପୃଥିବୀରେ ସମସ୍ତଙ୍କ ଠାରୁ ଶ୍ରେଷ୍ଠବାଦ ଭାବରେ ମାନ୍ୟତା ପାଇଛି।

ଅର୍ଦ୍ଧଶତାବ୍ଦି ଧରି ସେ ଥିଲେ ଭାରତର ଆତ୍ମା, ସେ ଯୁଆଡେ ଯାଉଥିଲେ ସମଗ୍ର ଭାରତ ସିଆଡେ ଯାଉଥିଲା। ସାରା ପୃଥିବୀରେ ଆଜି ଯେଉଁମାନେ

ସଂସ୍କାର ସମ୍ପନ୍ନ, ଗାନ୍ଧି ଦର୍ଶନ ସେମାନଙ୍କର ଆଦର୍ଶ । ଯେଉଁମାନେ ଶାନ୍ତିକାମୀ, ପୃଥିବୀରେ ଶାନ୍ତି ପ୍ରତିଷ୍ଠା କରିବାକୁ ଚାହାଁନ୍ତି, ସେମାନଙ୍କ ପ୍ରେରଣାର ଉତ୍ସ ହେଉଛି ଗାନ୍ଧିଦର୍ଶନ । ବିଶ୍ୱଶାନ୍ତି ଓ ମାନବ ସଭ୍ୟତାର ବିକାଶ ପାଇଁ ତାଙ୍କର ଏ ଅବଦାନ ଏକ ଅନବଦ୍ୟ ଆବିଷ୍କାର ।

ଏ ବିଶାଳ ବିଶ୍ୱର ଅସଂଖ୍ୟ ମଣିଷ ମେଳରେ ପ୍ରାୟ ସମସ୍ତ ଦେହ ସର୍ବସ୍ୱ କିମ୍ବା ବନ୍ଧୁ ସ୍ୱଜନ ସର୍ବସ୍ୱ । କିନ୍ତୁ ବିଶ୍ୱ ସର୍ବସ୍ୱ କିଏ ? ପୃଥିବୀର କୋଟି କୋଟି ମଣିଷର ଦୁଃଖ, କ୍ଲେଶ, ନିର୍ଯାତନାକୁ ଯିଏ ନିଜର ଭାବି ତ୍ରାଣକର୍ତ୍ତାର ଭୂମିକା ନିର୍ବାହ କରେ ସେ ହିଁ ବିଶ୍ୱ ସର୍ବସ୍ୱ । ଆସନ୍ତୁ ତାଙ୍କରି ପାଦରେ ପ୍ରଣାମଟିଏ କରି ନିଜକୁ ଧନ୍ୟ ମଣିବା । ସେ ଗାନ୍ଧି ଆଉ କିଏ ନୁହେଁ, ସାକ୍ଷାତ୍ ଭଗବାନଙ୍କର ପ୍ରତିଛବି । ସେ ନିଷ୍କାମ କର୍ମ ସନ୍ନ୍ୟାସୀ, ଗାନ୍ଧିଦର୍ଶନ ଆଜି ଏକ ବିଶାଳ ଅନୁଷ୍ଠାନରେ ପରିଣତ ହୋଇଛି ।

ଉତ୍ସର୍ଗୀକୃତ ସେବା ହେତୁ ମଣିଷ ଠାରେ ଦେବାବତରଣ ଘଟେ ଏବଂ ଅଲୌକିକ ପ୍ରତିଭାର ଅଧିକାର ଦାନ କରେ ।

********

୧୫୯୯ ମସିହା ସେପ୍ଟେମ୍ବର ମାସ ୨୪ ତାରିଖ ଦିନ ଲଣ୍ଡନ ସହରର ୨୪ଜଣ ବେପାରୀ ଲିଡେନହଲ ରାଜରାସ୍ତା କଡ଼ରେ ଏକ ଜରାଜୀର୍ଣ୍ଣ ପୁରୁଣାଭଙ୍ଗା କୋଠାରେ ଏକତ୍ର ହୋଇ ୧୨୫ଜଣ ଅଂଶୀଦାରଙ୍କ ଠାରୁ ୭୨୦୦୦ ପାଉଣ୍ଡ ମୂଳଧନରେ ପ୍ରତିଷ୍ଠା କଲେ ଏକ ବାଣିଜ୍ୟ ସଙ୍ଗଠନ। ତାହା ହିଁ ଥିଲା ଭାରତରେ ବ୍ରିଟିଶ୍ ସାମ୍ରାଜ୍ୟ ପ୍ରତିଷ୍ଠା କରିବାର ପ୍ରଥମ ପାହାଚ। ସେହିବର୍ଷ ଡିସେମ୍ବର ମାସ ୩୧ ତାରିଖ ଦିନ ରାଣୀ ପ୍ରଥମ ଏଲିଜାବେଥଙ୍କ ସ୍ୱାକ୍ଷରରେ ସମ୍ପାଦିତ ଅନୁମତି ପତ୍ର ବଳରେ ଏହି କମ୍ପାନୀ ପୃଥିବୀର ସବୁଦେଶ ସହିତ ବାଣିଜ୍ୟ କରିବା ପାଇଁ ଅନୁମତି ପାଇଲେ। ମାତ୍ର ୮ମାସ ପରେ କ୍ୟାପ୍‌ଟେନ ଉଇଲିୟମ ହକିନସ୍‌ଙ୍କ ନେତୃତ୍ୱରେ ୫୦୦ଟନ୍ ଜିନିଷ ବୋହିପାରିବା କ୍ଷମତା ଥିବା ହେକ୍ଟର ନାମକ ଏକ ଜାହାଜ ଆସି ବମ୍ବେ (ମୁମ୍ବାଇ)ର ଦକ୍ଷିଣରେ ଥିବା ସୁରାଟ ନାମକ ଏକ ଛୋଟିଆ ବନ୍ଦରରେ ଲାଗିଲା। ଏହାଥିଲା ୧୬୦୦ ମସିହା ଅଗଷ୍ଟ ମାସ ୨୫ ତାରିଖର ଘଟଣା। କ୍ୟାପ୍‌ଟେନ ହକିନସ୍ ଥିଲେ ଜଣେ ଆବିଷ୍କାର ଅପେକ୍ଷା ଅଧିକ ଭୟଙ୍କର ଜଳଦସ୍ୟୁ। ତାଙ୍କର ଅସୀମ ସାହସୀକତା ଓ ଭୟଙ୍କର ଲୁଣ୍ଠନ ଦକ୍ଷତା ତାଙ୍କୁ ଶେଷରେ ଜଣେ ଦକ୍ଷ ନୌଚାଳକର ମାନ୍ୟତା ପ୍ରଦାନ କଲା। ସମୁଦ୍ରର ବିଶାଳ ବିସ୍ତୀର୍ଣ୍ଣ ନୀଳ ଜଳରାଶି ଓ ଉଦାମ ଉତ୍ତାଳ ଲହଡୀମାଳା ତାଙ୍କ ମନରେ ଭୟ ସଞ୍ଚାର ନକରି ସୃଷ୍ଟିକଲା ଆବିଷ୍କାରର ଏକ ଦୁର୍ବାର ଅନ୍ୱେଷଣର ପିପାଶା। ଜାହାଜର ଲଙ୍ଗର ପକାଇ ସେ ସିଂହଠାଣୀରେ ଝାମ୍ପଦେଲେ ବିସ୍ତୀର୍ଣ୍ଣ ବେଳାଭୂମି ଉପରକୁ। ବେଳାଭୂମିର ବାଲୁକା ଶଯ୍ୟା ଡେ଼ଇଁ ଯେତେ ଯେତେ ସେ ଅଭ୍ୟନ୍ତରକୁ ଧସେଇ ପଶୁଥିଲେ। ସେତେ ସେତେ ବହୁମୂଲ୍ୟ ସମ୍ଭାରର ଗନ୍ତାଘର ଖୋଲିଯାଇ ତାଙ୍କୁ ବିସ୍ମୟରେ ଅଭିଭୂତ କରୁଥିଲା। କେଉଁଠି ପାରାଅଣ୍ଡା ଆକୃତିର ଈଷତ୍ ଗୋଲାପି ରଙ୍ଗର ମାଣିକ୍ୟ, ଗୋଲମରିଚ ଲତା ଓ ଗୁଜୁରାତି ଲବଙ୍ଗର ବିଶାଳ ଅରଣ୍ୟ ତ ଆଉ କେଉଁଠି ବିଭିନ୍ନ ମସଲାଜାତୀୟ ଶସ୍ୟର ଅପୂର୍ବ ସମାରୋହ ଦେଖି ତାରୁଣ୍ୟର ଚପଳତାରେ ବୃଦ୍ଧ ନାବିକ ହକିନସ୍ ବିଭୋର ହୋଇ ଉଠୁଥିଲେ। ସତେ ଯେମିତି ଯୌବନର ଉଦ୍ଦାମତା

ତାଙ୍କୁ ବଳିଷ୍ଠ ଯୁବକଟିଏ କରିଦେଇଛି । ସେ ଭାବୁଥିଲେ ଚତୁର୍ଥ ମୋଗଲ ସମ୍ରାଟ୍ ଜାହାଙ୍ଗିରଙ୍କଠାରୁ ଭାରତରେ ବାଣିଜ୍ୟ କରିବାକୁ ସେ ଅନୁମତି ପାଇଲେ ଅଳ୍ପଦିନ ଭିତରେ ବ୍ରିଟେନ ଏକ ଧନଶାଳୀ ଦେଶରେ ପରିଣତ ହେବ ଏବଂ ପୃଥିବୀର ମାନବ ଇତିହାସରେ ତାଙ୍କ ନାମ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ହୋଇରହିବ । ବ୍ରିଟିଶ୍ ଜାତି ପାଇଁ ସେ ଅମର ହୋଇଯିବେ । ସେଥିପାଇଁ ସେ ଅଜସ୍ର ଶ୍ରମ ସ୍ୱୀକାର କରି ଯାତ୍ରାକଲେ ଆଗ୍ରା ଅଭିମୁଖେ । ମାତ୍ର ସୁରାଟ ପରି ସେଠାରେ ନଥିଲା; ଶାନ୍ତ ଶୀତଳ ସବୁଜ ଅରଣ୍ୟର ଶୋଭା କି ମଣିମାଣିକ୍ୟ ପରି ବହୁମୂଲ୍ୟ ରତ୍ନର ସମ୍ଭାର । ଥିଲା ଖାଲି ଗୋଳା ବାରୁଦର ବିଶାଳ ବିପଣି ଆଉ ଅସ୍ତ୍ରଶସ୍ତ୍ରରେ ସୁସଜ୍ଜିତ ମୋଗଲ ସେନାର ଲମ୍ବା ପଟୁଆର । ପ୍ରାଚୁର୍ଯ୍ୟରେ ପରିପୂର୍ଣ୍ଣ ମୋଗଲ ସାମ୍ରାଜ୍ୟର ସତୁରି କୋଟି ପ୍ରଜାଙ୍କର ସମ୍ରାଟ୍ ଜାହାଙ୍ଗୀଙ୍କର ରାଜପ୍ରାସାଦ ଦେଖି ତାଙ୍କର ମନେ ହେଲା, ରାଣୀ ଏଲିଜାବେଥଙ୍କର ସାମ୍ରାଜ୍ୟ ମାତ୍ର କେଇଖଣ୍ଡ ପଡାର ଏକ ପ୍ରାଦେଶିକ ସରକାର । ଅଖଣ୍ଡ କ୍ଷମତା ଆଉ ବିଶାଳ ସାମ୍ରାଜ୍ୟର ସମ୍ରାଟ୍ ଜାହାଙ୍ଗିରଙ୍କୁ ସାକ୍ଷାତ କରିବା ବୋଧହୁଏ ସମ୍ଭବ ନୁହେଁ । ମାତ୍ର ମାନବ ସମାଜର ଇତିହାସରେ ସବୁକିଛି ସମ୍ଭବ । ଛଳ, ବଳ, କୌଶଳ କିମ୍ବା ଦାନ, ଦଣ୍ଡ, ଭେଦ ନୀତିରେ କିଛି ଅସମ୍ଭବ ନୁହେଁ । ଏହାହିଁ ମାନବ ଜାତିର ଇତିହାସ । ପୁଣି ବ୍ରିଟିଶ୍ ଜାତିର, ପୃଥିବୀ ପୃଷ୍ଠର ବିଶାଳ ଭୂଖଣ୍ଡ, ସୌରମଣ୍ଡଳର ଅସଂଖ୍ୟ ଗ୍ରହ ନକ୍ଷତ୍ର ଓ ଗଭୀର ସମୁଦ୍ରର ବିଶାଳ ଜଳରାଶିରେ ଆବିଷ୍କାର ଆଉ ଉଦ୍‌ଭାବନ କ୍ଷେତ୍ରରେ ବ୍ରିଟିଶ୍ ଜାତି ଇତିହାସ ପ୍ରସିଦ୍ଧ । କୁହାଯାଏ, ଅଭାବବୋଧ ହିଁ ଉଦଭାବନର ଜନ୍ମଦାତା । ବ୍ୟକ୍ତି, ଗୋଷ୍ଠୀ ଏବଂ ଜାତି, ପ୍ରତ୍ୟେକ କ୍ଷେତ୍ରରେ ଏହା ହିଁ ସତ୍ୟ, ଅଭାବବୋଧରେ ଜର୍ଜରିତ ବ୍ରିଟିଶ୍ ଜାତି କ୍ଷେତ୍ରରେ ଏହା ପୁଣି ସମ୍ଭବ ନହୁଅନ୍ତା କିପରି ?

ମୋଗଲ ସମ୍ରାଟ୍ ଜାହାଙ୍ଗୀରଙ୍କ ସହିତ ହକିନସ୍‌ଙ୍କର ସାକ୍ଷାତ ହେଲା । ମୋଗଲ ଦରବାରରେ ଜଣେ ଇଂରେଜଙ୍କର ଉପସ୍ଥିତି ଏବଂ ଭାରତ ଭୂଖଣ୍ଡରେ ଇଂରେଜ ମାନଙ୍କର ପ୍ରବେଶ, ଏହାଥିଲା ପ୍ରଥମ ଘଟଣା । ଜାହାଙ୍ଗୀର ପ୍ରସନ୍ନ ହେଲେ ଏବଂ

ହକିନସ୍‌ଙ୍କୁ ସ୍ୱାଗତ କଲେ । ଖାଲି ସ୍ୱାଗତ ନୁହେଁ, ଅବସ୍ଥାନ ପାଇଁ ତାଙ୍କର ରାଜଅନ୍ତପୁରର ଜଣେ ଲାବଣ୍ୟରେ ଛଳ ଛଳ ସୁନ୍ଦର ତରୁଣୀଟିଏ ତାଙ୍କୁ ଉପହାର ଦେଲେ । ଏହାପରେ ସେ ସ୍ୱାକ୍ଷର କଲେ ଚୁକ୍ତିପତ୍ର । ଚୁକ୍ତିପତ୍ର ଅନୁସାରେ ଇଂରେଜ ପାଇଲେ ଭାରତରେ ବାଣିଜ୍ୟ କରିବା ପାଇଁ ଅନୁମତି । ପ୍ରଥମେ ସେମାନେ ବମ୍ବେର ଉତ୍ତରାଞ୍ଚଳରେ ବଜାର ଖୋଲିଲେ । ଚାହୁଁ ଚାହୁଁ ବାଣିଜ୍ୟର ପ୍ରସାର ଘଟିଲା ଏବଂ ମାସକୁ ଦୁଇଟା ଜାହାଜ ବମ୍ବେରେ ପହଞ୍ଚି ଭାରତରୁ ବୋହିନେଲା କଞ୍ଚାମାଲ ଓ ଭାରତ ବଜାରରେ ଭର୍ତ୍ତି କରିଦେଲା ବ୍ରିଟିଶ୍‌ର କଳତିଆରି ବିଭିନ୍ନ ମସଲା, ଚିନି ଓ ଆକର୍ଷଣୀୟ ପୋଷାକ ପରିଚ୍ଛଦ, ଏହି ବାଣିଜ୍ୟରେ ଇଷ୍ଟ୍ ଇଣ୍ଡିଆ କମ୍ପାନୀ ଶତକଡ଼ା ଦୁଇଶହ ଗୁଣ ଲାଭ ଉଠାଇ ବଜାର ସାମ୍ରାଜ୍ୟ ପ୍ରତିଷ୍ଠା କଲେ । ୟୁରୋପର ଦକ୍ଷିଣରେ ବସବାସ କରୁଥିବା ସ୍ପେନର ବଣିକମାନେ ସିନା ଦକ୍ଷିଣ ଆମେରିକା ଜୟ କରିଥିଲେ ସେମାନଙ୍କୁ ମୁକ୍ତି ଦେବା ପାଇଁ ପ୍ରଚାର କରି । ହେଲେ ବ୍ରିଟିଶ୍ ପ୍ରଚାର କଲା ସେମାନେ ଭାରତକୁ ଆସିଛନ୍ତି ଦେବତାମାନଙ୍କ ଇଚ୍ଛାରେ ବାଣିଜ୍ୟ କରିବାକୁ ।

ସେମାନଙ୍କର ନୀତିର ଏହି କୌଶଳ ସେମାନେ ସବୁବେଳେ ପ୍ରଚାର କରୁଥିଲେ ଏବଂ ଶିକ୍ଷା, ସେବା ଓ ଧର୍ମୀୟ ପ୍ରସାର ପାଇଁ ବହୁସଂଖ୍ୟାରେ ସ୍କୁଲ, ଡ଼ାକ୍ତରଖାନା ଓ ଚର୍ଚ୍ଚମାନ ପ୍ରତିଷ୍ଠା କରି ଭାରତବାସୀଙ୍କ ପାଖରେ ପ୍ରିୟଭାଜନ ହେବା ପାଇଁ ଧାରାବାହିକ ଉଦ୍ୟମ କରୁଥିଲେ । "ସେବା କାର୍ପଣ୍ୟ କର୍ମ ବଳେ କିବା ଅସାଧ ମହିତଳେ", ଭାଗବତର ଏହିବାଣୀ ସତେ ଯେମିତି ଥିଲା ସେମାନଙ୍କର ମୂଳମନ୍ତ୍ର । ପ୍ରଥମେ ପ୍ରଥମେ ସେମାନଙ୍କର ଏହି ଉଦାର ଆଚରଣ ଭାରତବାସୀଙ୍କ ପାଖରେ ଅତ୍ୟନ୍ତ ଆଦରଣୀୟ ହୋଇ ଉଠିଲା ଏବଂ ସ୍ଥାନୀୟ ରାଜା, ମହାରାଜା ଓ ସାଧାରଣ ଅଧିବାସୀ ସେମାନଙ୍କୁ ପ୍ରତ୍ୟେକ କଥାରେ ଆଦର ଓ ସମ୍ମାନ କରିବାକୁ ଲାଗିଲେ । ଏହି ଧାରାରେ ସେମାନଙ୍କର ବାଣିଜ୍ୟ ବିକାଶ ଲାଭ କଲା ଏବଂ ସେମାନେ କ୍ରମେ କ୍ରମେ ଭାରତର ପ୍ରତ୍ୟେକ ଅଞ୍ଚଳକୁ ଖେଦିଯାଇ ଆଞ୍ଚଳିକ ରାଜନୀତିରେ ପ୍ରବେଶ କରିବାର ସୁଯୋଗ ପାଇଲେ । ଏକଥା ଏଠାରେ ଉଲ୍ଲେଖ କରିବା କଥା ଯେ,

ସେତେବେଳେ ଭାରତର ପ୍ରାୟ ପ୍ରତ୍ୟେକ ରାଜା, ମହାରାଜା ଏବଂ ବିତ୍ତଶାଳୀ ଲୋକେ ନିଜର ପ୍ରତିଷ୍ଠା, ପ୍ରତିପତ୍ତି ଓ ଅହଂକାର ହେତୁ ପରସ୍ପର ସହିତ ନାନା ବିବାଦରେ ଜଡ଼ିତ ରହୁଥିଲେ ଓ ସେମାନଙ୍କ ପକ୍ଷ ସମର୍ଥନ କରି ଲୋକେ ଦଳଦଳ ହୋଇ ବିଭିନ୍ନ ଭାଗରେ ବିଭକ୍ତ ହୋଇଯାଇଥିଲେ। ଏହିପରି ନାନା ବିବାଦରେ ଲିପ୍ତ ଥିବା ପକ୍ଷମାନଙ୍କୁ ସମର୍ଥନ କରିବା ଆଳରେ ବ୍ରିଟିଶ୍ ମାନେ କୌଶଳ କ୍ରମେ ଆଞ୍ଚଳିକ ରାଜନୀତିରେ ପ୍ରବେଶ କରିବାର ଅବାଧ ସୁଯୋଗ ପାଇଲେ।

ଏହି କୌଶଳ ହିଁ ପରବର୍ତ୍ତୀ କାଳରେ ସେମାନଙ୍କୁ ଭାରତରେ ବ୍ରିଟିଶ୍ ସାମ୍ରାଜ୍ୟ ପ୍ରତିଷ୍ଠା କରିବାର ସୌଭାଗ୍ୟ ଆଣିଦେଲା। ଦୁଇ ପକ୍ଷର ବିବାଦ ତୃତୀୟ ପକ୍ଷର ଲାଭ। ଏହା ସବୁବେଳେ ସତ୍ୟ। ଏହି ସତ୍ୟର ଭିତ୍ତିଭୂମି ଉପରେ କେତେ ଯେ ସଭ୍ୟତା ଭାଙ୍ଗିଛି ଆଉ କେତେ ଯେ ସାମ୍ରାଜ୍ୟର ପତନ ଘଟିଛି ସେସବୁ ପୃଥିବୀ ଇତିହାସରେ ଲିପିବଦ୍ଧ। ତାହା ପୁଣି ଭାରତର ରାଜା ମହାରାଜା ମାନଙ୍କ ଭିତରେ ଥିବା ବିବାଦ ବ୍ରିଟିଶ୍ ଜାତି ପାଇଁ ଲାଭଦାୟକ ନହୁଅନ୍ତା କିପରି ବା ଭାରତକୁ ଆସିଥିବା ଦଳେ ବଣିକ ଯିଏ ମୋଗଲ ସମ୍ରାଟ୍‌ଙ୍କ ଦୟା ଓ ଅନୁଗ୍ରହରୁ ବାଣିଜ୍ୟ କରିବା ପାଇଁ ସୁଯୋଗ ପାଇଥିଲେ ସେ ପୁଣି ସେଇ ମୋଗଲ ସାମ୍ରାଜ୍ୟକୁ ଭାଙ୍ଗି ତାରି କବର ଉପରେ ସର୍ବମୟ ବିଶାଳ ବ୍ରିଟିଶ୍ ସାମ୍ରାଜ୍ୟ ପ୍ରତିଷ୍ଠା ନକରିଥାନ୍ତେ କିପରି ? ମିଶର, ବେବିଲନ୍, ଗ୍ରୀସ୍ ଇତିହାସରେ ମଧ୍ୟ ଏହି ସତ୍ୟ ଲିପିବଦ୍ଧ। ମାନବ ଜାତିର ଇତିହାସରେ ବି ଏହି ସତ୍ୟ ନିରବଚ୍ଛିନ୍ନ ଭାବରେ ତା'ର ଏହି ଧର୍ମ ରକ୍ଷା କରି ଚାଲିଛି।

ବାଣିଜ୍ୟ ପ୍ରତିଷ୍ଠାନ ଗୁଡିକର ସୁରକ୍ଷା ପାଇଁ ଇଷ୍ଟ ଇଣ୍ଡିଆ କମ୍ପାନି ଗଢ଼ିଥିଲା ସୁରକ୍ଷା ବାହିନୀ। ଏହି ବାହିନୀର ଯବାନମାନେ ବିଛେଇ ହୋଇଯାଇଥିଲେ ସାରା ଭାରତର ବିଶାଳ ଭୂଖଣ୍ଡରେ। ସେମାନଙ୍କର ସ୍ୱାସ୍ଥ୍ୟସେବା ଓ ଶିକ୍ଷାର ବିସ୍ତାର ସହିତ ଧର୍ମୀୟ ଅନୁଷ୍ଠାନ ଗୁଡିକ ବିଛେଇ ହୋଇଯାଇଥିଲା ଆକୁମାରୀ ହିମାଞ୍ଚଳ ଭେଦୀ ନୀବିଡ଼ ଅରଣ୍ୟଠାରୁ ସମତଳ ଭୂଖଣ୍ଡର ସୁବିସ୍ତୃତ ଅଞ୍ଚଳକୁ। ଧନର ପ୍ରାଚୁର୍ଯ୍ୟ ଓ

ବାହୁବଳ ସେମାନଙ୍କୁ ଗଢ଼ି ତୋଳିଥିଲା ଦରିଦ୍ର ନିରନ୍ନ ଭାରତବାସୀଙ୍କ ପାଖରେ ତ୍ରାଣକର୍ତ୍ତା ଦେବଦୂତ୍ ପରି । ତଥାପି ରକ୍ଷଣଶୀଳ ଭାରତୀୟ ମାନେ ପୁରୁଣାକୁ ଛାଡି ନୂଆକୁ ଗ୍ରହଣ କରି ପାରିନଥିଲେ ସହଜରେ । ମାତ୍ର ସେମାନଙ୍କର ଦୁର୍ଦ୍ଦଶ ଦୁର୍ବାର ବାହିନୀ ପାଖରେ ପରାଜୟ ସ୍ୱୀକାର କରି ଧରାଶାୟୀ ହୋଇ ଶୋଇଯାଇଥିଲେ ମହାଭାରତ ଯୁଦ୍ଧରେ ଅହଂକାରୀ ଦୁର୍ଯ୍ୟୋଧନ ପରି ଗୋଟିକ ପରେ ଗୋଟିଏ । କାରଣ ସଭ୍ୟତାର ରଥଚକ ଘୁରି ଯାଇଥିଲା ମୋଗଲ ସାମ୍ରାଜ୍ୟର ଦୟା କ୍ରମେ ବଦଳି ଯାଇ, ଭାରତବାସୀ ହୋଇଯାଇଥିଲେ ଇଂରେଜ ମାନଙ୍କ ପାଖରେ ଅନୁଗ୍ରହ ଓ ଆନୁଗତ୍ୟର ମଣିଷ । ଅବୈଧ ଯୌନ ସମ୍ପର୍କ ହେତୁ ଭାରତର ବର୍ଣ୍ଣଶଙ୍କର ମାନଙ୍କର ସଂଖ୍ୟା ହୁ ହୁ ହୋଇ ବଢ଼ିବାରେ ଲାଗିଥିଲା । ଭୂଭୁକ୍ଷ୍ୱ କିଂ ନ କରୋତି ପାପ, ଏହି ବ୍ୟାଧିର ଶିକାର ହୋଇଯାଇଥିଲେ । ଦୁର୍ଗମ ଅଞ୍ଚଳର ଅଗଣିତ ମଣିଷ ଓ ନବ୍ୟ ଶିକ୍ଷିତ ସଂପ୍ରଦାୟର ଅନେକ ଅନୁଗ୍ରହ ଆଶାୟୀ ଭୌତିକପ୍ରାଚୁର୍ଯ୍ୟ ପ୍ରିୟ ଦେହସର୍ବସ୍ୱ ନୀତିହୀନ କାଙ୍ଗାଳମାନେ । ଚାକଚକ୍ୟ ଭରା ନୂତନ ସଭ୍ୟତାର ଜଳନ୍ତା ନିଆଁରେ ଝାସ ଦେଉଥିଲେ ପତଙ୍ଗ ପରି ସେମାନେ । ଦେଶ, ଜାତି, ଭାଷା ଓ ଧର୍ମ ନିର୍ବିଶେଷରେ ମଣିଷର ଚରିତ୍ର ପୃଥିବୀର ସବୁଆଡେ ସମାନ । ସେ ପ୍ରାଚ୍ୟ ହେଉ କି ପାଶ୍ଚାତ୍ୟ ହେଉ । ଜଳନ୍ତା ନିଆଁ ପାଖରେ ପତଙ୍ଗ କେତେକାଳ ସମ୍ଭାଳି ହୋଇ ରହିପାରିବ ? ମରିଚିକା ଦେଖି ମୃଗମୃଗିଣୀ ଟଳି ପଡିଲା ପରି ସେମାନେ ଝାସ ଦେଇ ମରିବେ ନିଶ୍ଚୟ । ଲୋଭ କ'ଣ କେବଳ ଦରିଦ୍ର ମାନଙ୍କର ଥାଏ ? ବରଂ ଶିକ୍ଷିତ ଓ ସମ୍ଭ୍ରାନ୍ତ ବୋଲାଉଥିବା ଦେହସର୍ବସ୍ୱ ମଣିଷର ବେଶୀ । କାରଣ ଆହୁରି ଧନୀ, ଆହୁରି ପ୍ରଭାବଶାଳୀ ହେବା ନିଶାରେ ଆଶା ସେମାନଙ୍କର ଅସୁମାରୀ । ଆଶା କ'ଣ କେବେ ପୂରଣ ହୁଏ ? ନା, କାରଣ ତାହା ମୃଗତୃଷ୍ଣା । ନୀତି, ଆଦର୍ଶ, ସଭ୍ୟତା, ସଂସ୍କୃତି, ଏସବୁ ସେମାନଙ୍କ ପାଖରେ ଅବାନ୍ତର । ସେସବୁ କଥା କହିଲେ ସେମାନେ ଉପହାସ କରି କହନ୍ତି "ଏସବୁ ପୁରୁଣା କାଳିଆ ଅଚଳ ପଇସା । ପୁରୁଣାକୁ ଛାଡି ନୂଆକୁ ଆମନ୍ତ୍ରଣ ନକଲେ ଜୀବନ ବରବାଦ୍ ହୋଇଯିବ ।"

ହଁ ପୁରୁଣାକୁ ଜାବୁଡି ଧରି ଯାହା ମର୍ଯ୍ୟାଦାର ସଂକେତ, ସଂସ୍କୃତି, ଛାଡିଦିଅ ଯାହା ଅସଭ୍ୟତା ଓ କୁସଂସ୍କାର । ନୂଆକୁ ଆଦରି ନିଅ ଯାହା ପ୍ରଗତିର ଲକ୍ଷଣ । ନୂଆ ଭାବି ସବୁକିଛି ଆବୋରି ନିଅ ନାହିଁ । ତାହା ବଞ୍ଚିବାର ମାନଦଣ୍ଡ ବଢ଼ାଇପାରେ । କିନ୍ତୁ ବଢ଼ାଇପାରେ ନାହିଁ ଜୀବନର ମାନଦଣ୍ଡ । ସବୁକିଛିକୁ ପୁରୁଣା ଭାବି ଛାଡି ଦେଇ ପୃଥିବୀର କେଉଁ ଜାତି ସଭ୍ୟ ଓ ସମୃଦ୍ଧ ହୋଇଛି ? ପୁରୁଣାକୁ ଜାବୁଡି ଧରି ମିଶର, ବେଲିଲନ୍ ଓ ଗ୍ରୀସ୍ ଭଳି ଦେଶ କି ଦୁର୍ଦ୍ଦଶା ନ ଭୋଗିଛି ? ଦେଶ ଦେଶ ମଧ୍ୟରେ ଶିକ୍ଷା ଓ ସଂସ୍କୃତି ଭିତ୍ତିକ ଭାବର ଆଦାନ ପ୍ରଦାନ ଚାଲିଛି । ଚାଲିବା ଆବଶ୍ୟକ । କିନ୍ତୁ ବିଚାରଶୀଳ ମଣିଷ କିଛି ବିଚାର ନକରି ନୂଆଭାବି ସବୁକିଛି ଆବୋରି ନେବା ଅସଭ୍ୟତା । ମଣିଷତ ବିଚାରହୀନ ପଶୁ ନୁହେଁ, ସେ ସେପରି କରିବ କାହିଁକି ?

'Trade not Country' ବାସ୍ତବରେ ଏହା ଇଷ୍ଟ ଇଣ୍ଡିଆ କମ୍ପାନୀର ଥିଲା ଚତୁର କୌଶଳ । କାରଣ ବଣିକ ନାଁରେ ଭାରତ ଦଖଲ କରି ତାର ଶାସନଭାର ହାତକୁ ନେବା ଓ ଭାରତ ଭୂଖଣ୍ଡରେ ବ୍ରିଟିଶ୍ ସାମ୍ରାଜ୍ୟ ପ୍ରତିଷ୍ଠା କରିବାଥିଲା ସେମାନଙ୍କର ମୂଳଲକ୍ଷ୍ୟ । ତା ନହେଲେ ଭାରତର ରାଜା ମହାରାଜା ମାନଙ୍କ ଭିତରେ ଥିବା ବିବାଦର ସୁଯୋଗ ନେଇ ଆଞ୍ଚଳିକ ରାଜନୀତିରେ ସେମାନେ ହସ୍ତକ୍ଷେପ କରନ୍ତେ କାହିଁକି ? ବାଣିଜ୍ୟ ପ୍ରତିଷ୍ଠାନର ସୁରକ୍ଷା ପାଇଁ ଗଢ଼ା ଯାଇଥିବା ସୁରକ୍ଷା ବାହିନୀକୁ ବିଶାଳ ସେନାବାହିନୀରେ ସେମାନେ ପରିଣତ କରିଥାନ୍ତେ କାହିଁକି ? ଭାରତ ନଥିଲା ଏକ ଶାସନାଧୀନ କି ଚନ୍ଦ୍ରଗୁପ୍ତ ମୌର୍ଯ୍ୟଙ୍କ ପରି କାହାରି ନଥିଲା ଛ'ଲକ୍ଷ ବିଶିଷ୍ଟ ସେନାବାହିନୀ । ଉଣା ଅଧିକେ ସମସ୍ତେ ଥିଲେ ବିବାଦଲିପ୍ତ ଓ ସେମାନଙ୍କ ଭିତରୁ ଅନେକ ଚାହୁଁଥିଲେ ବ୍ରିଟିଶ୍ ସେନାର ସାହାଯ୍ୟ । ଏପରି ସାହାଯ୍ୟ ଭିକ୍ଷା ଥିଲା ଭାରତ ଅଧିକାର ପାଇଁ ତୃତୀୟପକ୍ଷ- ବ୍ରିଟିଶ ସେନା ପାଇଁ ଅପୂର୍ବ ସୁଯୋଗ । ଇଷ୍ଟ ଇଣ୍ଡିଆ କମ୍ପାନିର ପ୍ରଚୁର ଲାଭ ହେଉଥିଲା । ସେହି ଅର୍ଥରେ ସେମାନେ ସୈନ୍ୟବାହିନୀକୁ ବିଶାଳରୂପ ଦେବା ସହିତ ରେଳ, ଡାକ ଇତ୍ୟାଦି ବହୁ ବିଶାଳ ସଙ୍ଗଠନ ମାନ

ପ୍ରତିଷ୍ଠା କରିଥିଲେ। ଏହିସବୁ ସଙ୍ଗଠନ ଓ ବ୍ରିଟିଶ୍ ସେନାରେ ଯୋଗଦେବାକୁ ଭାରତୀୟମାନେ ସୌଭାଗ୍ୟ ମଣୁଥିଲେ। ବସ୍ତୁତଃ ଅନେକ ରାଜା ମହାରାଜା ଓ ସେମାନଙ୍କର ଦାୟାଦମାନେ ଏସବୁ ସଙ୍ଗଠନରେ ଚାକିରୀ କରି ଖ୍ୟାତି ଓ ଅର୍ଥ ଉପାର୍ଜନ କରୁଥିଲେ। ଏହି କାରଣରୁ ଭାରତୀୟମାନେ ଇଂରେଜ ମାନଙ୍କର ଅନୁଗତ ହୋଇପଡିଥିଲେ। ଏଇମାନେ ହିଁ ବ୍ରିଟିଶ୍ ପ୍ରଶଂସାରେ ଶତମୁଖ ହୋଇ ସେମାନଙ୍କର ଭାବମୂର୍ତ୍ତିକୁ ବହୁଗୁଣିତ କରିଥିଲେ। ଫଳରେ ଇଂରେଜ ମାନଙ୍କୁ ବିରୋଧ କରିବା ବଦଳରେ ସହଯୋଗ କରିବାର ମନୋଭାବ ସାରା ଦେଶରେ ଖେଳେଇ ହୋଇଯାଇଥିଲା। ଯେଉଁସବୁ ସ୍କୁଲ କଲେଜ ଖୋଲିଲେ ଇଂରେଜ ଶିକ୍ଷାର ପ୍ରସାର ଘଟାଇଥିଲେ, ସେଠାରେ ମଧ୍ୟ ଭାରତୀୟ ଛାତ୍ରଛାତ୍ରୀମାନେ ଇଂରେଜ ମାନଙ୍କର ଜୟଗାନ କରୁଥିଲେ। ଏହିପରି ଦେଖିବାକୁ ଗଲେ ସକଳ ଶୋଷଣ ସତ୍ତ୍ୱେ ସେମାନେ ଭାରତବାସୀଙ୍କ ଆଗରେ ତୋଳି ଧରିଥିଲେ ବିଜ୍ଞାନ ଭିତ୍ତିକ ନୂତନ ଜ୍ଞାନକୌଶଳ, ଶିଳ୍ପ ସଭ୍ୟତା ଓ ଜ୍ଞାନ ବିଜ୍ଞାନର ଏକ ବିସ୍ତୃତ ଦିଗନ୍ତ। ପ୍ରକୃତ ପକ୍ଷରେ ଦେଖିଲେ ଶିକ୍ଷାର ବ୍ୟାପକ ପ୍ରସାର ହେତୁ ମାତ୍ର ନବେବର୍ଷ (୧୮୫୭ ରୁ ୧୯୪୭) ମଧ୍ୟରେ, ଶକ୍ତିଶାଳୀ ବ୍ରିଟିଶ୍ ସାମ୍ରାଜ୍ୟର ପତନ ଘଟାଇ ଭାରତକୁ ସ୍ୱାଧୀନ କରିବା ସମ୍ଭବ ହେଲା। ତା ପୁଣି ଜାତିର ନମସ୍ୟ ପିତା ମହାତ୍ମା ଗାନ୍ଧୀଙ୍କର ଅହିଂସା ଅସ୍ତ୍ରଦ୍ୱାରା। ଏହା ପୃଥିବୀ ଇତିହାସରେ ଅଦ୍ୱିତୀୟ ଘଟଣା। ନେଲସନ୍ ମାଣ୍ଡେଲାଙ୍କ ପରି ଯେଉଁମାନେ ଅହିଂସା ଅସ୍ତ୍ରର ଅଲୌକିକ ଅଦ୍‌ଭୁତ ଶକ୍ତିକୁ ଅସ୍ତ୍ରରୂପେ ଧାରଣ କରିଥିଲେ, ସେମାନଙ୍କୁ ମହାତ୍ମା ଗାନ୍ଧୀଙ୍କର ଅହିଂସା ମନ୍ତ୍ର ଗଭୀରଭାବେ ଉଦ୍‌ବୁଦ୍ଧ କରିଥିଲା। ରାମ ଓ କୃଷ୍ଣଙ୍କ ପରି ମହାତ୍ମାମାନେ ଯେଉଁମାନଙ୍କୁ ଭାରତବାସୀ ଭଗବାନ ଭାବି ପୂଜା କରନ୍ତି, ସେମାନେ ବି ଆତ୍ମାର ଏହି ଅନନ୍ତ ଶକ୍ତିକୁ ବ୍ୟବହାର ନକରି ଅସ୍ତ୍ରଧାରଣ କରିଥିଲେ। ଗୋଟିଏ ଦୃଷ୍ଟିରୁ ଦେଖିଲେ ମହାତ୍ମା ଗାନ୍ଧୀ ସେମାନଙ୍କଠାରୁ ଆହୁରି ଅଧିକ ଶକ୍ତିଶାଳୀ। ଅହିଂସା ପରି ଏକ ଅଲୌକିକ ଶକ୍ତିଶାଳୀ ଅସ୍ତ୍ରର ଉଦଭାବନ କରି ମାନବ ଇତିହାସରେ ଅମର ହୋଇଯାଇଛନ୍ତି ସତ, କିନ୍ତୁ କ୍ରମେ ସେ ଭଗବାନ ବୋଲି ପୂଜା ପାଇବେ।

ସେ ସମୟ ଆସନ୍ନ ପ୍ରାୟ । ଭଗବାନ ବୁଦ୍ଧଙ୍କୁ ଅହିଂସା ଅସ୍ତ୍ରର ଉଦ୍‌ଭାବକ ବୋଲି ସ୍ୱୀକାର କରିବାକୁ ହେବ । ସେଥିପାଇଁ ଭଗବାନଙ୍କର ଦଶ ଅବତାର ମଧ୍ୟରୁ ତାଙ୍କୁ ଅନ୍ୟତମ ବୋଲି ଗ୍ରହଣ କରାଯାଇଛି । ଭାରତକୁ ସେହି ଅସ୍ତ୍ରର ପ୍ରୟୋଗଶାଳା କରି ମହାତ୍ମା ଗାନ୍ଧୀ ଦୁର୍ବାର ବ୍ରିଟିଶ୍ ସାମ୍ରାଜ୍ୟର ପତନ ଘଟାଇଛନ୍ତି । ମଗଧ ନରେଶ ଜରାସନ୍ଧ ସିନା ଅନେଶ୍ୱତ ରାଜାଙ୍କୁ ବନ୍ଦୀକରି କାରାଗାରରେ ନିକ୍ଷେପ କରିଥିଲା, ନିଜକୁ ସାର୍ବଭୌମ ସମ୍ରାଟ୍‌ର ମାନ୍ୟତାରେ ଭୂଷିତ କରିବା ପାଇଁ । ଶ୍ରୀକୃଷ୍ଣ ସିନା ସେମାନଙ୍କୁ ମୁକ୍ତ କରି ସେମାନଙ୍କ ତ୍ରାଣକର୍ତ୍ତା ବୋଲି ଖ୍ୟାତି ଅର୍ଜନ କରିଥିଲେ । ଶ୍ରୀରାମ ସିନା ଲଙ୍କାର ଅସୁର ଶକ୍ତିକୁ ପରାସ୍ତ କରି ପତ୍ନୀ ସୀତାଙ୍କୁ ବନ୍ଦିମୁକ୍ତ କରିଥିଲେ । ମହାତ୍ମା ଗାନ୍ଧି କିନ୍ତୁ କୋଟି କୋଟି ଇଂରେଜ ମାନଙ୍କୁ ପରାସ୍ତ କରି ସତୁରୀ କୋଟି ଭାରତୀୟ ବନ୍ଦୀଙ୍କୁ ବନ୍ଦୀମୁକ୍ତ କରିଦେଇ ସାରାବିଶ୍ୱକୁ ଚକିତ କରିଦେଲେ, ଅହିଂସା ଅସ୍ତ୍ରର ଅଲୌକିକ ଶକ୍ତି ପାଖରେ । କୁହାଯାଏ, ବ୍ରିଟିଶ ସାମ୍ରାଜ୍ୟରେ ସୂର୍ଯ୍ୟ ଅସ୍ତମିତ ହୁଅନ୍ତି ନାହିଁ । ଅର୍ଥାତ୍ ପୃଥିବୀର ଅଧିକାଂଶ ଦେଶ ବ୍ରିଟିଶ୍ ସାମ୍ରାଜ୍ୟର ଅର୍ନ୍ତଭୁକ୍ତ ହେବା କାରଣରୁ ଦିନକର ବାରଘଣ୍ଟା ସମୟ ପୃଥିବୀର ଗୋଟିଏ ଭାଗ ଦିବାଲୋକରେ ଆଲୋକିତ ହେଉଥିଲା ବେଳେ ଅନ୍ୟପାର୍ଶ୍ୱଟି ବି ଅବଶିଷ୍ଟ ବାରଘଣ୍ଟା ଆଲୋକିତ ରହେ । ଏପରି ଏକ ଅଜେୟ ସାମ୍ରାଜ୍ୟକୁ ଅହିଂସା ଅସ୍ତ୍ରରେ ପରାସ୍ତ କରି ମହାତ୍ମା ଗାନ୍ଧୀ କ'ଣ ଭଗବାନ ବୋଲି ପୂଜା ପାଇବେ ନାହିଁ ?

ଆଜିକାଲି ପୃଥିବୀରେ ବହୁବାଦର ପ୍ରଚଳନ ଅଛି । ସାମ୍ୟବାଦ, ସମାଜବାଦ, ପୁଞ୍ଜିବାଦ, ଧର୍ମୀୟ ବାଦ ଇତ୍ୟାଦି ଯେଉଁସବୁ ବାଦର ପ୍ରଚଳନ ଅଛି ସେସବୁ ମଣିଷ ଜୀବନର ବର୍ହିଃଜଗତ ପାଇଁ ଉଦ୍ଦିଷ୍ଟ । କିନ୍ତୁ ଗାନ୍ଧୀବାଦ ଅର୍ଥାତ୍ ଅହିଂସା ତତ୍ତ୍ୱ ପୃଥିବୀର ସମସ୍ତ ଜୀବ ଜଗତର କଲ୍ୟାଣ ପାଇଁ ଅଭିପ୍ରେତ । ବୁଦ୍ଧଙ୍କ ଦର୍ଶନରେ ପ୍ରଚାରିତ ଅହିଂସାର ଏହା ପ୍ରତିଶବ୍ଦ । ଅର୍ଥାତ୍ ଜିବେ ଦୟା ଯେପରି ସାରା ଜୀବ ଜଗତକୁ ବୁଝାଏ ସେହିପରି ଗାନ୍ଧିତତ୍ତ୍ୱ ଅର୍ଥାତ୍ ଅହିଂସା, କୀଟ, ପତଙ୍ଗ, ସରୀସୃପ, ପଶୁପକ୍ଷୀ, ବୃକ୍ଷଲତା ଏବଂ ମଣିଷର କଲ୍ୟାଣ ପାଇଁ ଉଦ୍ଦିଷ୍ଟ । ଆତ୍ମା ଯେପରି ସର୍ବତ୍ର ପରିବ୍ୟାପ୍ତ

ଅହିଂସା ସେହିପରି ସକଳ ଜୀବ ଜଗତର କଲ୍ୟାଣ ପାଇଁ ସର୍ବ ବ୍ୟାପକ, ବ୍ୟାଧିରୁ ଉପଶମ, ଦାରିଦ୍ର୍ୟ, ଅଶିକ୍ଷା, କୁସଂସ୍କାର ଓ ବର୍ଣ୍ଣଭେଦରୁ ମୁକ୍ତି ପାଇଁ ଏହା ଅପରିହାର୍ଯ୍ୟ । ଏହା ପ୍ରେମ ଓ ଆତ୍ମସତ୍ତା ଉପରେ ପ୍ରତିଷ୍ଠିତ । ଏହାର ଶକ୍ତି ଅଲୌକିକ, ମନ, ହୃଦୟ ଓ ଆତ୍ମାକୁ ଧ୍ୟାନମୁଦ୍ରାରେ ଏକବିନ୍ଦୁରେ ଠୁଳ କରିପାରିଲେ ଯେଉଁ ଚିତ୍ତ ସତ୍ତାର ବହି ପ୍ରକାଶ ହୁଏ ତାହା ପ୍ରେମ, କରୁଣା, ଦୟା, କ୍ଷମାର ଅନ୍ତଃସ୍ରୋତ । ମଣିଷ ଏହି ଶକ୍ତିକୁ ଜାଗ୍ରତ କରିପାରିଲେ ହିଂସ୍ର ପଶୁକୁ ବଶମ୍ବଦ କରିପାରେ । ଉତ୍କଟ ବିଷଧର ସର୍ପକୁ ଆୟତ କରିପାରେ । ହିମାଳୟକୁ ଧରାଶାୟୀ କରିପାରେ । ସମୁଦ୍ରର ଅଥଳ ଗର୍ଭକୁ ଶୁଷ୍କ କରିପାରେ ଏବଂ ଯେକୌଣସି ବିଶାଳ ଦୁଃର୍ଦ୍ଦଶ ସେନାକୁ ପରାସ୍ତ କରିପାରେ । ଅପାର ଏହାର ମହିମା । ମହାତ୍ମା ଗାନ୍ଧୀ ନିଜଠାରେ ଏହି ଶକ୍ତିକୁ ଜାଗ୍ରତ କରି ଅଲୌକିକ ସଫଳତାର ଦୃଷ୍ଟାନ୍ତ ଦେଖାଇଛନ୍ତି । ତାଙ୍କର ଏହି ଶକ୍ତି ଆଗରେ ବ୍ରିଟିଶ ସମ୍ରାଟ୍ ଠାରୁ ଆରମ୍ଭ କରି ଭାରତର ୫୬୫ଜଣ ରାଜା, ମହାରାଜା ଏବଂ ଦକ୍ଷିଣ ଆଫ୍ରିକାର ବର୍ବର ଶାସନ ପରାଜୟ ସ୍ୱୀକାର କରିଛି । ସେ ଥିଲେ ପ୍ରେମ ଓ କରୁଣାର ମୂର୍ତ୍ତୀମନ୍ତ ଦେବତା । ତେଣୁ ଭଗବାନ ସଦୃଶ । କ୍ଷମତା, ପ୍ରାଚୁର୍ଯ୍ୟ ଏବଂ ପ୍ରତିଷ୍ଠା ବଳରେ ମାନବ ଇତିହାସରେ କେହି କେବେ ଅମର ହୋଇନାହିଁ । ମିଶରର ଖୁପୁ, ଗ୍ରୀସ୍‌ର ଆଲେକ ଜାଣ୍ଡାର, ବ୍ରିଟିଶ ସାମ୍ରାଜ୍ୟର ମହାରାଣୀ ଭିକ୍ଟୋରିଆ କିମ୍ବା ରୋମର ସମ୍ରାଟ୍ ନିରୋ, ଅଥବା ଋଷିଆର ଶାସକ ଜାର୍ କିମ୍ବା ମୋଗଲ ସମ୍ରାଟ୍ ଆଉରଙ୍ଗଜେବ, ଏମାନେ ଇତିହାସର ପୃଷ୍ଠାମଣ୍ଡନ କରିଛନ୍ତି ସତ । କିନ୍ତୁ ମଣିଷ ସମାଜରେ ଭକ୍ତି ଓ ଶ୍ରଦ୍ଧାର ପାତ୍ର ହୋଇପାରିନାହାନ୍ତି, ହୋଇ ପାରିଛନ୍ତି ମହାତ୍ମା ଗାନ୍ଧୀ । ମାନବ ଇତିହାସର ଅନନ୍ତକାଳ ପାଇଁ ସେ ଅମର ହୋଇ ରହିବେ । ଜାତି, ଧର୍ମ, ବର୍ଣ୍ଣ ନିର୍ବିଶେଷରେ ସମଗ୍ର ବିଶ୍ୱରେ ସେ ମର୍ଯ୍ୟାଦା ପୁରୁଷୋତ୍ତମର ସମ୍ମାନ ପାଇବେ । ସମ୍ଭବତ ଭଗବାନଙ୍କର ସମସ୍ତ ଅବତାର ମଧ୍ୟରେ ସେ ଶ୍ରେଷ୍ଠ ଓ ଅଦ୍ୱିତୀୟ ସଂସ୍କରଣ । ତାଙ୍କର ତୁଳନା ନାହିଁ । ବିଶାଳ ବ୍ରିଟିଶ୍ ସାମ୍ରାଜ୍ୟର ସମ୍ରାଟ୍ ତାଙ୍କ ଆଗରେ ପରାଜୟ ସ୍ୱୀକାର କରିଥିଲେ ମଧ୍ୟ ଦୁଃଖ ଓ ଅପମାନରେ ମ୍ରିୟମାଣ ହୋଇ ପଡିନଥିଲେ ।

ପ୍ରେମ ଓ ଅହିଂସାର ଶକ୍ତି ଏହିପରି ଶାନ୍ତ ଓ ସ୍ନିଗ୍ଧ । ମାତ୍ର ଅପରାଜୟ । ପ୍ରାଚୁର୍ଯ୍ୟ ଓ ପ୍ରଭୁତ୍ୱର ଅଧୀଶ୍ୱର ବ୍ରିଟିଶ୍ ସାମ୍ରାଜ୍ୟ ତାଙ୍କର ଏହି ଶକ୍ତି ପାଖରେ ପରାଜୟ ସ୍ୱୀକାର କରି ବିଜୟରେ କହିଥିଲା You are great ।

ସାମ୍ରାଜ୍ୟବାଦୀ ବ୍ରିଟିଶ ଶକ୍ତି ଗୋଟିଏ ହାତରେ ଯୀଶୁଙ୍କର ବାଇବେଲ୍ ଧରି ପ୍ରେମ ଓ ଅହିଂସାର ବାଣୀ ପ୍ରଚାର କରୁଥିଲେ ମଧ୍ୟ ଅନ୍ୟ ହାତରେ ବନ୍ଧୁକ ଧରି ନିର୍ମମ ନରସଂହାର କରୁଥିଲେ ଭୟ ଓ ଆତଙ୍କ ଦ୍ୱାରା ନିଜର ସାମ୍ରାଜ୍ୟ ବିସ୍ତାର କରିବାକୁ । ଏହି ଉପାୟ ତାଙ୍କୁ ସାମ୍ରାଜ୍ୟ ବିସ୍ତାର କରିବାରେ ସଫଳ କରିଥିଲା । ହିଂସାର ତରବାରୀ, ଧର୍ମଭାବନାର ପ୍ରଚାର, ଚତୁର କପଟତା ଓ ଇଂରେଜ ଶିକ୍ଷାର ପ୍ରସାର ଓ ସର୍ବପରି ସମଗ୍ର ଭାରତକୁ ଏକତ୍ରକରି ଭାରତୀୟଙ୍କ ମନରେ ଜାତୀୟତାର ଭାବନା । ଏସବୁର ଲମ୍ବା କାହାଣୀ ହେଲା ସେମାନଙ୍କ ସାମ୍ରାଜ୍ୟ ବିସ୍ତାରର ମନ୍ତ୍ର । ଭାରତରେ ବ୍ରିଟିଶ୍ ସାମ୍ରାଜ୍ୟ ପ୍ରତିଷ୍ଠା କରିବା ପଛରେ ଏସବୁ ଥିଲା ସେମାନଙ୍କର କୂଟନୈତିକ କୌଶଳ । କେତେକ ଐତିହାସିକ କହନ୍ତି ଯେ, ଭାରତକୁ ରାଜନୈତିକ ଉଦ୍ଦେଶ୍ୟରେ ଅଧିକାର କରିବା ଉଦ୍ଦେଶ୍ୟ ଲଣ୍ଡନର ଇଂରେଜ ସରକାରଙ୍କର ନଥିଲା । ଏପରିକି ଇଷ୍ଟ ଇଣ୍ଡିଆ କମ୍ପାନୀ ବାଣିଜ୍ୟ କାରବାର ଦ୍ୱାରା ଯେଉଁ ବିପୁଳ ସମ୍ପତ୍ତି ସବୁ ଉପାର୍ଜନ କରିଥିଲେ ସେ ସବୁକୁ ପରିତ୍ୟାଗ ଏବଂ ଭାରତକୁ ଅଧିକାର କରିବାର ଯୋଜନାକୁ ପରିହାର କରିଦିଅନ୍ତୁ । ଏହା ଥିଲା ଲଣ୍ଡନର ନିର୍ଦ୍ଦେଶ । ଏପରିକି ୱାରେନ ହେଷ୍ଟିଙ୍ଗ୍ ୧୮୧୮ ମସିହାରେ ନିଜ ଡାଏରୀରେ ଲେଖିଥିଲେ 'A lion not very remot, will arrive when England will on sound pinciples wish to rulinanish the domination which she has gradually and unintentioally assamed over the country'. କିନ୍ତୁ ହେଷ୍ଟିଙ୍ଗଙ୍କର ଏ ପୂର୍ବାନୁମାନ ସମ୍ପୂର୍ଣ୍ଣ ଫସର ଫାଟିଯାଇଥିଲା । ସାମ୍ରାଜ୍ୟ ବିସ୍ତାରର ଯୋଜନାକୁ ପରିହାର କରିବା ପାଇଁ ଲଣ୍ଡନର ନିର୍ଦ୍ଦେଶ ଏବଂ ଇଷ୍ଟ ଇଣ୍ଡିଆ କମ୍ପାନୀ ଠାରୁ ସ୍ୱୀକୃତି କାଢ଼ିନେବା ସତ୍ତ୍ୱେ କମ୍ପାନୀ ତାର ବାଣିଜ୍ୟ ଚଳାଇ ରଖିଲା ଏବଂ ଅଜସ୍ର ଅର୍ଥ ଓ ବିପୁଳ ସମ୍ପତ୍ତିର

ଅଧିକାରୀ ହୋଇଗଲେ। ସେ ବାଣିଜ୍ୟ ଅବାଧରେ ଚାଲିଲା ୧୮୫୭ ମସିହା, ଅର୍ଥାତ୍ ସିପାହୀ ବିଦ୍ରୋହ ପର୍ଯ୍ୟନ୍ତ। ଇଂରେଜ ଶିକ୍ଷାର ବ୍ୟାପକ ପ୍ରସାର ଏବଂ ସାରାଦେଶ ଏକ ଶାସନାଧୀନ ହେବା ଦ୍ୱାରା ଯେଉଁ ଜାତୀୟତାର ଭାବନା ଭାରତୀୟମାନଙ୍କ ମନରେ ସଞ୍ଚାର ହୋଇଥିଲା, ୧୮୫୭ ମସିହାର ସିପାହୀ ବିଦ୍ରୋହ ଥିଲା ତା'ର ପରିପ୍ରକାଶ। ଅବଶ୍ୟ ୧୭୫୨ ମସିହାଠାରୁ ଭାତତୀୟ ମାନଙ୍କର ଚେତନାରେ ବ୍ରିଟିଶ୍ ଜାତିପ୍ରତି ବିଦ୍ରୋହର ଭାବନା ଉକୁଟି ଉଠିଥିଲା ପଲାସୀ ଯୁଦ୍ଧପରେ। ପଲାସୀ ଯୁଦ୍ଧର ନିର୍ମମ ନରସଂହାର ଅତ୍ୟନ୍ତ ଭୟଙ୍କର ଓ ବିଭୀଷିକାମୟ ଥିଲା। ୧୭୫୭ ମସିହା ଜୁନ୍ ମାସ ୨୩ ତାରିଖ ଦିନ, ବଙ୍ଗଳାର ନବାବ ସିରାଜଉଦଦ୍ୱୌଲାଙ୍କୁ ପରାସ୍ତ କରିବା ପାଇଁ ବ୍ରିଟିଶ୍ ସେନାର ଜଣେ ଅତ୍ୟନ୍ତ ସାହସୀ ଯୋଦ୍ଧା, ରବର୍ଟ କ୍ଳାଇଭ, ମୂଷଳଧାରାରେ ବୃଷ୍ଟିପାତ ସତ୍ତ୍ୱେ, ବର୍ଷାରେ ଭିଜିଭିଜି ଯାତ୍ରା କଲେ ପଲାସୀ ଅଭିମୁଖେ । ସାଙ୍ଗରେ ଥିଲେ ୩୯ ନମ୍ବର ବ୍ରିଟିଶ ଫୌଜର ମାତ୍ର ୯୦୦ ଜବାନ ଓ ୨୦୦ ଭାରତୀୟ ସିପାହୀ। ଯୁଦ୍ଧରେ ନିହତ ହେଲେ ନବାବ ଓ ଛତ୍ରଭଙ୍ଗ ଦେଇ ପଳାୟନ କଲେ ତାଙ୍କର ସୈନ୍ୟ ବାହିନୀ। ଏହିଠାରୁ ସ୍ଥାପନ ହେଲା ବ୍ରିଟିଶ୍ ସାମ୍ରାଜ୍ୟର ଭିତ୍ତିପ୍ରସ୍ତର। ଏହାପରେ ବାଣିଜ୍ୟ ବଦଳରେ ଇଂରେଜମାନେ ଯୁଦ୍ଧରେ ଜିଣିବାକୁ ଲାଗିଲେ ଗୋଟିଏ ପରେ ଗୋଟିଏ ମହତ୍ୱପୂର୍ଣ୍ଣ ନଗର ଓ ରାଜ୍ୟ। ରାଜା ମହାରାଜା ମାନଙ୍କ ମଧ୍ୟରେ ନଥିଲା ଜାତୀୟତାବୋଧ କିମ୍ବା ମିଳିତ ପ୍ରତିରୋଧର ଶକ୍ତି। ତେଣୁ ଗୋଟିକେ ପରେ ଗୋଟିଏ ଅଞ୍ଚଳ ଦଖଲ କଲେ ଇଂରେଜ ଫୌଜ ଓ ଅଧିକାର କଲେ ଗୋଟିଏ ପରେ ଗୋଟିଏ ରାଜ୍ୟ। ଶହେ ବର୍ଷରୁ କମ୍ ସମୟ ମଧ୍ୟରେ ଇଂରେଜ ମାନଙ୍କର ସେହି ବଣିକଦଳ ଭାରତର ସାର୍ବଭୌମ କ୍ଷମତାର ଶାସକ ହୋଇଗଲେ। ସେମାନଙ୍କର ହିସାବ ରକ୍ଷକ ଓ ବଣିକମାନେ ହୋଇ ଉଠିଲେ ସେନାପତି ଓ ପ୍ରାଦେଶିକ ଶାସନକର୍ତ୍ତା। ଏହି କ୍ରମରେ ଇଂରେଜମାନେ ହୋଇଗଲେ ମୋଗଲ ସମ୍ରାଟ୍‌ଙ୍କର ଉତ୍ତରାଧିକାରୀ ଓ ଭାରତର ଶାସକ। ୨୫୮ ବର୍ଷ ଧରି ବାଣିଜ୍ୟ କଳାପରେ ଇଷ୍ଟ ଇଣ୍ଡିଆ କମ୍ପାନିର ସତ୍ତାକୁ ଲୋପକରି ଶାସନ ଦାୟିତ୍ୱ ଦିଆଗଲା ୩୯ ବର୍ଷୀୟା

ଭିକ୍ଟୋରିଆଙ୍କୁ। ଭିକ୍ଟୋରିଆ ହୋଇଗଲେ ବ୍ରିଟିଶ ମହାରାଣୀ ଏବଂ ସାରା ବିଶ୍ୱରେ ବ୍ରିଟିଶ ଅଧିକୃତ ରାଷ୍ଟ୍ରଗୁଡିକର ସର୍ବମୟ ଶାସନକର୍ତ୍ତା। ସେତେବଳକୁ ସାରାବିଶ୍ୱର ଏକ ପଞ୍ଚମାଂଶ ଜନସଂଖ୍ୟା ଇଂରେଜ ସରକାରଙ୍କ ଶାସନାଧୀନ ଥିଲା ଏବଂ ମହାରାଣୀଙ୍କର ପ୍ରତିନିଧିଭାବେ ପ୍ରତ୍ୟେକ ଅଧିକୃତ ରାଷ୍ଟ୍ରରେ ଜଣେ ଜଣେ ମନୋନୀତ ଶାସନକର୍ତ୍ତା ନିଯୁକ୍ତ ହେଉଥିଲେ। ଯାହାଙ୍କୁ ଗଭର୍ଣ୍ଣର ଗ୍ରାଉଣ୍ଡ କୁହାଯାଉଥିଲା। ସେତେବେଳକୁ ଶାସନର ଉପଯୁକ୍ତ ପରିଚାଳନା ପାଇଁ ୨୦୦୦ ଆଇ.ସି.ଏସ୍ ଅଫିସର ୧୦,୦୦୦ ଆର୍ମି ଅଫିସର ନିଯୁକ୍ତ ଥିଲେ ଏବଂ ଶାସନର ସୁରକ୍ଷା ପାଇଁ ଥିଲେ ୬୦,୦୦୦ ବ୍ରିଟିଶ ଜବାନ ଓ ୨୦୦,୦୦୦ ଭାରତୀୟ ସୈନ୍ୟ। ୧୮୫୭ ମସିହା ପରେ ଏହା ବୃଦ୍ଧିପାଇ ଏହି ସଂଖ୍ୟାରେ ପହଞ୍ଚିଥିଲା ଭାରତର ୩୦୦ ମିଲିୟନ ଲୋକଙ୍କର ଏମାନେ ଥିଲେ ଶାସନକର୍ତ୍ତା ଏବଂ ଭାଗ୍ୟ ବିଧାତା। ଭାଗ୍ୟର ଏହା ନିଷ୍ଠୁର ପରିହାସ ! ଯେଉଁ ଇଂରେଜମାନେ ଦିନେ ନିଜ ବାଣିଜ୍ୟର ପ୍ରସାର ପାଇଁ ଭାରତୀୟ ମାନଙ୍କ ପାଖରେ ବିନୟରେ ଝାଉଁଳି ପଡି ଅନୁଗ୍ରହ ଭିକ୍ଷା କରୁଥିଲେ ସେମାନେ ୧୮୫୭ ମସିହା ପରେ ପ୍ରଭୁତ୍ୱ ବିସ୍ତାର କରିବାକୁ ଲାଗିଲେ ଏବଂ ଭାରତୀୟମାନେ ସେମାନଙ୍କ ଠାରୁ ଅନୁଗ୍ରହ ପାଇବାକୁ ସୌଭାଗ୍ୟ ମଣିଲେ। ଭାରତ ହୋଇଗଲା ସେମାନଙ୍କ ପାଇଁ ବିଳାସ ଓ ଉପଭୋଗର ଅମରାବତୀ। ସେମାନଙ୍କର ଅଙ୍ଗରକ୍ଷୀ ଭାବରେ ଲକ୍ଷ ଲକ୍ଷ ଭାରତୀୟ ସିପାହୀ ମଥାରେ ଏକ ସ୍ୱତନ୍ତ୍ର ପଗଡି ପିନ୍ଧି ଆନୁଗତ୍ୟ ଭରା ଦାସତ୍ୱରେ ନିଯୁକ୍ତ ହେଲେ। ସେମାନଙ୍କର ମନୋରଞ୍ଜନ ପାଇଁ କଲିକତାର ବେଙ୍ଗଲ କ୍ଲବ ପରି ଅସଂଖ୍ୟ ବିଳାସଭବନ ନିର୍ମାଣ ହେଲା। ନୃତ୍ୟଗୀତ, ସୁରା ଓ ସାକୀର ରଙ୍ଗଶାଳା, ସିମଳା ପରି ଶୈଳ ନିବାସ, ଦକ୍ଷିଣ ଭାରତ ସମୁଦ୍ର କୂଳେ କୂଳେ ଜଳକ୍ରୀଡାର ସୌଖିନ ନୌବିହାର। କ୍ରିକେଟ ଖେଳପାଇଁ ସବୁଜ ବଳୟ ଭିତରେ ସୁରମ୍ୟ ଖେଳ ପ୍ରାଙ୍ଗଣ, ରାଜସ୍ଥାନର ପ୍ରଚଣ୍ଡ ଗରମ ମଧ୍ୟରେ ପୋଲୋ କ୍ରୀଡା, ଆସାମ ଅରଣ୍ୟ ଭିତରେ ବାଘ ଶୀକାର, ଘଞ୍ଚନିବୀଡ ଅରଣ୍ୟ ମଧ୍ୟରେ କଳା ଟାଇ ପିନ୍ଧା ଇଂରେଜ ଯୁବକ ଯୁବତୀ ମାନଙ୍କର ମଧ୍ୟାହ୍ନ

ଭୋଜନ ଓ ରାତ୍ରିଯାପନ ପାଇଁ ଛାୟାଛନ୍ନ ଅସ୍ଥାୟୀ ବିଳାସ ଭବନ, ମଦ୍ୟପାନ ସହ କୁକୁଡ଼ା ମାଂସର ରୋଷ୍ଟ ସେବନ ପାଇଁ ଅସୁମାରି ପଥପ୍ରାନ୍ତ ନୃତ୍ୟଶାଳା ସବୁ ନିର୍ମାଣ ହେଲା । ଶାସନରେ ସହାୟତା ପାଇଁ ଅସଂଖ୍ୟ ଇଂରେଜୀ ମାଧ୍ୟମ ସ୍କୁଲ, କଲେଜ ପ୍ରତିଷ୍ଠା ହେଲା । ପ୍ରଭୁତ୍ୱର ଉଦାର ସଂକେତ ସ୍ୱରୂପ ଡାକ୍ତରଖାନା, ଇଟନ, ହାରୋ, ଚାରଟର ହାଉସ୍ ଓ ହେଲେବରି ପରି ସମ୍ଭ୍ରାନ୍ତ ଶିକ୍ଷାୟତନମାନ ନିର୍ମାଣ କରାଗଲା । କବି ହୋମରଙ୍କ ଭାଷାରେ ବିତ୍ତଶାଳୀ ଇଂରେଜମାନଙ୍କ ପାଇଁ ଭାରତ ପାଲଟିଗଲା ଉପଭୋଗ ସାମଗ୍ରୀଭରା ଏକ ବିଳାସମୟ ଇନ୍ଦ୍ରଭୁବନ । ଭାରତର ଅସଂଖ୍ୟ ପାହାଡ, ଝରଣା, ଚିରସ୍ରୋତା ନଦନଦୀ, ବିଶାଳ ବିସ୍ତୀର୍ଣ୍ଣ ଗଭୀର ସମୁଦ୍ରର ନୀଳଜଳରାଶୀ, ବିଚିତ୍ର ରଙ୍ଗର ପଶୁପକ୍ଷୀ ଏବଂ ଘଞ୍ଚ ବନାନୀର ଶ୍ୟାମଳ ଶୋଭା ସେମାନଙ୍କ ପାଇଁ ସ୍ୱର୍ଗର ନନ୍ଦନକାନନ ଭ୍ରମ ସୃଷ୍ଟି କଲା । ସେମାନେ ଭାବିଲେ ଭାରତ ସେମାନଙ୍କ ପାଇଁ ଭୂସ୍ୱର୍ଗ । ସନ୍ଧ୍ୟା ନଇଁଲା ମାତ୍ରେ ଛୋଟ ବଡ ପ୍ରାୟ ସବୁ ସହରରେ ଝଲସି ଉଠେ ବ୍ରିଟିଶ କ୍ଲବ ମାନଙ୍କରେ ନୀଳାଭ ଆଲୋକମାଳା । ନୃତ୍ୟବତୀ ରୂପସୀ ତରୁଣୀ ମାନଙ୍କର ଘୁଙ୍ଗୁରର ଛନ୍ଦାୟିତ ରୁଣୁଝୁଣୁ ଶବ୍ଦ, ଖେଳ କୌତୁକର ଆସର ଆଉ ଚର୍ବ୍ୟ, ଚୋଷ୍ୟ ଓ ଲେହ ଖାଦ୍ୟପେୟର ପସରା ଶହ ଶହ ଦେଶୀ ବିଦେଶୀ ଲାସ୍ୟମୟୀ ତରୁଣୀ ମାନଙ୍କର ଆତଯାତରେ ଫାଟିପଡେ ଦୁର୍ବାଦଳର ପ୍ରମୋଦ ଉଦ୍ୟାନ ସବୁ । ଅନେକ ଗାଁ ଓ ସହର ବଜାରରେ ଦେଖିବାକୁ ମିଳେ ଅବୈଧ ବର୍ଣ୍ଣଶଙ୍କର ମାନଙ୍କର ଭେଳା ଭେଳା ଦୃଶ୍ୟ । ବିଧାତାର ବିଡମ୍ବନା, ନଦନଦୀ, ପାହାଡ ପର୍ବତ ଓ ଗଭୀର ନୀଳ ସମୁଦ୍ର ଘେରା ବିସ୍ତାରିତ ସମତଳ ଶଯ୍ୟା, ଅଫୁରନ୍ତ ଜଙ୍ଗଲ ଓ ଖଣିଜ ସମ୍ପଦଭରା ଭାରତର ଅଗଣିତ ଅଧିବାସୀ ନିସ୍ୱ କାଙ୍ଗାଳ ପରି ଇଂରେଜମାନଙ୍କର ପଦଲେହନ କରିବାକୁ ସୁଖକର ମଣନ୍ତି । ସେକଥା ନକରି ଆଉ କ'ଣ କରନ୍ତେ ? ପାଶ୍ଚାତ୍ୟ ସଭ୍ୟତାର ନୂଆ ମରିଚିକା ଝଲମଲ୍ କରୁଛି

ସେମାନଙ୍କ ଆଗରେ । ପରିଶ୍ରମ କରିବାକୁ ଆଉ ଆଗ୍ରହ ନାହିଁ, ଜମିବାଡି ସବୁ ଆସ୍ତେ ଆସ୍ତେ ପଡିଆ ପଡିଲାଣି । ଚାଷବାସ କୂଳବେଉସା ଛାଡ଼ି କଳକାରଖାନାରେ ବା କୁଲିଗିରି କରିବାକୁ ଗାଁ ଛାଡି ସହରମୁଖା ହେଲେଣି । ସଫା ଲୁଗା ଖଣ୍ଡେ ପିନ୍ଧି ଗିରି ଦେଖେଇ ହେବାକୁ ବ୍ୟସ୍ତ ବିକଳ ହେଲେଣି । ଇଂରେଜ ମାନଙ୍କର ସନ୍ଧ୍ୟା ଆସର ପ୍ରଭାବରେ ପଡି ଯୌନ ଉଚ୍ଛୃଙ୍ଖଳ ହେଲେଣି ଯୁବକ ଯୁବତୀ । କୂଳ ଲାଜ ଛାଡି ନାଁ ପକେଇଲେଣି ସେମାନେ । ପ୍ରତିପତ୍ତିଶାଳୀ ତଥା କଥିତ ଜମିଦାର ସମ୍ଭ୍ରାନ୍ତମାନେ ଅତ୍ୟଧିକ ଅହଂକାର ହେତୁ ନିଜ ନିଜର ସ୍ଥିତିକୁ ଜାବୁଡି ଧରିବା ପାଇଁ ପରସ୍ପର ମଧ୍ୟରେ ଥିବା ଘୋର ବିବାଦ ଇଂରେଜ ମାନଙ୍କୁ ଅଧିକରୁ ଅଧିକ ପ୍ରଭାବଶାଳୀ କଲାଣି । ଇଂରେଜ ମାନଙ୍କ ପ୍ରତି ସେମାନଙ୍କର ଅତ୍ୟଧିକ ଆନୁଗତ୍ୟ ସ୍ଥାନୀୟ ରାଜାମାନଙ୍କୁ ଦୁର୍ବଳ କଲାଣି । ଏହିସବୁ କାରଣରୁ ଭାରତର ନିଜସ୍ୱ ସଭ୍ୟତା ଓ ସଂସ୍କୃତିର ମୂଳଦୁଆ ଦୋହଲି ଗଲାଣି । ଏପରି ଅବସ୍ଥାରେ ପ୍ରତ୍ୟେକ ଇଂରେଜ ଭୟ ଓ ଭକ୍ତିର ପ୍ରଦର୍ଶନ ପାଇଁ ସରକାର ଖଞ୍ଜିଦେଲେ ସ୍ୱତନ୍ତ୍ର ବ୍ୟବସ୍ଥା । ରେଳଯାତ୍ରା, ଭୋଜିସଭା, ଖେଳ କୌତୁକ, ସରକାରୀ ଅଫିସ୍ ଏବଂ ଅନ୍ୟାନ୍ୟ ପ୍ରତ୍ୟେକ କ୍ଷେତ୍ରରେ ଇଂରେଜମାନଙ୍କ ପାଇଁ ସ୍ୱତନ୍ତ୍ର ବ୍ୟବସ୍ଥା ଓ ସେମାନଙ୍କୁ ସମ୍ମାନ ଜଣାଇବା ପାଇଁ ଭାରତୀୟଙ୍କ ପ୍ରତି ବାଧ୍ୟତାମୂଳକ ଆଦେଶନାମା ଜାରି କରଗଲା । ଏପରିକି ଉତ୍ସବାନୁଷ୍ଠାନ ମାନଙ୍କରେ ମଧ୍ୟ ଇଂରେଜ ମାନଙ୍କୁ ମର୍ଯ୍ୟାଦା ଓ ଭାରତୀୟ ମାନଙ୍କୁ ଅବଜ୍ଞା କରିବାର ଏକ ନୂଆ ପରମ୍ପରା ସୃଷ୍ଟି କରାଗଲା । ଏହି ପରମ୍ପରା ଖୁବ୍ ଶୀଘ୍ର ଇଂରେଜ ଓ ଭାରତୀୟ ମାନଙ୍କ ଭିତରେ ଏକ ସାମାଜିକ ବ୍ୟବଧାନର ପାଚେରୀ ଠିଆ କରିଦେଲା । ଭାରତୀୟ ମାନଙ୍କ ପ୍ରତି ଏହି ନ୍ୟୁନ ମନୋଭାବ ସେମାନଙ୍କ ସାମାଜିକ ଜୀବନରେ ଏକ ଅଭ୍ୟାସ ହୋଇଗଲା । ଖେଳକୁଦ, ସମୁଦ୍ର ସ୍ନାନ, ନୌବିହାର, ଜଳକ୍ରୀଡା ଇତ୍ୟାଦି ପରି ଜଙ୍ଗଲର ଶୀତଳ ଛାଇରେ

ବସି ବଣଭୋଜି କରିବା ଏବଂ ଅବାଧ ପଶୁଶୀକାର କରିବା ଥିଲା ସେମାନଙ୍କ ପାଇଁ ବିଳାସର କଥା। ପଶୁ ସମ୍ପଦର ସୁରକ୍ଷା ପାଇଁ ଦେଶରେ ଏକ ଆଇନ୍ ପ୍ରଚଳିତ ଥିଲା, ପଶୁ ଶୀକାର ଥିଲା ବେଆଇନ। ମାତ୍ର କେହି ଇଂରେଜ ସେ ଆଇନର ଉଲଘଂନ କଲେ ସେ ତା'ର ଅଧିକାର ବୋଲି କୁହାଯାଉଥିଲା। କାରଣ ପଶୁଶୀକାର ଥିଲା ଇଂରେଜ ମାନଙ୍କର ବିଳାସର କଥା। ଖାଲି ପଶୁ କାହିଁକି, ବନ୍ଧୁକ ଦେଖାଇ ଲୋକଙ୍କୁ ଭୟଭୀତ କରିବା ଥିଲା ଏକ ସାଧାରଣ କଥା। ଅବଶ୍ୟ ପରେ ଏହା ଧର୍ତ୍ତବ୍ୟ ଅପରାଧ ବୋଲି ବିବେଚିତ ହେଲା। ଭାରତୀୟଙ୍କ ପ୍ରତି ଇଂରେଜ ମାନଙ୍କର ଏପରି ଦୃଷ୍ଟିଭଙ୍ଗୀ ପରେ ସେମାନଙ୍କ ପାଇଁ କାଳ ହେଲା। ଭାରତର ସବୁଲୋକ ଇଂରେଜ ମାନଙ୍କର ଏହି ଅବିଚାରକୁ ସହଜରେ ଗ୍ରହଣ କରିପାରୁ ନଥିଲେ। ତାର ପ୍ରତିବାଦ ପାଇଁ ସାରା ଦେଶରେ ଏକ ଚାପା ଗୁଞ୍ଜରଣ ବ୍ୟାପୀ ଯାଇଥିଲା। ମାତ୍ର ଇଂରେଜମାନେ ସେଥିପ୍ରତି କର୍ଣ୍ଣପାତ କରୁନଥିଲେ। ଅତ୍ୟଧିକ ଅହଂକାର ଓ ମଣିଷ ପ୍ରତି ଘୃଣାର ପରିଣତି ସବୁବେଳେ ମର୍ମନ୍ତୁଦ ହୋଇଥାଏ, ଏହା ଏକ ଐତିହାସିକ ସତ୍ୟ। ଇଂରେଜ ମାନଙ୍କର ଏହି ଅବିଚାର ବିରୁଦ୍ଧରେ ଦେଶସାରା ଯେଉଁ ଚାପା ଗୁଞ୍ଜରଣ ଖେଳିଯିବାରେ ଲାଗିଥିଲା, ତାହା ବେଳେ ବେଳେ ଛୋଟବଡ଼ ଘଟଣାରେ ପ୍ରକାଶ ପାଉଥିଲା। ୧୮୫୭ ମସିହାରେ ସିପାହୀ ବିଦ୍ରୋହ ଏହାର ଏକ ଜୀବନ୍ତ ଦୃଷ୍ଟାନ୍ତ। ବିଦ୍ରୋହର ଏହି ଅନ୍ତଃସ୍ୱର ପ୍ରଚଣ୍ଡ ଏକ ବିଦ୍ରୋହରେ ପରିଣତ ହେବାକୁ ସ୍ୱାଧିନଚେତା ବୀର ପୁରୁଷମାନଙ୍କ ମଧ୍ୟରେ ଆସ୍ତେ ଆସ୍ତେ ଦାନା ବାନ୍ଧୁଥିଲା। ଯାହାର ପ୍ରଚଣ୍ଡ ରୂପ ଦେଖିବାକୁ ମିଳିଥିଲା ମହାତ୍ମା ଗାନ୍ଧିଙ୍କ ନେତୃତ୍ୱରେ ସଂଗଠିତ ସ୍ୱାଧିନତା ଆନ୍ଦୋଳନରେ। ଯେଉଁ ଭାରତୀୟମାନେ ଇଂରେଜମାନଙ୍କ ପ୍ରତି ଭୟରେ ଥରହର ହେଉଥିଲେ, ସେମାନେ ପୁଣି ଇଂରେଜମାନଙ୍କ ବିରୁଦ୍ଧରେ ଏକ ଦୁର୍ବାର ଆନ୍ଦୋଳନ ଗଢ଼ିତୋଳିଲେ। ସେ ଆନ୍ଦୋଳନର ମନ୍ତ୍ର ଥିଲା ଅହିଂସା ଏବଂ ତାର ନେତୃତ୍ୱ ନେଇଥିଲେ ଦକ୍ଷିଣ ଆଫ୍ରିକାରେ ଅତ୍ୟାଚାରିତ ହୋଇଥିବା ଶାନ୍ତିପ୍ରିୟ ମହାତ୍ମା ଗାନ୍ଧି (ମୋହନ ଦାସ କରମ ଚାନ୍ଦ ଗାନ୍ଧି)।

# ଏକଲା ଚଲୋ  ଏକଲା ଚଲୋ

## ଶ୍ରୀରାମପୁର - ନୂଆଖାଲି ୧୯୪୭ ମସିହା ନୂଆବର୍ଷ

ପ୍ରଚଣ୍ଡ ଗ୍ରୀଷ୍ମର ଏକ ମଧ୍ୟାହ୍ନ, ବଙ୍ଗୋବସାଗର କୂଳରେ ଥିବା ଗଙ୍ଗା ଅବବାହିକା ଅଞ୍ଚଳରେ ଜଣେ କୃଷକ ଘରର ମାଟି ଚଟାଣ ଉପରେ ୭୬ ବର୍ଷର ବୃଦ୍ଧଟିଏ ଶୋଇରହି ଓଦା ସରସର, ମେଞ୍ଚାଏ ତୁଳାର ପଟିଟିକୁ ନିଜ ତଳିପେଟରେ ରଖି ଏ ମୁଣ୍ଡରୁ ସେ ମୁଣ୍ଡ ଯାଏ ଆସ୍ତେ କରି ଚାପି ଧରୁଥିଲେ । ତାପରେ ସେହିପରି ଏକ ଛୋଟିଆ ପଟିକୁ ନିଜ ଲଣ୍ଡା ମୁଣ୍ଡରେ ରଖି ଚାପି ଧରୁଥିଲେ । ପରେ ସେହି ଶୀର୍ଣ୍ଣ କଙ୍କାଳ ବୃଦ୍ଧ ଜଣଙ୍କ ପ୍ରଚଣ୍ଡ ପ୍ରତିଭା ପାଖରେ ଆତ୍ମ ସମର୍ପଣ କରି ବ୍ରିଟେନର ପ୍ରଧାନମନ୍ତ୍ରୀ ଅଟଲି, ମହାରାଣୀ ଭିକ୍ଟୋରିଆଙ୍କ ଅଣନାତି ଲୁଇସ୍ ମାଉଣ୍ଟବେଟେନକୁ ଦିଲ୍ଲୀ ପଠାଇବାକୁ ବାଧ ହୋଇଥିଲେ ଭାରତକୁ କ୍ଷମତା ହସ୍ତାନ୍ତରର ଉପାୟ ଖୋଜିବାକୁ । କେହି କେବେ ସ୍ୱପ୍ନରେ ବି ଭାବିନଥିଲେ ଯେ ସେହି କଙ୍କାଳସାର ଶୀର୍ଣ୍ଣ ବୃଦ୍ଧ ଜଣଙ୍କ ଦିନେ ପୃଥିବୀର ସବୁଠାରୁ ଶକ୍ତିଶାଳୀ ବ୍ରିଟିଶ୍ ସାମ୍ରାଜ୍ୟକୁ ଧରାଶାୟୀ କରି ସାରା ପୃଥିବୀର ଉପନିବେଶବାଦୀ ସରକାର ମାନଙ୍କର ପତନକୁ ସୁନିଶ୍ଚିତ କରିଦେବା ପାଇଁ ବିଦ୍ରୋହର ପ୍ରଚଣ୍ଡ ଦାବାନଳ ଜାଳିଦେବେ । ବାସ୍ତବରେ ସେହି ଦାବାନଳ ଜଳି ଜଳି ପୃଥିବୀର ପ୍ରାୟ ସବୁ ଉପନିବେଶ ଗ୍ରସ୍ତ ଦେଶଗୁଡ଼ିକର ସରକାରମାନେ ଖଣ୍ଡ ଖଣ୍ଡ ହୋଇ ଟଳି ପଡ଼ିଲେ । ଅହିଂସାର ମନ୍ତ୍ର ଶକ୍ତି ଏତେ ଶକ୍ତିଶାଳୀ ଦେଖି ପୃଥିବୀ ଆଶ୍ଚର୍ଯ୍ୟରେ ସ୍ତବ୍ଧ ଚକିତ ହୋଇଗଲା, କାରଣ ମାନବ ଇତିହାସରେ ଏହାଥିଲା ଅଦ୍ୱିତୀୟ ବିସ୍ମୟକର ଘଟଣା । କ୍ଷମତା ଓ ପ୍ରାଚୁର୍ଯ୍ୟରେ ସାରା ପୃଥିବୀକୁ ଭୟରେ ଥରହର କରୁଥିବା ଭୟଙ୍କର ଜାନୁଆର ମାନଙ୍କୁ ପ୍ରେମ ଓ ଅହିଂସାର ଅସ୍ତ୍ର ପରାଜିତ କରି ବଶମ୍ବଦ କରିପାରେ, ଏହା ଥିଲା ପୃଥିବୀର ସମସ୍ତ ପରାଧିନ ଦେଶ ଗୁଡ଼ିକୁ ମହାତ୍ମାଙ୍କର ଶିକ୍ଷା । ଏକଥା କହିବା ଧର୍ମବିରୋଧ ନୁହେଁ ଯେ ମାହାତ୍ମା ଥିଲେ ଭଗବାନଙ୍କର ସମସ୍ତ ଅବତାର ମାନଙ୍କ ଠାରୁ ଅଧିକ ଶକ୍ତିଶାଳୀ ଓ ଅଧିକ ପ୍ରେମମୟ ଏବଂ ସମସ୍ତ ଧର୍ମପ୍ରଚାରକଙ୍କ ଠାରୁ ଅଧିକ ଧର୍ମାତ୍ମା । ପ୍ରତିଜ୍ଞାରେ

ସିନା ସେଥିଲେ ହିମାଳୟ ପରି ଅଟଳ, କିନ୍ତୁ ଦୁର୍ଗତ ମଣିଷ ପାଇଁ ହୃଦୟ ତାଙ୍କର ଥିଲା ଦୟାରେ ବିଗଳିତ ଓ ଅସହାୟ ଅସମର୍ଥଙ୍କ ପାଇଁ ସ୍ନେହପ୍ରବଣ । ଭଗବାନଙ୍କର କୌଣସି ଅବତାରଙ୍କର ପ୍ରଭାବ ଥିଲା କ'ଣ ସାରା ପୃଥିବୀବ୍ୟାପୀ ଏତେ ଦିଗନ୍ତବିସ୍ତାରୀ ? ଶ୍ରୀରାମଙ୍କୁ ସିନା ଭଗବାନଙ୍କର ଅବତାର ବା ପୂର୍ଣ୍ଣ ପୁରୁଷୋତ୍ତମ ବୋଲି ସ୍ୱୀକାର କରାଯାଇଥିବାରୁ ମୃତ୍ୟୁ ବେଳକୁ ହା'ରାମ କହି ଶେଷନିଃଶ୍ୱାସ ତ୍ୟାଗ କଲେ, କିନ୍ତୁ ରାମଙ୍କର କୃତିତ୍ୱ ତାଙ୍କର କେଉଁ ଗୁଣକୁ ସରି ? ଜଣେ ହିନ୍ଦୁ ଭାବରେ ରାମଙ୍କ ପ୍ରତି ଘୋର ଭକ୍ତି ଓ ବିଶ୍ୱାସ ଭାବର ଅଭାବ ନାହିଁ । କିନ୍ତୁ ମହାତ୍ମାଙ୍କ କ୍ଷେତ୍ରରେ ଯାହା ବାସ୍ତବ ମୁଁ କେବଳ ତାହାହିଁ କହୁଛି ଏବଂ ରାମଙ୍କୁ ନ୍ୟୁନ କରି ବିଚାର କରିବା ମୋର ଉଦ୍ଦେଶ୍ୟ ନୁହେଁ । କାରଣ ଶ୍ରୀରାମ ସାରା ଭାରତରେ ଭଗବାନ୍ ବୋଲି ବିଦିତ । କେହି ଜଣେ ଅହଂକାରୀ ତାଙ୍କୁ ନ୍ୟୁନ କରି ବିଚାର କଲେ ସେ ନ୍ୟୁନ ହୋଇଯିବେ ନାହିଁ । ମୋର କହିବା କଥା ହେଲା, ମହାତ୍ମା ଗାନ୍ଧୀ ଥିଲେ ଜଣେ ଅଲୌକିକ ପ୍ରତିଭାଧାରୀ ବିପ୍ଳବୀ । ଭାରତ ତଥା ସାରା ବିଶ୍ୱରେ ପରାଧୀନତାର ନାଗଫାଶରେ ଆବଦ୍ଧ କୋଟି କୋଟି ମଣିଷର ମୁକ୍ତିଦାତା । ସେଥିଲେ ଜଣେ କ୍ଷୁଦ୍ରକାୟ ବ୍ୟକ୍ତି, ଉଚ୍ଚତା ଥିଲା ମାତ୍ର ପାଞ୍ଚଫୁଟ ଏବଂ ଓଜନଥିଲା ମାତ୍ର ୧୧୪ ପାଉଣ୍ଡ । ମୁଖର ଆକୃତି ଅସୁନ୍ଦର ଏବଂ କାନ ଦୁଇଟା କୁଲାପରି ବଡ଼ ବଡ଼ । ମାତ୍ର ଶୃଙ୍ଖଳା ଓ ସଂଯମର ଦିବ୍ୟ ଆଭାରେ ମୁଖମଣ୍ଡଳ ତାଙ୍କର ଉଜ୍ଜ୍ୱଳ ଦିଶୁଥିଲା । ଭୀଷ୍ମପ୍ରତିଜ୍ଞାର ତେଜଥିଲା ତାଙ୍କ ସମସ୍ତ ଶରୀରର ଶୋଭା । ଦନ୍ତ ବିହୀନ ପାଟି, ବିସ୍ତାରିତ ଦୁଇଟି ନାକପୁଡ଼ା ଏବଂ ତା ତଳେ ଧଳାନିଶ ଏବଂ ଆଖିରେ ଥିଲା ଆତ୍ମବିଶ୍ୱାସର ଅପୂର୍ବ ତେଜ । ଯୁଗଯୁଗ ଧରି ଚଳି ଆସିଥିବା ହିଂସାତ୍ମକ ପ୍ରତି ଆକ୍ରମଣ ବଦଳରେ ସାରା ଜଗତକୁ ସେ ଦେଖାଇଲେ ପ୍ରତିବାଦର ଏକ ନୂତନ ମାର୍ଗ ଅହିଂସାର ପଥ । ପ୍ରତିବାଦର ସ୍ୱର ପ୍ରକାଶ୍ୟରେ ଉତ୍ତୋଳନ ନକରି ପୃଥିବୀର ସବୁଠାରୁ ଏକ ଜନବହୁଳ ଦେଶରେ ତାଙ୍କ ଦର୍ଶନରେ ଅନୁପ୍ରାଣୀତ ଅନୁଗାମୀ ମାନଙ୍କୁ ଅହିଂସାର ମାର୍ଗ ଅନୁସରଣ କରିବାକୁ ସେ ପରାମର୍ଶ ଦେଇଥିଲେ ଏବଂ ଅହିଂସା ଆଚରଣ କରି ପ୍ରତିବାଦ କରିବାକୁ

ଯେଉଁମାନେ ଅକ୍ଷମ ବୋଲି ଭାବୁଥିଲେ ସେମାନଙ୍କୁ ତାଙ୍କର ପଥ ପରିହାର କରିବାକୁ ସ୍ପଷ୍ଟ ନିର୍ଦ୍ଦେଶ ଦେଉଥିଲେ। ଯୁଆଡ଼େ ସେ ଯାଉଥିଲେ ତାଙ୍କ ଶରୀରରେ ଚହଟି ରହୁଥିଲା ପ୍ରେମ ଓ ଅହିଂସାର ଦିବ୍ୟ ଆଭା ଏବଂ ଯେତେବେଳେ ସେ ଯାହା କିଛି କହୁଥିଲେ ତାହାଥିଲା ତାଙ୍କ ନିଜସ୍ୱ ଆଚରଣର ପ୍ରତିଫଳନ। ତାଙ୍କ ଭାଷାରେ ଥିଲା ଆଗ୍ନେୟଗିରିର ଉଦ୍‌ଗିରଣ ପରି ଶକ୍ତ ତେଜ ଏବଂ ତାଙ୍କ ଅନୁଗାମୀ ମାନଙ୍କ ପାଇଁ ସେ ଥିଲେ ଜଣେ ଚତୁର ରାଜନୀତିଜ୍ଞ। ମାତ୍ର ଗଭର୍ଣ୍ଣର ଜେନେରାଲ ଓ୍ୟାଭେଲଙ୍କ ଭାଷାରେ ସେ ଥିଲେ ଜଣେ ବିଚକ୍ଷଣ, ଦୁର୍ଦ୍ଦଶ ଜିଦ୍‌ଖୋର ଏବଂ ପ୍ରଭାବଶାଳୀ ଦୋମୁହାଁ ରାଜନୀତିଜ୍ଞ। ଯେଉଁମାନେ ଛଳନାତ୍ମକ ଆଚରଣ କରୁଥିଲେ, ସେମାନେ ଖୁସି ହେଉଥିଲେ ଏବଂ ଆଉ କେତେକ ତାଙ୍କର ରହସ୍ୟମୟ ବ୍ୟକ୍ତିତ୍ୱକୁ ବୁଝିବାକୁ ଚେଷ୍ଟା କରୁଥିଲେ। ସେମାନେ ଅନଭୁବ କରୁଥିଲେ ଯେ, ସେ ଜଣେ ଅତ୍ୟନ୍ତ ପ୍ରଭାବଶାଳୀ ସାଧୁ। ଯେଉଁ ଇଂରେଜମାନେ ତାଙ୍କ ସହିତ ମତ ବିନିମୟ କରୁଥିଲେ ସେମାନେ ତାଙ୍କୁ ବିତର୍କରେ ପ୍ରଚଣ୍ଡ ପାଣ୍ଡିତ୍ୟ ଓ ପ୍ରତିଭାର ଅଧିକାରୀ ଜଣେ ନିଷ୍ପାପର ଯୋଗୀ ଭାବରେ ଭାବୁଥିଲେ। ସେମାନଙ୍କ ସହିତ ସେ ବେଳେ ବେଳେ ଭୟଙ୍କର ସଂଯମର ଅଦ୍ଭୁତ ଶକ୍ତି ସଂପର୍କରେ ବୁଝାଇବା ସହିତ ଲୁଣପାଣି ପିଇବାର ଉପକାରିତା ସଂପର୍କରେ ଅନେକ କଥା କହୁଥିଲେ। ତାଙ୍କର ପ୍ରଚଣ୍ଡ ପ୍ରତିଭା ଓ ଶକ୍ତ ବ୍ୟକ୍ତିତ୍ୱ ପାଖରେ ଅନେକ ଉଚ୍ଚଶିକ୍ଷିତ ଇଂରେଜମାନେ ବିସ୍ମୟରେ ଅଭିଭୂତ ହୋଇଯାଇଥିଲେ। କୁହାଯାଏ ଯେ ଗାନ୍ଧୀ ଯୁଆଡ଼େ ଯାଆନ୍ତି ଭାରତର ରାଜଧାନୀ ତାଙ୍କ ପଛେ ପଛେ ଯାଏ। ଅର୍ଥାତ୍ ତାଙ୍କ ମୁକ୍ତି ସଂଗ୍ରାମର ବାର୍ତ୍ତା ଶୁଣିବାକୁ ଭାରତର ନେତୃସ୍ଥାନୀୟ ବ୍ୟକ୍ତି ସମୂହ ଅନୁଗମନ କରନ୍ତି ଏବଂ ତାଙ୍କ ନିର୍ଦ୍ଦେଶରେ ଭାରତର ଜନମତ ତିଆରି କରନ୍ତି। ତାଙ୍କର ସାନିଧ୍ୟ ଲାଭ କରିବାକୁ ସୁଯୋଗ ନପାଇଲେ ସେମାନେ ସବୁ ନିଜକୁ ଅନ୍ତଃସାରଶୂନ୍ୟ ଅଲୋଡ଼ାମଣିଷ ବୋଲି ଅନୁଭବ କରନ୍ତି। ସତେ ଯେମିତି ମଣିର ସଂଯୋଗ ବିନା ସେମାନେ ଖଣ୍ଡେ ଖଣ୍ଡେ ମଳିନ କାଚ। ବସନ୍ତର ମଳୟ ସ୍ପର୍ଶରେ ବୃକ୍ଷଲତା କଅଁଳିଲା ପରି କିମ୍ୱା ସୂର୍ଯ୍ୟର ଆଲୋକରେ ଚନ୍ଦ୍ର ଆଲୋକିତ

ହେଲା ପରି ସେମାନେ ତେଜସ୍ୱୀ ହୋଇଯାଆନ୍ତି । ସେଇ ମହାତ୍ମା ବଙ୍ଗଳାର ଏକ କ୍ଷୁଦ୍ରଗ୍ରାମ ଶ୍ରୀରାମପୁରରେ ରହି ଦୈନନ୍ଦିନ ଅଭ୍ୟାସ ହେତୁ ମଥା ଓ ପେଟରେ ଓଦାକପଡ଼ା ଥାପୁଥିବା ବେଳେ, ବିଜୁଳି ଶକ୍ତି, ରେଡ଼ିଓ ଅବା ଟେଲିଫୋନ ଶୂନ୍ୟ ଅପନ୍ତରା ଗାଁରୁ ସାରାଦେଶକୁ ବିଜୁଳିବେଗରେ ତାଙ୍କର ବାର୍ତ୍ତା ପ୍ରଚାର କରୁଥିଲେ ୩୦ ମାଇଲ ବାଟ ପାଦରେ ଚାଲି ଚାଲି । ତାଙ୍କର ଦାନ୍ତ ସବୁ ପଡ଼ିଯାଇଥିଲା । କେବଳ ଖାଇଲା ବେଳେ ସେ ବ୍ୟବହାର କରୁଥିଲେ ଉଠା ଦାନ୍ତ । ପୁରୁଣା କାଳିଆ ଚଷମାଟିଏ ପିନ୍ଧି ସେ ଦେଖୁଥିଲେ ସାରା ଭାରତର ଚିତ୍ର । ହାତବୁଣା ଖଣ୍ଡିଏ ଲୁଗା ତାଙ୍କର ପରିଧାନ । ଫୁଙ୍ଗୁଳା ଦେହଟାରେ ଖଣ୍ଡିଏ ଚାଦର । ପାଦରେ ଶସ୍ତା ଖଣ୍ଡେ ଚପଲ, ହାତରେ ଖଣ୍ଡେ ବାଉଁଶ ବାଡି ଓ ଶ୍ରୀମଦ୍ ଭଗବତ ଗୀତା । ଦେଖିଲେ ଦିଶନ୍ତି ଜଣେ ଜୀର୍ଣ୍ଣଶୀର୍ଣ୍ଣ ଗାଉଁଲି ଦରିଦ୍ର ସାଧାରଣ ବୁଢ଼ା ପରି । ଏପରି ବେଶ ସଂପର୍କରେ ସେ କାହାରିକୁ କିଛି କହନ୍ତି ନାହିଁ । ସମ୍ଭବତଃ ନିରନ୍ନ ଦରିଦ୍ର ଭାରତୀୟମାନଙ୍କ ଠାରୁ ଅଧିକ କିଛି ଦାମୀ ପୋଷାକ ପିନ୍ଧିବାକୁ ତାଙ୍କର ଥିଲା ଘୋରକୁଣ୍ଠା । ତାଙ୍କୁ ଦେଖିଲେ ମନେହୁଏ ସେ ଯେମିତି ଥିଲେ ଭାତରୀୟ ମାନଙ୍କର ନିଛକ ପ୍ରତିଛବି ଓ ପ୍ରତିନିଧି । ସମୟାନୁବର୍ତ୍ତିତା ତାଙ୍କର ଥିଲା ଏକ ଆଦର୍ଶ । ନିର୍ଦ୍ଧାରିତ ସମୟଠାରୁ ସାମାନ୍ୟ ବ୍ୟତିକ୍ରମ ହେଲେ, ଯେତେ ପ୍ରଭାବଶାଳୀ ଓ ଜ୍ଞାନୀ ଗୁଣି ହେଲେ ମଧ୍ୟ ତାଙ୍କୁ ସାକ୍ଷାତ କରିବା ପାଇଁ ଅପେକ୍ଷା କରିବାକୁ ପଡୁଥିଲା । କାରଣ ସମୟାନୁବର୍ତ୍ତିତାରେ ସେଥିଲେ ଅନୁଗତ । ସେ କହନ୍ତି, ଯେଉଁ ସମୟ ଚାଲି ଯାଉଛି ସେ ଆଉ କେବେ ଫେରିବ ନାହିଁ, ତେଣୁ ପ୍ରତିଟି ମୁହୂର୍ତ୍ତକୁ ସଦୁପଯୋଗ କରିବା ଉଚିତ୍ । ପ୍ରକୃତରେ ଜୀବନର ସେ ଯେଉଁ ପଥରେ ବାଟ ଚାଲୁଥିଲେ ତାହାଥିଲା ଅତ୍ୟନ୍ତ ଦୁର୍ଗମ । ଟିକିଏ ଏପଟ ସେପଟ ହେଲେ କାହିଁ କେଉଁ ରସାତଳକୁ ଖସି ପଡିବେ । ଏଥିପ୍ରତି ସେ ଥିଲେ ଅତ୍ୟନ୍ତ ସଚେତନ । ସମୟ ଯେପରି ଅତ୍ୟନ୍ତ ମୂଲ୍ୟବାନ, ଶୃଙ୍ଖଳା ସେହିପରି ଅତ୍ୟନ୍ତ ଆବଶ୍ୟକ । ଏହାଥିଲା ତାଙ୍କର ବିଚାର, ତେଣୁ ଶୃଙ୍ଖଳା, ସଂଯମ ଓ ନିୟମାନୁବର୍ତ୍ତିତା ଥିଲା ତାଙ୍କର ବ୍ରତ । ଏ ବ୍ରତ ପାଳନ କରିବା କ୍ଷେତ୍ରରେ ସେଥିଲେ ଅତ୍ୟନ୍ତ ନିଷ୍ଠୁର ।

ନୂଆଖାଲି ଅଞ୍ଚଳର ଶ୍ରୀରାମପୁର ଗାଁ, ଅତି ଦୁର୍ଗମ ଅଞ୍ଚଳ। ଗଙ୍ଗା ଓ ବ୍ରହ୍ମପୁତ୍ର ନଦୀ ପରିବେଷ୍ଟିତ ଏହି ଗାଁଟି ଗାଙ୍ଗେୟ ଅବବାହିକାର ଏକ ଦ୍ୱିପାଞ୍ଚଳ। ଏହି ଅଞ୍ଚଳର ଜନସଂଖ୍ୟା ଅଢ଼େଇ ମିଲିୟନ ଏବଂ ମୁସଲମାନଙ୍କ ସଂଖ୍ୟା ଶତକଡା ୮୦ ଭାଗ। କେନାଲ, ନାଳ ଓ ଝରଣା ମାନଙ୍କ ଦ୍ୱାରା ଅଞ୍ଚଳଟି ଶତଧା ବିଭକ୍ତ। ଯାତାୟତ ପାଇଁ ଦେଶୀ ଡ଼ଙ୍ଗା, ହାତଟଣା ନୌକା, ଦଉଡ଼ି, କାଠ କିମ୍ବା ବାଉଁଶ ତିଆରି ଭେଳା କିମ୍ବା ପୋଲ ହିଁ ଭରସା। ଆଧୁନିକ ସଭ୍ୟତାର ଛାପ ପଡ଼ିନାହିଁ ସେଠାରେ। ଖବର କାଗଜ ଖଣ୍ଡେ ଦୁଃସପ୍ରାପ୍ୟ, ଟେଲିଫୋନ, ଟେଲିଗ୍ରାଫ୍, ରେଡ଼ିଓ ବା ବିଜୁଳୀବତି ସେଠାରେ ସ୍ୱପ୍ନ। ଗାଁଟି ଭାରତର ଗାଁମାନଙ୍କର ଏକ ନିଛକ ପ୍ରତିଛବି। ଅଶିକ୍ଷା, କୁସଂସ୍କାର ଓ ଅନ୍ଧବିଶ୍ୱାସର ଏକ ମାୟାପୁରୀ। ୧୯୪୭ ମସିହା ନୂଆବର୍ଷ ଦିନ ସେଇ ଗାଁରେ ଥିଲେ ମହାତ୍ମା। ତାଙ୍କର ମନେହେଉଥିଲା ଯେଉଁ ଭାରତକୁ ଅତ୍ୟାଚାରୀ ଇଂରେଜ ମାନଙ୍କ କବଳରୁ ଉଦ୍ଧାର କରିବା ପାଇଁ ଜୀବନର ସବୁ ସୁଖ ପାଶୋରୀ ଦେଇ ସେ ସଂଗ୍ରାମ କରୁଛନ୍ତି, ସେଇ ଭାରତକୁ ସେ ପ୍ରତ୍ୟକ୍ଷରେ ଦେଖୁଛନ୍ତି। ଏପରି ଏକ ଭାରତକୁ ସ୍ୱାଧୀନ କରିବା ପାଇଁ ଅସୀମ ତ୍ୟାଗ ଛଡ଼ା ଆଉ କିଛି ସମ୍ବଳ ତାଙ୍କର ନାହିଁ। ଏକଥା ଭାବି ଶ୍ରୀରାମପୁର ଅଞ୍ଚଳର ପ୍ରତ୍ୟେକ ଗାଁକୁ ପାଦରେ ଚାଲି ଚାଲି, ଲୋକଙ୍କ ସହିତ ଘନିଷ୍ଠ ଆଳାପ ଆଲୋଚନା କରି ସେ ଦେଖୁଥିଲେ ଭାରତର ଅସଲ ଚେହେରାକୁ ଓ ଅନୁଭବ କରୁଥିଲେ ତାର ଜନଜୀବନକୁ। ସେଇଗାଁ ଗୁଡ଼ିକରେ ହା ହୁତାସ ଜୀବନଶୈଳୀ ତାଙ୍କ ଆଖି ଆଗରେ ତୋଳି ଧରୁଥିଲା ସମଗ୍ର ଭାରତର ବାସ୍ତବ ଚିତ୍ରକୁ। ଭାରତ ସ୍ୱାଧିନ ହେବାର ଖବର ପାଇ ନିଜ ସାଧନାରେ ସଫଳ ହୋଇଛନ୍ତି ଭାବି ଚରମ ତୃପ୍ତିର ନିଃଶ୍ୱାସଟିଏ ଛାଡୁଥିଲା ବେଳେ ଭାରତର ଆକୁମାରୀ ହିମାଳୟ ପରିବ୍ୟାପ୍ତୀ ବିଶାଳ ଭୂଖଣ୍ଡର ନଗ୍ନ ରୂପ ଦେଖି ଯନ୍ତ୍ରଣାରେ ଛଟପଟ ହେଉଥିଲେ ମହାତ୍ମା ଗାନ୍ଧୀ। ସେ ଭାବୁଥିଲେ ଭାରତକୁ ରାଜନୈତିକ ସ୍ୱାଧିନତା ମିଳିଗଲା ସତ, କିନ୍ତୁ ଯେଉଁ ଦାରିଦ୍ର୍ୟ, ଅଶିକ୍ଷା, କୁସଂସ୍କାର ଓ ଶୋଷଣରୁ ଭାରତ ବାସୀଙ୍କୁ ମୁକ୍ତି ଦେବା ଥିଲା ତାଙ୍କ ତ୍ୟାଗମୟ ସାଧନାର ଲକ୍ଷ୍ୟ, ତାହା କ'ଣ ପୁରଣ

ହୋଇପାରିବ ? ସମାଜ ଆଗରେ ନେତାର ଖ୍ୟାତି ଅର୍ଜନ କରିବାକୁ ଯେଉଁ ନେତାମାନେ ତାଙ୍କର ବିଶ୍ୱସ୍ତ ଅନୁଗତ ଓ ଜନତାର ସେବକ ଭାବରେ ଛଳନା କରି ଆସୁଛନ୍ତି, ସେମାନେ କ'ଣ ଭାରତର ପ୍ରକୃତ ଜନପ୍ରତିନିଧି ହୋଇପାରିବେ। ଭାରତର ସଂପଦ କହିଲେ ସୁଦୀର୍ଘ ବେଳାଭୂମି, ଦିଗନ୍ତ ବିସ୍ତାରୀ ଗଭୀର ସମୁଦ୍ର, ବିସ୍ତୀର୍ଣ୍ଣ ଭୂସମ୍ପଦ, ନିବିଡ ଦୁର୍ଗମ ଘଞ୍ଚ ଅରଣ୍ୟ, ଅସରନ୍ତି ଖଣିଜ ସଂପଦ, ପର୍ଯ୍ୟାପ୍ତ ଭୂତଳ ଜଳରାଶି ଏବଂ ସର୍ବୋପରି ପ୍ରଚୁର ମାନବ ସମ୍ବଳକୁ ବୁଝାଏ। ଏସବୁର ସଂରକ୍ଷଣ ଓ ସଦୁପଯୋଗ କରିବାକୁ ଏମାନେ ସମର୍ଥ ହେବେ ? ସକଳ କ୍ଷେତ୍ରରେ ଦେଶକୁ ସ୍ୱାବଲମ୍ବଶୀଳ କରି ସମାଜର ପ୍ରତ୍ୟେକ ବର୍ଗର ଲୋକ ମାନଙ୍କୁ ଗଣତାନ୍ତ୍ରିକ ଉପାୟରେ ଦାନା, କନା, ଗୃହ ଅଭାବରୁ ମୁକ୍ତି ଦେଇପାରିବେ ? ଜାତୀୟ ସଂପଦ ସବୁର ସଦୁପଯୋଗ କରି କର୍ମ ନିଯୁକ୍ତିର ବିଶାଳ ଭିତ୍ତିଭୂମି ତିଆରି କରିପାରିବେ ? ଶୋଷଣ ମୁକ୍ତ ସମାଜ ତିଆରି କରିପାରିବେ ? ଏସବୁ ପାଇଁ ଅକ୍ଳାନ୍ତ ପରିଶ୍ରମ ଓ ଅସୀମ ତ୍ୟାଗର ଆବଶ୍ୟକତା ଅଛି। ଏମାନେ କ'ଣ ସେସବୁ କରିପାରିବେ ? କ୍ଷମତାର ଅପବ୍ୟବହାର କରି ଏମାନେ ନିଜେ କ'ଣ ଶୋଷଣ କରିବେ ନାହିଁ? ନ୍ୟାୟ ବିଚାର ସମସ୍ତଙ୍କ ପାଇଁ ସମାନ, ଏମାନେ କ'ଣ ତାକୁ ପାଳନ କରିପାରିବେ ? ତା ହୋଇଥିଲେ ଯେଉଁ ଭାରତକୁ ଅଖଣ୍ଡ କରି ରଖାଯାଇ ପାରିଥାନ୍ତା ତାକୁ ପୁଣି ଖଣ୍ଡ ଖଣ୍ଡ କରିଦେଲେ କିପରି ? ଭାରତକୁ ବିଭାଜିତ କରିବା ପୂର୍ବରୁ 'ମୋ ଶବକୁ ପାଦରେ ଦଳି ଚକଟି ଦେଇ ଚାଲି ଯାଅ', ମୋ ସ୍ୱାଭିମାନର ଏ ମର୍ମ ବେଦନାକୁ ଉପେକ୍ଷା କରି କ୍ଷମତା ଦଖଲ ପାଇଁ ବ୍ୟାକୁଳ ହୋଇଥାନ୍ତେ କିପରି ? ସେ ସମୟରେ ମୋତେ ଏକୁଟିଆ କରି ମୋ ଠାରୁ କରଛଡ଼ା ଦେଇ ଅଲଗା ହୋଇଯାଇଥାନ୍ତେ କିପରି ? ମୋ ସାଙ୍ଗରେ ରହି ଗୋପନ କ୍ଷମତା ନିଶାରେ ଯେଉଁମାନେ ଏପରି ଛଳନା ଓ ପ୍ରତାରଣା କରିଗଲେ ସେମାନେ କ'ଣ ନିରପେକ୍ଷ ରହି ସୁଶାସନ କରିପାରିବେ ? ସେମାନେ କ'ଣ ଦେଶର ଉପଯୁକ୍ତ ପ୍ରତିନିଧିଭାବେ ନିଜର ଦାୟିତ୍ୱ ତୁଲାଇ ପାରିବେ ? ଭୋଗ ବିଳାସ ପ୍ରାଚୁର୍ଯ୍ୟରୁ ମୁକ୍ତ ରହି ଏମାନେ କ'ଣ ନିରଳସ୍

ଜନସେବା କରିପାରିବେ ? ଏପରି ଦୁଃଶ୍ଚିନ୍ତା ତାଙ୍କ ଅନ୍ତରାତ୍ମାକୁ ଦହନ କରୁଥିଲା । ଭାରତ ସ୍ୱାଧିନ ହେବାର ଆନନ୍ଦରେ ସାରାଦେଶ ଯେତେବେଳେ ଉତ୍ସବାନୁଷ୍ଠାନରେ କମ୍ପି ଉଠୁଥିଲା ଏବଂ ନେତାମାନେ ସ୍ୱାଗତ ସମ୍ବର୍ଦ୍ଧନାରେ ମାତି ରହି ଜୀବନକୁ ଆକଣ୍ଠ ଉପଭୋଗ କରୁଥିଲେ, ମହାତ୍ମା ସେତେବେଳେ ଦେଶର ବିଭାଜନ ଖବର ଶୁଣି ମର୍ମନ୍ତୁଦ ଯନ୍ତ୍ରଣାରେ ପଡ଼ି ନୂଆଖାଲିର ସେ ଅଖ୍ୟାତପଲ୍ଲୀ ଶ୍ରୀରାମପୁରରେ ଆତ୍ମଗୋପନ କଲାପରି ଯନ୍ତ୍ରଣାରେ ଅସ୍ଥିର ଅନୁଭବ କରୁଥିଲେ । ତାଙ୍କର ଏ ମର୍ମନ୍ତୁଦ ବିଳାପ ଶ୍ରୀରାମପୁରର ଘରେ ଘରେ ପ୍ରଚାରିତ ହେଉଥିଲା । ବିଲାତର ପ୍ରଧାନମନ୍ତ୍ରୀ ଅଟଲି୍ ବିଭାଜନ ପରେ ଟିକିନିଖି ସବୁ ଖବର ରଖୁଥିଲେ । ଗାନ୍ଧୀଙ୍କର ଏ ବିଳାପ ସାରାଦେଶରେ ଚହଳ ସୃଷ୍ଟି କରୁଥିଲା । ମାତ୍ର ସ୍ୱାଗତ ସଂବର୍ଦ୍ଧନାରେ ମାତି ଭାରତର ନେତାମାନେ ସେଥି ପ୍ରତି କର୍ଣ୍ଣପାତ କରୁନଥିଲେ । ସବୁଆଡ଼େ ସାଂପ୍ରଦାୟିକ ହିଂସାକାଣ୍ଡ ଓ ଅସଂଖ୍ୟ ନରହତ୍ୟାର ବିଭତ୍ସ ଦୃଶ୍ୟ ତାର ନଗ୍ନରୂପ ଧାରଣ କରି ନୃତ୍ୟ କରି ଉଠିଲା । ଗାନ୍ଧୀଙ୍କର ମନେ ହେଲା କ୍ଷମତାଲୋଭୀ ଭାରତର ନେତାମାନେ ତାଙ୍କ ପଛପଟୁ ନିର୍ମମ ଛୁରୀକାଘାତ କରିଛନ୍ତି । ଏ ଆଘାତ ତାଙ୍କୁ ମୃତବତ୍ କରିଦେଇଥିଲା । ନିର୍ବାକ୍ ନିଃସ୍ପନ୍ଦ ପଥର ପରି ସେ ପଡ଼ିରହିଲେ । ଚାହୁଁ ଚାହୁଁ ସାରା ଦେଶରେ ବିଭତ୍ସ ହତ୍ୟାକାଣ୍ଡ, ଧର୍ଷଣ ଓ ଲୁଟ ତରାଜ ଉଛୁଳି ଉଠିଲା । ଶହ ଶହ ବର୍ଷ ଧରି ଏକାଠି ଚଳି ଆସିଥିବା ଲୋକେ ପରସ୍ପରକୁ ଆକ୍ରମଣ କଲେ ନିଷ୍ଠୁର ଦୁର୍ଦ୍ଦାନ୍ତ ରାକ୍ଷସ ପରି । ସ୍ନେହ ମମତା ଓ ସହଯୋଗର ସଂପର୍କ ଛିନ୍ନ ହୋଇଗଲା । ସାଂପ୍ରଦାୟିକ ହିଂସାକାଣ୍ଡର ବର୍ବରଦୃଶ୍ୟ ଦେଖି ଶାନ୍ତିପ୍ରିୟ ଗାନ୍ଧି ଶ୍ରୀମଦ୍‌ଭଗବତ ଗୀତାର ଆଶ୍ରୟ ନେଲେ ଏବଂ କର୍ମଯୋଗ ଓ ଜ୍ଞାନଯୋଗର ଦୁଇଟି ଶ୍ଳୋକ ପଢ଼ି ନିଜକୁ ପ୍ରକୃତିସ୍ଥ କଲେ । ସେ କହୁଥିଲେ ସମସ୍ତ ଦୁଃଖ ଦୂର କରିପାରେ ଗୀତା । ପ୍ରକୃତିସ୍ଥ ହେଲା ପରେ ସେ ଭାବିଲେ କୌଣସି ଜାତି, ଧର୍ମ ଓ ଭାଷା ବିରୋଧରେ ତାଙ୍କର ବିଦ୍ୱେଷ ଭାବ ନାହିଁ । ସ୍ୱାଧିନତା ସଂଗ୍ରାମ ନଥିଲା ବ୍ରିଟିଶ୍ ଜାତି ବିରୁଦ୍ଧରେ । ଏ ସଂଗ୍ରାମ ଥିଲା ଅନ୍ୟାୟ, ଅତ୍ୟାଚାର ଓ ଶୋଷଣ ବିରୁଦ୍ଧରେ । ତାଙ୍କର ସେ ସଂଗ୍ରାମ ସଫଳ ହୋଇଛି ଏବଂ

ବ୍ରିଟିଶ୍ ଶାସନ ବିରୁଦ୍ଧରେ ସେ ସଂଗ୍ରାମର ଅବସାନ ଘଟିଛି। ଅବଶିଷ୍ଟ ଜୀବନକୁ ସେ ଉତ୍ସର୍ଗ କରିବେ କେବଳ ଗଠନମୂଳକ ସେବାରେ। ଗୀତାର ପ୍ରେରଣା ପାଇ ସେ ସମସ୍ତ ଦୁଃଖ ଓ ଯନ୍ତ୍ରଣାରୁ କ୍ରମେ ମୁକ୍ତି ପାଇଗଲେ। ମାତ୍ର ହିନ୍ଦୁ, ମୁସଲମାନ ଓ ଶିଖ୍ ମାନଙ୍କ ମଧ୍ୟରେ ହିଂସାର ଯେଉଁ ଅନଳ ଜଳୁଥିଲା। ତାହା ନିର୍ବାପିତ ନହୋଇ ଆହୁରି ଉଗ୍ର ଆକାର ଧାରଣ କରି ଦାବାନଳରେ ପରିଣତ ହୋଇଗଲା। ତାହା ପୁଣି ନୂଆଖାଲିରେ ସୀମିତ ନରହି ସାରାଦେଶକୁ ବ୍ୟାପିଗଲା। ପ୍ରଥମେ ଶ୍ରୀରାମପୁରର ସଂଖ୍ୟାଗରିଷ୍ଠ ମୁସଲମାନମାନେ ପ୍ରଚଣ୍ଡ କ୍ରୋଧର ଅଗ୍ନିଶିଖାପରି ସଂଖ୍ୟାନ୍ୟୁନ ହିନ୍ଦୁ ମାନଙ୍କୁ ନିର୍ମମ ହତ୍ୟାକଲେ। ସେମାନଙ୍କର ପୂଜାର ଦେବୀ ଗୋମାତାର ମାଂସ ଭକ୍ଷଣ କରିବାକୁ ବାଧ କଲେ, ସେମାନଙ୍କର ମହିଳା ମାନଙ୍କୁ ଗଣଧର୍ଷଣ କଲେ। ସେମାନଙ୍କର ଧନସଂପଦ ଲୁଣ୍ଠନ କଲେ। ଘର ଦ୍ୱାର ଜାଳି ଧ୍ୱସଂ କରିଦେଲେ ଏବଂ ଗାଁ ଛାଡ଼ି ପଳାଇବାକୁ ବାଧ ହେଲେ। ଏପରିକି ଗାନ୍ଧି ଯେଉଁ କୁଡ଼ିଆରେ ବାସ କରୁଥିଲେ ତାକୁ ମଧ୍ୟ ଜାଳିଦେଲେ। ଦାବାଗ୍ନି କଲିକତା, ବିହାର ଓ ଉତ୍ତର ପଶ୍ଚିମାଞ୍ଚଳକୁ ବ୍ୟାପିଗଲା। ଏସବୁଠାରେ ଗରିଷ୍ଠ ସଂଖ୍ୟାର ହିନ୍ଦୁମାନେ ସଂଖ୍ୟାନ୍ୟୁନ ମୁସଲମାନମାନଙ୍କୁ ନୃଶଂସ ହତ୍ୟା କଲେ। ଠିକ୍ ମୁସଲମାନ ମାନଙ୍କ ପରି ପ୍ରତିଶୋଧର ଅଗ୍ନିରେ ଜଳି ଜଳି। ସେମାନେ ଗାନ୍ଧୀଙ୍କର ଅନୁଗତ ଥିଲେ, ମାତ୍ର ବୁଝିନଥିଲେ ତାଙ୍କ ଅହିଂସା ମନ୍ତ୍ରର ସୁଦୂର ପ୍ରସାରୀ ଅର୍ଥ, ବୁଝି ନଥିଲେ ତାର ଦିଗନ୍ତ ବିସ୍ତାରୀ ଚମତ୍କାରିତା। ସେମାନେ ବୁଝିନଥିଲେ ଯେ ନ୍ୟୁକ୍ଲିୟର ବୋମା ମାନବଜାତିକୁ ଯେପରି ଧ୍ୱଂସ କରିପାରେ, ଅହିଂସା ଅସ୍ତ୍ର ସେହିପରି ପୃଥିବୀର ସାରା ମାନବ ଜାତିକୁ ସୁରକ୍ଷା ଓ ଶାନ୍ତି ପ୍ରଦାନ କରିପାରେ। ତାଙ୍କର ଶେଷ ଆନ୍ତରିକ ଇଚ୍ଛା ଥିଲା ଅହିସାଂ ମନ୍ତ୍ର ସାରା ଏସିଆ ମହାଦେଶ ସହିତ ସମଗ୍ର ପୃଥିବୀକୁ ଶାନ୍ତ କରୁ। ତାହା ସମ୍ଭବ ହେଲା ନାହିଁ, ତାଙ୍କ ଅନୁଗତ ମାନଙ୍କର କ୍ଷମତାଲୋଭ ପାଖରେ। କୁହାଯାଏ ଯେ, ଏହା କେବେବି ସମ୍ଭବ ହେବ ନାହିଁ। ଏହା ସତ ନୁହେଁ, ଗୀତା, କୋରାନ୍, ବାଇବେଲ ଓ ଗ୍ରନ୍ଥ ସାହେବରେ ଶାନ୍ତି ପାଇଁ ଯେପରି ବାର୍ତ୍ତା ପ୍ରଚାର କରାଯାଇଛି। ଗାନ୍ଧୀବାଦ

ଅହିସାଂ ସେହିପରି ଦିନେ ପୃଥିବୀକୁ ଶାନ୍ତିପ୍ରିୟ କରିବ । କାରଣ ମଣିଷ ଜାତି ତା'ର ଆତ୍ମରକ୍ଷା ଓ ସଭ୍ୟତାର ସୁରକ୍ଷା ପାଇଁ ହିସାଂ ପରିହାର କରି ଶାନ୍ତିପ୍ରିୟ ହେବ । ଅବଶ୍ୟ ସେଥିରେ ଦିନେ ନା ଦିନେ ମୁସଲମାନ ରାଜନେତା ମାନଙ୍କର ଭାରତକୁ ବିଭାଜନ ପ୍ରସ୍ତାବ ଗାନ୍ଧୀଙ୍କୁ ପ୍ରଚଣ୍ଡ ଆଘାତ ଦେଇଥିଲା । ମାତ୍ର ଭାରତର ନେତାମାନେ କ୍ଷମତା ପାଇଁ ପ୍ରତିବାଦ ନ କରି ଯେତେବେଳେ ନିରବ ରହିଲେ, ବ୍ରିଟିଶ ଶାସକମାନେ ସେତେବେଳେ ମୁସଲମାନଙ୍କର ଦାବୀକୁ ଗ୍ରହଣ କରିନେବାକୁ ଆଗ୍ରହ ପ୍ରକାଶ କଲେ । ଗାନ୍ଧୀ ସେତେବେଳେ ଆଉ କ'ଣ କରିଥାନ୍ତେ ? 'ଭାରତକୁ ଯଦି ବିଭାଜିତ କରିବ ତେବେ ମୋର ମୃତ ଶରୀର ଉପରେ କର' ବୋଲି କହି ଶାନ୍ତିର ଅନ୍ୱେଷଣ ପାଇଁ ଧ୍ୱସ୍ତ ବିଧ୍ୱସ୍ତ ହୋଇଥିବା ନୂଆଖାଲିର ୪୭ଟି ଗ୍ରାମକୁ ଗୋଟିଏ ପରେ ଗୋଟିଏ ଖାଲି ପାଦରେ ଚାଲି ଚାଲି ଶାନ୍ତିର ବାର୍ତ୍ତା ପ୍ରଚାର କଲେ । ଏହା ଥିଲା ଜଣେ ହିନ୍ଦୁର ତୀର୍ଥଯାତ୍ରା ଓ ପ୍ରାୟଶ୍ଚିତ ପରି । ତାଙ୍କର ଏହି ପଦଯାତ୍ରାରେ ସେ ଗାଇ ଗାଇ ଚାଲିଥିଲେ 'କେହି ଯଦି ତୋ'ର ଡ଼ାକ ନଶୁଣେ ତେବେ ଏକଲା ଚାଲ୍ ଏକଲା ଚାଲରେ' । ଏପରି ଅବସ୍ଥାରେ ୧୧୬ ମାଇଲ ବାଟ ଅତିକ୍ରମ କରି ନୂଆଖାଲିର ପ୍ରତ୍ୟେକ ଗାଁର ଲୋକଙ୍କୁ କହୁଥିଲେ ମୁଁ ଅହିଂସା ମାର୍ଗରେ ଆଲୋକର ସନ୍ଧାନ କରୁଛି ; ଦୀର୍ଘ ୪୦ ବର୍ଷ ଧରି ଅହିଂସାର ତପସ୍ୟା କ'ଣ ମୋର ନିଷ୍ଫଳ ହୋଇପାରିବ ? ଏହାଥିଲା ତାଙ୍କ ଅନ୍ତରାତ୍ମାର ବିଳାପ । ଯେହେତୁ ଏହାଥିଲା ତାଙ୍କର ପ୍ରାୟଶ୍ଚିତର ତୀର୍ଥଯାତ୍ରା, ମାତ୍ର ଚାରିଜଣଙ୍କୁ ଛାଡ଼ି ସବୁ ଅନୁଗାମୀ ମାନଙ୍କୁ ସେ ବାରଣ କରିଥିଲେ ସାଙ୍ଗରେ ଯିବାକୁ । ଯେଉଁ ୪ଜଣ ସାଙ୍ଗରେ ଥିଲେ ସେମାନଙ୍କୁ ସେ କହିଥିଲେ 'ଏଯାତ୍ରା ଅତ୍ୟନ୍ତ କଷ୍ଟକର, କ୍ଷୁଧା ନିବାରଣ ପାଇଁ ଯିଏ ଯାହା ଦେବେ, ସେତେକ ଖାଇ ପଦଯାତ୍ରା କରିବାକୁ ଯଦି ପ୍ରସ୍ତୁତ ତେବେ ଆସ' । ତାଙ୍କର ବିଶ୍ୱାସ ଥିଲା ସତ୍ୟ କେବେ ମିଥ୍ୟା ହୁଏନା । ଯାହା ଚିରନ୍ତନ ତା'ର ମୃତ୍ୟୁ ନାହିଁ । ସୂର୍ଯ୍ୟକୁ ବାଦଲ ଢ଼ାଙ୍କି ଦେଲେ ସୂର୍ଯ୍ୟ କ'ଣ ଲୋପ ପାଇଯାଏ । ସାମୟିକ ଭାବେ ସତ୍ୟର ପରାଜୟ ପ୍ରତିତ ହେଲେବି ତାହା ପୁଣି ନିଜସ୍ୱ ତେଜରେ ଚମକି ଉଠେ । ସମୟକୁ କେହି କେବେ

ନିଜ ଇଚ୍ଛାରେ ଅଟକାଇ ପାରେନା । ତାହା ଏକ ଚିରନ୍ତନ ପ୍ରବାହମାନ ସ୍ରୋତ । ମାତ୍ର ସମୟର ଯେଉଁସ୍ରୋତ ବହିଯାଏ ତାହା ଆଉ କେବେ ଫେରେ ନାହିଁ । ଅହିଂସାର ତେଜ ସେହିପରି ସର୍ବକାଳିନ ସତ୍ୟ । ପ୍ରେମର ପଟାନ୍ତର ନାହିଁ । ସମଗ୍ର ସୃଷ୍ଟି ଏହି ପ୍ରେମ ଉପରେ ପ୍ରତିଷ୍ଠିତ, ସୃଷ୍ଟିର ପୁଣି ଏକ ନିଜସ୍ୱ ବିଧାନ ଅଛି । ସବୁ କିଛି ତାର ନିୟନ୍ତ୍ରଣାଧୀନ । ସବୁ କିଛି ସରିଗଲା ଭାବି ମଣିଷ ବୃଥାରେ ଭାଳିବସେ । ଏ ରହସ୍ୟକୁ ଜାଣିବା ପାଇଁ ମଣିଷ ଆଜନ୍ମରୁ ନିରନ୍ତର ଉଦ୍ୟମ କରିଚାଲିଛି । ଚାଲ୍ ସେଇ ସତ୍ୟର ସନ୍ଧାନରେ ଆମେ ଘର ଘର ବୁଲି ସମସ୍ତଙ୍କୁ ପଚାରିବା । କଂଗ୍ରେସ ପାର୍ଟି ଓ ମୁସଲିମ୍ ଲିଗ୍‌ର ସ୍ୱାର୍ଥପରତା ହେତୁ ଭାରତ ଆଜି ଯେଉଁ ହିଂସାର କବଳରେ ପଡ଼ି ଛାରଖାର ହେବାକୁ ବସିଛି ତାକୁ ପୁଣି ଶାନ୍ତ କରିହେବ, ଏ ବିଶ୍ୱାସ ରଖ । ଏହା ଏକ କଠିନ କାର୍ଯ୍ୟ ନିଶ୍ଚୟ, କିନ୍ତୁ ନିରନ୍ତର ପ୍ରଚେଷ୍ଟା ପାଖରେ କିଛି ଅସମ୍ଭବ ନୁହେଁ ।

ହିଂସାର ତାଣ୍ଡବ ଭିତରେ ଶାନ୍ତିର ସନ୍ଧାନ କରିପାରେ କେବଳ ପ୍ରେମ, ଅହିଂସା, ଅନୁରକ୍ତ, ସତ୍ୟସନ୍ଧ । ନୂଆଖାଲି ଅଞ୍ଚଳରେ ଗାଁକୁ ଗାଁ ବୁଲି ଶାନ୍ତିର ବାର୍ତ୍ତା ପ୍ରଚାର କରୁଥିଲା ବେଳେ ଏହା ଥିଲା ମହାତ୍ମାଙ୍କର ଅନ୍ତରର ଭାବନା । ଏ ଭାବନା ପଛରେ ପ୍ରେରଣା ଥିଲା ଶ୍ରୀମଦ୍ ଭଗବତଗୀତାର । ସମସ୍ୟାର ଘୋର ଅନ୍ଧାର ଭିତରେ ମହାତ୍ମା ଯେତେବେଳେ ବାଟବଣା ହେଉଥିଲେ, ଗୀତା ଥିଲା ତାଙ୍କର ପ୍ରଧାନ ଆଶ୍ରୟ । ସେ କହୁଥିଲେ ଗୀତା ତାଙ୍କୁ ଉପଯୁକ୍ତ ମାର୍ଗର ସନ୍ଧାନ ଦେଉଥିଲା । ତାଙ୍କ ଭିତରକୁ ଦିବ୍ୟ ଆଲୋକରେ ଆଲୋକିତ କରି ବାଟ ଝୁଣ୍ଟି ପଡ଼ିଯାଉଥିଲା ବେଳେ ଗୀତା ତାଙ୍କୁ ଉଠାଇ ଧରୁଥିଲା ଠିକ୍ ଜଣେ ମମତାମୟୀ ମା ପରି । ଗାନ୍ଧିଜୀ ତାର ନିରାପଦ କୋଳ କେବେ ଛାଡି ନାହାଁନ୍ତି । ଗାନ୍ଧୀ ଯେତେବେଳେ ଘୃଣା ଓ ହିଂସାର ଉତ୍ପାତରେ ଧ୍ୱସ୍ତ ବିଧ୍ୱସ୍ତ ହୋଇଯାଉଥିବା ନୂଆଖାଲିର ଘର ଘର ବୁଲି ଯାତ୍ରା ଆରମ୍ଭ କଲେ, ସେତେବେଳେ ତାଙ୍କର ୧୯ବର୍ଷିଆ ନାତୁଣୀ ମିନୁ ସାଙ୍ଗରେ ନେବାକୁ ଥିବା ସବୁ ଜିନିଷପତ୍ର ସଜାଡ଼ି ଦେଇ ପାଖରେ ଆସି ଠିଆ ହେଲା । ଜିନିଷପତ୍ର କହିଲେ ଗୋଟିଏ କଲମ, କିଛି କାଗଜ, ସୂତା ଓ ଛୁଞ୍ଚ, ଗୋଟିଏ ମାଟି ପାତ୍ର, ଗୋଟିଏ

କାଠର ଚାମଚ, ତାଙ୍କର ସୂତାକଟା ଅରଟ ଏବଂ ତିନିଗୁରୁ ମାଙ୍କଡ଼ - ମନ୍ଦ ଦେଖ ନାହିଁ, କିଛି ମନ୍ଦ ଶୁଣ ନାହିଁ, କିଛି ମନ୍ଦ କୁହ ନାହିଁ। ଖଣ୍ଡେ ଗୀତା, ଖଣ୍ଡେ କୋରାନ, ଖଣ୍ଡେ ବାଇବେଲ ଏବଂ ଖଣ୍ଡେ ଈଶ୍ୱର ବାଣୀ ପୁସ୍ତକ ଏବଂ ଖଣ୍ଡେ ବାଉଁଶ ବାଡ଼ି। ଭାତୃବିବାଦ ଭାରତରେ ଏକ ଐତିହାସିକ ସତ୍ୟ। ଏହାହିଁ ଦୁଃଖ, ଯନ୍ତ୍ରଣା, ରକ୍ତପାତ, ଖାଦ୍ୟାଭାବ, ବ୍ୟାଧିର କାରଣ। ଖ୍ରୀଷ୍ଟ ଜନ୍ମ ହେବାର ୨୫୦୦ ବର୍ଷ ପୂର୍ବେ ଏହି କାରଣରୁ ମହାଭାରତ ଯୁଦ୍ଧ ସଂଘଠିତ ହୋଇଥିଲା, ଦିଲ୍ଲୀର ଉତ୍ତର - ପଶ୍ଚିମ ଦିଗରେ ଥିବା କୁରୁକ୍ଷେତ୍ରରେ। ମହାଭାରତ ଯୁଦ୍ଧ ଥିଲା ପ୍ରଚଣ୍ଡ ଭାତୃବିବାଦର ଏକ ଜ୍ୱଳନ୍ତ ଦୃଷ୍ଟାନ୍ତ। ଏଥିରେ ବର୍ଣ୍ଣିତ କଥାବସ୍ତୁର ଆଦର୍ଶ ଥିଲା ହିନ୍ଦୁଧର୍ମର ତତ୍ତ୍ୱ। ଏହି ତତ୍ତ୍ୱ ପ୍ରଥମେ ଭାରତରେ ପ୍ରଚାରିତ ହୋଇଥିଲା ଇଣ୍ଡୋ ଇଉରୋପିଆନ୍ ମାନଙ୍କ ଦ୍ୱାରା। ସେମାନେ ଉତ୍ତର ଦିଗରୁ ଆସି ଭାରତରେ ଆଦିମ ମାନଙ୍କ, ଦ୍ରାବିଡ ମାନଙ୍କ ସହିତ ଯୁଦ୍ଧରେ ବ୍ୟାପୃତ ହୋଇଗଲେ। ଏମାନେ ସିନ୍ଧୁ ନଦୀ ଅବବାହିକାରେ ରଚନା କରିଥିଲେ ବେଦ, ଖ୍ରୀଷ୍ଟ ଜନ୍ମ ପୂର୍ବରୁ ଏବଂ ଏଥିରେ ବର୍ଣ୍ଣିତ ହୋଇଥିଲା ହିନ୍ଦୁଧର୍ମର ମହାତ୍ମ୍ୟ। ବେଦରେ ମୁଖ୍ୟତଃ ଶାନ୍ତି ସଦ୍‌ଭାବନା ଓ ସହଯୋଗର ଯାଦୁକରୀ ଶକ୍ତିର ବର୍ଣ୍ଣନା ସହିତ ସୃଷ୍ଟିର ରହସ୍ୟ, ବସ୍ତୁର ନିର୍ମାଣ ଓ ଗୁଣ ଏବଂ ଈଶ୍ୱର ବା ଆତ୍ମାର ସର୍ବବ୍ୟାପକତା ସଂପର୍କରେ ଗଭୀର ତତ୍ତ୍ୱମାନ ବିସ୍ତାରିତ ଭାବେ ପ୍ରଚାର କରାଯାଇଛି ଏବଂ ଏହା ଏତେ ଗହନ କଥା ଯେ ଏହାକୁ ଅପୁରୁଷେୟ କହିବା ଯଥାର୍ଥ। ପ୍ରଚଣ୍ଡ ବିଦ୍ୱାନ ଓ ଧର୍ମାତ୍ମାମାନେ ବେଦ ରଚନା କରିବା ମୂଳରେ ସମ୍ଭବତଃ ଉଦ୍ଦେଶ୍ୟ ଥିଲା କାଳ କାଳର ହିଂସାତ୍ମକ ଆଚରଣରୁ ମଣିଷ ସମାଜକୁ ମୁକ୍ତ କରିବା, ଶାନ୍ତି ପ୍ରତିଷ୍ଠା କରିବା। ଏହାକୁ ସାଧାରଣତଃ ମାନବବାଦ ଓ ପରେ ପରେ ହିନ୍ଦୁ ଧର୍ମର ତତ୍ତ୍ୱ ବୋଲି କୁହାଗଲା। ବେଦର ଏହି ବାଣୀ ମହାଭାରତ ଓ ବିଶେଷ କରି ମହାଭାରତର ୧୮ର ଅଧ୍ୟାୟରେ ସ୍ପଷ୍ଟ ଭାବରେ ପ୍ରତିଫଳିତ ହୋଇଛି। ଶ୍ରୀମଦ୍ ଭଗବତଗୀତାରେ ପ୍ରଚାରିତ ଯେଉଁ ବାଣୀରେ ପୃଥିବୀର ସମଗ୍ର ହିନ୍ଦୁଜାତି ବିଶ୍ୱାସ କରେ ତାହେଲା :

'ଯଦା ଯଦାହି ଧର୍ମସ୍ୟ ଗ୍ଳାର୍ନୀ ଭବତି ଭାରତ
ଅଭ୍ୟୁଥାନଂ ମଧର୍ମସ୍ୟ ତଦାତ୍ମନଃ ସୃଜା ମହଂ ।'

ଧର୍ମର ଗ୍ଳାନୀ ଘଟିଲେ ସ୍ୱୟଂ ଭଗବାନ ମର୍ତ୍ତ୍ୟକୁ ଓହ୍ଲାଇ ଆସି ଧର୍ମର ସଂସ୍ଥାପନା କରନ୍ତି । ଗାନ୍ଧୀ ଭାବିଲେ ଚିନ୍ତା କାହିଁକି ? ଆଜି ଭାତୃ ବିବାଦ ହେତୁ ହିନ୍ଦୁ ଓ ମୁସଲମାନ ମାନେ ହିଂସାକାଣ୍ଡ କରି ସାରାଦେଶକୁ ଅଶାନ୍ତିର ଅନ୍ଧକାରରେ ବୁଡ଼ାଇ ଦେଲେ ମଧ୍ୟ ଶାନ୍ତିର ଆଲୋକ ଅବଶ୍ୟ ଆସିବ । ତେଣୁ ନିରାଶ କାହିଁକି ? ଚାଲ ଶାନ୍ତିର ବାର୍ତ୍ତା ପ୍ରଚାର କରି ଆମେ ଆଲୋକର ସନ୍ଧାନ କରିବା । ଭଗବାନ ଅବଶ୍ୟ ଆଲୋକର ସନ୍ଧାନ ଦେବେ । ଗୀତାର ଏହି ତତ୍ତ୍ୱ ସବୁ ତାଙ୍କୁ ଉଦ୍‌ବୁଦ୍ଧ କରିଥିଲା । ବେଦ ମଧ୍ୟ ଗାନ୍ଧିଙ୍କର ଥିଲା ଅତିପ୍ରିୟ । ଜାତି, ଧର୍ମ, ବର୍ଣ୍ଣଭେଦର ଉର୍ଦ୍ଧ୍ୱରେ ହିଁ ସାରା ମାନବ ଜାତିର କଲ୍ୟାଣ ପାଇଁ ସେଥିରେ ଯେଉଁ ଦର୍ଶନର ଅବତାରଣା କରାଯାଇଛି ତାହା ବିଶ୍ୱ ସାହିତ୍ୟରେ ଖାଲି ଅତୁଳନୀୟ ନୁହେଁ ଅଦ୍ୱିତୀୟ ମଧ୍ୟ । ଜର୍ମାନ ପଣ୍ଡିତ ମ୍ୟାକ୍ସିସ୍ ମୁଲାର ତା'ର ଭୂୟସୀ ପ୍ରଶଂସା କରି ତାକୁ ଜ୍ଞାନର ଅନନ୍ତ ଭଣ୍ଡାର ବୋଲି କହିଛନ୍ତି । ତା'ର ଜ୍ଞାନର ସାଗର ଏତେ ବିଶାଳ ଓ ଅଲୌକିକ ଯେ ତାକୁ ଅପୁରୁଷେୟ ବୋଲି କୁହାଯାଏ । ଖାଇବର ଗିରିପଥ ଅତିକ୍ରମ କରି ଚେଙ୍ଗିଜ ଖାଁ ଓ ତୈମୁରଙ୍ଗ ଭାରତକୁ ଆସି ଗାଙ୍ଗେୟ ଉପତ୍ୟକାରେ ହିନ୍ଦୁ ଧର୍ମ ଉପରେ ଆକ୍ରମଣ କରିବାର ବହୁ ପରେ କୋରାନର ବାର୍ତ୍ତା ପ୍ରଚାରିତ ହୋଇଥିଲା । ଦୁଇଶହ ବର୍ଷ ଧରି ମୁସଲମାନ ଓ ମୋଗଲ ରାଜୁତି ବେଳେ ଇସଲାମ ଧର୍ମର ଏକେଶ୍ୱରବାଦ ପ୍ରଚାରିତ ହୋଇଥିଲା । କୋରାନ୍‌କୁ କେନ୍ଦ୍ର କରି ଏମାନେ ସବୁ ହିନ୍ଦୁ ଧର୍ମ ବିରୁଦ୍ଧରେ ପ୍ରଚଣ୍ଡ ଆକ୍ରମଣ କରିଥିଲେ ତା'ର ବିଲୋପ ସାଧନ ପାଇଁ । ମାତ୍ର ହିନ୍ଦୁ ଧର୍ମ ଏପର୍ଯ୍ୟନ୍ତ ଅମ୍ଳାନ ଭାବେ ତିଷ୍ଠି ରହିଛି । ଈଶ୍ୱରଙ୍କ ବହୁ ଅବତାର ଓ ପିତୁଳା ପୂଜା ସତ୍ତ୍ୱେ ଈଶ୍ୱର ଏକ ଏବଂ ସର୍ବବ୍ୟାପୀ ଆତ୍ମାର ସତ୍ତାକୁ ସ୍ୱୀକାର କରିବାରେ ହିନ୍ଦୁଧର୍ମ ପ୍ରଚାର କରିଆସିଛି ଶତମୁଖରେ । ଅନ୍ୟସବୁ ଧର୍ମର ପ୍ରବର୍ତ୍ତକ ଥିଲେ ଦେହଧାରୀ ମଣିଷ । କିନ୍ତୁ ହିନ୍ଦୁଧର୍ମର କେହି ପ୍ରବର୍ତ୍ତକ ନାହାନ୍ତି, ତାହା ଅପୁରୁଷେୟ । ତାହା ପରମ ସତ୍ୟକୁ ଉଦ୍‌ଘାଟନ

କରିଛି ଧର୍ମ ବିଶ୍ୱାସର ପୁରୋଭାଗରେ। ଆତ୍ମା ଯେ ସର୍ବତ୍ର ପରିବ୍ୟାପ୍ତ, ଅମର, ଅଜର ଓ ସୃଷ୍ଟିର ମୂଳତତ୍ତ୍ୱ, ଏକଥା ଆବିଷ୍କାର କରିଛି କେବଳ ହିନ୍ଦୁ ଧର୍ମ। ଇସ୍‌ଲାମ ଧର୍ମରେ ସୃଷ୍ଟି ଏବଂ ସୃଷ୍ଟିକର୍ତ୍ତା ଅଭିନ୍ନ ନୁହଁନ୍ତି। କିନ୍ତୁ ହିନ୍ଦୁ ଧର୍ମରେ ଭଗବାନ ବା ଆତ୍ମା ପଶୁପକ୍ଷୀ, କୀପ ପତଙ୍ଗ, ସରୀସୃପ ଏବଂ ଏପରିକି ବର୍ଜ୍ୟବସ୍ତୁରେ ସର୍ବତ୍ର ବିଦ୍ୟମାନ ଏବଂ ଆତ୍ମାହିଁ ସମସ୍ତ ସୃଷ୍ଟିର ନିଅନ୍ତା।

ଅନ୍ୟ ଧର୍ମର ଲୋକଙ୍କୁ ଗ୍ରହଣ କରିବା ପାଇଁ ହିନ୍ଦୁ ଧର୍ମରେ ବାରଣ ଅଛି, କାରଣ ଏହାର ପବିତ୍ରତା ଯେପରି ଅମ୍ଳାନ ରହେ। କିନ୍ତୁ ଇସ୍‌ଲାମ ଧର୍ମରେ ସମସ୍ତଙ୍କୁ ଗ୍ରହଣ କରିବା ପାଇଁ ଦ୍ୱାର ଉନ୍ମୁକ୍ତ। ଏହି କାରଣରୁ ଭାରତରେ ମୁସଲମାନ ଜନସଂଖ୍ୟା ହୁ ହୁ ହୋଇ ବଢ଼ିବାରେ ଲାଗିଥିଲା। ବିଶେଷ କରି ଅସ୍ପୃଶ୍ୟ ମାନେ ବହୁସଂଖ୍ୟାରେ ଏହି ଧର୍ମ ଗ୍ରହଣ କରିଥିଲେ ଏବଂ ମୁସଲମାନଙ୍କ ପାଇଁ ଏକ ସ୍ୱତନ୍ତ୍ର ରାଷ୍ଟ୍ର ଗଠନ କରିବାକୁ ଦାବୀ ଥିଲା। ହିନ୍ଦୁ ଓ ମୁସଲମାନ ମଧ୍ୟରେ ଧର୍ମଗତ ବିଦ୍ୱେଷ ଭାବ ଥିଲା ଉତ୍କଟ। କିନ୍ତୁ କାଳ କାଳ ଧରି ଗଢ଼ି ଉଠିଥିବା ସାମାଜିକ ସଦ୍‌ଭାବନାକୁ ଭୁଲି ପ୍ରଥମେ ନୂଆଖାଲିରେ ମୁସଲମାନ ମାନେ ହିନ୍ଦୁ ମାନଙ୍କ ଉପରେ ଆକ୍ରମଣ କରି ନିଷ୍ଠୁର ନରସଂହାର କଲେ। ଗାନ୍ଧୀ କିନ୍ତୁ ଥିଲେ ସମସ୍ତ ଜାତି, ଧର୍ମ ଓ ବର୍ଣ୍ଣଭେଦ ଊର୍ଦ୍ଧ୍ୱରେ। ତେଣୁ ସେ କୌଣସି ପକ୍ଷ ସମର୍ଥନ ନକରି ଶାନ୍ତି ପ୍ରତିଷ୍ଠା ପାଇଁ ଉଭୟ ପକ୍ଷ ଉପରେ ନୈତିକ ଚାପ ପ୍ରୟୋଗ କଲେ। ଏହାହିଁ ଥିଲା ହିନ୍ଦୁତ୍ୱକୁ ଆଧାର କରି ଗଢ଼ି ଉଠିଥିବା ହିନ୍ଦୁ ମହାସଭାର ଗାନ୍ଧୀଙ୍କ ପ୍ରତି କ୍ରୋଧର କାରଣ। ହିନ୍ଦୁ ହେଉ କି ମୁସଲମାନ ହେଉ ଅଥବା ଦକ୍ଷିଣ ଆଫ୍ରିକାର ବର୍ଣ୍ଣବୈଷମ୍ୟ ହେଉ, ମନର ଅଭ୍ୟନ୍ତରରେ ଲୁଚି ରହିଥିବା ଉତ୍କଟ ବିଷଧର ତକ୍ଷ ଯେ ଏପରି ଉଗ୍ରରୂପ ଧାରଣ କରି ହଠାତ୍ ଲମ୍ଫ ପ୍ରଦାନ କରି ଗୋଟିକ ପରେ ଗୋଟିଏ ଚୋଟ ମାରିବ, ଏହା କେବେ କେହି ଭାବିନଥିଲେ। ନିଜେ ଗାନ୍ଧୀ ମଧ୍ୟ ଦକ୍ଷିଣ ଆଫ୍ରିକାରେ ଏହି ତକ୍ଷର ଦଂଶନରେ କ୍ଷତବିକ୍ଷତ ହୋଇ ଦାରୁଣ ଯନ୍ତ୍ରଣାରେ ଛଟପଟ ହୋଇଥିଲେ। ଧର୍ମକୁ ନେଇ ବିଭିନ୍ନ ସଂପ୍ରଦାୟ ମଧ୍ୟରେ ଥିବା କୁସଂସ୍କାର ପୂର୍ଣ୍ଣ କଠୋର ମନୋଭାବ କେତେ ଯେ

ନରହତ୍ୟା କରିଛି, ଇତିହାସ ତାର ସାକ୍ଷୀ। ଏହାର ବିଷକ୍ରିୟା ଏତେ ଉତ୍କଟ ଯେ ହଜାର ହଜାର ବର୍ଷଧରି ଶାନ୍ତି ବାର୍ତ୍ତାର ଉପଚାର ଏହାକୁ ଉପଶମ କରିପାରି ନାହିଁ କି ଧର୍ମିୟ ରକ୍ଷଣଶୀଳତା କେତେ ଯେ ଭୟଙ୍କର ସେ କଥା ବୁଝିବାକୁ ମଣିଷ ସମର୍ଥ ହୋଇନାହିଁ। ରକ୍ଷଣଶୀଳ ଧର୍ମାନ୍ଧତା ପ୍ରଥମେ ସୃଷ୍ଟି କରିଥିଲେ ସ୍ୱାର୍ଥପର ଧର୍ମଗୁରୁ ମାନେ, ମାତ୍ର ତାର କୁପ୍ରଭାବ ଏପର୍ଯ୍ୟନ୍ତ ମଣିଷ ସମାଜକୁ ଶତଧା ବିଭକ୍ତ କରି ରଖିଛି ଏବଂ ଶହ ଶହ ବାର ମଣିଷର ଧନଜୀବନକୁ ଧ୍ୱଂସ କରିବାର କାରଣ ହୋଇଛି। ଅଷ୍ଟାଦଶ ଶତାବ୍ଦୀର ପ୍ରଥମ ଭାଗରେ ମୋଗଲ ସାମ୍ରାଜ୍ୟର ପତନ ଆରମ୍ଭ ହେବା ମାତ୍ରେ ହିନ୍ଦୁ ମୁସଲମାନଙ୍କ ମଧ୍ୟରେ ରକ୍ତାକ୍ତ ସଂଘର୍ଷ ଆରମ୍ଭ ହୋଇଗଲା। ହିନ୍ଦୁମାନଙ୍କ ମନରେ ପୁଞ୍ଜିଭୂତ ଅସନ୍ତୋଷର ବହ୍ନି ଜଳିବାକୁ ଲାଗିଲା। ଇଂରେଜ ମାନଙ୍କର ସକଳ ଚେଷ୍ଟା ସତ୍ତ୍ୱେ ଦୁଇ ଗୋଷ୍ଠୀ ମଧ୍ୟରେ ଥିବା ପରସ୍ପର ପ୍ରତି ସନ୍ଦେହ ଓ ଘୃଣା ଭାବର ଅବସାନ ହୋଇ ନଥିଲା। ହିନ୍ଦୁମାନେ ଭୁଲିନଥିଲେ ଯେ ଅସ୍ପୃଶ୍ୟ ମାନଙ୍କୁ ଗ୍ରହଣ କରି ମୁସଲମାନ ସଂପ୍ରଦାୟ ଅପବିତ୍ର ହୋଇଯାଇଛି। ସେମାନଙ୍କ ହାତରୁ ଖାଦ୍ୟ ଗ୍ରହଣ କରିବା, ରୋଷେଇ ଘରେ ପ୍ରବେଶ କରିବା ଇତ୍ୟାଦି ସାମାଜିକ ବାସନ୍ଦ ଉଭୟ ସଂପ୍ରଦାୟ ମଧ୍ୟରେ ବିଭେଦର ଶକ୍ତ ପାଚେରୀ ଠିଆ କରିଦେଲା। ଖାଲି ଭାରତର ହିନ୍ଦୁ ମୁସଲମାନ ମାନଙ୍କ ମଧ୍ୟରେ କାହିଁକି ସାରା ପୃଥିବୀରେ ଏପରି ଭେଦଭାବ କୌଣସି ନା କୌଣସି ରୂପରେ ମଣିଷକୁ ମଣିଷର ଶତ୍ରୁକରି ରଖିଛି। ଭାରତରେ ହିନ୍ଦୁ, ମୁସଲମାନ, ବ୍ରିଟେନ୍‌ରେ କଳା ଗୋରା, ଆଫ୍ରିକାରେ ବର୍ଣ୍ଣ ବୈଷମ୍ୟ ଓ ଆମେରିକାରେ ଦାସତ୍ୱ ପ୍ରଥା ଭଳି ହୀନ ବିଚାର ହେତୁ ଅନେକ ରକ୍ତପାତର ଘଟଣା ଘଟିଛି। ଏପରିକି ଭାରତରେ କେହି ମୁସଲମାନ ଜଣେ ବ୍ରାହ୍ମଣଙ୍କୁ ଛୁଇଁଦେଲେ, କଠୋର ତପସ୍ୟା ଓ ବ୍ରତ ଆଚରଣ କରି ପ୍ରାୟଶ୍ଚିତ କରିବାକୁ ପଡୁଥିଲା। ଏହି ସାଂପ୍ରଦାୟିକ ଭେଦଭାବ ଭାରତରେ ଥିଲା ଅତ୍ୟନ୍ତ ଉଗ୍ର ଓ କଠୋର। ଈଶ୍ୱର ଉପାସନା ବିବାହ, ବ୍ରତ ଇତ୍ୟାଦି ଉତ୍ସବାନୁଷ୍ଠାନ, ଗୋରୁ ଗାଈ ପ୍ରତି ବିଚାରବୋଧ, ଖାଦ୍ୟ, ବସ୍ତ୍ର ରୀତିନୀତି ଚାଲିଚଳଣି ସବୁଥିରେ ଥିଲା ଭିନ୍ନତାର ଛାପ। ହିନ୍ଦୁମାନଙ୍କର

ଗାଇ ପ୍ରତି ଭକ୍ତି ଅସହ୍ୟ ବୋଧ ହେଉଥିଲା । ଏପରି ହିନ୍ଦୁ ବିଦ୍ୱେଷ ମନୋଭାବ ହେତୁ ମୁସଲମାନ ମାନେ ଦଳଦଳ ଗୋରୁ ଗାଇଙ୍କୁ ହିନ୍ଦୁମାନଙ୍କ ମନ୍ଦିର ସାମ୍ନାରେ କଂସେଇଖାନାକୁ ନେଉଥିଲେ ମାରିବାକୁ । ସେମାନଙ୍କର ଏହି ସବୁ ସାଂପ୍ରଦାୟିକ ଉତ୍ତେଜନା ପ୍ରବଣ କାର୍ଯ୍ୟ ହିନ୍ଦୁମାନଙ୍କୁ କ୍ରୋଧରେ ଅସ୍ଥିର କରୁଥିଲା । ମାତ୍ର ବ୍ରିଟିଶ ସରକାରଙ୍କର ମୁସଲମାନଙ୍କ ପ୍ରତି କୋହଳ ମନୋଭାବ ଓ ଉଭୟ ଗୋଷ୍ଠୀ ମଧ୍ୟରେ ଉଦାସୀନତା ହେତୁ ହିନ୍ଦୁମାନେ ନିଜର କ୍ରୋଧକୁ ଚାପି ରଖୁଥିଲେ । ପ୍ରଥମେ ସ୍ୱାଧୀନତା ଆନ୍ଦୋଳନ ଅଳ୍ପ କିଛି ବୁଦ୍ଧିଜୀବି ମାନଙ୍କ ଭିତରେ ସୀମିତ ଥିଲା । ଦୁଇ ଗୋଷ୍ଠୀ ମଧ୍ୟରେ ଥିବା ଉତ୍କଟ ସାଂପ୍ରଦାୟିକତାକୁ ନରମ କରିବାକୁ ଗାନ୍ଧୀଜୀ ନିରନ୍ତର ଉଦ୍ୟମ କରୁଥିଲେ । ପୃଥିବୀରେ ଭାରତ ଏକ ଅତ୍ୟନ୍ତ ଆଧ୍ୟାତ୍ମିକ ଅଞ୍ଚଳ ହୋଇଥିବାରୁ ଗାନ୍ଧୀ ସ୍ୱାଧୀନତା ଆନ୍ଦୋଳନକୁ, ମହାଭାରତ ଯୁଦ୍ଧରେ ଶ୍ରୀକୃଷ୍ଣ ଦୁଷ୍ଟ ମାନଙ୍କର ବିନାଶ ପାଇଁ ଧର୍ମଯୁଦ୍ଧର ଆଖ୍ୟା ଦେଲାପରି, ଧର୍ମର ଯୁଦ୍ଧବୋଲି କହୁଥିଲେ । ଫଳରେ ଦୁଇଗୋଷ୍ଠୀ ମଧ୍ୟରେ ଥିବା ତୀକ୍ତତା ଅନେକ ପରିମାଣରେ ପ୍ରଶମିତ ହୋଇଥିଲା ଏବଂ ସେମାନେ ବିଭିନ୍ନ କ୍ଷେତ୍ରରେ ଏକତ୍ର ରହି କାର୍ଯ୍ୟ କରିପାରୁଥିଲେ । ସାଂପ୍ରଦାୟିକତା ଉର୍ଦ୍ଧ୍ୱରେ ରହି ପ୍ରତିଷ୍ଠା ପାଇଁ ପୃଥିବୀର ସମସ୍ତ ଉଦାରଚେତା ପୂଣ୍ୟପ୍ରାଣଙ୍କ ମଧ୍ୟରେ ଗାନ୍ଧୀଜୀ ଥିଲେ ସବୁଠାରୁ ଅଧିକ ସହନଶୀଳ । ଗୀତାରେ ଶ୍ରୀକୃଷ୍ଣ ପରି ତାଙ୍କର ପ୍ରତ୍ୟେକ କାର୍ଯ୍ୟରେ ପୁରୋଭାଗରେ ଥିଲା ଧାର୍ମିକ ଚେତନା ଓ ବିଶାଳ ଉଦାର ଦୃଷ୍ଟିକୋଣର ଗାରିମା । ତାଙ୍କ ଆନ୍ଦୋଳନର ପ୍ରତ୍ୟେକ ସୋପାନରେ ମୁସଲମାନଙ୍କୁ ସଂପୃକ୍ତ କରିବା ପାଇଁ ସେ ପ୍ରାଣମୂର୍ଚ୍ଛା ଉଦ୍ୟମ କରୁଥିଲେ । କିନ୍ତୁ ସେ ଜଣେ ହିନ୍ଦୁ ହୋଇଥିବାରୁ ସେମାନଙ୍କର ତାଙ୍କପ୍ରତି ଥିଲା ସନ୍ଦେହ ଓ ଅବିଶ୍ୱାସ । ସେମାନେ ଭାବୁଥିଲେ ଯେ, ସେମାନଙ୍କର ପୂର୍ବପୁରୁଷ ମାନେ ଯେଉଁ ଭାରତରେ ଦିନେ ଥିଲେ ସର୍ବମୟ ଶାସନକର୍ତ୍ତା, ସେଇ ଭାରତ ସ୍ୱାଧୀନ ହେଲେ ସେମାନେ ହୋଇଯିବେ ଦୁର୍ବଳ ଓ ଦୟାର ପାତ୍ର । ତେଣୁ ସେମାନେ ଚାହୁଁଥିଲେ ଭାରତର ବିଭାଜନ ଓ ଏକ ସ୍ୱତନ୍ତ୍ର ମୁସଲମାନ ରାଷ୍ଟ୍ର । ସେମାନଙ୍କର ଏହି ମନୋଭାବ ଉଗ୍ର ଆକାର ଧାରଣ

କଲା, ଯେତେବେଳେ କ୍ୟାମ୍ବ୍ରିଜ ବିଶ୍ୱବିଦ୍ୟାଳୟରୁ ଗ୍ରାଜୁଏଟ ଡ଼ିଗ୍ରୀ ପାଇଥିବା ଚାଳିଶ ବର୍ଷିୟ ଇହମତ ଅଲ୍ଲୀ ନାମକ ଜଣେ କଠୋର ପନ୍ଥୀ ମୁସଲମାନ ୧୯୩୩ ମସିହା ଜାନୁଆରୀ ୨୮ ତାରିଖରେ ସାଢ଼େ ଚାରିପୃଷ୍ଠା ସମ୍ବଳିତ ଟାଇପୀ କରା ଏକ ପ୍ରସ୍ତାବର ଇଂରେଜ ଚିଠା ପ୍ରକାଶ କରିଦେଲେ। ଏହି ଚିଠାରେ ପବିତ୍ର ଇସଲାମ ନାମରେ ସ୍ୱତନ୍ତ୍ର ପାକିସ୍ଥାନ ରାଷ୍ଟ୍ର ଗଠନ କରିବାକୁ ମୁସଲମାନ ବହୁଳ ଭାରତର ଉତ୍ତର ପୂର୍ବାଞ୍ଚଳ ଯଥା ପଞ୍ଜାବ, କାଶ୍ମିର, ସିନ୍ଦ୍, ସୀମାନ୍ତ ଅଞ୍ଚଳ ବେଲୁଚିସ୍ଥାନର ମୁସଲମାନ ମାନଙ୍କୁ ଆହ୍ୱାନ କରିଥିଲେ। ତାଙ୍କର ଏହି ପ୍ରସ୍ତାବ ମୁସଲିମ୍ ଲିଗ୍ ମଧ୍ୟରେ ଆଲୋଡ଼ନ ସୃଷ୍ଟି କଲା ଏବଂ ଭାରତରେ ମୁସଲମାନ ମାନେ ଚେଇଁ ଉଠିଲେ। ହେଲେ ହିନ୍ଦୁମାନେ ଏହାକୁ ପ୍ରବଳ ବିରୋଧ କରି କାର୍ଯ୍ୟକାରୀ ନକରି ଦେବାକୁ ଯିଦ୍ ଧରି ବସିଲେ। ଏହାର ନେତୃତ୍ୱ ନେଲା ଭାରତର କଂଗ୍ରେସ ଦଳ ଏବଂ ଗାନ୍ଧୀ ଏହାକୁ ଗ୍ରହଣ କରି ପାରିଲେ ନାହିଁ ଏବଂ ଏହାହିଁ ହେଲା ଦୁହିଁଙ୍କ ମଧ୍ୟରେ ମତଭେଦର କାରଣ । ଗାନ୍ଧୀଙ୍କର ଏହି ଉଦାରତାକୁ କଂଗ୍ରେସ ଦଳର କେହି କେହି ନେତାମାନେ ମୁସଲମାନ ମାନଙ୍କ ପ୍ରତି ସମର୍ଥନ ବୋଲି ଭାବିଲେ। କ୍ଲାଇଭ୍ ଓ ସିରାଜଉଦୌଲାଙ୍କ ମଧ୍ୟରେ ଯୁଦ୍ଧ ବେଳର ବ୍ଲାକହୋଲ ଟାରଗେଟ୍‌ର କିମ୍ବଦନ୍ତୀକୁ ଇଂରେଜମାନେ ଭୁଲିନଥିଲେ। ସେମାନେ ପ୍ରତିଶୋଧ ପରାୟଣ ହୋଇ ଏହି ମତଭେଦକୁ ଏକ ସୁଯୋଗ ଭାବି ନିଜର ଫାଇଦା ଉଠାଇବାକୁ ସ୍ଥିର କଲେ। ବିଶ୍ୱର ସବୁଠାରୁ ଦ୍ୱିତୀୟ ହିଂସାପ୍ରବଣ ନଗର ଭାବେ କଲିକତାର ପରିଚୟ ଅଛି। ଏହାର ଆବର୍ଜନାମୟ ସହର ତଳି ଅଞ୍ଚଳରେ ନର୍କ ଯନ୍ତ୍ରଣାରେ ପଡ଼ି ଛଟପଟ ହୋଇ ଜୀବନ କାଟୁଥିବା ଲକ୍ଷ ଲକ୍ଷ ଦରିଦ୍ର ଅସହାୟ ଲୋକଙ୍କୁ ଦେଖିବାକୁ ମିଳେ। ମାତ୍ର ଏମାନେ ସବୁଠାରୁ ନୃଶଂସ ବିଭତ୍ସକାଣ୍ଡମାନ ଘଟାଇ ସହରକୁ ଭୟ ଓ ଆତଙ୍କରେ ଅସ୍ଥିର କରି ସାରା ବିଶ୍ୱର ଦୃଷ୍ଟି ଆକର୍ଷଣ କରିପାରନ୍ତି। କୌଣସି କାରଣ ନଥାଇ ହିନ୍ଦୁ ମୁସଲମାନ ମାନଙ୍କ ମଧ୍ୟରେ ପ୍ରତିଦିନ ଏଠାରେ ଘଟୁଥିବା ବିଭତ୍ସକାଣ୍ଡର ଦୃଶ୍ୟମାନ ଦେଖିବାକୁ ମିଳେ। ଏହି ସହରରେ ୧୯୪୬ ମସିହା ଅଗଷ୍ଟ ମାସ ୧୯ ତାରିଖ ଦିନ ସକାଳେ,

ସାଂପ୍ରଦାୟିକ କ୍ରୋଧରେ ଜର୍ଜରିତ ଦଳେ ମୁସଲମାନ ବାଡ଼ି, ଠେଙ୍ଗା, ଛୁରୀ, ଭୁଜାଲି, ଖଣ୍ଡା, ତରବାରୀ, ତେଷ୍ଟା, ଲୁହାଛଡ଼ ଇତ୍ୟାଦି ଭୟଙ୍କର ମାରଣାସ୍ତ୍ରମାନ ଧରି ସହର ସାରା ଖେଦି ଯାଇ ଯେଉଁଠି ପାଇଲେ ହିନ୍ଦୁ ପଡ଼ୋଶୀ ମାନଙ୍କୁ ଅତି ନିର୍ମମ ନିଷ୍ଠୁର ଭାବରେ ହାଣି କାଟି ରାସ୍ତାରେ ଗଡ଼ ଗଡ଼ କରି ପକାଇଲେ । ମୁଣ୍ଡ ବିହୀନ ଅସଂଖ୍ୟ ଶରୀର, ହସ୍ତପଦହୀନ ଅସଂଖ୍ୟ ମୃତଦେହ, ସ୍ତନଯୁଗଳ କଟାଯାଇଥିବା ଅସଂଖ୍ୟ ତରୁଣୀ, ଛିନ୍ନଯୌନାଙ୍ଗ, ଅସଂଖ୍ୟ ପୁରୁଷ ଅର୍ଦ୍ଧନଗ୍ନ ଜୀବନ୍ତଦଗ୍ଧ ଅସଂଖ୍ୟ ରମଣୀ ଓ ମାଳ ମାଳ ନିରୀହ ନିଃସ୍ୱାପ ଶିଶୁ ମାନଙ୍କର ମୃତଦେହ ବିକ୍ଷିପ୍ତ ଭାବରେ ବିଞ୍ଚିହୋଇ ପଡ଼ିଲା । ଆବର୍ଜନାମୟ ତଳି ଅଞ୍ଚଳଠାରୁ ସହରର ଗଳିକନ୍ଦି ଓ ରାଜରାସ୍ତାରେ କୁଢ କୁଢ ହୋଇ । ସେ ସବୁ ଦୃଶ୍ୟ ଏତେ ବିଭତ୍ସ ଓ ଭୟଙ୍କର ଥିଲା ଯେ, କର୍ମରତ ପୁଲିସମାନେ ଭୟରେ ଛତ୍ରଭଙ୍ଗ ଦେଇ ପଳାଇଗଲେ । ହିନ୍ଦୁ ବଜାର ସବୁ ଜଳିପୋଡ଼ି ପାଉଁଶ ହେବାରେ ଲାଗିଥାଏ । ଦୁର୍ଗନ୍ଧ ପୂର୍ଣ୍ଣ ଧୂଆଁରେ ବାଟ ଘାଟ କିଛି ଦିଶୁ ନଥାଏ । ଚତୁର୍ଦ୍ଦିଗରେ ଶୁଭୁଥାଏ କରୁଣ ଆର୍ତ୍ତ ଚିତ୍କାର । ସତେ ଯେମିତି ନର୍କପୁରରେ ଚାଲିଛି ଭୟଙ୍କର ନଗ୍ନ ନୃତ୍ୟ । ପ୍ରତିହିଂସାର ଅନଳରେ ଅଣ ହିନ୍ଦୁମାନେ ଶହ ଶହ ସଂଖ୍ୟାରେ ବାହାରି ଅନୁରୂପ ହିଂସାକାଣ୍ଡରେ ମାତି ଉଠିଲେ ଦୁର୍ଦ୍ଧାନ୍ତ ନର ପିସାଚ ପରି । ମୁସଲମାନ ବସ୍ତି ଗୁଡ଼ିକରେ ଉଠିଲା କରୁଣ ଆର୍ତ୍ତନାଦ । ଶହ ଶହ ସଂଖ୍ୟାରେ ଟଳି ପଡିଲା ସେମାନଙ୍କର ଛିନ୍ନ ବିଛିନ୍ନ ମୃତଦେହ । ରକ୍ତର ବନ୍ୟା ଭିତରେ ଭାସି ଚାଲିଲା ହୁଗୁଳିନଦୀ ଆଡ଼କୁ ଶହ ଶହ ରକ୍ତାକ୍ତ ଶବ । ଚାହୁଁ ଚାହୁଁ ଭାସି ଉଠିଲା ଦରପୋଡ଼ା କାଠଗଣ୍ଡି ପରି ହୁଗୁଳୀ ନଦୀରେ ମୃତଦେହ ସବୁ । ସବୁଠାରୁ ବେଶୀ ମଲେ ଦୁର୍ବଳ ଅସହାୟ, ଜରା ବ୍ୟାଧିଗ୍ରସ୍ତ ବୃଦ୍ଧ ବୃଦ୍ଧା ଓ ନିରୀହ ନିଃସ୍ୱାପ ଶିଶୁମାନେ । ଚବିଶ ଘଣ୍ଟା କାଳ ଏପରି ବିଭତ୍ସ ହତ୍ୟାକାଣ୍ଡ ପରେ କଲିକତା ସହର ନୀରବ ନିଃଶ୍ଚଳ ସଦୃଶ ପଡ଼ି ରହିଲା ଅସହାୟ ଭାବରେ । ଆକାଶରୁ ଓହ୍ଲାଇ ଆସିଲେ ଭୁଭୁକ୍ଷୁ ଶାଗୁଣା ଦଳ ଦଳ ହୋଇ ଏବଂ ଘେରି ଗଲେ ଛ ହଜାର ମୃତଦେହ ଚାରିପଟେ ଟାଣି ଓଟାରି ଖାଇବାକୁ । କଲିକତାର ଏ ବିଭତ୍ସ ହତ୍ୟାକାଣ୍ଡର ଖବର ପାଇ ବିହାର ଓ ବମ୍ବେରେ

ମଧ୍ୟ ଘଟିଗଲା ନୃସଂଶ ନରସଂହାର । କଲିକତାର ଏହି ଲୋମହର୍ଷଣ କାରୀ ବିଭସ୍ସ ହତ୍ୟାକାଣ୍ଡ ବଦଳାଇ ଦେଲା ଭାରତର ଇତିହାସର ଧାରାକୁ । ମର୍ମାହତ ଗାନ୍ଧୀ ମୁମୂର୍ଷୁ ହାତୀଟିଏ ପରି ଠେଲି ହୋଇ ଚାଲିଗଲେ ନୂଆଖାଲିର ଜଙ୍ଗଲ ଭିତରକୁ ପ୍ରାୟଶ୍ଚିତ କରିବାକୁ । ସମସ୍ତେ ସ୍ତବ୍ଧ, ଭୟରେ ଆତଙ୍କିତ, କାହାକୁ ସେ ଜଣାଇବେ ନିଜର ମର୍ମବେଦନା ? କିଏ ଶୁଣିବ ତାଙ୍କର କରୁଣ ନିବେଦନ ? କିଏ ଧାଇଁ ଆସିବ ବୀରଦର୍ପରେ ଦେବଦୂତ ପରି ଶାନ୍ତି ପ୍ରତିଷ୍ଠା କରିବାକୁ ? ଭାତୃବିବାଦର କରୁଣ ପରିଣତି ଦେଖି କୁରୁକ୍ଷେତ୍ରରେ ଭୀଷ୍ମ ଶରଶଯ୍ୟାରେ ଶୋଇଗଲା ପରି ଗାନ୍ଧୀ ଦୁଃଖରେ ଭାଙ୍ଗିପଡ଼ି ବିକଳ ବିଳାପ କରୁଥିଲେ ମର୍ମନ୍ତୁକ ଯନ୍ତ୍ରଣାରେ । ବମ୍ବେ ସହରରେ ରହି ମହମ୍ମଦ ଜିନ୍ନା ସେଦିନ ମୁସଲିମ୍ ଲିଗର ଡାଇରେକ୍ଟ ଆକ୍ସନର ପରିଣତି ଅନୁଧ୍ୟାନ କରୁଥିଲେ ଦାନ୍ତ ଚିପିଚିପି । ସେହିଠାରୁ ସେ ଘୋଷଣା କଲେ । " If congress wanted man, the moslem laungage would acept their offer under sita lightly ପୁଣି ତାଙ୍କ ଘୋଷଣାରେ ଥିଲା - " We shall have sides divided or we shall have india desires, I vowed ".



# ଭାରତ ଛାଡ଼

## ଲଣ୍ଡନ ଜାନୁଆରୀ ୧୯୪୭

ବକିଂମହାମ ରାଜ ପ୍ରାସାଦରେ ବସିଥିଲେ ଦୁଇଜଣ ବ୍ୟକ୍ତି ଅତି ଘନିଷ୍ଠ ଭାବରେ ପଖାପାଖି ହୋଇ, କୌଣସି ଔପଚାରିକତା ନଥିଲା ସେମାନଙ୍କ ଭିତରେ। ଲୁଇସ୍ ମାଉଣ୍ଟ ବେଟେନ ହଠାତ୍ କହି ଉଠିଲେ ଆପଣ ଶୁଣିଛନ୍ତି ? ଆଜି ଏକ ଭୟଙ୍କର ଘଟଣା ଘଟିଛି। ତାଙ୍କ କଣ୍ଠ ବାଷ୍ପରୁଦ୍ଧ ହୋଇ ଆସୁଥିଲା। କାରଣ ସେ ଭାବୁଥିଲେ ସେ ଯେମିତି ନିଜେ ଭାରତ ସହିତ ବ୍ରିଟେନର ସଂପର୍କକୁ ଛିନ୍ନ କରିଦେଇଛନ୍ତି। ଏଭଳି ଆଶଙ୍କାରୁ ମୁକ୍ତି ଚାହୁଁଥିଲେ ଅନ୍ୟ ଜଣେ ରାଜା ଷଷ୍ଠ ଜର୍ଜ। ଦୁହେଁ ଚା'ପାନ କରୁ କରୁ ରାଜା ଷଷ୍ଠ ଜର୍ଜ କହିଲେ ହଁ ପ୍ରଧାନମନ୍ତ୍ରୀ ମୋତେ ସାକ୍ଷାତ କରିବାକୁ ଚାହୁଁଛନ୍ତି, ମୁଁ ରାଜି। ଭାରତର ବଡ଼ଲାଟ୍ ହେବାର ତାଙ୍କର ନିଯୁକ୍ତିକୁ ରାଜାଙ୍କର ଅନୁମୋଦନ ଆବଶ୍ୟକ। କିନ୍ତୁ ମାଉଣ୍ଟବେଟେନ ତାହା ଚାହୁଁ ନଥିଲେ। ତେଣୁ କହିଲେ ଆପଣ ଜାଣନ୍ତି, ଅସଫଳ ହେଲେ ଏହା କେତେ ବିପଦଜ୍ଜନକ ? ହଁ, ଷଷ୍ଠ ଜର୍ଜ କହିଲେ, କିନ୍ତୁ ସଫଳ ହେଲେ ? ତାହା ଅସମ୍ଭବ, ଆପଣ କ'ଣ ରାଜି ? ହଁ ରାଜି, ଷଷ୍ଠ ଜର୍ଜ କହିଲେ। କିନ୍ତୁ ଆପଣ କଣ ଏହାର ପରିଣତି ବିଷୟରେ ଭାବିଛନ୍ତି, ମାଉଣ୍ଟବେଟେନ୍ ପଚାରିଲେ ହଁ, ଭଲଭାବରେ ଭାବିଛି। ସ୍ରୋତର ଉଜାଣୀରେ ସନ୍ତରଣ କରି ସଫଳ ହେଲେ ମଣିଷ ବୀରର ମର୍ଯ୍ୟାଦା ପାଏ, ପାଲଟିଯାଏ ଇତିହାସରେ ସ୍ମରଣୀୟ ବ୍ୟକ୍ତି। ଅନୁକୂଳ ସ୍ରୋତରେ ସନ୍ତରଣ ତ ଏକ ସାଧାରଣ କଥା, ଭୟଙ୍କର ପରିସ୍ଥିତିର ସାମ୍ନା କରିପାରନ୍ତି କେବଳ ଅସାଧାରଣ ମାନେ। ମଣିଷ ଜୀବନରେ ପୁଣି ଅସମ୍ଭବ କ'ଣ ? ତୁମେ ଏତେ ବିବ୍ରତ କାହିଁକି ? ଏତକ କହିସାରି ଜର୍ଜ ଫାଙ୍କା ଆକାଶ ଆଡ଼କୁ ଚାହିଁଲେ, ସେ ଭାବୁଥିଲେ, କିଛି ସେ ଭୁଲ୍ କରୁନାହାଁନ୍ତି ତ ? ମାଉଣ୍ଟ ବେଟେନ୍ କହିଲେ, ଦେଖନ୍ତୁ, ମୁଁ ଆପଣଙ୍କର ଭାଇ (ସଂପର୍କୀୟ, ବ୍ରିଟିଶ ରାଜବଂଶର ଦାୟାଦ, ରାଣୀ ଭିକ୍ଟୋରିଆଙ୍କ ଅଣନାତି) ଏପରି ଜଟିଳ

ସମସ୍ୟାର ମୁକାବିଲା କରିବା ମୋ ପାଇଁ ଅସାଧ ହେଲେ ବି ଆପଣଙ୍କର ଆଦେଶ ମାନି ମୁଁ ଯିବି । କିନ୍ତୁ କୃତକାର୍ଯ୍ୟ ନହେଲେ ଆପଣଙ୍କର ନିନ୍ଦା ହେବ । ରାଜବଂଶରେ କଳଙ୍କ ଲାଗିବ । ରାଜା କହିଲେ କହିଲି ତ, କୃତକାର୍ଯ୍ୟ ହେଲେ ବ୍ରିଟିଶ୍ ଇତିହାସରେ ବୀରର ମର୍ଯ୍ୟାଦା ପାଇବ, ଖ୍ୟାତି ତୁମର ସାରା ପୃଥିବୀରେ ବ୍ୟାପିଯିବ । କୃତକାର୍ଯ୍ୟ ନହେବ ବୋଲି କାହିଁକି ଭାବୁଛ ? ବ୍ରିଟିଶ୍ ନୌସେନାର South East Asia Admiral ଭାବେ ତୁମେ ଖ୍ୟାତି ଅର୍ଜନ କରିଛ । ଏସିଆର ଜାତୀୟବାଦୀ ଆନ୍ଦୋଳନର ନେତାମାନଙ୍କୁ ତୁମେ ଜାଣିଛ । India - China ର 1 to chiminh, Indonesiaର malayaର କମ୍ୟୁନିଷ୍ଟ । ସିଙ୍ଗାପୁର ଅବାଧ ଟ୍ରେଡ୍ ୟୁନିଅନଇଷ୍ଟ୍ ମାନଙ୍କୁ ତୁମେ ଜାଣ, ସେମାନଙ୍କ ସହିତ ତୁମର ମିତ୍ରତା ଅଛି । ତେଣୁ ଭାରତର ଜାତୀୟ ନେତା ମାନଙ୍କୁ ଠିକଣା ବାଟରେ ନେବା ପାଇଁ ତୁମର ଶକ୍ତି ଓ ବୁଦ୍ଧି ଯଥେଷ୍ଟ । ଗତ ୩୦ ବର୍ଷ ଧରି ଭାରତରେ ଯେଉଁ ଜାତୀୟ ଆନ୍ଦୋଳନ ଚାଲିଛି, ତାହା ଇତିହାସର ଧାରାକୁ ବଦଳାଇ ଦେଲାଣି । ପୃଥିବୀର ଅଧିକାଂଶ ଦେଶର ଜନସମର୍ଥନ ଏ ଆନ୍ଦୋଳନ ସପକ୍ଷରେ ଦାନା ବାନ୍ଧୁଛି । ପୃଥିବୀର ଜନମତ ଚାପରେ କ୍ଷମତା ହସ୍ତାନ୍ତର କରିବାକୁ ବାଧ୍ୟ ହେଲେ, ବିଶ୍ୱର ସବୁଠାରୁ ଶକ୍ତିଶାଳୀ ବ୍ରିଟିଶ୍ ସାମ୍ରାଜ୍ୟର ଘୋର ଅପମାନ ହେବ । ମହାତ୍ମାଗାନ୍ଧୀ ଅହିଂସାକୁ ଅସ୍ତ୍ର କରି ଏପରି ସଂଗ୍ରାମ ଚଳାଇ ରଖିଛନ୍ତି ଯେ, ବ୍ରିଟେନ ଓ ଭାରତ ମଧ୍ୟରେ ତିକ୍ତ ଭାବ ନାହିଁ । ଭାରତ ବିରୁଦ୍ଧରେ ସାମରିକ ବଳ ପ୍ରୟୋଗ କଲେ ପୃଥିବୀର ଜନମତ ଭାରତ ସପକ୍ଷରେ ଯିବ । ଅହିଂସା ଉପାୟରେ ସ୍ୱାଧୀନତା ପାଇଁ ଆନ୍ଦୋଳନ କରୁଥିବା ଲକ୍ଷ ଲକ୍ଷ ନିରସ୍ତ୍ର ଜନତା ଉପରେ ଆଉ କେତେ କାଳ ଅମାନୁଷିକ ଅତ୍ୟାଚାର କରାଯାଇ ପାରିବ ? ଅସଂଖ୍ୟ ନରହତ୍ୟା ପରେ ବି ସେମାନେ ଅଟଳ ଅଟନ୍ତି । ସେମାନଙ୍କ ଆନ୍ଦୋଳନକୁ ସମର୍ଥନ କରି ସମୁଦ୍ର ଜୁଆର ପରି ଗାଁ ଗଣ୍ଡାର ଲୋକେ ମାଡ଼ି ଆସୁଛନ୍ତି ଅଜସ୍ର ତ୍ୟାଗ ସ୍ୱୀକାର କରି । ଦ୍ୱିତୀୟ ବିଶ୍ୱଯୁଦ୍ଧ ପରେ ସବୁ ଦେଶର

ଲୋକେ ଗଣତନ୍ତ୍ର ପ୍ରତି ସଜାଗ ହେବାକୁ ଆଗ୍ରହ ପ୍ରକାଶ କରିଛନ୍ତି । ଏଣେ ଗାନ୍ଧି ବାରମ୍ବାର ଆମରଣ ଅନଶନ କରିବାରୁ ସ୍ୱାସ୍ଥ୍ୟ ଏପରି ଅବସ୍ଥାରେ । ଇତିହାସର ଧାରା ବଦଳି ଗଲାଣି, ପ୍ରଧାନମନ୍ତ୍ରୀ ଅଟିଲ୍‌ଙ୍କର କ୍ଷମତା ହସ୍ତାନ୍ତର କରିବା ନିଷ୍ପତ୍ତି ଯୁଗୋପଯୋଗୀ ମନେ ହୁଏ । ଏପରି ଅବସ୍ଥାରେ ଭାରତର ବଡ଼ଲାଟ ଭାବେ ସେଠାକୁ ଯାଇ ହିନ୍ଦୁ ମୁସଲମାନ ପରସ୍ପର ଦୁଇ ବିରୋଧି ଶକ୍ତିକୁ ବୁଝାସୁଝା କରି କ୍ଷମତା ହସ୍ତାନ୍ତର କରିବା ଏକ ବୁଦ୍ଧିମତାର କାମ । ନହେଲେ ବ୍ରିଟିଶ୍ ସାମ୍ରାଜ୍ୟ ଭାଙ୍ଗିଯିବ ଓ ବ୍ରିଟିଶ୍ ଜାତି ଅପମାନିତ ହେବ । ବ୍ରିଟିଶ୍ ଜାତିର ସମ୍ମାନ ରକ୍ଷା କରିବାକୁ ତୁମେ ସାହସର ସହିତ ଏ ସମସ୍ୟାର ସମ୍ମୁଖୀନ ହୁଅ; ଐତିହାସିକ ବ୍ୟକ୍ତିର ସମ୍ମାନ ମିଳିବ । ଚେୟାରକୁ ଆଉଜି ପଡ଼ି ମାଉଣ୍ଟବେଟେନ୍ ଥକ୍ କରି ବସିପଡ଼ିଲେ । ତାଙ୍କର ମନେ ହେଲା ସମସ୍ୟା ଅତ୍ୟନ୍ତ ଜଟିଳ, ସେ ଚିନ୍ତାରେ ବୁଡ଼ିଗଲେ । ଏଣେ ପ୍ରଧାନମନ୍ତ୍ରୀ ଅଟଲି ଭାରତରେ ଘଟିଯାଉଥିବା ଘଟଣା ମାନଙ୍କୁ ଗଭୀର ଭାବରେ ଅନୁଧ୍ୟାନ କରୁଥିଲେ । ସେ ଭାବୁଥିଲେ ଭାରତରେ ସ୍ୱାଧିନତା ଆନ୍ଦୋଳନ ତୀବ୍ରତର ହେବାରେ ଲାଗିଛି ଏବଂ ବ୍ରିଟିଶର ସ୍ଥିତି ଟଳମଳ ହେଉଛି ଦିନକୁ ଦିନ । ପ୍ରତିଦିନର ଘଟଣା ଅବସ୍ଥାକୁ ଅତ୍ୟନ୍ତ ଜଟିଳ କରୁଛି । ତେଣୁ ତୁରନ୍ତ କିଛି ନିଷ୍ପତ୍ତି ନେବାର ବେଳ ଆସିଯାଇଛି । ତାଙ୍କର ମନେ ହେଲା ଏବଂ ସେ ଭାବିଲେ ପୃଥିବୀର ରାଜନୈତିକ ଇତିହାସରେ ଏହା ଏକ ବିରଳ ଘଟଣା । ବିଡ଼ମ୍ବନାର କଥା ଯେ ବ୍ରିଟିଶ ସରକାର କ୍ଷମତା ହସ୍ତାନ୍ତର ପାଇଁ ପ୍ରସ୍ତୁତ ଥିବାବେଳେ, ନିଜର ସମ୍ମାନ ରକ୍ଷା କରିବା ପାଇଁ ଉପଯୁକ୍ତ ସମୟ ମିଳୁ ନଥିଲା ଏବଂ ଭୟଙ୍କର ଏକ ଆସନ୍ନ ବିପଦରୁ ରକ୍ଷା ପାଇବା ପାଇଁ ଉପାୟ ମିଳୁ ନଥିଲା । ଏଣେ ପୃଥିବୀର ଜନମତର ଚାପ ପ୍ରବଳ ହେଉଛି । ପ୍ରଧାନମନ୍ତ୍ରୀ ଅଟିଲଙ୍କ ସ୍ଥାନରେ ଲିବିଆର ଗଦ୍ଦାଫି କିମ୍ବା ଇରାକର ସଦାମ୍ ହୋସେନ ପରି କେହି ଜଣେ ଥିଲେ, ଲକ୍ଷ ଲକ୍ଷ ନରସଂହାର ହୋଇଥାନ୍ତା । ଏ ଦୃଷ୍ଟିରୁ ଦେଖିବାକୁ ଗଲେ ସାମ୍ରାଜ୍ୟବାଦ ହେଲେବି ସମୟର ଆହ୍ୱାନକୁ ସଠିକ ଭାବରେ ଆକଳନ କରିବାରେ ଇଂରେଜମାନେ ଅତ୍ୟନ୍ତ ଚତୁର । ଭାରତକୁ ବ୍ରିଟିଶ୍ ଜୟ କରିଥିଲା

ସାଧାରଣ ଯୁଦ୍ଧଠାରୁ ଅପେକ୍ଷାକୃତ କମ୍ ରକ୍ତପାତରେ। ତାକୁ ଛାଡ଼ିଲା ବେଳେ ଯୁଦ୍ଧର ଆଶ୍ରୟ ନେଇଥିଲେ ଅଜସ୍ର ରକ୍ତର ନଈ ବହିଥାନ୍ତା ଏବଂ ଲକ୍ଷ ଲକ୍ଷ ନରସଂହାର ହୋଇଥାନ୍ତା। ଯାହା ସେମାନଙ୍କର ତିନି ଶହ ବର୍ଷର ଶାସନ କାଳରେ ହୋଇନାହିଁ। ସମସ୍ୟାର ମୂଳ କାରଣ ଥିଲା ୩୦୦ ମିଲିଅନ ହିନ୍ଦୁ ଓ ୧୦୦ ମିଲିଅନ ମୁସଲମାନ ମାନଙ୍କ ମଧ୍ୟରେ ଲାଗି ରହିଥିବା ଯୁଗ ଯୁଗର ବିବାଦ। ସେମାନଙ୍କ ଭିତରେ ଥିବା ଏହି ବିବାଦର କାରଣ ଥିଲା ଅର୍ଥନୈତିକ ବୈଷମ୍ୟ ଓ ଏକ ଆରେକ ଉପରେ ଆଧିପତ୍ୟ ବିସ୍ତାର କରିବାର ମନୋଭାବ। ଏହି ବିବାଦ ଟକମକ କରି ଫୁଟୁଥିଲେ ମଧ୍ୟ ଇଂରେଜ ମାନଙ୍କ ଡିଭାଇଡ୍ ଆଣ୍ଡ ରୁଲ୍ ପଲିସି ହେତୁ ଚାପିହୋଇ ରହିଥିଲା। ସ୍ୱାଧିନତା ସଂଗ୍ରାମ ବେଳେ ଉଭୟ ଗୋଷ୍ଠୀ ମଧ୍ୟରେ ଥିବା ଏହି ସାଂପ୍ରଦାୟିକ ବିବାଦ ଉଭୟ ଗୋଷ୍ଠୀ ଭିତରେ ସ୍ୱାଧୀନତା ପାଇଁ ପ୍ରେରଣା ଦାନ କଲା, ଗାନ୍ଧୀଙ୍କୁ ଏକଥା ଜଣାଥିଲା। ସେଥିପାଇଁ ସେ ଆନ୍ଦୋଳନର ପ୍ରତ୍ୟେକ ପର୍ଯ୍ୟାୟରେ ମୁସଲମାନ ମାନଙ୍କୁ ସାଙ୍ଗରେ ନେବାକୁ ଚାହୁଁଥିଲେ। କିନ୍ତୁ ଆଶାନୁରୂପ ସଂଖ୍ୟାରେ ସେମାନେ ଆନ୍ଦୋଳନରେ ଅଂଶ ଗ୍ରହଣ କରୁନଥିଲେ ଏବଂ ଗାନ୍ଧୀ, ଜବାହାରଲାଲ ନେହେରୁ, ସର୍ଦ୍ଦାର ବଲ୍ଲଭ ଭାଇ ପଟେଲ ଓ ଲିଆକତ ଅଲ୍ଲୀ ଖାଁକୁ ସମାନ ଗୁରୁତ୍ୱ ଦେଇ ଆସୁଥିଲେ ମଧ୍ୟ, ତାଙ୍କ ନେତୃତ୍ୱ ପ୍ରତି ମୁସଲମାନ ସଂପ୍ରଦାୟର ପୂର୍ଣ୍ଣ ସମର୍ଥନ ମିଳୁ ନଥିଲା କି ସ୍ୱାଧିନତା ଆନ୍ଦୋଳନରେ ପୂର୍ଣ୍ଣ ସହଯୋଗ ମିଳୁନଥିଲା। ଏହି କାରଣରୁ ମହମ୍ମଦ ଅଲ୍ଲୀ ଜିନା ମୁସଲମ୍‌ଲିଗର ନେତୃତ୍ୱ ନେବାପରେ ସେମାନେ ବସ୍ତୁତଃ ଏକଜୁଟ ହୋଇଯାଇଥିଲେ ଏବଂ ତାଙ୍କ ନେତୃତ୍ୱ ଏକ ସ୍ୱତନ୍ତ୍ର ମୁସଲମାନ ରାଷ୍ଟ୍ର ଗଠନ କରିବାକୁ ଦାବି କରିବା ସଙ୍ଗେ ସଙ୍ଗେ ଧମକ ଦେଲେ ଯେ ଏହି ଦାବୀକୁ ଗ୍ରହଣ ନକଲେ ହିନ୍ଦୁମାନଙ୍କୁ ବହୁମୂଲ୍ୟ ଦେବାକୁ ପଡ଼ିବ। ସେମାନଙ୍କର ଏ ଦାବୀ ହିନ୍ଦୁମାନଙ୍କ ପକ୍ଷରେ ଅସହ୍ୟ ବୋଧ ହେଲା। ଆସ୍ମୁମାରୀ ହିମାଚଳ ଯେଉଁ ବିଶାଳ ଭାରତ ଭୂଖଣ୍ଡକୁ କାହିଁ କେଉଁ ଅନାଦି କାଳରୁ ପ୍ରକୃତି ସମୁଦ୍ର ଓ ପାହାଡ଼ ଦ୍ୱାରା ସୁରକ୍ଷିତ କରି ଅଖଣ୍ଡ ରଖିଛି। ତାର ବିଭାଜନକୁ ସ୍ୱୀକାର କରିବା କ'ଣ ସମ୍ଭବ ?

ବିନା ଯୁଦ୍ଧେ ଦେବି ନାହିଁ ସୂଚୀଗ୍ରେ ମେଦିନୀ। ଅହଂକାରୀ ଦୁର୍ଯୋଧନର ଏଇ ଉକ୍ତି ହିନ୍ଦୁ ମାନଙ୍କ ମଧ୍ୟରେ ଜାଳି ଦେଲା ପ୍ରତିବାଦର ବହ୍ନି। ହିନ୍ଦୁ ମୁସଲମାନ ମଧ୍ୟରେ ଗୃହ ଯୁଦ୍ଧରେ ଷାଠିଏ ହଜାର ଲୋକ ନିହତ ହୋଇ ସାରିଥିଲେ। ଅଧିକ ନରସଂହାରକୁ ଗାନ୍ଧୀ କ'ଣ ବରଦାସ୍ତ କରିପାରିଥାନ୍ତେ ? ଶାନ୍ତି ଅଭିଯାନକୁ ସେ ଚଳାଇ ରଖିଲେ। ମାତ୍ର କ୍ଷମତା ପାଇଁ ଭାରତୀୟ ନେତାମାନେ ଯେତିକି ବ୍ୟାକୁଳ ଇସଲାମିକ୍ ରାଷ୍ଟ୍ର ଗଠନ ପାଇଁ ମୁସଲମାନ ମାନେ ସେତିକି ପାଗଳ। ଏପରି ଏକ ସ୍ଥିତିରେ ଭାରତକୁ ବିଭାଜନ କରିବା ପାଇଁ ମାଉଣ୍ଟବେଟେନଙ୍କୁ ସୁଯୋଗ ମିଳିଗଲା। ଗାନ୍ଧୀ କିମ୍ବା ବ୍ରିଟିଶ୍ ସରକାର, ରକ୍ତପାତ ସପକ୍ଷରେ କେହି ନଥିଲେ। ଥିଲେ ଧର୍ମାନ୍ଧ ଜିନା ଓ ମୁସଲିମ୍ ଲିଗ୍। ଏପରି ଅବସ୍ଥାରେ ଭାଇସ୍ ରାଏ ଭାବରେ ଭାରତ ଯିବାକୁ ମାଉଣ୍ଟ ବେଟେନ୍ ରାଜି ନଥିଲେ। ଅବଶ୍ୟ ଅବସ୍ଥା ଅତ୍ୟନ୍ତ ଉଦବେଗଜନକ ହୋଇଯିବାରୁ ଅଟିଲ ଏହାର ଶୀଘ୍ର ସମାଧାନ ଚାହୁଁଥିଲେ। ମାଉଣ୍ଟ ବେଟେନ୍ କେବଳ ଭାରତୀୟ ଭାବରେ ଭାରତକୁ ଯିବା କେତେ ଜରୁରୀ, ସେ କଥା ଷଷ୍ଠ ଜର୍ଜ ତାଙ୍କୁ ଆଗରୁ ବୁଝାଇ ସାରିଥିଲେ। ତଥାପି ମାଉଣ୍ଟ ବେଟେନ ମନସ୍ଥିର କରି ପାରୁନଥିଲେ। କିନ୍ତୁ Staifford crips ଏବଂ କ୍ରିଷ୍ଣା ମେନନ୍‌ଙ୍କ ମଧ୍ୟରେ ଯେତେବେଳେ ଏ ବିଷୟରେ ଆଲୋଚନା ହେଲା ଏବଂ ୱାଭେଲ୍ ଭାରତର ବଡ଼ଲାଟ ଥିବା ପର୍ଯ୍ୟନ୍ତ ସମସ୍ୟାର ସମାଧାନ ସମ୍ଭବ ନୁହେଁ ବୋଲି crips ଓ ମେନନ୍ ଅଟିଲଙ୍କୁ କହିଲେ, ସେତେବେଳେ ଅଟିଲ ମାଉଣ୍ଟ ବେଟେନଙ୍କୁ ୱାଭେଲ୍ ଯାଗାରେ ନିଯୁକ୍ତ କରିବାକୁ ଆଦେଶ ଦେଲେ। ଏହି ଆଦେଶକୁ ଷଷ୍ଠ ଜର୍ଜ ରାଜା ଭାବରେ ଅନୁମୋଦନ କଲେ।

ଏ ଖବର ମାଉଣ୍ଟବେଟେନଙ୍କ କାନରେ ପଡ଼ିବା ମାତ୍ରେ ସେ ଭାବନାରେ ବୁଡ଼ିଗଲେ। ଯେଉଁ ସମସ୍ୟା ପ୍ରତି ତାଙ୍କର ଥିଲା ପ୍ରଚୁର ଭୟ ଓ ଯାହାକୁ ସେ ଉପେକ୍ଷା କରିଯିବାକୁ ନିରନ୍ତର ଚେଷ୍ଟା କରି ଆସୁଥିଲେ, ସେଇ ଭୟ ଏବେ ସାକ୍ଷାତ୍ ରୂପରେ ତାଙ୍କ ଆଗରେ ଆସି ଠିଆ ହେଲା। ଭୟର ଆକାର ପ୍ରକାର ସେ କଳ୍ପନା କରି ପାରୁଥିଲେ। ରାଜା ଏବଂ ପ୍ରଧାନମନ୍ତ୍ରୀ ଉଭୟ ଭାରତକୁ କ୍ଷମତା ହସ୍ତାନ୍ତର କରିବାକୁ

କେବଳ ସମ୍ମାନଜନକ ଭାବରେ ହେଉ, ଏତକ ସେମାନେ ଚାହାଁନ୍ତି । କିନ୍ତୁ ତାହା ସମ୍ଭବ ହେବ କିପରି ? ଭାରତର ଭୌଗଳିକ ଅଖଣ୍ଡତା ପାଇଁ ପ୍ରକୃତି ଦେଇଛି ସୁରକ୍ଷାର ବଳୟ । କାବୁଲ ଏବଂ ନେପାଳର ବିସ୍ତୀର୍ଣ୍ଣ ଅଞ୍ଚଳ ଦିନେ ଭାରତର ଅନ୍ତର୍ଭୁକ୍ତ ଥିଲା । ସେସବୁ ଚାଲିଗଲା ପରେ ବି ହଜାର ହଜାର ବର୍ଷ ଧରି ଭାରତର ଅଖଣ୍ଡତା ଅକ୍ଷୁର୍ଣ୍ଣ ରହିଛି । ବାରମ୍ବାର ବୈଦେଶିକ ଶକ୍ତିମାନଙ୍କ ଦ୍ୱାରା ଶାସିତ ହେଲେ ମଧ୍ୟ ଅଖଣ୍ଡତା ତାର ଅକ୍ଷୁର୍ଣ୍ଣ ରହିଛି । ହିନ୍ଦୁ ଓ ମୁସଲମାନ ମାନଙ୍କ ମଧ୍ୟରେ ଗୃହଯୁଦ୍ଧ ହେତୁ ତା'ର ବିଭାଜନ ପାଇଁ ଦାବି ଉଠିଛି । ଏଣେ ପୁଣି ତାହା ବ୍ରିଟିଶ ସମ୍ରାଜ୍ୟର ଅନ୍ତର୍ଭୁକ୍ତ । ଏପରି ଅବସ୍ଥାରେ ଦୁଇ ସଂପ୍ରଦାୟ ମଧ୍ୟରେ ଶାନ୍ତି ପ୍ରତିଷ୍ଠା କରି ସମ୍ମାନ ଜନକ ଉପାୟରେ କ୍ଷମତା ହସ୍ତାନ୍ତର କରିବାକୁ ବ୍ରିଟିଶ ସରକାର ଚାହେଁ । ତାଙ୍କର ମନେ ହେଲା, ତାଙ୍କରି କାନ୍ଧରେ ବନ୍ଧୁକ ରଖି ସେମାନେ ଚାହାନ୍ତି ସନ୍ତୋଷ ଜନକ ସମାଧାନ । ପୁଣି ସେ ଭାବିଲେ, ନା ରାଜା ଜର୍ଜ ତାଙ୍କର ସଂପର୍କୀୟ ଭାଇ । ସେ କେବେ ଛଳନା କରି ପାରିବେ ନାହିଁ । ବ୍ରିଟିଶ ଜାତି ବର୍ତ୍ତମାନ ସଂକଟରେ । ଏ ସଂକଟରୁ ରକ୍ଷା କରିବା ପାଇଁ ସେମାନେ ତାଙ୍କୁ ହିଁ ଭରସା କରିଛନ୍ତି । ଭରସା କରିବାର ଯଥେଷ୍ଟ କାରଣ ବି ଅଛି । ସାରା ଦକ୍ଷିଣ-ପୂର୍ବ ଏସିଆର ସମୁଦ୍ର ଉପରେ ସେ ଥିଲେ ସର୍ବମୟ କର୍ତ୍ତା । ଆଡମିରାଲ ବର୍ମା, ସିଙ୍ଗାପୁର, ଇଣ୍ଡୋଚୀନ, ଭାରତର ସମସ୍ତ ଅଞ୍ଚଳର ଜାତୀୟତାବାଦୀ ନେତାମାନଙ୍କୁ ସେ ଜାଣନ୍ତି ଏବଂ ସେମାନଙ୍କ ସହିତ ତାଙ୍କର ଉତ୍ତମ ସଂପର୍କ ରହିଛି । ତେଣୁ କ୍ଷମତା ହସ୍ତାନ୍ତର ପାଇଁ ସେ ଏକ ସମ୍ମାନଜନକ ଉପାୟ ଖୋଜି ପାଇବେ, ଏପରି ବିଶ୍ୱାସ କରିବା ସେମାନଙ୍କ ପକ୍ଷରେ ସ୍ୱାଭାବିକ । ତାଙ୍କ ଉପରେ ସେମାନଙ୍କର ଏ ଭରସାର ସେ କ'ଣ ଭାଜନ ନୁହଁନ୍ତି ? ବ୍ରିଟିଶ ଜାତିର ସଂକଟ ବେଳେ ଠିଆ ହେବା ତାଙ୍କର କ'ଣ କର୍ତ୍ତବ୍ୟ ନୁହେଁ ? ବୁଦ୍ଧି, ଜ୍ଞାନ ଓ ବଳ ଦ୍ୱାରା ଯେଉଁ ବ୍ରିଟିଶ ଜାତି ବିଶ୍ୱରେ ସବୁଠାରୁ ଅଧିକ ଶକ୍ତିଶାଳୀ ସାମ୍ରାଜ୍ୟ ଗଠନ କରିବାକୁ ସମର୍ଥ ହୋଇଛି, ସେ କ'ଣ ସେ ଜାତିର ଦାୟାଦ ନୁହେଁ ? ତାଙ୍କର ମନେ ପଡ଼ିଲା ଅନ୍ତରଙ୍ଗ ବନ୍ଧୁ ପ୍ରିନସ୍ ୱାଲ୍‌ସଙ୍କ କଥା । ଯିଏ ଜଣେ

ବାନ୍ଧବୀଙ୍କ ପ୍ରତି ଅନ୍ୟାୟ ନ କରିବାକୁ ସିଂହାସନ ପରିତ୍ୟାଗ କରିଥିଲେ ଏବଂ ଯାହାଙ୍କ ପାଇଁ ସେ ଭାରତ ଭୂଖଣ୍ଡରେ ପାଦ ଦେଇଥିଲେ । ଏବେ ସେଇ ଭୂଖଣ୍ଡକୁ ସ୍ୱାଧିନ କରିବା ପାଇଁ ତାଙ୍କୁ ଆହ୍ୱାନ କରାଯାଇଛି । ସେ କ'ଣ ଆହ୍ୱାନକୁ ପ୍ରତ୍ୟାଖ୍ୟାନ କରିବେ ? ଭାରତ ଏକ ପ୍ରାଚୂର୍ଯ୍ୟପୂର୍ଣ୍ଣ ରୋମାଞ୍ଚକର ଭୂଖଣ୍ଡ ଏବଂ ତାର ଭାଇସ୍ ରାୟ ହେବା ସୌଭାଗ୍ୟର କଥା । ଆଜିର ଏ ଘଡ଼ିସନ୍ଧି ମୁହୂର୍ତ୍ତରେ ତାଙ୍କ ଉପରେ ନ୍ୟସ୍ତଥିବା ଦାୟିତ୍ୱରୁ ସେ ପଛଘୁଞ୍ଚା ଦେଲେ ଇତିହାସ ତାଙ୍କୁ ବ୍ରିଟିଶ ଜାତିର ଏକ କୁଳାଙ୍ଗାର ଦାୟାଦ ବୋଲି କହିବ । ଏ ଅପମାନ କ'ଣ ସେ ସହିପାରିବେ ? ଦୁଃଖ ଓ ଅବସାଦରେ କିଛି ସମୟ ପାଇଁ ସେ ମୁକ ପାଲଟି ଗଲେ ।

ମାଉଣ୍ଟବେଟେନ ଆଖି ଖୋଲି ଚାହିଁଲେ, ପାଖରେ ଠିଆ ହୋଇଛନ୍ତି ରାଜା ଷଷ୍ଠ ଜର୍ଜ । ମୁଁ ଭାରତକୁ ଯିବାବେଳେ ତୁମକୁ ଦେଖିବାକୁ ଆସୁଥିଲି ଯେତେବେଳେ ତୁମେ ଦକ୍ଷିଣ ପୂର୍ବ ଏସିଆରେ ସଂଗ୍ରାମରତ ଥିଲ, ଚର୍ଚ୍ଚିଲ ଏହାକୁ ବାରଣ କରିଥିଲେ । ଯୁଦ୍ଧପରେ ଭାରତ ଗସ୍ତରେ ଯିବାକୁ ଭାବିଥିଲି, ମାତ୍ର ବର୍ତ୍ତମାନ ତାହାବି ସମ୍ଭବ ନୁହେଁ । ଭାରତର ସମ୍ରାଟ୍ ହେଲା ପରେ ମୁଁ ଭାରତକୁ ଯାଇନଥିଲି, ଏବେ ସେ ପଦ ଛାଡ଼ିଲା ବେଳେ ମଧ୍ୟ ଯାଇ ପାରୁନାହିଁ । ଏହି ରାଜପ୍ରସାଦ ଭିତରେ ରହି ମୁଁ ସେ ପଦ ଛାଡୁଛି । ମଲା ପର୍ଯ୍ୟନ୍ତ ବି ମୁଁ ସେ ସୁନ୍ଦର ପ୍ରାଚୁର୍ଯ୍ୟପୂର୍ଣ୍ଣ ଭୂଖଣ୍ଡକୁ ଯିବାର ସୌଭାଗ୍ୟ ପାଇ ପାରିବି ନାହିଁ କି ସେଠାରେ ବାଘ ଶୀକାର କରି ପାରିବି ନାହିଁ କିମ୍ବା ସୁନା ଛାଉଣିରେ ସଜ୍ଜିତ ହାତୀ ପଟୁଆର ଓ ଭାରତର ସ୍ୱର୍ଣ୍ଣ ଧାତୁରେ ସୁସଜ୍ଜିତ ରାଜା ମହାରାଜା ମାନଙ୍କ ଠାରୁ ସ୍ୱାଗତ ସମ୍ଭାଷଣର ସୌଭାଗ୍ୟ ପାଇପାରିବି ନାହିଁ । ବିଶାଳ ଭୂଖଣ୍ଡର ସମ୍ରାଟ ବୋଲି ଇତିହାସ ମୋତେ ସ୍ୱୀକାର କଲେ ବି ବ୍ରିଟିଶ ସାମ୍ରାଜ୍ୟକୁ ରକ୍ଷା କରି ପାରିଲି ନାହିଁ ବୋଲି କହିବ । କାରଣ ମୋରି ସମୟରେ ବ୍ରିଟିଶ ସାମ୍ରାଜ୍ୟର ଆଜି ପତନ ଘଟୁଛି । ମୁକୁଟ ମଣ୍ଡିତ ସମ୍ରାଟ ଭାବରେ ରୋମ୍‌ର ନିରୋ, ଗ୍ରୀସର ଆଲେକ ଜାଣ୍ଡାର, ନେପୋଲିୟନ୍, ଖଲ୍ଲିଫା ଓ ଚେଙ୍ଗିଜ ଖାଁଙ୍କ ଠାରୁ ଅଧିକ କ୍ଷମତା ସଂପନ୍ନ ରାଜାଙ୍କ ଠାରୁ ଅଧିକ ବିଳାସମୟ ଜୀବନ କାଟୁଥିଲେ ମଧ୍ୟ ଆଜି ମୋତେ

ସବୁ ହରାଇବାକୁ ପଡୁଛି । ବ୍ରିଟିଶ ସାମ୍ରାଜ୍ୟରୁ ଭାରତ ଚାଲିଗଲେ ମୁଁ ଖାଲି ଏକ ଉପମହାଦେଶର କ୍ଷମତାହୀନ ରାଜା ଭାବରେ ପଡି ରହିବି, ଏହାଠାରୁ ଅଧିକ ଯନ୍ତ୍ରଣାଦାୟକ ଦାରୁଣ ଘଟଣା ମୋ ପାଇଁ ଆଉ କ'ଣ ହୋଇପାରେ ? କିନ୍ତୁ ବ୍ରିଟିଶ ଜାତିର ସମ୍ମାନ ପାଇଁ ମୋତେ ଏସବୁ ସହିବାକୁ ପଡ଼ିବ । ସେଇ ବ୍ରିଟିଶ ଜାତିର ସମ୍ମାନ ପାଁଇ ଭାରତର ବଡ଼ଲାଟ ହେବାକୁ ତୁମର ଏତେ କୁଣ୍ଠା କାହିଁକି ? ବ୍ୟକ୍ତିଗତ ଜୀବନର ସୁଖ ସମ୍ଭାରକୁ ଛାଡ଼ି ଦେଶ ଓ ଜାତିର ସମ୍ମାନ ପାଇଁ ଯେ କୌଣସି ସମସ୍ୟାର ସମ୍ମୁଖୀନ ହେବା ବୀରର ଲକ୍ଷଣ, ଏକଥା ତୁମେ ବୁଝି ପାରୁନା କିପରି ? ମୁଁ ଭାରତର ସମ୍ରାଟ୍ ପଦରୁ ଯାଇପାରେ । କିନ୍ତୁ ଭାରତ ସହିତ ବ୍ରିଟେନର ସମ୍ପର୍କ ତିକ୍ତ ହେଉ, ଏହା ମୁଁ ଚାହେଁନା । ଭାରତ ଉପରେ ଆମର ସାର୍ବଭୌମ କ୍ଷମତା କ୍ଷୂର୍ଣ୍ଣ ହୋଇପାରେ । କିନ୍ତୁ ଶାସନର ଆମେ ଯେଉଁସବୁ ସଫଳତା ଅର୍ଜନ କରିଛୁ ସେସବୁ ମାଟିରେ ମିଶିଯାଉ, ଏକଥା ଆମେ ଚାହୁଁନା । ସେସବୁ ସମ୍ମାନର ସହିତ ସୁରକ୍ଷିତ ରହି ଇତିହାସରେ ବ୍ରିଟିଶ ଜାତିକୁ ଗୌରବାନ୍ୱିତ କରୁ, ଏହା ଆମେ ଚାହୁଁ । ଯୁଗର ପରିବର୍ତ୍ତନ ସହିତ ମାନବ ସଭ୍ୟତାର ବି ପରିବର୍ତ୍ତନ ହୁଏ । ନୂତନ ଯୁଗର ଏ ଆହ୍ୱାନକୁ ବ୍ରିଟିଶ ଜାତି ଏକ ବୀରଜାତି ଭାବରେ ଗ୍ରହଣ ନ କରିବ କିପରି ? ଆମର ସାମ୍ରାଜ୍ୟରୁ ଭାରତ ବିଚ୍ଛିନ୍ନ ହୋଇଯାଇପାରେ, କିନ୍ତୁ କମନ୍ ଓ୍ୱେଲଥ ସହିତ ତାର ସଂପର୍କ ଛିନ୍ନ ହୋଇଗଲେ ସବୁ ସରିଯିବ । ମୁଁ ଚାହେଁ ବ୍ରିଟେନ ସହିତ ସ୍ୱାଧିନ ରାଷ୍ଟ୍ରଗୁଡ଼ିକ ଏକାଠି ରହୁ, ତାହାହେଲେ ସେମାନଙ୍କ ମଧ୍ୟରେ ବ୍ରିଟେନ କେନ୍ଦ୍ରବିନ୍ଦୁ ଭାବରେ ନିଜର ଗୁରୁତ୍ୱ ବଜାୟ ରଖି ପାରିବ ଏବଂ ବିଭିନ୍ନ ଦେଶ ଓ ଜାତିର ଏକତ୍ରିତ ମଞ୍ଚରେ ରହି ଏକ ପ୍ରମୁଖ ଭୂମିକା ଗ୍ରହଣ କରିପାରିବ । ସେହି ମଞ୍ଚର କେନ୍ଦ୍ରବିନ୍ଦୁ ଭାବରେ ବ୍ରିଟେନ, ତା'ର ବାଣିଜ୍ୟ ଆର୍ଥିକ ସାମର୍ଥ୍ୟ ଆଧାତ୍ମିକ ଚେତନା ଓ ନୌବାଣିଜ୍ୟର ପରାକାଷ୍ଠା ହେତୁ ସାରା ପୃଥିବୀରେ ଏକ ନୂତନ ସାମ୍ରାଜ୍ୟ ପ୍ରତିଷ୍ଠା କରିପାରିବ । ବର୍ତ୍ତମାନ ଅବସ୍ଥାରେ ବ୍ରିଟେନ ଏୟା ଚାହେଁ । କମନ୍ ଓ୍ୱେଲଥରେ ରହିବା ଏକାନ୍ତ ଆବଶ୍ୟକ । ତାନହେଲେ ଯେଉଁ ଆଫ୍ରୋ ଏସିଆନ ଦେଶ ଗୁଡ଼ିକ

କ୍ରମେ କ୍ରମେ ସ୍ୱାଧିନ ହେବାକୁ ଯାଉଛନ୍ତି, ସେମାନେ ବି କମନ୍ ୱେଲେଥରେ ଯୋଗ ନଦେଇ ଖଣ୍ଡ ଖଣ୍ଡ ହୋଇଯିବେ। ତାହେଲେ ବ୍ରିଟେନ ସଂପୂର୍ଣ୍ଣ ଭାବରେ ପ୍ରଭାବଶୂନ୍ୟ ହୋଇଯିବ। ବହୁଦିନ ଧରି ସାମ୍ରାଜ୍ୟବାଦ ବିରୋଧି ବିଲାତରେ ପ୍ରଧାନମନ୍ତ୍ରୀ, ଲେବର ପାର୍ଟି, ଷଷ୍ଠ ଜର୍ଜଙ୍କର ବିଚାରଧାରାକୁ ଗ୍ରହଣ କରିପାରୁ ନଥିଲେ। ଏପରିକି ଭାରତକୁ କମନ୍ ୱେଲେଥରେ ଯୋଗଦେବାକୁ ଉଦ୍ୟମ କରିବା ପାଇଁ ଅଟିଲ୍ ମଧ ମାଉଣ୍ଟ ବେଟେନଙ୍କୁ କିଛି କହିନଥିଲେ। ଷଷ୍ଠ ଜର୍ଜ ମଧ ସାମ୍ବିଧାନିଙ୍କ ସମ୍ରାଟ ହୋଇଥିବାରୁ ନିଜ ଇଛାକୁ କାର୍ଯ୍ୟକାରୀ କରିପାରିଲେ ନାହିଁ। କାରଣ ସମ୍ରାଟ ହେଲେ ବି ନିଜ ଇଛାକୁ ପାର୍ଲିଆମେଣ୍ଟ ଉପରେ ଲଦି ଦେବାକୁ ତାଙ୍କର କ୍ଷମତା ନଥିଲା। ଏପରି ଅବସ୍ଥାରେ ଜର୍ଜ ଯେତେବେଳେ ବ୍ରିଟେନ୍‌ର ସମ୍ମାନ ରକ୍ଷା କରିବାକୁ କହିଲେ, ମାଉଣ୍ଟବେଟେନ ସେତେବେଳେ ଭାବିଲେ, ସେ କ'ଣ ବ୍ରିଟିଶ ଜାତିର ଉପଯୁକ୍ତ ଦାୟାଦ ନୁହଁନ୍ତି ? ବ୍ରିଟେନ୍‌ର ଏ ଜଟିଳ ସମସ୍ୟା ବେଳେ ତାର ପକ୍ଷ ସମର୍ଥନ କରି କ୍ଷମତା ହସ୍ତାନ୍ତର ପରେ କମନ୍ ୱେଲେଥରେ ଯୋଗଦେବା ପାଇଁ ଭାରତର ନେତା ମାନଙ୍କୁ ପ୍ରଭାବିତ କରିପାରିବେ ନାହିଁ। ଭାରତରେ ବଡ଼ଲାଟ ପଦ ଗ୍ରହଣ କରି, ସମ୍ରାଟଙ୍କର ବ୍ୟାକୁଳ ଇଛାକୁ ପୁରଣ କରିବା ତାଙ୍କର କ'ଣ କର୍ତ୍ତବ୍ୟ ନୁହେଁ ? ମହାରାଣୀ ଭିକ୍ଟୋରିଆଙ୍କର ସେ ଅଣନାତି। ତେଣୁ ଜର୍ଜ ତାଙ୍କର ଭାଇ, ବ୍ରିଟିଶ ଜାତିର ସମ୍ମାନ ପାଇଁ ସେ ବ୍ୟାକୁଳ, ତାଙ୍କ ଉପରେ ସେ କେତେ ଭରସା ନକରିଛନ୍ତି ? ଏପରି ନାନା ପ୍ରଶ୍ନ ତାଙ୍କୁ ଆନ୍ଦୋଳିତ କରୁଥିଲା। ରାଜ ପରିବାରର କେହି ତାଙ୍କ ପରି ସମଗ୍ର ସାମ୍ରାଜ୍ୟକୁ ଏତେ ଗସ୍ତ କରି ନଥିଲେ କି ଜାତୀୟବାଦୀନେତା ମାନଙ୍କୁ ଜାଣିନଥିଲେ। ତାଙ୍କର କର୍ତ୍ତବ୍ୟବୋଧ ତାଙ୍କୁ ବିଚଳିତ କଲା। ବକିଂମହାମ ରାଜ ପ୍ରାସାଦର ବୈଠକ କୋଠରୀରେ ବସି ସେ ଭାବୁଥିଲେ ବ୍ରିଟେନ ପ୍ରତିଭାକୁ ପୂଜା କରେ, ଦିଗନ୍ତ ବିସ୍ତାରୀ, ବିଶ୍ୱବନ୍ଦିତ ତାର ଶୌର୍ଯ୍ୟ, ବୀର୍ଯ୍ୟ ଭରା ଅମର କୃତିତ୍ୱ। ଜଳସ୍ଥଳ ବନଗିରି ମହାକାଶ ଅନ୍ତରିକ୍ଷ, କେଉଁଠିକୁ ଖେଦି ଯଇ ସେ ନିର୍ମାଣ ନ କରିଛି ତାର ବିଜୟର ସ୍ତମ୍ଭ ? ଦୁର୍ଦ୍ଦଶ, ଦୁର୍ଦ୍ଦମନୀୟ ବ୍ରିଟିଶ ଜାତିର ସାହାସ ପାଖରେ

ପରାଜୟ ସ୍ୱୀକାର କରିଛି ସମଗ୍ର ମେଦିନୀ। ତେବେ ସେ କାହିଁକି ତାର ଏହି ଘଡି ସନ୍ଧି ବେଳେ ବ୍ରିଟେନ୍‌ର ସମ୍ମାନ ପାଇଁ ଭାରତର ବଡଲାଟ ପଦ ଗ୍ରହଣ କରି ସମ୍ମାନ ସହିତ କ୍ଷମତା ହସ୍ତାନ୍ତର ନକରିବେ ? କମନ୍ ୱେଲେଥରେ ବ୍ରିଟେନକୁ କେନ୍ଦ୍ରବିନ୍ଦୁ କରି ସେ କାହିଁକି ଉଦ୍ୟମ ନକରିବେ ବ୍ରିଟିଶ ଜାତିର ଗୌରବ ରକ୍ଷା କରିବାକୁ ? ବିବ୍ରତ ମନ ତାଙ୍କର କ୍ରମେ ସ୍ଥିର ହୋଇ ଆସିଲା। ସମ୍ମତିର ଲକ୍ଷଣ ତାଙ୍କ ମୁଖ ମଣ୍ଡଳରେ ଫୁଟି ଉଠିଲା। ସେ ରାଜାଙ୍କୁ ଚାହିଁଲେ। ରାଜା କହିଲେ, ବ୍ରିଟେନ ତୁମଠାରୁ ଏୟାହିଁ ଚାହେଁ।

ମାଉଣ୍ଟବେଟେନ ଥିଲେ ମହାରାଣୀ ଭିକ୍ଟୋରିଆଙ୍କର ଅଣନାତି। ବିଳାସପୂର୍ଣ୍ଣ ରାଜପ୍ରସାଦରେ ରହି ସେ ବଢ଼ିଥିଲେ। ଚାହିଁଥିଲେ ବ୍ରିଟିଶ ପ୍ରଶାସନର ଜଣେ ମୁଖ୍ୟ ଅଧିକାରୀ ଭାବେ ଅବସ୍ଥାପିତ ହୋଇ ପାରିଥାନ୍ତେ। ସେଥିଲେ ରାଣୀ ଭିକ୍ଟୋରିଆଙ୍କ ଅତି ଆଦରର ନାତୁଣୀଙ୍କ ଚତୁର୍ଥ ପୁତ୍ର। ତାଙ୍କର ପିତାଥିଲେ Batterdayର ରାଜକୁମାର ଲୁଇସ୍। ପ୍ରଥମ ବିଶ୍ୱଯୁଦ୍ଧରେ ଶେଷ ବେଳକୁ ସେଥିଲେ ୧୮ ବର୍ଷର ଜଣେ ସୌମ୍ୟ ଯୁବକ, ତୀକ୍ଷ୍ଣ ମେଧାବୀ। ରାଜପ୍ରାସାଦରେ ବିଳାସମୟ ଜୀବନ ପରିତ୍ୟାଗ କରି ସେ ବାଛି ନେଲେ ନୌବାହିନୀର ରଣ କୌଶଳପୂର୍ଣ୍ଣ କଠୋର ଶିକ୍ଷାର ପନ୍ଥା। ୧୯୪୩ ବେଳକୁ ତାଙ୍କର ବୟସ ଥିଲା ୪୩ ଏବଂ ଚର୍ଚ୍ଚିଲ୍ ଯେତେବେଳେ ଜଣେ ସାହାସୀ ଓ ପ୍ରତିଭାବାନ୍ ଯୁବକର ସନ୍ଧାନ କରୁଥିଲେ ସେତେବେଳେ ସେ ତାଙ୍କୁ South East Asiaର Supreme Allied Comander ଭାବରେ ନିଯୁକ୍ତ କଲେ। ଷଷ୍ଠ ଜର୍ଜଙ୍କର ସେ ଥିଲେ ଅତି ପ୍ରିୟ। ତାଙ୍କରି ପାଖରେ ସେ ବାଲ୍ୟ ଜୀବନ କାଟିଥିଲେ। ଘୋଡା ଚଢ଼ା ଓ ପୋଲୋ ଖେଳରେ ସେ ଥିଲେ ଧୁରନ୍ଧର। ସୁଖମୟ ବାଲ୍ୟ ଓ ଯୌବନ ପରେ ସେ ଆରମ୍ଭ କଲେ ଭୀମକାନ୍ତ ଦିଗନ୍ତ ବିସ୍ତାରୀ ଗଭୀର ସମୁଦ୍ରରେ ସଂଘର୍ଷମୟ ଜୀବନ। South East Asia ର Supreme Allied Comander ଭାବେ ସେ ପ୍ରଥମରୁ ହିଁ ବିସ୍ମୟ ସୃଷ୍ଟିକରି ଅଧସ୍ତନ

କର୍ମଚାରୀ ମାନଙ୍କ ପାଖରେ ହୋଇ ଉଠିଲେ ଅତ୍ୟନ୍ତ ଆଦର ଓ ସମ୍ମାନପ୍ରଦ ଦୁର୍ଦ୍ଧର୍ଷ ସେନା ନାୟକ। ୧ ୯ ୨ ୨ ମସିହାରେ Eduin Ashelay ଙ୍କ ସହିତ ତାଙ୍କର ପ୍ରେମ ବିବାହ ହୋଇଥିଲା।

୧ ୯ ୨ ୭ ମସିହାରେ ସେ ନାଭି ଟାଇଗର ଓ୍ୱାରଲେସ କୋର୍ସ ପରୀକ୍ଷାରେ ପ୍ରଥମ ହୋଇ ଉତ୍ତୀର୍ଣ୍ଣ ହେଲା ପରେ ନେଭିରେ ବ୍ୟବହୃତ ହେଉଥିବା ସମସ୍ତ ପ୍ରକାର ଓ୍ୱାରଲେସ ସେଟ୍ ଏବଂ Physics electriciti ଏବଂ କମ୍ୟୁନିକେଶନ୍ ବିଷୟରେ ଉଚ୍ଚତର ନୂଆ ନୂଆ ଜ୍ଞାନକୌଶଳ ଶିକ୍ଷାଲାଭ କଲେ। ୧ ୯୩୯ ମସିହା ଅଗଷ୍ଟ ମାସ ୨ ୫ ତାରିଖରେ ନୂଆ କରି ପ୍ରତିଷ୍ଠା କରାଯାଇଥିବା Hms Relly ନାମକ ଏକ ଜାହାଜ ବିଧ୍ୱଂସକାରି ପ୍ରତିଷ୍ଠାନର ଦାୟିତ୍ୱ ଗ୍ରହଣ କଲେ। ସମୁଦ୍ର ଯୁଦ୍ଧରେ ତାଙ୍କର ଅଦ୍ଭୁତ ରଣକୌଶଳ ଦେଖି ଶତ୍ରୁପକ୍ଷ ଶୀହରି ଉଠିଲେ ଏବଂ ସାରା ଦକ୍ଷିଣ ପୂର୍ବ ଏସିଆ ଭୂଖଣ୍ଡରେ, ନୌଯୁଦ୍ଧରେ ପ୍ରଚଣ୍ଡ ବୀର ଭାବେ ସ୍ୱୀକୃତ ହେଲେ। ସେଇ ମାଉଣ୍ଟବେଟେନ ହିନ୍ଦୁ ଓ ମୁସଲମାନ ବିବାଦର ସମାଧାନ କରି ଏକ ସମ୍ମାନଜନକ ଉପାୟରେ କ୍ଷମତା ହସ୍ତାନ୍ତର କରିବାକୁ ଭାରତର ବଡ଼ଲାଟ ଭାବେ ଦାୟିତ୍ୱ ଗ୍ରହଣ କଲେ। ଏହା ଥିଲା ତାଙ୍କ ପାଇଁ ଏକ ଦୁର୍ବାର ବୁଦ୍ଧିମତ୍ତା ଓ ପ୍ରତିଭାର କଠୋର ପରୀକ୍ଷା। ତାଙ୍କ ପାଇଁ ଏ ସମସ୍ୟା ଥିଲା ଅତ୍ୟନ୍ତ ଜଟିଳ। ହିନ୍ଦୁ ମୁସଲମାନଙ୍କ ବିବାଦ ଥିଲା ଅତ୍ୟନ୍ତ ଉଗ୍ର। ଜବହାରଲାଲ ନେହେରୁ, ସର୍ଦ୍ଦାର ବଲ୍ଲଭଭାଇ ପଟେଲ, ଲିଆକତ ଅଲ୍ଲୀ ଏକ ପକ୍ଷରେ ଓ ମହମ୍ମଦ ଜିନା ଅନ୍ୟ ପକ୍ଷରେ କ୍ଷମତା ଦଖଲ ପାଇଁ ଥିଲେ ଅତ୍ୟନ୍ତ ବ୍ୟାକୁଳ, ମହାତ୍ମାଗାନ୍ଧି ତାଙ୍କର ପ୍ରିୟ ଭାରତକୁ ବିଭାଜନ କରିବା ପାଇଁ ଘୋର କୁଣ୍ଠା, ପୃଥିବୀ ବ୍ୟାପୀ ସ୍ୱାଧିନତା ପାଇଁ ପ୍ରବଳ ଜନମତର ଚାପ, ଏସବୁର ସମ୍ମୁଖୀନ ହୋଇ ସମାଧାନର ସୂତ୍ର ବାହାର କରିବା କେବଳ ଅସାଧାରଣ ପ୍ରତିଭା ପାଖରେ ସମ୍ଭବ। ମାଉଣ୍ଟବେଟେନ ଥିଲେ ଅସାଧାରଣ ପ୍ରତିଭା ସଂପନ୍ନ ବୀର। ଇଂରେଜ ଜାତି, ଜ୍ଞାନୀ, ଗୁଣୀ ଓ ଚତୁରତାରେ ଇତିହାସ ପ୍ରସିଦ୍ଧ। ଜଳ, ସ୍ଥଳ, ଆକାଶ, ଅନ୍ତରୀକ୍ଷ, ସବୁଆଡ଼େ ଖେଦି ଯାଇଛନ୍ତି ସେମାନେ। ଆବିଷ୍କାର ଓ

ଉଦ୍‌ଭାବନାରେ ଅଦ୍ୱିତୀୟ ସେମାନେ। ମହାକାଶର ଲୁକ୍କାୟିତ ଅସଂଖ୍ୟ ଗ୍ରହ ନକ୍ଷତ୍ର ଠାବ କରିଛନ୍ତି ସେମାନେ। ପାଣିରେ ବୁଡିବା, ଆକାଶରେ ଉଡିବା, ଭୂଗର୍ଭର ଗଚ୍ଛିତ ସଂପଦକୁ ଉତ୍ତୋଳନ କରିବା, ପୃଥିବୀ ଗୋଲ ଓ ଘୁରୁଛି, ସୂର୍ଯ୍ୟ ସ୍ଥିର ଓ ଆଲୋକର ଉତ୍ସ। ମାଧ୍ୟାକର୍ଷଣ ଶକ୍ତି ହେତୁ ସବୁ କିଛି ପୃଥିବୀରେ ଲାଗି ରହୁଛି, ତାର ଉର୍ଦ୍ଧ୍ୱକୁ ଗଲେ ସବୁ କିଛି ଭାସମାନ, ସମୁଦ୍ରର ଅତଳ ଗର୍ଭରେ ବି ଆଗ୍ନେୟଗିରି ଅଛି, ପ୍ରତିଟି କାର୍ଯ୍ୟର ସମାନ ପରିମାଣର ପ୍ରତିକ୍ରିୟା ଶକ୍ତି ଅଛି, ଏସବୁ କଥା ବିଜ୍ଞାନର ଜ୍ଞାନ କୌଶଳ, ଚନ୍ଦ୍ର ଏକ ପାହାଡ଼ ପର୍ବତର ସ୍ତୁପ, ତାର ଆଲୋକ ନାହିଁ, ସେ ଏକ ମରୁଭୂମି, ଏହି ସବୁ ସତ୍ୟର ଉଦ୍‌ଘାଟନ କରିଛନ୍ତି ସେମାନେ। କୃଷି ଓ ପଶୁ ସଂପଦ, ଆଉ ସମସ୍ତ ଜୀବଜଗତର ବିକାଶର ଗବେଷଣାଗତ ନୂତନ ଜ୍ଞାନକୌଶଳ ଆବିଷ୍କାର ଓ ଉଦ୍‌ଭାବନ କରିଛନ୍ତି ସେମାନେ। ସେଇ ବଂଶର ଦାୟାଦ ମାଉଣ୍ଟବେଟେନ। ସେ ପୁଣି ଭାରତକୁ କ୍ଷମତା ହସ୍ତାନ୍ତର ପାଇଁ ରାଜି ନହୁଅନ୍ତେ କିପରି ? ଶାନ୍ତି ଆନ୍ଦୋଳନର କର୍ଣ୍ଣଧାର ମହାତ୍ମାଗାନ୍ଧି ବିଶ୍ୱରେ ବର୍ତ୍ତମାନ ସବୁଠାରୁ ପ୍ରଭାବଶାଳୀ ବ୍ୟକ୍ତି। ଏହା ସେ ପ୍ରମାଣ କରିବାକୁ ଚାହାନ୍ତି। ପ୍ରଭୁ ଯୀଶୁ ଜୀବନ ବଳି ଦେଇ ଏହା ପ୍ରମାଣ କରି ଥିବାରୁ ସାରା ବିଶ୍ୱର ପ୍ରତ୍ୟେକଙ୍କ ହୃଦୟରେ ସେ ପୂଜା ପାଉଛନ୍ତି। ଭଗବାନ ବୁଦ୍ଧ ଅହିଂସାର ଦେବଦୂତ ଭାବରେ ବି ପୂଜା ପାଉଛନ୍ତି। ପ୍ରକୃତରେ ପ୍ରେମ ଓ ଅହିଂସାର ଶକ୍ତି ଅତୁଳନୀୟ। ପ୍ରେମ ସମସ୍ତ ଗଠନ କୌଶଳର ମୂଳମନ୍ତ୍ର। ତାକୁହିଁ କେନ୍ଦ୍ର କରି ସମଗ୍ର ବିଶ୍ୱ ପରିଚାଳିତ। ପ୍ରେମ ତାର ନିଜସ୍ୱ ତେଜରେ ସର୍ବତ୍ର ପ୍ରକାଶମୟ। ସମୁଦ୍ରର ନୀଳ ଜଳରାଶୀ, ଅନ୍ତହୀନ ସୁନୀଳ ଆକାଶ ଓ ଘଞ୍ଚ ଅରଣ୍ୟ, ନଭଶ୍ଚୁମ୍ବୀ ପାହାଡ ପର୍ବତ, ରଙ୍ଗ ବେରଙ୍ଗ ଫୁଲର ସମ୍ଭାର, ଜୀବଜଗତକୁ ବଞ୍ଚାଇ ରଖିବା ପାଇଁ ପାହାଡର ଶୀତଳ ଝରଣା ଆଉ ଶୀତଳ କୋମଳ ପବନ। ଏସବୁ ପ୍ରେମର ପ୍ରକାଶ ନୁହେଁ ତ ଆଉ କ'ଣ ? ହିଂସା ଧ୍ୱଂସର କାରଣ। ଅହିଂସାର ଶକ୍ତି ଅପାର। ତାଙ୍କୁ ସେଇ ପଥ ଅନୁସରଣ କରିବାକୁ ହେବ। ପ୍ରେମ ଓ ଅହିଂସାର କଥା ଭାବିଲା ବେଳକୁ ତାଙ୍କ

ଭିତରେ ଅପୂର୍ବ ଶକ୍ତିର ସଂଚାର ହେଲା । ମହାତ୍ମା ଗାନ୍ଧିଙ୍କର ଦିବ୍ୟ ଶକ୍ତିକୁ ସ୍ମରଣ କରି ସେ ତାଙ୍କ କାର୍ଯ୍ୟର ଶୁଭାରମ୍ଭ କଲେ ।

ନୂଆଖାଲିର ଅପନ୍ତରା ପଥରେ ଚାଲି ଚାଲି ପ୍ରତ୍ୟେକ ଘରକୁ ଯାଇ ଆଶ୍ରୟ ଭୀକ୍ଷା କରୁଥିଲେ । କେହି ନାସ୍ତିବାଣୀ ଶୁଣାଇଲେ, ଅନ୍ୟ ଜଣଙ୍କ ଘରକୁ ଯାଇ ଆଶ୍ରୟ ପାଇଁ ଅନୁରୋଧ କରୁଥିଲେ । ସେ ବି ମନା କଲେ, ଗାନ୍ଧିଜୀ କହୁଥିଲେ "ଏହା ଯଦି ଭଗବାନଙ୍କର ଇଛା, ସେ ତେବେ ଗଛମୂଳ ଶୀତଳ ପବନରେ ବସି ଆନନ୍ଦିତ ହେବେ," ନୂଆଖାଲିର ସେ ବିଭତ୍ସ ଦୃଶ୍ୟ ଦେଖିଲା ପରେ ଆତ୍ମା ତାଙ୍କର ବିଳାପ କରୁଥିଲା । ସେ ଭାବୁଥିଲେ ପ୍ରେମ ଓ ଅହିଂସା କ'ଣ ମଣିଷ ମନରୁ ସଂପୂର୍ଣ୍ଣ ଉଭେଇ ଗଲା ? ମଣିଷର ସଭ୍ୟତା ପରେ କ'ଣ ପଶୁର ସାମ୍ରାଜ୍ୟ ବିସ୍ତାର ଲାଭ କଲା ? ମଣିଷ କ'ଣ ଫେରିଗଲା କୋଟି କୋଟି ବର୍ଷ ପୁରୁଣା ଆଦିମ ଅବସ୍ଥାକୁ । ଏଇ ପ୍ରଶ୍ନର ଉତ୍ତର ଜାଣିବାକୁ ସେ ନିଖାରି ନିଖାରି ଦେଖୁଥିଲେ ମଣିଷର ଆଭ୍ୟନ୍ତରକୁ । ଯିଏ ଯେଉଁଠି ଯାହା କିଛି ପାଇଲା ସେତକ ଖାଇ ସେ ଜୀବନକୁ ବଞ୍ଚାଇ ରଖୁଥିଲେ । ପ୍ରତିଦିନର କର୍ମ ନିର୍ଘଣ୍ଟ ତାଙ୍କର ଥିଲା ଅତି କଠୋର । ଦୁଃଖ ନାହିଁ କି ଅବସାଦ ନାହିଁ, ପ୍ରତିଟି ମୂହୁର୍ତ୍ତକୁ ସେ କାଟୁଥିଲେ ତପସ୍ୟା ପରି । ସେ ଭାବୁଥିଲେ ପ୍ରତିଟି ମୂହୁର୍ତ୍ତ ଭଗବାନଙ୍କର ଅମୂଲ୍ୟ ଦାନ । ତାକୁ ବୃଥାରେ ନଷ୍ଟ ହେବାକୁ ନଦେଇ ମଣିଷର ସେବା ପାଇଁ ଉତ୍ସର୍ଗ କରିବା ଆବଶ୍ୟକ । ପ୍ରତିଦିନ ରାତି ଦୁଇଟାରେ ଶଯ୍ୟାତ୍ୟାଗ କରି ପ୍ରଥମେ ତାଙ୍କର ପ୍ରେରଣା ଓ ଭରସାର ଉତ୍ସ ଗୀତାପାଠ କରୁଥିଲେ । ଷୋଳ ବର୍ଷର ପୁରୁଣା ଘଣ୍ଟାଟିଏ ସବୁବେଳେ ତାଙ୍କ ଅଣ୍ଟାରେ ଝୁଲୁଥିଲା । ଗୀତାପାଠ ପରେ ଖାଲି ଚଟାଣ ଉପରେ ଆଣ୍ଠୁ ଭାଙ୍ଗି ବସି ରହୁଥିଲେ ଧ୍ୟାନ ମୁଦ୍ରାରେ ସକାଳ ପର୍ଯ୍ୟନ୍ତ । ତାପରେ ତାଙ୍କର ମନରେ ଉଠୁଥିବା ପ୍ରଶ୍ନ ଗୁଡ଼ିକରେ ଉତ୍ତର ଲେଖୁଥିଲେ ଖଣ୍ଡେ ପେନସିଲ ସାହଯ୍ୟରେ ଏବଂ ତାକୁ ବ୍ୟବହାର କରୁଥିଲେ ଶେଷ ପର୍ଯ୍ୟନ୍ତ ଯେପର୍ଯ୍ୟନ୍ତ ତାକୁ ହାତରେ ଧରି ହେଉଥିଲା । କାରଣ ସେ ଭାବୁଥିଲେ ପେନ୍‌ସିଲ ଖଣ୍ଡିଏ କୋଟି କୋଟି ଲୋକଙ୍କୁ ମିଳୁନାହିଁ । ସେ ତାର ଅପବ୍ୟବହାର କାହିଁକି

କରିବେ ? ଜଣେ ବିଶ୍ୱସ୍ତ ନିଷ୍ପାପର ଉପାସକ ଭାବରେ ପ୍ରାକୃତିକ ଚିକିତ୍ସା ଉପରେ ତାଙ୍କର ଥିଲା ଗଭୀର ବିଶ୍ୱାସ । ସକାଳେ ସେ ପିଉଥିଲେ ଟିକେ ଲୁଣ ପାଣି । କାରଣ ସେ ବିଶ୍ୱାସ କରୁଥିଲେ ଯେ ତାହା ପେଟରେ ସବୁ ଦୂଷିତ ପଦାର୍ଥକୁ ନିଷ୍କାସନ କରିଦିଏ । ପ୍ରଚଣ୍ଡ ଖରାରେ ଗ୍ରାମରେ ବୁଲି ସେମାନଙ୍କୁ କିପରି ଗ୍ରାମକୁ, ଗ୍ରାମର ଜଳାଶୟକୁ ଏବଂ ନିଜକୁ ସଫା ସୁତୁରା ରଖିବେ, ପ୍ରେମର ମହିମା ଓ ହିଂସାର ସର୍ବଗ୍ରାସୀ ଶକ୍ତି ସଂପର୍କରେ ସେ ଗ୍ରାମବାସୀ ମାନଙ୍କୁ ବୁଝାଉଥିଲେ । ହିନ୍ଦୁ ଉପରେ ମୁସଲମାନ କିମ୍ବା ମୁସଲମାନ ଉପରେ ହିନ୍ଦୁର ଉପଦ୍ରବ ହେଲେ ଉଭୟ ଉଭୟଙ୍କୁ ସାହାଯ୍ୟ ଓ ସୁରକ୍ଷା କରିବା ପାଇଁ ଆମରଣ ଅନଶନ କରିବାକୁ ପ୍ରତିଜ୍ଞାବଦ୍ଧ କରୁଥିଲେ । ଉଭୟ ସଂପ୍ରଦାୟର ମୁଖ୍ୟମାନେ ଗାଁର ଶାନ୍ତିରକ୍ଷା କରିବାକୁ ମିଳିତ ଭାବରେ ପ୍ରତିଜ୍ଞାବଦ୍ଧ ହେଲେ । କ୍ରମେ କ୍ରମେ ଗାନ୍ଧୀଙ୍କର ଶିକ୍ଷା ଓ ଉପଦେଶ ସେମାନଙ୍କ ମନରେ ଗଭୀର ଶ୍ରଦ୍ଧା ଓ ବିଶ୍ୱାସ ସୃଷ୍ଟି କଲା । ଗାନ୍ଧିଜୀ ଭାବିଲେ, ଏକି ଅଦ୍ଭୁତ ଦୃଶ୍ୟ ! ଏମାନଙ୍କ ମଧ୍ୟରୁ କାଲି ଯେଉଁମାନେ ନିଷ୍ଠୁର ନରସଂହାର କରୁଥିଲେ ଆଜି ସେମାନଙ୍କ ମଧ୍ୟରୁ ଏମାନେ ଏତେ ନିଷ୍ପାପ ସରଳ ଉଦାର ହେଲେ କିପରି ? ତାଙ୍କର ମନେହେଲା ଏସବୁ ପରିସ୍ଥିତିର ପ୍ରଭାବ । ମଣିଷ ପଶୁ ନୁହେଁ, ପରିସ୍ଥିତି ସେମାନଙ୍କୁ ପଶୁ କରେ, ଉପଯୁକ୍ତ ପରିବେଶ ଓ ସ୍ନେହଶୀଳ ଆଚରଣ ଦେଖିଲେ, ସେମାନେ ହୋଇଯାନ୍ତି ଦେବତୁଲ୍ୟ ମଣିଷ । ତେଣୁ ଯେଉଁ ସତ୍ୟର ସନ୍ଧାନ ପାଇଁ ସେ ନୂଆଖାଲିର ଘରେ ଘରେ ବୁଲି ଲୋକଙ୍କୁ ଭେଟୁଥିଲେ, ସେ ସତ୍ୟ ଚିରନ୍ତନ । ତାର ବିଳୟ ନାହିଁ । ସେ ଭାବିଲେ, ତପସ୍ୟା ତାଙ୍କର ବିଫଳ ହୋଇନାହିଁ । ସେ ଲୋକଙ୍କୁ ବୁଝାଇ କହୁଥିଲେ, ମାଟି, ପାଣି, ପବନ, ଆଲୋକ, ଆକାଶ, ଏଇ ପାଞ୍ଚୋଟି ଉପାଦାନରେ ମଣିଷ ଶରୀର ଗଠିତ । ଏସବୁ ଠାରୁ ସଂପର୍କ କାଟିଦେଲେ ସେ ବଞ୍ଚିବ କିପରି ? ପ୍ରାଣହୀନ ଜଡ ହୋଇଯିବ । ଏସବୁକୁ ପର କରିଦେଲେ ଶକ୍ତି, ସାମର୍ଥ୍ୟ, ତେଜ ଓ ଜୀବନୀଶକ୍ତି ପାଇବ କେଉଁଠୁ ? ତେଣୁ ଏସବୁର ସଦ୍‌ବ୍ୟବହାର କରିବା ଦରକାର । ଯେଉଁ ଶକ୍ତି ମଣିଷକୁ ଜୀବନ୍ତ କରି ରଖେ, ତାକୁ ପ୍ରାଣସତ୍ତା ବା

ଆତ୍ମା କହନ୍ତି ? ସେ ଶକ୍ତି ସବୁଠାରେ ଅଛି । ଯାହାକୁ ମଣିଷ ହତ୍ୟା କରେ, ଘୃଣା କରେ କିମ୍ବା ଅପମାନ କରେ, ତାଠାରେ ବି ସେଇ ଜୀବନୀ ଶକ୍ତି ଅଛି । ସେ ଯଦି ତୁମପ୍ରତି ସେଇ ଆଚରଣ କରିବ, ମାରିବ, ଘୃଣା କରିବ, ଅପମାନ କରିବ, ତୁମକୁ କେମିତି ଲାଗିବ ? ତେଣୁ ତୁମ ଭଳି ତାଙ୍କୁ ବି ଆଦର କର, ସ୍ନେହ କର, ସାହାଯ୍ୟ ସହଯୋଗ କର । ତୁମଠାରେ ଯେଉଁ ଆତ୍ମା ଅଛି, ତାହା ତାଙ୍କଠାରେ ବି ଅଛି । ଆତ୍ମା ହେଉଛି ଭଗବାନ । ତାହା ସମସ୍ତଙ୍କଠାରେ ସମାନ ଭାବରେ ଅଛି । ତେଣୁ ମଣିଷକୁ ଭଗବାନ ଭାବି ଆଦର କର, ପୂଜା କର । ଦେଖିବ ମନରେ ଆନନ୍ଦ ଆସିବ । ହୃଦୟ ନିର୍ମଳ ହୋଇଯିବ । ମନରେ ଶାନ୍ତି ଆସିବ । ତେଣୁ ତୁମେ ଯାଅ ସେମାନଙ୍କୁ ବୁଝାଅ, ଯେଉଁମାନେ ଆଜି ହିଂସା କବଳରେ ପଡ଼ି ଅନ୍ୟାୟ, ଅତ୍ୟାଚାର, ଉପଦ୍ରବ ଓ ହତ୍ୟାକାଣ୍ଡରେ ମାତି ରହି ମଣିଷ ପଣିଆକୁ ଛାଡିଛନ୍ତି, ସେମାନଙ୍କ ଭିତରେ ମଣିଷ ପଣିଆକୁ ଫେରାଇ ଆଣ । ଦେଖିବ ଭୟ, ଆତଙ୍କ, ଘୃଣା ସବୁ ଛାଡ଼ିଯିବ । ସମସ୍ତେ ଶାନ୍ତିରେ ରହିବ । ସାଂପ୍ରଦାୟିକତା ଭଗବାନ ସୃଷ୍ଟି କରିନାହାଁନ୍ତି, ସୃଷ୍ଟି କରିଛି ମଣିଷ । ହିନ୍ଦୁ ଆଉ ମୁସଲମାନ, ସମସ୍ତେ ମଣିଷ, ସମସ୍ତେ ଭଗବାନଙ୍କର ସନ୍ତାନ, ତେଣୁ ସମସ୍ତେ ଭାଇ ଭାଇ । ଭାଇ ପ୍ରତି ଘୃଣା ନିଜକୁ ଦୁର୍ବଳ କରିବ, ସାହାଯ୍ୟ ଓ ସହଯୋଗ ମନର ବଳକୁ ବଢ଼ାଇବ । ଯାହା ଏକା ଏକା କରିପାରିବ ନାହିଁ, ତାହା ତୁମ ମାନଙ୍କର ମିଳିତ ସହଯୋଗରେ ସହଜ ହୋଇଯିବ । ଭଗବାନ ମଣିଷକୁ ଶକ୍ତି ଦେଇଛନ୍ତି ଗଢ଼ିବା ପାଇଁ, ଭାଙ୍ଗିବା ପାଇଁ ନୁହେଁ, ଶାନ୍ତିରେ ରହିବାକୁ, ଅଶାନ୍ତିରେ ନୁହେଁ, ନିର୍ଭୟରେ ରହିବାକୁ, ଭୟରେ ନୁହେଁ । ତୁମେ ଶାନ୍ତି ଚାହଁ ନାହିଁ ? ଗଢ଼ିବାକୁ ଚାହଁ ନାହିଁ ? ଭାଙ୍ଗିବାକୁ ଚାହଁ ? କ'ଣ ତୁମେ ଚାହଁ ? ଶାନ୍ତି ନା ଅଶାନ୍ତି ? ଏକ ସ୍ୱରରେ ଉଚ୍ଛୁଳି ଉଠିଲା – ଶାନ୍ତି, ଶାନ୍ତି, ଶାନ୍ତି ? ହଁ ଏହାହିଁ ମଣିଷ ପଣିଆ । ତୁମଠାରେ ଖୁନ୍ଦି ହୋଇ ରହିଛି ଶକ୍ତି । ତାର ସଦ୍‌ବ୍ୟବହାର କର । ମଣିଷ ବଞ୍ଚିବା ପାଇଁ ମାଟି, ପାଣି, ପବନ ଭଗବାନଙ୍କର ଅତୁଳନୀୟ ଦାନ । ଏସବୁର ଯତ୍ନ ନିଅ ଓ ସୁରକ୍ଷା କର । ସନ୍ଧ୍ୟାବେଳେ ତାଙ୍କର ଏସବୁ ଉପଦେଶକୁ ଲୋକେ ତନ୍ମୟ ହୋଇ ଶୁଣୁଥିଲେ ।

ତାଙ୍କ ଭିତରେ ହେଉଥିଲା ନୂତନ ଚେତନାର ଜାଗରଣ । କ୍ରମେ ଗାନ୍ଧୀ ସେମାନଙ୍କ ପାଖରେ ହୋଇ ଉଠୁଥିଲେ ଅତିପ୍ରିୟ ବନ୍ଧୁ । ଦାର୍ଶନିକ ଓ ପଥପ୍ରଦର୍ଶକ ।

ନୂଆ ସଭ୍ୟତାର ମୂଳଦୂଆ ପକାଇବାକୁ ଓ ଆତ୍ମନିର୍ଭରଶୀଳ କରିବାକୁ ଗାନ୍ଧି ସର୍ବାଧିକ ଗୁରୁତ୍ୱ ଦେଉଥିଲେ । ସେ ବିଶ୍ୱାସ କରୁନଥିଲେ କଥା ଉପରେ, କରୁଥିଲେ କାମ ଉପରେ । କାମ ଉପରେ ଥିଲା ତାଙ୍କର ଅଖଣ୍ଡ ବିଶ୍ୱାସ । କର୍ମର ଫଳ ଭଗବାନଙ୍କ ଉପରେ ଛାଡ଼ିଦିଅ । ବଡ଼ଲାଟଙ୍କୁ ଦେଖା କରିବା ଓ ଜଣେ କୁଷ୍ଠ ରୋଗୀର ସେବା ପାଇଁ ପାଣି ପଟି ତିଆରି କରିବା, ଉଭୟ କର୍ମ ତାଙ୍କ ପାଇଁ ସମାନ । ତେଣୁ ସେ ଗାଁକୁ ଗାଁ ବୁଲି, କୂଅ, ପାଇଖାନା ସଫା ରଖିବାକୁ କହୁଥିଲେ । ପାଇଖାନାଟିଏ ନଥିଲେ ପକ୍କା ପାଇଖାନା ତିଆରି କରିବାର କୌଶଳ ଶିଖାଉଥିଲେ । ଏପରିକି କୂଅଟିଏ ଖୋଳିବା କାର୍ଯ୍ୟରେ ସେ ନିଜେ ଗାଁ ଲୋକଙ୍କ ସାଙ୍ଗରେ ମିଶି ସାହାଯ୍ୟ କରୁଥିଲେ । ତାଙ୍କର ବିଶ୍ୱାସ ଥିଲା ଅସ୍ୱାସ୍ଥ୍ୟକର ପରିବେଶ ହିଁ ସମସ୍ତ ରୋଗ ଓ ଶିଶୁମୃତ୍ୟୁର କାରଣ । ରାସ୍ତା ଉପରେ ଛେପଖଙ୍କାର ପକାଇବା ଓ ସିଙ୍ଗାଣି ପୋଛିବାକୁ ବର୍ଷ ବର୍ଷ ଧରି ସେ ବାରଣ କରୁଥିଲେ । ସେ ଥରେ ଦୀର୍ଘ ନିଃଶ୍ୱାସ ମାରି କହିଥିଲେ, "ଭାରତୀୟମାନେ ଯଦି ଏକାଠି ହୋଇ ପୋଖରୀଟିଏ ଖୋଳି ପାରିବେ, ତେବେ ତାହା ତିରିଶ ଲକ୍ଷ ଇଂରେଜଙ୍କୁ ବୁଡ଼ାଇ ମାରିଦେବାକୁ ଯଥେଷ୍ଟ ହେବ । ଅର୍ଥାତ୍ ଭାରତୀୟମାନେ ଏକତା ରକ୍ଷା କରିବା ଅତ୍ୟନ୍ତ ଜରୁରୀ । ଲୋକେ ମିଳିତ ଭାବରେ ଚେଷ୍ଟା କଲେ ପୃଥିବୀର ଅଧିକାଂଶ ସମସ୍ୟାର ସମାଧାନ ହୋଇଯିବ । ଏହାଥିଲା ତାଙ୍କର ବିଶ୍ୱାସ । ଲୋକେ ସିନା ଆସ୍ତେ ଆସ୍ତେ ଗାନ୍ଧି ଓ ତାଙ୍କର ମଣିଷ ସମାଜ ପାଇଁ ତ୍ୟାଗ ଏବଂ ଅତୁଳନୀୟ ଅବଦାନକୁ ଭୁଲି ଯାଉଛନ୍ତି, କିନ୍ତୁ ତାହା ବିସ୍ମୟକର ଓ ଅସାଧାରଣ । ବର୍ତ୍ତମାନ ଯୁବ ପିଢୀକୁ ପଚାରିଲେ ସେମାନଙ୍କ ଭିତରୁ ଅନେକ କହନ୍ତି, ଗାନ୍ଧି କିଏ ? କୃତଘ୍ନ ସେମାନେ । ଦେଶର ଐତିହ୍ୟ, ସଂସ୍କୃତିକୁ ଭୁଲିଗଲେଣି ସେମାନେ । ଏପରି ହେଲେ ଦେଶର ଲୋକେ କେବଳ ଉପାର୍ଜନକ୍ଷମ ଦେହ ସର୍ବସ୍ୱ ହୋଇଯିବେ । ସେପରି ହେଲେ ସଭ୍ୟତା ଭାଙ୍ଗିଯିବ ଏବଂ ଗୋଟିଏ ବିଭତ୍ସ ସମାଜ

ଗଢ଼ିଉଠିବ । ଗାନ୍ଧି କିନ୍ତୁ ସମାଜକୁ ମାର୍ଜିତ କରିବା ପାଇଁ ନିରବଚ୍ଛିନ୍ନ ଉଦ୍ୟମ କରୁଥିଲେ । ପ୍ରତି ସନ୍ଧ୍ୟାରେ ତାଙ୍କ ପ୍ରାର୍ଥନାସଭାକୁ ମୁସଲମାନ ମାନଙ୍କୁ ନିମନ୍ତ୍ରଣ କରୁଥିଲେ । କାରଣ, ତାଙ୍କର ବିଶ୍ୱାସ ଥିଲା ଯେ, ପ୍ରାର୍ଥନା ମଣିଷ ଉପରେ ଭଲ ପ୍ରଭାବ ପକାଏ । ଏକଥା ନବୁଝି ଦିନେ ପ୍ରାର୍ଥନା ସଭାରେ ଜଣେ ମୁସଲମାନ ପ୍ରତିବାଦ କରି କହିଲା ମୋ ସମୟ ଆଜି ବେକାର ହୋଇଗଲା । ଏ ସମୟରେ ମୁଁ ଦିଲ୍ଲୀ ଯାଇ ଜିନ୍ନାଙ୍କ ସହିତ ଆଲୋଚନା କରିଥାନ୍ତି । ଗାନ୍ଧି କିନ୍ତୁ ମୁସଲମାନ ମାନଙ୍କୁ ଧିରସ୍ଥିର ଭାବରେ ବସି କୋରାନ ପାଠ କରିବାକୁ କହୁଥିଲେ । ଭାରତର ସ୍ୱାଧିନତା ପାଇଁ ଗାନ୍ଧି କି ତ୍ୟାଗ ଓ କଷ୍ଟ ସ୍ୱୀକାର ନ କରିଛନ୍ତି ? ତିରିଶ ବର୍ଷକାଳ ସାରା ଭାରତର ଗାଁରୁ ଗାଁ ପାଦରେ ଚାଲି ଚାଲି ! ଖାଲି ଗାଁ ନୁହେଁ, ବନ୍ଦିଶାଳାଠାରୁ ରାଜଉଆସ ପର୍ଯ୍ୟନ୍ତ, ପ୍ରାର୍ଥନା ଥିଲା ପ୍ରତିସନ୍ଧ୍ୟାରେ ତାଙ୍କ ଜୀବନରେ ଏକ ବ୍ରତ । କେଉଁଠାରେ ନାଳନର୍ଦ୍ଦମା ସଫା, କେଉଁଠାରେ ପାଇଖାନା ନିର୍ମାଣ, କେଉଁଠାରେ କୁଷ୍ଠ ରୋଗୀର ସେବା, ସବୁଠି ଲୋକଙ୍କ ସହିତ ମିଶି କାମ କରିବା ଥିଲା ତାଙ୍କର ଏକ ନିଶା । ମୁସଲମାନ ମାନଙ୍କ ବସ୍ତିରେ ରହି ଗାନ୍ଧିଜୀ ଏହିପରି ଭାବରେ ଲୋକଙ୍କ ସହିତ ଆତ୍ମିୟତା ଯୋଡ଼ିବା ସହିତ ସଂସ୍କାରର ସଭ୍ୟତା ଗଢ଼ିବାକୁ ନିରନ୍ତର ଲାଗି ପଡୁଥିଲେ । ଯେଉଁ ଗାଁର ଲୋକେ ତାଙ୍କ କଥାକୁ ବିଶ୍ୱାସ କରି ମାନି ଯାଉଥିଲେ, ସେଠାରୁ ସେ ବିଦାୟ ନେଇ ଅନ୍ୟ ଗାଁକୁ ଚାଲି ଯାଉଥିଲେ । ସେଇ ଗାଁର ମୁସଲମାନ ସଂପ୍ରଦାୟର କେହି କେହି ଯେତେବେଳେ ଗାଁ ଛାଡ଼ି ଚାଲି ଯାଉଥିବା ଭୟଭୀତ ହିନ୍ଦୁମାନଙ୍କୁ ନିଜ ଗାଁକୁ ପୁଣି ଫେରି ଆସିବାକୁ ବୁଝାଇଥିଲେ । ଗାନ୍ଧିଜୀ ସେତେବେଳେ ଅପାର ଆନନ୍ଦ ଅନୁଭବ କରି ସେମାନଙ୍କ ସାଙ୍ଗରେ ସେଇ ଗାଁକୁ ଚାଲି ଯାଉଥିଲେ ଏବଂ ସେଠାରେ ମଧ୍ୟ ଗଠନ ମୂଳକ କାର୍ଯ୍ୟରେ ଲାଗି ଯାଉଥିଲେ । ଏସବୁ କାର୍ଯ୍ୟରେ ତାଙ୍କର ଅନାବିଳ ସ୍ନେହ, ନିଷ୍ଠା ଓ କର୍ମପ୍ରବଣତା ତାଙ୍କୁ କ୍ରମେ ଲୋକଙ୍କ ହୃଦୟରେ ଦେବଦୂତର ଆସନ ଦେଉଥିଲା । ଖାଲି ଭାରତ ନୁହେଁ କି ଏସିଆ ମହାଦେଶ ନୁହେଁ, ସାରା ପୃଥିବୀରେ ସେ ହୋଇଗଲେ ମୁକୁଟ ବିହୀନ ସମ୍ରାଟ । ଯାହାଙ୍କ ତେଜସ୍ୱୀ ବ୍ୟକ୍ତିତ୍ୱ

ଓ ଅହିଂସା ମନ୍ତ୍ର ପାଖରେ ବିଶ୍ୱର ସବୁଠାରୁ ଶକ୍ତିଶାଳୀ ସାମ୍ରାଜ୍ୟର ସାମ୍ରାଜ୍ଞୀ ପରାଜୟ ସ୍ୱୀକାର କରିଥିଲେ । ମଣିଷ ସମାଜର ଅଭ୍ୟୁଦୟ ଠାରୁ ଆକ୍ରମଣ ଓ ପ୍ରତିଆକ୍ରମଣ ପାଇଁ ହିଂସାଥିଲା ପ୍ରଧାନ ଅସ୍ତ୍ର । ଏହି ଅସ୍ତ୍ରଦ୍ୱାରା କେତେ ଯେ ସଭ୍ୟତା ଭାଙ୍ଗିଛି ତାର ହିସାବ ନାହିଁ । ଆକ୍ରମଣାତ୍ମକ ଯୁଦ୍ଧରେ ବିଜୟ ହାସଲ କରିବାକୁ କେତେ ଯେ ଭୟଙ୍କର ମାରଣାସ୍ତ୍ରମାନ ନିର୍ମାଣ କରାଯାଇଛି ଏବଂ ଯୁଦ୍ଧାସ୍ତ୍ର ନିର୍ମାଣର ପ୍ରତିଯୋଗିତାରେ କେତେ ଯେ ଜାତୀୟ ସଂପଦର ବିନର୍ବୟ କରିଛନ୍ତି ସବୁଦେଶ, ତା କଳନା କରିହେବ ନାହିଁ । ଏପରିକି ବହୁ ଦେଶ, ପ୍ରତିରକ୍ଷା ବିଭାଗର ସାମରିକ ପ୍ରସ୍ତୁତି ପାଇଁ ନିୟୁକ୍ଲିୟର ମାରଣାସ୍ତ୍ର ଭଳି ଅସ୍ତ୍ରଶସ୍ତ୍ରରେ ନିଜକୁ ସୁସଜ୍ଜିତ କରିବା ପାଇଁ ଦେଶର ପଚାଶ ଭାଗରୁ ଅଧିକ ଅର୍ଥବ୍ୟୟ କରି ଚାଲିଛନ୍ତି । ଏସବୁ ପ୍ରତିଯୋଗିତାର ଫଳ କେବଳ ଶକ୍ତିର ଅପଚୟ । ମଣିଷ ଏତେ ହିଂସ୍ର ହୋଇଗଲାଣି ଯେ ପ୍ରତିଶୋଧ ଓ ପ୍ରତିପତ୍ତି ପାଇଁ ସାରା ପୃଥିବୀକୁ ଧ୍ୱଂସ କରିଦେବାକୁ ନିର୍ମାଣ କଲାଣି ଅତି ଶକ୍ତିଶାଳୀ ଭୟଙ୍କର ନିୟକ୍ଲିୟର ଅସ୍ତ୍ର । ଏପରି ମଣିଷ ଏତେ ପାଗଳ ଯେ ମଣିଷର ସଭ୍ୟତାକୁ ଧ୍ୱଂସ କରିଦେଇ ପୃଥିବୀକୁ ଜାଳିଦେଲେ ନିଜେ ବି ଜଳିଯିବ, ଏତକ ବୁଝିବାକୁ ଅକ୍ଷମ । କୁହାଯାଇଛି ଯେ ନିୟକ୍ଲିୟର ଶକ୍ତି ବିନାଶ ପରିବର୍ତ୍ତେ ବିକାଶର ସହାୟକ ହେବ । କାହିଁ ? କେଉଁଠି ଦେଖିବାକୁ ମିଳୁଛି ତାର ଏଇ ଶକ୍ତିକୁ ? ଶାନ୍ତି ବିନା ସୃଷ୍ଟି ଅସମ୍ଭବ । ଏହା ପ୍ରକୃତିର ନିୟମ । ବିଷ କ'ଣ କେବେ ଅମୃତ ହୋଇପାରେ ? ବିଷକୁ ଅମୃତରେ ପରିଣତ କରିବାକୁ ଯେଉଁମାନେ ଆସ୍ଫାଳନ କରୁଛନ୍ତି, ସେମାନେ ପାଗଳ ନୁହଁନ୍ତି ତ ଆଉ କ'ଣ ? ପ୍ରକୃତିର ନିୟମକୁ କେହି କ'ଣ କେବେ ଭାଙ୍ଗିପାରେ ? ପ୍ରକୃତିରେ ଉପଲବ୍ଧ ଅଣୁକୁ ଛାଡ଼ି ଉଦ୍ଭାବନ କ'ଣ ସମ୍ଭବ ? ବିଜ୍ଞାନ କ'ଣ ସେଇ ସ୍ତରରେ ପହଞ୍ଚିପାରିବ ? ମନେ ହେଉଛି, ସଭ୍ୟତାର ବିକାଶ ନାଁରେ ମଣିଷ ଫେରିଯାଉଛି ଆଦିମ ଯୁଗକୁ, ଯେଉଁଠି ହିଂସା ଥିଲା ତାର ପ୍ରଧାନ ଅବଲମ୍ବନ । ସୃଷ୍ଟିର ସର୍ଜନା ଓ ତାର ବିଲୟ ଏହାହିଁ ପ୍ରକୃତିର ଖେଳ । ଅନଳର ଲୋଭନୀୟ ଆକର୍ଷଣରେ ପତଙ୍ଗ ଝାସ ଦେଇ

ମରେ । ଆଧୁନିକ ସଭ୍ୟତାର ଆକର୍ଷଣରେ ଅସଂଯତ ମଣିଷ ସମାଜ ମରିବାକୁ ଯାଇଛି । ଏହା ଯଦି ବିଧି ନିର୍ଦ୍ଦିଷ୍ଟ, ତାକୁ ରୋକିବ କିଏ ?

ସେଇ ଗାନ୍ଧିଜୀଙ୍କର ଭାରତୀୟ ସମାଜରେ ଆଜି ସ୍ଥାନ କ'ଣ ? ସମାଜର ସାଧାରଣ ଲୋକଙ୍କ ମନ ଭିତରେ ଗାନ୍ଧିଜୀଙ୍କ ଭାବମୂର୍ତ୍ତିର କେଉଁ ଛାପ ପଡୁଛି ? ପିଲା ବୟସରୁ ସାଧାରଣ କର୍ମକ୍ଷେତ୍ରରେ ପ୍ରବେଶ କରିବା ପର୍ଯ୍ୟନ୍ତ ସ୍କୁଲ କଲେଜରେ ପାଠ ପଢୁଥିବା ପିଲାଙ୍କୁ ପରିଚିତ କରିବା ପାଇଁ ଗାନ୍ଧୀ ଦର୍ଶନକୁ ପାଠ୍ୟ ଖସଡ଼ାରେ କ'ଣ ଅର୍ନ୍ତଭୁକ୍ତ କରିବା ଅନୁଚିତ ? ତାଙ୍କ ସମାଧି ପୀଠରେ ବର୍ଷକୁ ଥରେ ଅଧେ ଯାଇ ଫୁଲ ତୋଡ଼ାଟିଏ ଦେଇ ଦେଲେ କ'ଣ ଯଥେଷ୍ଟ ହେବ ? ଯାହାଙ୍କର ବିପ୍ଳବାତ୍ମକ ଦର୍ଶନ ସାରା ପୃଥିବୀରେ ରାଜତନ୍ତ୍ର ଶାସନଙ୍କୁ ଭାଙ୍ଗି ଗଣତନ୍ତ୍ର ପ୍ରତିଷ୍ଠା କଲା, ସେଇ ଦର୍ଶନର ଦିଗନ୍ତ ବିସ୍ତାରୀ ପ୍ରଭାବକୁ ଆମ ଦେଶର ପିଲାମାନେ ଜାଣିବା ଆବଶ୍ୟକ ନୁହେଁ ? ହିଂସା ଠାରୁ ଅହିଂସା ଅଧିକ ଶକ୍ତିଶାଳୀ; ଏଦର୍ଶନ ସମାଜକୁ ମାର୍ଜିତ କରିବା ପାଇଁ କ'ଣ ଉଦ୍ଦିଷ୍ଟ ନୁହେଁ ? ପୃଥିବୀର ମଣିଷ ସମାଜକୁ ହିଂସା ଆଜି ଯେଉଁଭଳି ଭାବରେ ଆକ୍ରାନ୍ତ କରି ଶାନ୍ତି ହରଣ କରୁଛି, ଅହିଂସା ମନ୍ତ୍ର ତାର କ'ଣ ଉପଯୁକ୍ତ ଉପଚାର ନୁହେଁ । ବିଶ୍ୱରେ ଶାନ୍ତି ଆନ୍ଦୋଳନର ଯେଉଁମାନେ ଆଜି ଅଗ୍ରଦୂତ, ଭାରତ ଅବଶ୍ୟ ସେମାନଙ୍କ ଭିତରେ ଅନ୍ୟତମ । ମାତ୍ର ଏହା ସରକାରୀ ସ୍ତରରେ ସୀମାବଦ୍ଧ । ସାମାଜିକ ଜୀବନରେ ତାର ପ୍ରତିଫଳନ ପାଇଁ କି ବ୍ୟବସ୍ଥା ଅଛି ? ହିଂସାତ ମଣିଷର ଜନ୍ମଗତ ପ୍ରବୃତ୍ତି, ମଣିଷ ମନରୁ ସେ ପ୍ରବୃତ୍ତିକୁ କାଢ଼ିନେବା ପାଇଁ ନିରନ୍ତର ଯେଉଁ ଉଦ୍ୟମ ଚାଲିଛି, ତହିଁରେ ଭାରତର ଭୂମିକା କ'ଣ ? କୋଟି କୋଟି ବର୍ଷଧରି ହତ୍ୟା ରକ୍ତପାତର ବିଭତ୍ସ ଦୃଶ୍ୟ ଦେଖିଲା ପରେ ଶାନ୍ତିର ଅନ୍ୱେଷଣ କରିବାକୁ ମଣିଷ ନିବିଡ଼ ଅରଣ୍ୟକୁ ଯାଇ ତପସ୍ୟାରତ ଥିଲା । ବହୁକାଳ ତପସ୍ୟା ପରେ ଅନ୍ତରଆତ୍ମା ଚିତ୍କାର କରି କହିଲା, ଶାନ୍ତି ଅନ୍ୱେଷଣ କରୁଛତ । ହିଂସା ପରିତ୍ୟାଗ ନକରି ଶାନ୍ତି ପାଇବା ଅସମ୍ଭବ, ଶାନ୍ତି ମାର୍ଗ ଅହିଂସା । ଅହିଂସାର ମାର୍ଗ ହେଲା ଶୃଙ୍ଖଳା ଓ ସଂଯମ । ଧ୍ୟାନମଗ୍ନ ତପସ୍ୱୀ ଚିହିଁକି ଉଠିଲେ, ସେହିଦିନ ଠାରୁ ଆଜକୁ ହଜାର ହଜାର ବର୍ଷ ହେଲାଣି ଶାନ୍ତିର

ବାର୍ତ୍ତା ପ୍ରଚାରିତ ହେଉଛି ବେଦ, ଗୀତା, କୋରାନ ଏବଂ ଗ୍ରନ୍ଥ ସାହେବ ମାଧ୍ୟମରେ। ଶାନ୍ତି ବାର୍ତ୍ତାର ପ୍ରଚାର ସ୍ୱରୁପ ଆଜି ସାରା ବିଶ୍ୱରେ ଶାନ୍ତିଯଜ୍ଞ ଅନୁଷ୍ଠିତ ହେଉଛି। ଏପରି ଅବସ୍ଥାରେ ଗାନ୍ଧିଜୀ ଯେଉଁ ସାରାବିଶ୍ୱକୁ ଶାନ୍ତିର ମନ୍ତ୍ର ଦେଇଗଲେ ତାହା କିପରି ତାତ୍ପର୍ଯ୍ୟପୂର୍ଣ୍ଣ ତାହା କ'ଣ ବୁଝିବାକୁ ବାକିଅଛି। ତେବେ କାହଁକି ଏ ହିଂସା ଆଚରଣ ? ସଭ୍ୟତା ନାଁରେ କାହିଁକି ଏ ଉତ୍ସୃଙ୍ଖଳତା । କୌଣସି ଆଦର୍ଶ ଯେତେ ମହାର୍ଘ ହେଲେ ବି ମଣିଷ ତାକୁ ସବୁଦିନ ପାଇଁ ମନେ ରଖି ପାରେନାହିଁ କିମ୍ବା ସେ ଆଦର୍ଶ ତାର ଜୀବନକୁ ଶୃଙ୍ଖଳିତ କରି ରଖିପାରେ ନାହିଁ। ତେଣୁ ସେ ସବୁ ଆଦର୍ଶ ନିରନ୍ତର ପ୍ରଚାର ଆବଶ୍ୟକ। ଥରେ ଭାବନ୍ତୁ ଗାନ୍ଧୀଙ୍କର ସେ ଆଦର୍ଶବୋଧର ମହନୀୟତା ? ସ୍କୁଲ, କଲେଜ ମାନଙ୍କରେ ପାଠ୍ୟକ୍ରମ ହିସାବରେ ପ୍ରଚଳିତ ହେଲେ ଯୁବପିଢ଼ିଙ୍କୁ ତାହା କେତେ ପ୍ରଭାବିତ ନକରନ୍ତା। ଆଜିକାଲି ପଢ଼ା ଯାଉଥିବା କଳା ବିଦ୍ୟା ନିଯୁକ୍ତି କ୍ଷେତ୍ରରେ ପ୍ରବେଶ କଲା ପରେ ପ୍ରାୟ ଅଦରକାରୀ ହୋଇପଡୁଛି। ଖାଲି ଭାରତ ନୁହେଁ ସାରା ପୃଥିବୀର ଯେଉଁ ଶିକ୍ଷାବିତ୍‌ମାନେ ଶିକ୍ଷାଖସଡା ପ୍ରସ୍ତୁତ କରୁଛନ୍ତି ସେମାନଙ୍କୁ ଏକଥା କ'ଣ ଦିଶୁନାହିଁ ? ମଣି ଭାବି ବାଲିଗରଡ଼ାକୁ ସାଉଁଟିଲେ ତାହା କ'ଣ ମଣି ହୋଇଯିବ ? ଆମ ଦେଶର ସ୍କୁଲଠାରୁ ଆରମ୍ଭ କରି ବିଶ୍ୱବିଦ୍ୟାଳୟ ଶିକ୍ଷା ସମାପ୍ତ ପର୍ଯ୍ୟନ୍ତ ଆମ ଶିକ୍ଷା ବ୍ୟବସ୍ଥାର ବର୍ତ୍ତମାନ ଅବସ୍ଥା ଏଇଆ। କଳାରେ ଯେଉଁସବୁ ବିଷୟ ଆଜିକାଲି ଶିକ୍ଷା ଦିଆଯାଇଛି, ସେ ସବୁ ଇଂରେଜ ଅମଳରୁ ଚଳି ଆସୁଛି। ସ୍ୱାଧୀନତା ପରେ ମାନବ ନିର୍ମାଣ ଶିକ୍ଷାର ମୁଖ୍ୟ ଉଦ୍ଦେଶ୍ୟ ହେବା କଥା, ଏହି କାରଣରୁ ଶିକ୍ଷାକୁ ଗୁଣାତ୍ମକ କରିବାପାଇଁ ଆବଶ୍ୟକ ସଂସ୍କାର କ'ଣ ଉଚିତ ନୁହେଁ ? ଏ କ୍ଷେତ୍ରରେ ଭାରତର ଶିକ୍ଷାବିତ୍‌ମାନେ କେତେ ଦୂର ନିଜର କର୍ତ୍ତବ୍ୟ ପ୍ରତି ସଚେତନ ? ଏ ଏକ ଦୁର୍ଭାଗ୍ୟ ଜନକ ପରିସ୍ଥିତ। ଶିକ୍ଷାବିତ୍ ବୋଲାଇବାର ମାନେ ନୁହେଁ ମାନବ ନିର୍ମାଣର କୌଶଳ ନଜାଣି ପୁରୁଣା ଅନାବଶ୍ୟକ ପାଠର ବୋଝ ସବୁ ପିଲାଙ୍କ ଉପରେ ଲଦିଦେବା। ଶିକ୍ଷାବିତ୍ ମାନଙ୍କର ପ୍ରଧାନ କର୍ତ୍ତବ୍ୟ ହେଲା ଦେଶର ଆବଶ୍ୟକତା ଓ ପ୍ରତିଯୋଗିତାର ମାନସିକତା ସୃଷ୍ଟିକରି ପିଲାମାନଙ୍କୁ ଉତ୍ତମ ନାଗରିକେ

ହେବା ପାଇଁ ଗଢ଼ିତୋଳିବା । ଏହା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ଓ ଦାୟିତ୍ୱପୂର୍ଣ୍ଣ କାର୍ଯ୍ୟ । ଏହା ଉପରେ ନିର୍ଭର କରୁଛି ଦେଶର ଭବିଷ୍ୟତ । ବିଜ୍ଞାନ ଓ ବୈଷୟିକ ପାଠ କଥା ଛାଡ଼, ସେସବୁତ ବିଦେଶରୁ ଆମଦାନି । ସଂଯମ ଶୃଙ୍ଖଳାର ମଣିଷଟିଏ ପାଇବା ଆଜି ଯେପରି ଦୁର୍ଲ୍ଲର୍ଭ, ତ୍ୟାଗ, ସେବା ଓ ଦେଶପ୍ରିତୀର ମଣିଷଟିଏ ପାଇବା ବି ସେହିପରି ଦୁଷ୍କର । ବୃଥା ଦମ୍ଭ, ଅହଙ୍କାରଭରା ଅନ୍ତସାରଶୂନ୍ୟ ଦେହସର୍ବସ୍ୱ ମଣିଷ ଗଢ଼ିଦେଲେ ସଂସ୍କାର ସଂପନ୍ନ ସ୍ୱାଭିମାନର ସଭ୍ୟତାଟିଏ ତିଆରି ହୋଇପାରେ ନାହିଁ, ଏକଥା ଶିକ୍ଷାବିତମାନେ ବୁଝିବା ଦରକାର । ଦେଶର ଅର୍ଥନୀତି ଓ ଭୌତିକ ସଂପଦ ବଢ଼ୁଛି ସତ, କମିଯାଉଛି ଭାରତୀୟତା, କମିଯାଇଛି ସଂସ୍କାର ଓ ସ୍ୱାଭିମାନର ଜାତିୟତା । ଏସବୁ ଦିଗରେ ଶିକ୍ଷାବିତ୍‌ମାନେ ଆତ୍ମସମୀକ୍ଷା କରିବା ଜରୁରୀ । ରାଷ୍ଟ୍ର ନାୟକମାନେ ମଧ୍ୟ ଏ ଦିଗରେ ସଚେତନ ହେବା ଉଚିତ ।

ମହାମାନବ ହେଲେବି ଗାନ୍ଧିଜୀ ଥିଲେ ରକ୍ତମାଂସର ମଣିଷ । ତାଙ୍କର ଚାରିତ୍ରୀକ ଦୁର୍ବଳତା ବି ଥିଲା । ଜଣେ ସାଙ୍ଗଙ୍କ ସହିତ ସେ ଥରେ ଖଣ୍ଡିଏ ଛେଳିମାଂସ ଖାଇଥିଲେ । କିନ୍ତୁ ତାଙ୍କୁ ଢ଼ୋକିନେବା ସାଙ୍ଗେ ସାଙ୍ଗେ ବାନ୍ତି କରି ପକାଇଲେ । ରାତିରେ ଶୋଇଥିବା ବେଳେ ତାଙ୍କ ପେଟରେ ଛେଳିର ବୋବାଳି ଶୁଣି ସେ ଚମକି ଉଠିଲେ ଏବଂ ସେହିପରି ଭୁଲ୍ ଆଉ ନକରିବାକୁ ପ୍ରତିଜ୍ଞା କଲେ । ସେତେବେଳେ ଗାନ୍ଧିଥିଲେ ମାତ୍ର ୮ ବର୍ଷର ଜଣେ ନିରୀହ ନିଷ୍ପାପ ବାଳକ । ତାଙ୍କର ପିତା ଥିଲେ କାଥିଆୱାଡ଼ ରାଜ୍ୟର ପ୍ରଧାନମନ୍ତ୍ରୀ ଓ ମାତା ଥିଲେ ବ୍ରତ ଉପାସନାର ଧର୍ମପ୍ରାଣା ନିରୀହ ହିନ୍ଦୁ ରମଣୀଟିଏ । ଗାନ୍ଧି ବ୍ରାହ୍ମଣ ପରିବାରର ନଥିଲେ । ସେଥିଲେ ବୈଷ୍ୟ । ହିନ୍ଦୁ ଜାତିପ୍ରଥାରେ ଚାରି ବର୍ଣ୍ଣର ବ୍ୟବସ୍ଥା ଅଛି । ବ୍ରାହ୍ମଣ, କ୍ଷତ୍ରୀୟ, ବୈଷ୍ୟ ଓ ଶୁଦ୍ର । ଶୁଦ୍ରମାନଙ୍କ ଭିତରେ କେତେ ଉପଜାତି ଅସ୍ପୃଶ୍ୟ । ଗାନ୍ଧୀ ଥିଲେ ବୈଷ୍ୟ ବା ବାଣିଜ୍ୟ ବ୍ୟବସାୟ ସଂପ୍ରଦାୟର ଦାୟାଦ । ମାତ୍ର ନିଜର ନିଷ୍ଠା, ତ୍ୟାଗ, ଅଧ୍ୟବସାୟ, ଶୃଙ୍ଖଳା ଓ କର୍ତ୍ତବ୍ୟ ପରାୟଣତା ପାଇଁ ସେ ହୋଇ ଉଠିଲେ ସାରା ଭାରତର ଅଦ୍ୱିତୀୟ ଜନନାୟକ । ତାଙ୍କ ପରି ଜଣେ ଖର୍ବକାୟ ଅସୁନ୍ଦର ଆକୃତିର ମଣିଷଟିଏ ଦିନେ ସର୍ବଶକ୍ତିମାନ

ବିଶାଳ ଇଂରେଜ ସାମ୍ରାଜ୍ୟକୁ ଧରାଶାୟୀ କରି ସାରା ବିଶ୍ୱରେ ପ୍ରଚଳିତ ପରମ୍ପରାଗତ ରାଜତନ୍ତ୍ରକୁ ଭାଙ୍ଗି ଗଣତନ୍ତ୍ର ଶାସନର ମୂଳଦୁଆ ପକାଇବେ, ଏକଥା ଭାବିଲେ ଆଶ୍ଚର୍ଯ୍ୟ ଲାଗେ । ବେଦରେ କୁହାଯାଇଛି, ଧ୍ୟାନମୁଦ୍ରାରେ ବସି ଆତ୍ମା-ହୃଦୟ ଓ ମନକୁ ଏକ ବିନ୍ଦୁରେ ଠୁଳ କରିପାରିଲେ ଆତ୍ମାର ଯେଉଁ ଅନନ୍ତ ଶକ୍ତି ଜାଗ୍ରତ ହୁଏ, ତାହା ହିମାଳୟକୁ ଧରାଶୟୀ କରିପାରେ, ସମୁଦ୍ରର ଅତଳ ଜଳରାଶିକୁ ଶୁଷ୍କ କରି ପାରେ ଏବଂ ଦେବତାକୁ ଧରାବତରଣ କରିବା ପାଇଁ ବାଧକରି ପାରେ । ଏଥିପାଇଁ କୁହାଯାଏ କ୍ଷାତ୍ୟ ତେଜଠାରୁ ବ୍ରାହ୍ୟତେଜ ଅଧିକ ଶକ୍ତିଶାଳୀ । ଏହି ତେଜର ଅଧିକାରୀ ହୋଇଥିଲେ ମହାତ୍ମା ଗାନ୍ଧି । ସେଥିପାଇଁ ପୃଥିବୀର ଧର୍ମଗୁରୁ, ଶକ୍ତିଶାଳୀ ରାଜନେତା ଓ ପାଣ୍ଡିତ୍ୟରେ ମହାମେରୁ ମାନେ ଟଳି ପଡ଼ିଥିଲେ ତାଙ୍କର ଆଧ୍ୟାତ୍ମିକ ଚେତନାର ସରାଘାତରେ । ଭୟଙ୍କର ମାରଣାସ୍ତ୍ର, ଶକ୍ତିଶାଳୀ ବୋମା କିମ୍ବା ଉତ୍କଟ ବିଷଭାଣ୍ଡ ଯାହା ସାଧ କରିପାରେନା ତାହା ପାରେ ପ୍ରେମ ଓ ଅହିଂସା । ଏହା ନିଜ କର୍ମରେ ଦେଖାଇ ଦେଇ ସାରା ଦୁନିଆକୁ କରିଦେଲେ ସ୍ତବ୍ଧ, ଚକିତ । ପଦ୍ମତୋଳା ଗୀତରେ ବିଷଧର ସାପ ପେଡ଼ିରୁ ବାହାରି ମନ୍ତ୍ର ମୁଗ୍ଧ ହୋଇ ଶୁଣିଲା ପରି ସାରା ବିଶ୍ୱର ଲୋକେ ତାଙ୍କର ପ୍ରେମ ଓ ଅହିଂସାର ମନ୍ତ୍ର ଶୁଣି ଅସ୍ତ୍ରତ୍ୟାଗ କରି ଦେଇ ନିର୍ବାକ୍ ହୋଇ ଠିଆ ହୋଇଗଲେ । ତେବେ ଗାନ୍ଧୀ ଦର୍ଶନର ଏହି ତତ୍ତ୍ୱ ସହିତ ପରିଚିତ ହେବା କ'ଣ ଉଚିତ ନୁହେଁ ? କୁହାଯାଇଛି, ଏସବୁ ଏବେ ଅଚଳ ହୋଇଗଲାଣି । ସତ୍ୟ କେବେ ଅସତ୍ୟ ହୁଏନା । ମିଥ୍ୟାର ଅଳନ୍ଧୁରେ ମନ ଯେତେବେଳ ତମସାଛନ୍ନ ହୋଇଯାଏ, ସେତେବେଳେ ସବୁକିଛି ଅସ୍ପଷ୍ଟ ହୋଇଯାଏ । ସତ୍ୟ ଓ ଅହିଂସା ତତ୍ତ୍ୱର ସର୍ବକାଳୀନ ବିଜୟ ବାର୍ତ୍ତା ସେଇମାନଙ୍କୁ ଅଚଳ ବୋଲି ଜଣାଯାଏ । ମାତ୍ର ତେର ବର୍ଷ ବୟସରେ ଗାନ୍ଧି ଜଣେ ଅଜଣା ଅଶୁଣା କସ୍ତୁରବା ନାମକ ନିରକ୍ଷର ଝିଅଙ୍କୁ ବିବାହ କରିଥିଲେ । ଏପରି ଛୋଟ ବୟସରେ ବିବାହ କରିବା ଭାରତରେ ଥିଲା ସେତେବେଳର ଚଳଣୀ । ତରୁଣ ଗାନ୍ଧି ଉଦ୍ଦାମ ଯୌବନରେ ଦିନେ ପିତା ତାଙ୍କର ରୋଗ ଶଯ୍ୟାରେ ପଡ଼ିଥିଲା ବେଳେ ସେ ଯାଇ ସ୍ତ୍ରୀଙ୍କ ସହ ରତିକ୍ରୀଡ଼ା କରୁଥିଲେ । ହଠାତ୍ ଜଣେ ଦୁଆର

ଫିଟେଇ ଦେଇ କହିଲା ପିତା ଚାଲିଗଲେ । ସେଇ ଗାନ୍ଧି ଦିନେ ସଂଯମର ଅଦ୍ଭୁତ ମନ୍ତ୍ରଶକ୍ତିକୁ ଉଦ୍‌ଭାବନ କରିବେ, ଭାବିଲେ ଆଶ୍ଚର୍ଯ୍ୟ ଲାଗେ । ପିତୃଭକ୍ତ ଗାନ୍ଧି ପିତାଙ୍କ ମୃତ୍ୟୁ ଖବର ଶୁଣି ଦୁଃଖରେ ଅଧିର ହୋଇପଡ଼ିଲେ । କିଛି ସମୟ ପୂର୍ବରୁ ସେ ମୁମୂର୍ଷୁ ପିତାଙ୍କ ଶଯ୍ୟାଧାରରେ ବସି ପାଦସେବା କରୁଥିଲେ । ସେ ପୁଣି ଉଠିଯାଇ ଗର୍ଭବତୀ ସ୍ତ୍ରୀଙ୍କ ସହିତ ରତିକ୍ରୀଡ଼ା କରୁଥିଲେ, ପିତାଙ୍କ ମୃତ୍ୟୁ ଖବର ତାଙ୍କୁ ବିଚଳିତ କରିଦେଲା । ହଠାତ୍ ଇନ୍ଦ୍ରୀୟ ସୁଖ ତାଙ୍କ ପାଇଁ ବିଷତୁଲ୍ୟ ମନେ ହେଲା, ମନ ତାଙ୍କର ବିଶାଦରେ ଭରିଗଲା । ସମ୍ଭବତ ସେଇ ଦିନ ଠାରୁ ଇନ୍ଦ୍ରିୟ ସଂଯମ ଓ ତାପରେ ବ୍ରହ୍ମଚର୍ଯ୍ୟ ପ୍ରତି ତାଙ୍କର ଆସିଲା ଗଭୀର ଅନୁରକ୍ତି । ପିତାଙ୍କର ମୃତ୍ୟୁ ପରେ ସେ ଲଣ୍ଡନ ଯାତ୍ରା କଲେ ଆଇନ ବିଦ୍ୟା ପଢ଼ିବାକୁ । କାରଣ ସେ ଭାବିଥିଲେ ଆଇନ ପଢ଼ିଲେ ସେ ହୋଇପାରିବେ ଏକ ଦେଶୀୟ ରାଜ୍ୟର ପ୍ରଧାନମନ୍ତ୍ରୀ । ମାତ୍ର ତାଙ୍କ ରକ୍ଷଣଶୀଳ ସମାଜ ବାସନ୍ଦ କଲା । କାରଣ ସେମାନଙ୍କର ଧାରଣା ଥିଲା, ଦରିଆପାରି ହୋଇ ବିଦେଶକୁ ଗଲେ ଅଜାତି ହୋଇଯାଆନ୍ତି । ଥରେ ବେଶ୍ୟାଳୟକୁ ଯିବା ପାଇଁ ମଧ୍ୟ ସେ ଭୁଲି ନାହାନ୍ତି, ଯଦିଓ ଏହା ଥିଲା ତାଙ୍କର ଏକ ବୃଥା ପ୍ରୟାସ । ତାଙ୍କର ଅତ୍ୟଧିକ ଲାଜକୁଳା ଢ଼ଙ୍ଗକୁ ନେଇ ସହପାଠୀମାନେ କୌତୁକ କରୁଥିଲେ । ତାଙ୍କ ନିମ୍ନମାନର ପୋଷାକ ଓ କ୍ଷୁଦ୍ରାକାୟ ବ୍ୟକ୍ତିକୁ ନେଇ ସହପାଠିମାନେ ଏକ କାର୍ଟୁନ ବ୍ୟବହାର କରୁଥିଲେ । ଏପରି ଉପହାସର ପାତ୍ର ହୋଇ ରହିବା ତାଙ୍କ ପକ୍ଷରେ କଷ୍ଟକର ହେଲା । କୌଣସି କେଶ୍ ଲଢ଼ିବାକୁ ସେ ଯେତେବେଳେ କୋର୍ଟକୁ ଯାଉଥିଲେ ସେତେବେଳ ତାଙ୍କୁ ହଟହଟ୍ଟା ହେବାକୁ ପଡୁଥିଲା । ଏଥିରେ ବ୍ୟସ୍ତ ବିବ୍ରତ ହୋଇ ଭାରତ ପଳାଇ ଆସିଲେ ଏବଂ ମାସ ମାସ ଧରି ବମ୍ବେର ଏକ କୋର୍ଟରେ କେଶଟିଏ ପାଇବା ପାଇଁ ବୁଲିଲେ ମଧ୍ୟ କେଶ୍‌ଟିଏ ମିଳିଲା ନାହିଁ । ଯେଉଁଠି ବି ମିଳିଲା ସେଠାରେ କୌଣସି ବିଚାରପତିଙ୍କୁ ମାମଲାଟିରେ ଜିତିବା ପାଇଁ ବୁଝାଇ ପାରିଲେ ନାହିଁ । ସବୁ କାମରେ ଅସଫଳ ଗାନ୍ଧି ଯେ ଦିନେ ତିରିଶ କୋଟି, ଭାରତୀୟଙ୍କୁ ନିଜ ବଳିଷ୍ଠ ବ୍ୟକ୍ତିତ୍ୱ ବଳରେ ମୁଗ୍ଧ ଚକିତ କରିଦେବେ, ଏ ବିଶ୍ୱାସ

କାହାରି ନଥିଲା । ଏହାପରେ ଜଣେ ବଡ଼ ବ୍ୟବସାୟୀଙ୍କର ଗୋଟିଏ ଆଇନଗତ ମାମଲାର ସମାଧାନ ପାଇଁ ସେ ଦକ୍ଷିଣ ଆଫ୍ରିକା ଯାତ୍ରା କଲେ । ସମ୍ଭବତଃ ଏହି ଯାତ୍ରା ହିଁ ତାଙ୍କ ଜୀବନର ଗତିପଥ ବଦଳାଇ ଦେବାର ପ୍ରଧାନ କାରଣ ଥିଲା । ମକଦ୍ଦମାଟି ଲଢିବା ପାଇଁ ମାତ୍ର କେଇ ସପ୍ତାହ ପାଇଁ ଦକ୍ଷିଣ ଆଫ୍ରିକାକୁ ଯାଇଥିଲେ ମଧ୍ୟ ସେଠାରେ ସେ ଦୀର୍ଘ କୋଡ଼ିଏ ବର୍ଷରୁ ଅଧିକ ସମୟ ରହିଗଲେ । ୧୮୯୩ ମସିହାରେ ସେ ଦକ୍ଷିଣ ଆଫ୍ରିକାରେ ପହଞ୍ଚିଲା ପରେ ଆରମ୍ଭ ହେଲା ତାଙ୍କ ଜୀବନରେ ବୈରାଗ୍ୟର ପର୍ବ ଓ ସେ ଏକ ସଂଯତଃ ସାଧୁର ଜୀବନଯାପନ କରିବାକୁ ମନ ସ୍ଥିର କଲେ । ମାତ୍ର ଗୋଟିଏ ସପ୍ତାହ ପରେ ସେ ଯେତେବେଳେ ଡ଼ରବାନଠାରୁ ପ୍ରୋଟୋରିଆ ରେଳଯାତ୍ରା କରୁଥିଲେ ସେତେବେଳେ ଦୁଃଖଦ ଘଟଣା ତାଙ୍କ ମନରେ ଗଭୀର ରେଖାପାତ କଲା । ତାଙ୍କ ପାଖରେ ପ୍ରଥମ ଶ୍ରେଣୀ ଯାତ୍ରା ପାଇଁ ଟିକେଟଟିଏ ଥିଲେ ମଧ, ସଂପୃକ୍ତ ଇଂରେଜ ଜଣେ ତାଙ୍କୁ ତାଙ୍କର ବ୍ୟାଗପତ୍ର ନେଇ ବାହାରି ଯିବାକୁ କହିଲେ । ଗାନ୍ଧି ପ୍ରତିବାଦ କଲେ । ମାତ୍ର ପରବର୍ତ୍ତୀ ଷ୍ଟେସନରେ ସେଇ ଇଂରେଜ ଟିକଟ ନୀରିକ୍ଷକ ଜଣକ ରାତି ଅଧରେ ତାଙ୍କର ବ୍ୟାଗପତ୍ର ବାହାରକୁ ଫିଙ୍ଗି ଦେଇ ତାଙ୍କୁ ରେଳରୁ ବାହାର କରିଦେଲେ । ବାହାରେ ପ୍ରବଳ ଥଣ୍ଡା । ମାତ୍ର ତାଙ୍କ ବ୍ୟାଗରୁ କୋର୍ଟ ଖଣ୍ଡିକ କାଢ଼ିବା ପାଇଁ ଲାଜକୁଳା ଗାନ୍ଧି ଷ୍ଟେସନ ମାଷ୍ଟରଙ୍କୁ ଜଣାଇ ପାରିଲେ ନାହିଁ । ଏହାହିଁ ଥିଲା ତାଙ୍କ ପାଇଁ ବର୍ଣ୍ଣ ବୈଷମ୍ୟ ନୀତିର ପ୍ରଥମ ଅମାନୁଷିକ ଅତ୍ୟାଚାର । ପ୍ରଚଣ୍ଡ ଶୀତରେ ଥରି ଥରି ଗୀତାର ପ୍ରେରଣାରେ ସେ ବସିପଡ଼ିଲେ ପ୍ରାର୍ଥନାରେ । ସାରା ବିଶ୍ୱରେ ସର୍ବଶ୍ରେଷ୍ଠ ଦେବୋପମ ଜନନାୟକ ଭାବେ ପୂଜା ପାଇବାକୁ ଜନ୍ମ ଯାହାଙ୍କର ଅଭିପ୍ରେତ, ସେ କ'ଣ ଏଥିରେ ଭାଙ୍ଗି ପଡ଼ିଥାନ୍ତେ ? ରାତି ପାହିଲା, ଧ୍ୟାନରୁ ଉଠିଲେ ଗାନ୍ଧି, ହଠାତ୍ ତାଙ୍କ ପାଟିରୁ ବାହାରି ପଡ଼ିଲା ବଜ୍ରକଣ୍ଠର ସ୍ୱର ନା, ଏ ଅନ୍ୟାୟ ଅସହ୍ୟ, ମୁଁ ଏହାର ପ୍ରତିବାଦ କରିବି, ଗାନ୍ଧି ପାଲଟି ଗଲେ ଭିନ୍ନ ମଣିଷ । ଲାଜକୁଳା ନିରୀହ ଗାନ୍ଧି ଭୀଷ୍ମର ଅଟଳ ପ୍ରତିଜ୍ଞା କରି ଠିଆ ହୋଇ ମନେମନେ ଆବୃତ୍ତି କଲେ । "ହେ ଭଗବାନ ମୋତେ ଶକ୍ତି ଓ ସାହାସ ଦିଅ" । ଗୋଟିଏ ସପ୍ତାହ

ପରେ, ପ୍ରଥମ ଥର ପାଇଁ ପ୍ରୋଟୋରିଆର ଭାରତୀୟ ମାନଙ୍କୁ ଅତ୍ୟାଚାରୀ ଇଂରେଜମାନଙ୍କ ଭାଷାରେ ଉଦ୍‌ବୋଧନ ଦେଇ କହିଲେ "ଇଂରେଜମାନଙ୍କର ଅତ୍ୟାଚାର ବିରୁଦ୍ଧରେ ପ୍ରତିବାଦ କରିବାକୁ ଏକଜୁଟ ହୁଅ, ଏହା ତୁମ ନିଜର ସ୍ୱାର୍ଥ ରକ୍ଷା କରିବ।" ଏହାଥିଲା ତାଙ୍କର ପ୍ରଥମ ପ୍ରତିବାଦ ଇଂରେଜ ମାନଙ୍କର ଅତ୍ୟାଚାର ବିରୁଦ୍ଧରେ। ସେ କହିଲେ "ଭାରତୀୟମାନଙ୍କୁ ପ୍ରଥମ ଶ୍ରେଣୀ ରେଳ ଯାତ୍ରା କରିବାକୁ କେହି ବାରଣ କରି ପାରିବେ ନାହିଁ," ଏହା ତାଙ୍କର ହକ୍, ତାଙ୍କ ପ୍ରତି ବଢୁଥିବା ଆଦର ଦେଖି ସେ ସେଠାରେ ରହିବାକୁ ନିଷ୍ପତ୍ତି ନେଲେ। ତାପରେ ଆସିଲା ଗୋଟିଏ ସୁଯୋଗ ଯେତେବେଳେ ଆଉ ଥରେ ଲମ୍ୱା ରେଳଯାତ୍ରା କଲାବେଳେ ଜଣେ ଇଂରେଜ ବନ୍ଧୁଙ୍କ ଠାରୁ ପଢ଼ିବାକୁ ମିଳିଲା John Raskin ଙ୍କର ଖଣ୍ଡିଏ ପୁସ୍ତକ ୧୯୦୪ ମସିହାରେ। ସେତେବେଳେକୁ ଦକ୍ଷିଣ ଆଫ୍ରିକା ଯିବାର ଦଶବର୍ଷ ବିତିଯାଇଥିଲା ଏବଂ ଭାରତୀୟ ମାନଙ୍କର ନେତୃତ୍ୱ ନେବା କ୍ଷେତ୍ରରେ ତଥା ଆଇନ ବ୍ୟବସାୟରେ ସେ ଜଣେ ସୁଦକ୍ଷ ନେତା ଓ ଖ୍ୟାତନାମା ଓକିଲ ଭାବରେ ଖ୍ୟାତି ଅର୍ଜନ କରିଥିଲେ। ଇଂରେଜ ମାନଙ୍କର ବର୍ଣ୍ଣବୈଷମ୍ୟ ନୀତି ସର୍ତ୍ତ୍ୱେ ସେ ସମୟରେ କ୍ଷତ ବିକ୍ଷତ ମାନଙ୍କ ପାଇଁ ଏକ ସେବା ଦଳର ନେତୃତ୍ୱ ନେଉଥିଲା। ଜୋହାନସ୍‌ବର୍ଗଠାରୁ ଡ଼ର୍ବାନ ଯିବାବେଳେ ରାତିସାରା ବସି Raskinଙ୍କ ସେଇ ପୁସ୍ତକଟିକୁ ପଢ଼ି ଶେଷ କରି ଦେଲେ ଏବଂ ସକାଳ ହେଲା ମାତ୍ରେ ନିଜର ସବୁ କିଛି ପରିତ୍ୟାଗ କରିଦେଇ Raskinଙ୍କ ଚିନ୍ତାଧାରାରେ ନିଜକୁ ପରିଚାଳିତ କରବା ପାଁଇ ଶପଥ ଗ୍ରହଣ କଲେ। ଏଇ ଘଟଣା ତାଙ୍କ ଜୀବନର ଗତିପଥକୁ ସମ୍ପୂର୍ଣ୍ଣ ବଦଳାଇ ଦେଲା। Raskinଙ୍କ ବହିରୁ ପଢ଼ିଲେ, ଜଣେ ଓକିଲ ଯେମିତି ମୋକଦ୍ଦମା ଲଢ଼ିବା ପାଇଁ ଯୁକ୍ତି କରେ, ଠିକ୍ ସେହିପରି ଜଣେ ଶ୍ରମିକ ଜମିମାଲିକ ସହିତ ଯୁକ୍ତି କରେ ଏବଂ ଶ୍ରମ କରି ଜୀବନ ଜୀବିକା ନିର୍ବାହ କରିବା ଏକ ଉତ୍ତମ ଜୀବନ। ଗାନ୍ଧିଜୀ ସେତେବେଳକୁ ଆଇନ ବ୍ୟବସାୟରୁ ପ୍ରଚୁର ଅର୍ଥ ଉପାର୍ଜନ କରୁଥିଲେ ଏବଂ ଜଣେ ଧନୀ ଲୋକର ମାନ୍ୟତା ପାଇଥିଲେ। ତଥାପି ସବୁ ଭୌତିକ ବିଭବ ପରିତ୍ୟାଗ କରିବାର ନିଷ୍ପତ୍ତି ଦୁଇ ବର୍ଷ ପର୍ଯ୍ୟନ୍ତ ତାଙ୍କ

ମନକୁ ଆନ୍ଦୋଳିତ କରୁଥିଲା । କିନ୍ତୁ ଭୌତିକ ବିଭବ ପରିତ୍ୟାଗ କରିବା, ଜଣେ ଆଧାତ୍ମିକ ଚେତନାଶୀଳ ବ୍ୟକ୍ତି ପକ୍ଷରେ ଏକାନ୍ତ ଆବଶ୍ୟକ । କାରଣ ଏହା ମଣିଷକୁ କ୍ରମେ ଲୋଭ, ମୋହ ଓ କ୍ରୋଧରୁ ମୁକ୍ତ କରେ । ସେଥିପାଇଁ ନିଜ ଚୁଟି କାଟିବା, ନିଜ ଲୁଗା ସଫା କରିବା ଏବଂ ନିଜ ପାଇଖାନା ପରିଷ୍କାର ସେ ନିଜେ କରିବାକୁ ଆରମ୍ଭ କଲେ ଏବଂ ଏହାଦ୍ୱାରା ଲୋଭ ମୋହରୁ କ୍ରମେ କ୍ରମେ ସେ ମୁକ୍ତ ହେଉଛନ୍ତି ବୋଲି ଅନୁଭବ କଲେ । ଫଳରେ ଗୀତା ନିର୍ଦ୍ଦିଷ୍ଟ ବୈରାଗ୍ୟର ତତ୍ତ୍ୱ ତାଙ୍କୁ ଉଦ୍‌ବୁଦ୍ଧ କଲା ଏବଂ ସେ ଅଧିକରୁ ଅଧିକ ନିର୍ମଳ ଚିତ୍ତ ହେବାକୁ ଲାଗିଲେ । ଏହା ପରେ ଡ଼ରବାନଠାରୁ ୧୪ ମାଇଲ ଦୂରରେ Phoeneix ଠାରେ ଏକଶହ ଏକର ପରିମିତଏକ ବଣୁଆ ବୃକ୍ଷଲତା ଓ ଅସଂଖ୍ୟ ସାପରେ ପରିପୂର୍ଣ୍ଣ ଜାଗାରେ କେତେକ ବନ୍ଧୁମାନଙ୍କୁ ନେଇ ପରିବାର ସହ ରହିଲେ । ଏହା ପରଠାରୁ ଅତି ସରଳ ଜୀବନ ଅତିବାହିତ କଲେ, ଯାହା ଜୀବନର ଶେଷ ପର୍ଯ୍ୟନ୍ତ ଅବ୍ୟାହତ ରହିଲା । ତାଙ୍କ ବିଚାରରେ ସବୁ ଶ୍ରମର ମୂଲ୍ୟ ସମାନ ଓ ପ୍ରତ୍ୟେକ ଦ୍ରବ୍ୟକୁ ଉପଭୋଗ କରିବା ପାଇଁ ସମସ୍ତଙ୍କ ଅଧିକାର ଅଛି । ସେ ଭାବିଲେ ଆଉ ଗୋଟିଏ କଥା ବାକି ରହିଲା । ତ୍ୟାଗ ଏବଂ ତାହେଲା ଯୌନ ସଂପର୍କ ବ୍ରହ୍ମଚର୍ଯ୍ୟ ପାଳନ କରିବା ପାଇଁ । ସେ ପ୍ରତିଜ୍ଞା କଲେ ଆଉ କେବେ ଯୌନକ୍ରିୟା କରିବେ ନାହିଁକି ଆଉ ଗୋଟିଏ ସନ୍ତାନର ପିତା ହେବେ ନାହିଁ । ଅବଶ୍ୟ ଏ ନିଷ୍ପତ୍ତି ଅନେକ ଦିନ ପର୍ଯ୍ୟନ୍ତ ତାଙ୍କ ମନକୁ ଆନ୍ଦୋଳିତ କଲା । ତାଙ୍କର ସେ କଠୋର ପ୍ରତିଜ୍ଞା ଭାଙ୍ଗି ଦେବାକୁ ବେଳେ ବେଳେ ତାଙ୍କ ମନରେ ଭାବାନ୍ତର ଜନ୍ମୁଥିଲା । ମାତ୍ର ସେସବୁ ତାଙ୍କ ପ୍ରତିଜ୍ଞାର ପାହାଡ଼ରେ ବାଜି ଭାଙ୍ଗି ଖଣ୍ଡ ଖଣ୍ଡ ହୋଇ ପଡୁଥିଲା । ସମସ୍ତ ଉତ୍ତେଜନାରୁ ମୁକ୍ତ ରହି ନିଜକୁ ଶାନ୍ତ, ସ୍ଥିର ଓ ଅବିଚଳିତ କରି ରହିବାକୁ ସେ ପ୍ରାଣ ପଣେ ଚେଷ୍ଟା କରୁଥିଲେ । ଏ ଦିଗରେ ଗୀତା ଥିଲା ପ୍ରେରଣାର ଉତ୍ସ ଓ ଗୀତା ତତ୍ତ୍ୱରେ ତାଙ୍କର ଥିଲା ଗଭୀର ବିଶ୍ୱାସ । ସମସ୍ତ ଭୌତିକ ବିଭବ ପରିତ୍ୟାଗ କରିବାକୁ ପ୍ରତିଜ୍ଞା କଲା ପରେ ସଂଯମ ପ୍ରତି ସେ ସର୍ବଦା ସଚେତନ ଥିଲେ । ଏହାହିଁ ତାଙ୍କୁ ସର୍ବଦା ଶାନ୍ତ ଓ ସ୍ଥିର ଚିତ୍ତ କରି

ରଖିଥିଲା । ୧୯୦୬ ମସିହାରେ ସେ ବ୍ରହ୍ମଚର୍ଯ୍ୟ ପାଳନ କରିବାକୁ ତାଙ୍କ ପ୍ରତିଜ୍ଞା କଥା ପତ୍ନୀ କସ୍ତୁରବାଙ୍କୁ ଜଣାଇ ଦେଲେ । ମାତ୍ର ୧୩ ବର୍ଷ ବୟସରେ ଯେଉଁ ଯୌନ ଉତ୍ତେଜନା ତାଙ୍କୁ ବିଚଳିତ କରୁଥିଲା, ୩୭ ବର୍ଷ ବୟସ ବେଳକୁ ତାହା ସଂପୂର୍ଣ୍ଣ ଭାବେ ତାଙ୍କର ଆୟତ୍ତ ହୋଇ ଯାଇଥିଲା । ଗାନ୍ଧିଙ୍କ ବିଚାରରେ ବ୍ରହ୍ମଚର୍ଯ୍ୟର ଅର୍ଥ କେବଳ ଯୌନଚାର ନୁହେଁ । ଗୀତା ବିଚାରରେ ଆସକ୍ତିରୁ ମୁକ୍ତି, ଅର୍ଥ, କାମ, କ୍ରୋଧ, ଲୋଭ, ମୋହ ଓ ମାତ୍ସର୍ଯ୍ୟ, ଅର୍ଥାତ୍ ଭାବାବେଶରୁ ମୁକ୍ତି । ଖାଦ୍ୟପେୟ ଉପରେ କଠୋର ନିୟନ୍ତ୍ରଣ, ବାକ୍ୟରେ ଚରମ ସଂଯମ, କ୍ରୋଧ ବର୍ଜନ ଏବଂ ହିଂସା ଓ ଘୃଣା ପରିହାର । ଏସବୁ ବ୍ରହ୍ମଚର୍ଯ୍ୟ ଅନ୍ତର୍ଭୁକ୍ତ ଏବଂ ସ୍ଥିତପ୍ରଜ୍ଞର ଲକ୍ଷଣ । ଗାନ୍ଧି ଯେଉଁସବୁ ପ୍ରତିଜ୍ଞା କରୁଥିଲେ ତାଙ୍କୁ ଜୀବନର ଶେଷ ପର୍ଯ୍ୟନ୍ତ ନିଷ୍ଠାର ସହ ପାଳନ କରୁଥିଲେ । ଏହି କାରଣରୁ ଦେହ ଧାରଣ କରି ମଧ୍ୟ ଦେହାତୀତ ସ୍ଥିତିରେ ବିଚରଣ କରୁଥିଲେ । ଥଣ୍ଡା, ଗରମ, ସ୍ୱାଦ ଇତ୍ୟାଦି ସମସ୍ତ ଇନ୍ଦ୍ରିୟାନୁଭୂତିର ଊର୍ଦ୍ଧ୍ୱରେ ରହି ଜୀବନରେ ଆନନ୍ଦ ଅନୁଭବ କରୁଥିଲେ । ବ୍ରହ୍ମଚର୍ଯ୍ୟର ଏହି ଅଲୌକିକ ଶକ୍ତି ତାଙ୍କୁ ଜଣେ ତେଜସ୍ୱୀ ବୀର ଭାବରେ ସାରାବିଶ୍ୱରେ ପ୍ରତିଷ୍ଠିତ କରିଦେଲା । ଯେଉଁ ଦୁଇଟି ତତ୍ତ୍ୱ ଉଦ୍‌ଭାବନ କରି ସେ ବିଶ୍ୱବନ୍ଦିତ ହୋଇଗଲେ, ତା ହେଲା ଅହିଂସା ଓ ଆଇନ ଅମାନ୍ୟ ଆନ୍ଦୋଳନ ।

"କେହି ଯେବେ ତୁମର ଗୋଟିଏ ଗାଲରେ ଚାପୁଡ଼ାଟିଏ ମାରେ, ତେବେ ତାକୁ ଅନ୍ୟ ଗାଲଟି ଦେଖାଇ ଦିଅ ।" ବାଇବେଲର ଏହି ବାଣୀ ଗାନ୍ଧିଙ୍କୁ ଗଭୀର ଭାବରେ ପ୍ରଭାବିତ କଲା ଏବଂ ଏହାହିଁ ଥିଲା ତାଙ୍କ ଅହିଂସା ଆଚରଣର ପ୍ରଥମ ପ୍ରେରଣା । ଏହି ପ୍ରେରଣା ବଳରେ ଇଂରେଜମାନଙ୍କ ଠାରୁ ଅନେକ ପ୍ରହାର ସହିଯିବାକୁ ସେ ସମର୍ଥ ହୋଇଥିଲେ । ସେ ନିଶ୍ଚିତ ଥିଲେ ଯେ ମାରିପିଟି କେହି କାହାର ବିଶ୍ୱାସକୁ ବଦଳାଇ ଦେଇପାରେ ନାହିଁ । ଏହା କେବଳ ହିଂସାର ଅନଳକୁ ପ୍ରଜ୍ୱୋଳିତ କରି ପ୍ରତିପକ୍ଷକୁ ଅଧିକ କ୍ରୋଧାନ୍ୱିତ କରେ । ତେଣୁ ଏକତା ବଳରେ ଯେଉଁ ସଂଗଠିତ ଶକ୍ତି ମିଳେ ତାକୁ ପ୍ରତି ଆକ୍ରମଣ ଦ୍ୱାରା ଅପଚୟ ନକରି ଭଲ କାମରେ ଲଗାଇବା

ଦରକାର, ଏହା ଥିଲା ତାଙ୍କର ବିଚାର । ଧିର ପାଣି ପଥର କାଟିବା ନ୍ୟାୟରେ ଭଲ ଫଳ ପାଇଁ ଅସୀମ ଧୈର୍ଯ୍ୟ ଆବଶ୍ୟକ । ସେ ଏହି ଦର୍ଶନତତ୍ତ୍ୱକୁ ପୂର୍ଣ୍ଣମାତ୍ରାରେ ନିଜଠାରେ ପ୍ରୟୋଗ କରିବା ପାଇଁ ସୁଯୋଗ ପାଇଥିଲେ ଦକ୍ଷିଣ ଆଫ୍ରିକା ସରକାରଙ୍କର ବର୍ବରୋଚିତ ଅତ୍ୟାଚାରର ଶୀକାର ହେଲାବେଳେ ୧୯୦୬ ମସିହାରେ । ଘଟଣାଟି ଥିଲା ଏହିପରି - ସେଠାକାର ଆଇନ ଅନୁସାରେ ଆଠବର୍ଷରୁ ଉର୍ଦ୍ଧ୍ୱ ପ୍ରତ୍ୟେକ ଭାରତୀୟମାନଙ୍କୁ ଟିପଚିହ୍ନ ଦେଇ ଏକ ସ୍ୱତନ୍ତ୍ର ପରିଚୟ ପତ୍ର ହାସଲ କରିବାକୁ ବାଧ କରାଇଲା । ସେପ୍ଟେମ୍ବର ମାସ ୧୧ ତାରିଖରେ Empire thedre ଠାରେ ରୁଣ୍ଡ ହୋଇଥିବା ଅସନ୍ତୁଷ୍ଟ ଭାରତୀୟ ମାନଙ୍କର ନେତୃତ୍ୱ ନେଇ ଏ ଅନ୍ୟାୟର ପ୍ରତିବାଦ କରିବାକୁ ଉଦ୍‌ବୋଧନ ଦେଲେ । ସେ କହିଲେ ଏ ଆଇନକୁ ମାନିଗଲେ ସେମାନଙ୍କର ସଂପ୍ରଦାୟ ଧ୍ୱଂସ ପାଇଯିବ । ତେଣୁ ମୁଁ ମରିବି ପଛେ, ଏ ଆଇନକୁ ମାନିବି ନାହିଁ । ଜୀବନର ପ୍ରଥମ ଥର ପାଇଁ ଏହି ସଭାରେ ଈଶ୍ୱରଙ୍କ ନାମରେ ଶପଥ କରି କହିଲେ, ପରିଣତି ଯାହା ହେଉ ପଛେ ଭାରତୀୟମାନେ ଏ ଆଇନର ପ୍ରତିବାଦ କରିବେ । ଆଇନ ଅମାନ୍ୟ ଆନ୍ଦୋଳନର ଏହା ଥିଲା ତାଙ୍କର ପ୍ରଥମ ନେତୃତ୍ୱ ଏବଂ ଅହିଂସା ତତ୍ତ୍ୱର ପ୍ରଥମ ପରୀକ୍ଷା । କାରଣ ଏ ପ୍ରତିବାଦର ମୂଳମନ୍ତ୍ର ଥିଲା ଅହିଂସା । ଏହି Empire thedre ଠାରେ ଅନୁଷ୍ଠିତ ପ୍ରତିବାଦ ସଭାକୁ ସତ୍ୟାଗ୍ରହ ବୋଲି ଆଖ୍ୟା ଦିଆଗଲା ଏବଂ ଟିପଚିହ୍ନ ନ ଦେବାକୁ ପ୍ରତ୍ୟେକ କେନ୍ଦ୍ରରେ ଧାରଣା ଦେବାକୁ ସେ ଲୋକଙ୍କୁ ସଂଗଠିତ କଲେ । ଏହା ମଧ୍ୟ ଥିଲା ତାଙ୍କ ଜୀବନର ପ୍ରଥମ Boy cott କୌଶଳ । ଏଥିପାଇଁ ତାଙ୍କୁ ଜେଲ ଯିବାକୁ ପଡ଼ିଲା ଏବଂ ଜେଲରେ ଥାଇ ମଧ୍ୟ ସେ ଧର୍ମବିଦ୍ୱେଷ ନୀତିର ପ୍ରତିବାଦ କଲେ । ତାଙ୍କର ଏହି ପ୍ରତିବାଦ ତାଙ୍କୁ ଭବିଷ୍ୟତ ଜୀବନରେ ବିପୁଳ ପ୍ରେରଣା ଦେଇଥିଲା । ଆମେରିକାର ଦାସତ୍ୱ ନୀତି ବିରୁଦ୍ଧରେ ସେ ମେକ୍ସିକୋଠାରେ ଯେଉଁ ପ୍ରତିବାଦର ସଂଘର୍ଷ ଚାଲିଥିଲା ସେ ସଂପର୍କରେ ପ୍ରକାଶିତ ଏକ ସନ୍ଦର୍ଭ ଗାନ୍ଧିଜୀଙ୍କ ନଜରକୁ ଆସିଲା । ସ୍ୱାଧିନତା ପ୍ରତ୍ୟେକ ବ୍ୟକ୍ତିର ଏକ ଅଧିକାର ବୋଲି ଉଲ୍ଲେଖ କରି ଲେଖିଥିଲେ । ଗାନ୍ଧିଙ୍କ ଭିତରେ ଜଳୁଥିବା ବର୍ଣ୍ଣବୈଷମ୍ୟ

ବିରୋଧି ନିଆଁକୁ ଏହି ସନ୍ଦର୍ଭ ପ୍ରଜ୍ୱୋଳିତ କଲା । ସେ ଜେଲରୁ ଖଲାସ ହେଲା ପରେ ଭାରତୀୟ ମାନଙ୍କ ପାଇଁ Transval ସୀମାନ୍ତ ବନ୍ଦ କରିଥିବା ନିଷ୍ପତ୍ତି ବିରୁଦ୍ଧରେ ଗାନ୍ଧିଜୀ ୧୮୯୩ ମସିହା ନଭେମ୍ବର ମାସ ୯ ତାରିଖରେ ୨୦୩୭ ପୁରୁଷ, ୧୨୭ ଜଣ ମହିଳା ଓ ୫୪ ଜଣ ଶିଶୁଙ୍କର ଏକ ପଟୁଆରର ନେତୃତ୍ୱ ନେଇ ସୀମାନ୍ତ ଅଞ୍ଚଳକୁ ଅହିଂସା ପଦଯାତ୍ରା କଲେ। ସେ ଜାଣିଥିଲେ ଯେ, ପୋଲିସ ସେମାନଙ୍କ ଉପରେ ନିର୍ମମ ପ୍ରହାର କରି ଜେଲ ଦଣ୍ଡଦେବ, ତଥାପି ନିର୍ଭୟ ସେମାନେ; ଗାନ୍ଧିଙ୍କର ଅହିଂସା ମନ୍ତ୍ରରେ ଉଦ୍‌ବୁଦ୍ଧ ସେମାନେ। ଚାହୁଁ ଚାହୁଁ ହଜାର ହଜାର ବିକ୍ଷୋଭକାରୀଙ୍କ ଯୋଗଦାନ ହେତୁ ବଢ଼ିଯାଉଛି ପଟୁଆରର କାୟା। ବୀରଦର୍ପରେ ଆଗେଇ ଚାଲିଛି ନିରୀହ ନିରସ୍ତ୍ର ଶାନ୍ତିର ପଟୁଆର। ପଟୁଆରର ନେତୃତ୍ୱ ନେଇ ଆଗରେ ଚାଲିଛନ୍ତି ଶୀର୍ଣ୍ଣ କଙ୍କାଳ ଗାନ୍ଧି। ଦେହରେ ନାହିଁ ବିଲାତି ଓକିଲର ଦାମୀ ପୋଷାକ, ଅଣ୍ଟାରେ ଗୁଡେଇ ହୋଇଛି ହାତବୁଣା ମୋଟା ଖଦଡ୍ ଖଣ୍ଡେ। ଦେହଟା ଫୁଙ୍ଗୁଳା, ଅଣ୍ଟାରେ ଝୁଲୁଛି ପୁରୁଣା ଘଡ଼ିଟିଏ, ନାକ ଉପରେ ଶସ୍ତା ଚଷମାଟିଏ ଆଉ ହାତରେ ଖଣ୍ଡେ ବାଉଁଶ ବାଡ଼ି। ଖ୍ୟାତନାମା ଓକିଲଙ୍କର ଏପରି ଅର୍ଦ୍ଧନଗ୍ନ ବେଶ ଦେଖି ଅବାକ୍ ହୋଇ ଚାହିଁ ରହିଥିଲେ ଅସଂଖ୍ୟ ନରନାରୀ। ବିହ୍ୱଳ ନେତ୍ରରେ ଚାହିଁ ସେମାନେ କହୁଥିଲେ, ଦେଖ ଶାନ୍ତିର ଦୂତକୁ। ପାଖେଇ ଆସୁଥିଲା Transvalର ସୀମାନ୍ତ ଅଞ୍ଚଳ। ପୋଲିସ ଛାଉଣିରେ ଫାଟି ପଡୁଥିଲା ରାସ୍ତାଘାଟ। ଶେଷ ପର୍ଯ୍ୟନ୍ତ ଯାତ୍ରାରେ ଯୋଗ ଦେଉଥିଲେ ଅଗଣିତ ନରନାରୀ।

ପଟୁଆରର ଚର୍ତୁଦିଗରୁ ଶୁଭୁଥିଲା ଚାପା ଗୁଞ୍ଜରଣ – "ରକ୍ତର ନଈ ବୋହିବ, ଗୁଳି ଚୋଟରେ ମରିବେ ଅନେକ ନିରୀହ ନିର୍ବୋଧ। କାହାରି ତୁଣ୍ଡରେ ଭାଷା ନାହିଁ, ଅଥଚ ସମସ୍ତଙ୍କ ମୁହଁରେ ପ୍ରଶାନ୍ତିର ଛାପ, ଅଖଣ୍ଡ ଆତ୍ମ ବିଶ୍ୱାସରେ ଉଜ୍ଜ୍ୱଳ ଦିଶୁଥିଲା ଗାନ୍ଧିଜୀଙ୍କର ଆଖି, ମୁହଁରେ ଫୁଟି ଉଠୁଥିଲା ଭୀଷ୍ମ ପ୍ରତିଜ୍ଞାର ଭାବ। ମନେ ହେଉଥିଲା ନିମିଷକ ଭିତରେ ଢଳିପଡିବେ ସତ୍ୟାଗ୍ରହୀମାନେ, ଦଳିଚକଟି ହୋଇ ବିକ୍ଷିପ୍ତ ଭାବରେ ବିଞ୍ଛିହୋଇ ପଡିବ ଅସଂଖ୍ୟ ମୃତଦେହ। ତଥାପି ଆଗେଇ ଚାଲିଥିଲା ସେମାନଙ୍କର

ଦୁର୍ବାର ପଦଯାତ୍ରା। ମନେ ହେଉଥିଲା ସତେ ଯେପରି ସେମାନେ ଭାଙ୍ଗିଦେବେ ବ୍ରିଟିଶ ଫଉଜର ସୁଦୃଢ଼ ଛାଉଣୀ, ଗାନ୍ଧୀଙ୍କ ପାଦରେ ପାଦ ମିଳାଇ ସେମାନେ ଚାଲିଥିଲେ ଶାନ୍ତିର କପୋତ ପରି ଶାନ୍ତିବାର୍ତ୍ତାର ପ୍ରହରୀମାନେ। ହଠାତ ଗାନ୍ଧୀଙ୍କ ମନରେ ଖେଳିଗଲା ଉଜ୍ଜ୍ୱଳ ଆଭାର ତରଙ୍ଗଟିଏ। ଅହିଂସାର ମନ୍ତ୍ରଶକ୍ତି ଦେଖି ଶୀହରି ଉଠିଲା ସର୍ବାଙ୍ଗ ତାଙ୍କର। ବାଜି ଉଠିଲା ସତର୍କ ଘଣ୍ଟି, ଲାଠି ପ୍ରହାରରେ କ୍ଷତ ବିକ୍ଷତ ହେଲେ ଶାନ୍ତି ବାହିନୀର ଅସଂଖ୍ୟ ଯବାନ, କାରାବରଣ କଲେ ଅନେକ ଶାନ୍ତିବାର୍ତ୍ତାର ସୈନିକ ମାନେ। ଅପୂର୍ବ ଆନନ୍ଦରେ ଉଛୁଳି ଉଠିଲା ଗାନ୍ଧୀଙ୍କର ଦୁଇ ଆଖି। ସଂପୂର୍ଣ୍ଣ ସଫଳ ହେଲା ଅହିଂସା ଆନ୍ଦୋଳନର ପ୍ରଥମ ପର୍ଯ୍ୟାୟ ୧୯୧୪ ମସିହାରେ। ଗାନ୍ଧି ଘରକୁ ଫେରିଲେ ପଟୁଆରକୁ ସଂକ୍ଷିପ୍ତ ଉଦ୍‌ବୋଧନଟିଏ ଦେଇ।

ଦକ୍ଷିଣ ଆଫ୍ରିକାର ଡର୍ବାନଠାରେ ପହଞ୍ଚିଲା ବେଳକୁ ଯେଉଁ ଗାନ୍ଧୀ ଥିଲେ ଲାଜକୁଳା ଖର୍ବକାୟ ନିରୀହ ମଣିଷଟିଏ, ୧୯୧୪ ମସିହାରେ ଦକ୍ଷିଣ ଆଫ୍ରିକା ଛାଡି ବମ୍ବେରେ ପହଞ୍ଚିଲା ବେଳକୁ ସେ ହୋଇ ସାରିଥିଲେ ଦୁର୍ବାର ଶକ୍ତିକେନ୍ଦ୍ର ଭାବରେ। ସେଠାରେ ସେ ଗୁରୁ ଭାବରେ ବରଣ କରିଥିଲେ ତିନିଜଣ ପ୍ରତିଭାଶାଳୀ ବ୍ୟକ୍ତିଙ୍କୁ। ରୁସ୍କିନ୍, ଟଲଷ୍ଟଏ ଓ ଥୋରେସିଆ। ସେଠାରେ ସେ ଯେଉଁ ଦୁଇଟି ତତ୍ତ୍ୱ – ଅହିଂସା ଓ ଆଇନ ଅମାନ୍ୟ ଆବିଷ୍କାର କରିଥିଲେ, ତାହା ପୃଥିବୀର ସବୁଠାରୁ ଶକ୍ତିଶାଳୀ ସାର୍ବଭୌମ ସାମ୍ରାଜ୍ୟକୁ ଧରାଶାୟୀ କରିଦେଲା।

୧୯୧୫ ମସିହା ଜାନୁଆରୀ ମାସ ୯ ତାରିଖ ଦିନ ବମ୍ବେ ରେଳ ଷ୍ଟେସନରେ ଗାନ୍ଧି ପହଞ୍ଚିବା କଥା ଜଣାପଡିଲା। ପରେ ବମ୍ବେ ରେଳ ଷ୍ଟେସନରେ ଲୋକଙ୍କ ଭିଡ ଥାଟ ପଟାଳି ଭାଙ୍ଗୁଥିଲା। ସମସ୍ତଙ୍କ ମନରେ ଉତ୍କଣ୍ଠା, ଗାନ୍ଧି କେତେବେଳେ ଆସିବେ। ଦକ୍ଷିଣ ଆଫ୍ରିକାରେ ଇଂରେଜ ସରକାରଙ୍କ ବିରୁଦ୍ଧରେ ଆଇନ ଅମାନ୍ୟ ଆନ୍ଦୋଳନ କରି ସେ ଜଣେ ବୀରର ପରିଚୟ ଦେଇଛନ୍ତି ଏବଂ ଅପୂର୍ବ ସାହସିକତାର ଉଦାହରଣ ସୃଷ୍ଟି କରି ସମସ୍ତଙ୍କୁ ଚକିତ କରିଛନ୍ତି। ଲଣ୍ଡନରେ ପାଠ ପଢ଼ି ଓ ଓକିଲାତି କରୁଥିବା ଗାନ୍ଧୀ ସମସ୍ତ ଭୌତିକ ବିଭବ ପରିହାର କରି ଭାରତର ଅଗଣିତ ଦରିଦ୍ର ଲୋକଙ୍କର

ପ୍ରକୃତ ପ୍ରତିନିଧି ଭାବରେ ନିତାନ୍ତ ସରଳ ଜୀବନ ଯାପନ କରିବା ସହିତ ବ୍ରହ୍ମଚର୍ଯ୍ୟ ପାଳନ କରିବାର ବ୍ରତ ଗ୍ରହଣ କରିଛନ୍ତି । ଏପରି ଗାନ୍ଧୀ କିପରି ଦେଖା ଯାଉଥିବେ ଭାବି ଲୋକଙ୍କ ଭିତରେ ଆଶ୍ଚର୍ଯ୍ୟର ସୀମା ନଥିଲା । ଗାନ୍ଧୀ ଆସିଲେ; ତାଙ୍କୁ ଦେଖିବା ପାଇଁ ଲୋକଙ୍କ ଭିତରେ ଦଳାଚକଟା ଆରମ୍ଭ ହୋଇଗଲା । ଏକଥା ଦେଖି ସରକାରୀ ଲୋକେ ଭୟ ପାଇଗଲେ । ଭାରତୀୟଙ୍କ ପ୍ରତି ସେମାନଙ୍କର ଭୟ, ଏହାଥିଲା ପ୍ରଥମ ଘଟଣା । ଗାନ୍ଧିଜୀଙ୍କ ସାଙ୍ଗରେ ଥିଲା ମାତ୍ର ଗୋଟିଏ ସୁଟକେଶ୍, ତା ଭିତରେ ଥିଲା ମୋଟା କାଗଜର ହାତ ଲେଖା ବିଡାଟିଏ, ଲେଖାଥିଲା ହିନ୍ଦ୍ ସ୍ୱରାଜ - ଇଣ୍ଡିଆନ୍ ହୋମ୍ ରୁଲ । ଗାନ୍ଧି ତାଙ୍କ ଜୀବନର ପ୍ରକୃତ ସଂଗ୍ରାମ କରିବା ପାଇଁ ଦକ୍ଷିଣ ଆଫ୍ରିକା ଥିଲା ପରୀକ୍ଷାର ପ୍ରଥମ ତାଲିମ କେନ୍ଦ୍ର । ଗାନ୍ଧିଜୀ ସାବରମତୀ ନଦୀକୂଳରେ ଶିଳ୍ପ ସମୃଦ୍ଧ ସହର ଅହମଦାବାଦଠାରେ ରହି ପ୍ରତିଷ୍ଠା କଲେ ଦକ୍ଷିଣ ଆଫ୍ରିକା ପରି ଆଶ୍ରମଟିଏ । ଦରିଦ୍ରର ସେବା ଥିଲା ତାଙ୍କ ଜୀବନର ପ୍ରଧାନ କାମ । ତେଣୁ ବିହାରର ଏଣ୍ଡି ଚାଷୀଙ୍କୁ ସଂଗଠିତ କଲେ ଇଂରେଜ ମାଲିକ ମାନଙ୍କ ଶୋଷଣ ବିରୁଦ୍ଧରେ । ଏହାଥିଲା ତାଙ୍କର ପ୍ରଥମ ଚାଷୀ ସଂଗଠନ । ଏହା ପରେ ବମ୍ବେର ମରୁଡ଼ି ପ୍ରପୀଡ଼ିତ ଅଞ୍ଚଳରେ ଚାଷୀ ସଂଗଠନ ଏବଂ ଅହମଦାବାଦର ଲୁଗାକଳ ଶ୍ରମିକ ସଂଗଠନ ପ୍ରତିଷ୍ଠା କରି ଦରିଦ୍ର ଓ ଶ୍ରମିକ ଶ୍ରେଣୀର କଲ୍ୟାଣ ପାଇଁ ଲାଗିପଡିଲେ । ସାବରମତି ଆଶ୍ରମ ଚାଲିଲା ଅହମଦାବାଦର ଚାନ୍ଦା ଭେଦାରେ । ଶ୍ରମିକ ମାନଙ୍କର କଲ୍ୟାଣ ପାଇଁ ସେ ଦିନରାତି କାମ କରି ଚାଲିଲେ ଏବଂ ସେମାନଙ୍କୁ ନିଜ ଅଧିକାର ପ୍ରତି ସଚେତନ କରାଇ ଶୋଷଣ ବିରୁଦ୍ଧରେ ସଂଗ୍ରାମ କରିବାକୁ ବଳ ଦେଲେ । ଶ୍ରମିକ ମାନଙ୍କୁ ଶୋଷଣ ବିରୁଦ୍ଧରେ ସଂଗ୍ରାମ କରିବା ପାଇଁ ଗାନ୍ଧିଜୀ ଥିଲେ ପ୍ରଥମ ଶ୍ରମିକ ନେତା । ସେଇ ଦିନଠାରୁ ଗାନ୍ଧିଜୀ ପରିଚିତ ହେଲେ ମହାତ୍ମା ନାମରେ । ଦୁର୍ଗତ ମାନଙ୍କର ମୁକ୍ତିପାଇଁ ତାଙ୍କ ଆତ୍ମାର ବ୍ୟାକୁଳ ଚିତ୍କାର ଶୁଣି ନୋବେଲ ବିଜେତା ବିଶ୍ୱକବି ରବିନ୍ଦ୍ର ନାଥ ଟାଗୋର ତାଙ୍କୁ ସମ୍ବୋଧିତ କଲେ ମହାତ୍ମା ବୋଲି । ପ୍ରକୃତରେ ଭାରତର ସ୍ୱାଧୀନତା ପାଇଁ ନୁହେଁ ସାରା ପୃଥିବୀର ଶୋଷଣ ବିରୁଦ୍ଧରେ ତାଙ୍କର

ଦୁର୍ବାର ସଂଗ୍ରାମ ପାଇଁ ଯଥାର୍ଥରେ ସେ ମହାତ୍ମା । ପ୍ରତ୍ୟେକ ବ୍ୟକ୍ତିଙ୍କୁ ନିଜ ଅଧିକାର ପ୍ରତି ସଚେତନ କରାଇ ସେ ଯେଉଁ ଅମର କୀର୍ତ୍ତିସ୍ତମ୍ଭ ଥାପିଗଲେ ତାହା ମଣିଷ ସମାଜରେ ଅନନ୍ୟ ।

ପ୍ରଥମ ବିଶ୍ୱଯୁଦ୍ଧରେ ବ୍ରିଟେନ ପ୍ରତି ସହାନୁଶୀଳ ଉଦାରତା ପାଇଁ ସେ ପାଇଲେ ଭାରତର ଜାତୀୟ ଆନ୍ଦୋଳନ ପାଇଁ ପ୍ରେରଣା । ଅବଶ୍ୟ ଏ କ୍ଷେତ୍ରରେ ଗାନ୍ଧିଜୀଙ୍କର ଉଦାରତା ଥିଲା ଏକ ଭୁଲ । କାରଣ କୃତଘ୍ନ ବ୍ରିଟେନ, ପ୍ରତି ବଦଳରେ ପାଶ୍ କଲେ ୧ ୯ ୧ ୯ ମସିହାରେ ରାଓଲଟ ଆଇନ୍ । ଭାରତର ସ୍ୱାଧୀନତା ଆନ୍ଦୋଳନକୁ ଦମନ କରିବା ପାଇଁ । ଏଥିପାଇଁ ସେ ସପ୍ତାହ ସପ୍ତାହ ଧରି ଧ୍ୟାନରେ ବସି ବ୍ରିଟେନକୁ ଜବାବ ଦେବା ପାଇଁ ଉପାୟ ଖୋଜିଲେ, ଉପାୟ ମିଳିଗଲା । ଏ ଉପାୟ ଥିଲା ସଂପୂର୍ଣ୍ଣ ଅଭିନବ, ଯାହା କେହି ଆଗରୁ ପାଇନଥିଲେ । ୧ ୯ ୧ ୯ ଏପ୍ରିଲ ମାସ ୭ ତାରିଖକୁ ସେ ଧାର୍ଯ୍ୟ କଲେ ହର୍ତାଳ ଦିନ ବୋଲି । ସେ ଏହାକୁ ପ୍ରତିବାଦର ଦିବସ ବୋଲି କହିଲେ । ସେ କହିଲେ ସାରା ଭାରତର ସଂପୂର୍ଣ୍ଣ ନୀରବତା ଭିତରେ ବ୍ରିଟେନ ଶୁଣୁ ଭାରତର ପ୍ରତିବାଦ ସ୍ୱର । ତାଙ୍କରି ଡାକରାରେ ବନ୍ଦ ହୋଇଗଲା ଦୋକାନ ବଜାର, କୋର୍ଟ କଚେରୀ ଏବଂ ସ୍କୁଲ କଲେଜ । ସାରା ଭାରତ ଉପରେ ଛାଇ ହୋଇଗଲା ସଂପୂର୍ଣ୍ଣ ନିରବତାର ବହଳ କୁହୁଡି । ରାସ୍ତାଘାଟ ଶୂନଶାନ, କାହାରିକୁ କିଛି କରିବାକୁ ପଡିଲା ନାହିଁ । ସମସ୍ତେ ନିଜ ନିଜ ଘରେ ବସି ମୌନ ପ୍ରତିବାଦ କଲେ । ସଂପୂର୍ଣ୍ଣ ଅଚଳ ହୋଇଗଲା ସରକାରୀ ଶାସନ । ମୌନ ବ୍ରତର ଏ ଅପୂର୍ବ ଶକ୍ତି ଦେଖି ସରକାର ତଟସ୍ଥ ହୋଇଗଲା । ପୃଥିବୀର କାହା ଡାକରେ ସେ ଦେଶର ସମସ୍ତ ଆବାଳ ବୃଦ୍ଧ ବନିତା ଏପରି କଠୋର ଏକତାର ପରିଚୟ ଦେଇଥିଲେ ? ପୃଥିବୀରେ ପ୍ରଥମ ଥର ପାଇଁ ଗାନ୍ଧୀଙ୍କ ଡାକରାରେ ଭାରତ ଚମତକୃତ କରିଦେଲା ସାରା ବିଶ୍ୱକୁ । ନେତୃତ୍ୱର ଏପରି ଶକ୍ତି ଖାଲି ଅନନ୍ୟ ନୁହେଁ, ଅଲୌକିକ ମଧ୍ୟ । ପୃଥିବୀର କୌଣସି ଜନନେତା, ଶିକ୍ଷାବିତ୍, ଦାର୍ଶନିକ କିମ୍ବା ଧର୍ମଗୁରୁ ନିଜ ମତରେ ଦିକ୍ଷୀତ କରିପାରି ନାହାନ୍ତି ଜାତି, ଧର୍ମ ବର୍ଣ୍ଣ ନିର୍ବିଶେଷରେ ସମସ୍ତଙ୍କୁ କରିଦେଖାଇ ଦେଲେ

ଏକା ଗାନ୍ଧିଜୀ ବାସ୍ତବ କ୍ଷେତ୍ରରେ। ଗାନ୍ଧୀ ଥିଲେ ଶାନ୍ତ, ସରଳ, ନିରଦ୍‌ବିଘ୍ନ, ସାଦାସିଧା ମଣିଷଟିଏ। ଈଶ୍ୱର ବିଶ୍ୱାସ, ଇନ୍ଦ୍ରିୟ ସଂଯମ, ନିୟମାନୁବର୍ତ୍ତିତା, ସ୍ୱଳ୍ପଆହାର ଓ ନିଦ୍ରା ଏବଂ ସର୍ବୋପରି ଲକ୍ଷ୍ୟସ୍ଥଳରେ ଏକାଗ୍ରତା ଥିଲା ତାଙ୍କ ସାଧନାର ପୁଞ୍ଜି। ଅବଶ୍ୟ ଭାରତର ସମସ୍ତେ ମୌନବ୍ରତ ପାଳନ କରିନଥିଲେ। ଅମୃତସର ଓ ପଞ୍ଜାବରେ ଦଙ୍ଗା ହେଲା, ସରକାର ଏକତ୍ର ସମାବେଶକୁ ବାରଣ କଲେ। ମାତ୍ର ଆଇନ ଅମାନ୍ୟ କରି ହଜାର ହଜାର ଲୋକ ପ୍ରତିବାଦ ସଭା କରିବାକୁ ଏକତ୍ର ହେଲେ ଏପ୍ରିଲ ମାସ ୧୩ତାରିଖ ଦିନ ଜାଲିଓ୍ୱାନା ଓ୍ୱାଲାବାଗ୍‌ଠାରେ। ସଭାସ୍ଥଳ ଥିଲା ଚାରିପାଖ ପାଚିରୀ ଘେରା ଗୋଟିଏ ପଡିଆ। ଯିବା ଆସିବା କରିବା ପାଇଁ ଗୋଟିଏ ମାତ୍ର ବାଟ। ସଭା ଆରମ୍ଭ ହେବା ମାତ୍ରେ ପଚାଶ ଜଣ ସୈନ୍ୟଙ୍କୁ ସାଙ୍ଗରେ ଧରି ସେଠାରେ ପହଞ୍ଚିଲେ ଆର୍ମିସୋଲର ମୋରଲାୟାର୍ଡ କମାଣ୍ଡର ବ୍ରିଗାଡିୟର ଆରଇ ଡାୟାର ଏବଂ ଭିତରକୁ ଯିବା ବାଟର ବାହାରେ ସୈନ୍ୟମାନଙ୍କୁ ଠିଆ କରାଇ ଦେଇ ଆଖିବୁଜା ଗୁଳି ବର୍ଷଣ କଲେ। ତାଙ୍କ ମେସିନଗନ୍‌ରୁ କୌଣସି ସତର୍କ ସୂଚନା ନଦେଇ ୧୬୫୦ ରାଉଣ୍ଡ ଗୁଳି ବର୍ଷଣ କଲେ। ସଭାସ୍ଥଳରେ ଥିବା ହଜାର ହଜାର ହରତାଳକାରୀ କ୍ଷତବିକ୍ଷତ ଭାରତୀୟମାନେ ଡହଳ ବିକଳ ହୋଇ ଦୟାକର ଦୟାକର ବୋଲି ଚିତ୍କାରକୁ କର୍ଣ୍ଣପାତ ନକରି ପୁରା ଦଶମିନିଟ୍ ଧରି ସୈନ୍ୟମାନେ ଗୁଳିବର୍ଷଣ କଲେ। ମୃତାହତଙ୍କ ସଂଖ୍ୟା ଥିଲା ୧୫୯୬। ବହୁତ ଭଲ୍ କାମଟିଏ କରିଛନ୍ତି ଭାବି ବୀରଦର୍ପରେ ଫେରିଗଲେ ବ୍ରିଗାଡିୟର ଡାୟାର। ଇଂରେଜ ମାନଙ୍କ ଆଖିରେ ଭାରତୀୟ ଥିଲେ ପୋକମାଛିଙ୍କ ଠାରୁ ଆହୁରି ହୀନ। ୬୩ବର୍ଷ ପୂର୍ବେ ଘଟିଥିବା ସିପାହୀ ବିଦ୍ରୋହ ହତ୍ୟାଠାରୁ ଏହା ଥିଲା ଅତ୍ୟନ୍ତ ବିଭତ୍ସ ଅମାନୁଷିକ ଓ ନୃଶଂସ ହତ୍ୟାକାଣ୍ଡ। ଏହି ଘଟଣା ଆଙ୍ଗ୍ଲୋ ଇଣ୍ଡିଆ ରିଲେସନ୍‌କୁ ତିକ୍ତ କରି ଦେଲା ଏବଂ ଭାରତର ଇତିହାସ ମୋଡକୁ ସଂପୂର୍ଣ୍ଣ ବଦଳାଇ ଦେଲା। ଗାନ୍ଧିଜୀଙ୍କ ବିଚାରରେ ଏହା ଥିଲା ଭାରତ ପ୍ରତି ଇଂରେଜ ମାନଙ୍କର ଚରମ ବିଶ୍ୱାସଘାତକତା। ସେ ଅବିଚଳିତ ରହି ତାଙ୍କର ସମସ୍ତ ଶାନ୍ତିପୂର୍ଣ୍ଣ ଆନ୍ଦୋଳନାତ୍ମକ କାର୍ଯ୍ୟଧାରାକୁ ଇଂରେଜ

ବିରୋଧୀ କରିଦେଲେ ଏବଂ ଜାତୀୟତାବାଦୀ ଆନ୍ଦୋଳନକୁ ସଂପୂର୍ଣ୍ଣ ଭାବେ ନିଜ ନିୟନ୍ତ୍ରଣକୁ ନେଇଗଲେ। ସେତେବେଳ ପର୍ଯ୍ୟନ୍ତ ଭାରତୀୟ ଜାତୀୟ କଂଗ୍ରେସ ଇଂରେଜ ଶାସନ ବିରୁଦ୍ଧରେ କୌଣସି ବିରୋଧାତ୍ମକ ଆନ୍ଦୋଳନ କରିନଥିଲା। ଯେଉଁ କଂଗ୍ରେସ ପାର୍ଟିକୁ ୧୮୮୫ ମସିହାରେ ଇଂଲିଶ ସିଭିଲ୍ ସରଭ୍ୟାଣ୍ଟମାନେ ପ୍ରତିଷ୍ଠା କରିଥିଲେ, ସେଇ ପାର୍ଟି ଯେ ଦିନେ ଇଂରେଜ ଶାସନର ପତନ ଘଟାଇବ, ଏକଥା ସେମାନେ ଭାବିନଥିଲେ। ଏହାର ପ୍ରତିଷ୍ଠାତା ଓକ୍ଟାଭିଆନ ହ୍ୟୁମ୍ ଭିରଏଙ୍କ ଅନୁମୋଦନ କ୍ରମେ ଏହାକୁ ପ୍ରତିଷ୍ଠା କରିବାର ଉଦ୍ଦେଶ୍ୟ ଥିଲା; ଇଂରେଜ ପଢୁଆ ଭାରତୀୟ ମାନଙ୍କ ମଧ୍ୟରେ ଯେଉଁ ବ୍ରିଟିଶ ବିରୋଧି ମନୋଭାବ କ୍ରମେ କ୍ରମେ ବଢୁଥିବା ଲକ୍ଷ୍ୟ କରାଯାଉଥିଲା, ତାକୁ ପ୍ରତିହତ କରି ସରକାରଙ୍କର ଅନୁଗତ କରିବା। କିନ୍ତୁ ପରେ ସେମାନଙ୍କୁ ଏହି ସଂଗଠନ ଭାରତରୁ ବ୍ରିଟିଶ ସାମ୍ରାଜ୍ୟର ପତନ ଘଟାଇଲା। କାରଣ ୧୯୨୦ ମସିହାରେ ଗାନ୍ଧି କଂଗ୍ରେସ ପାର୍ଟିକୁ ଯେଉଁ ସ୍ୱତନ୍ତ୍ର ପ୍ରସ୍ତାବ ଦେଇଥିଲେ ତାକୁ ସର୍ବସମ୍ମତିକ୍ରମେ ଗ୍ରହଣ କରାଯାଇଥିଲା ଏବଂ ଏହାର ଉଦ୍ଦେଶ୍ୟ ଥିଲା କଂଗ୍ରେସ ଦଳକୁ ଏକ ଆନ୍ଦୋଳନାତ୍ମକ ଅନୁଷ୍ଠାନ ଭାବରେ ବ୍ୟବହାର କରିବା। ଏହିଠାରୁ ବଦଳିଗଲା କଂଗ୍ରେସ ଦଳର ଆଭିମୁଖ୍ୟ ଏବଂ ନିୟନ୍ତ୍ରିତ ହେଲା ତାଙ୍କର ଦୃଢ଼ ନେତୃତ୍ୱାଧୀନରେ। ଦଳର କୌଣସି ପଦାଧିକାରୀ ହଅନ୍ତୁ ନହୁଅନ୍ତୁ ସେ ହୋଇ ଉଠିଲେ ତାହାର ସର୍ବମୟ କର୍ଣ୍ଣଧାର। ତାଙ୍କର ମୃତ୍ୟୁ ପର୍ଯ୍ୟନ୍ତ ତାଙ୍କ ନେତୃତ୍ୱକୁ ଦଳର କେହି ବିରୋଧ କରିବାକୁ ସାହାସ କରି ପାରିନଥିଲେ। ଗାନ୍ଧିଜୀ ସବୁବେଳେ ଥିଲେ ଶାନ୍ତ, ନିରୁଦ୍‌ବିଗ୍ନ ଅଥଚ ଦୃଢ଼ ପ୍ରତିଜ୍ଞ। ଏଥିପାଇଁ ତାଙ୍କ ପ୍ରେରଣାର ଉତ୍ସ ଥିଲା ଶ୍ରୀମଦ୍ ଭଗବତଗୀତା । ସେଥିଲେ ଆସକ୍ତି ମୁକ୍ତ କର୍ମ ସନ୍ନ୍ୟାସୀ। ତାଙ୍କ ପାଇଁ କର୍ମଥିଲା ଭଗବାନ। ଗୀତାର କର୍ମଯୋଗ ଅନୁସାରେ ଫଳ ପ୍ରତି ଆଶା ନରଖି କର୍ମରେ ନିଯୁକ୍ତ ରହିବା ଥିଲା ତାଙ୍କ ଜୀବନର ବ୍ରତ। ସେ କହୁଥିଲେ କର୍ମରେ ତୁମର ଅଧିକାର ଅଛି, ଫଳରେ ନୁହେଁ, ତାହା ଭଗବାନଙ୍କ ହାତରେ। ଏପୃଥିବୀର ରଙ୍ଗମଞ୍ଚରେ ପ୍ରତ୍ୟେକ ମଣିଷ ଜଣେ ଜଣେ ଅଭିନେତା।

ଅଭିନୟରେ ରାଜା ପାର୍ଟ କର କିମ୍ବା ଚାକର, କିନ୍ତୁ ତୁମକୁ ସଫଳ କଳାକାର ହେବାକୁ ପଡ଼ିବ ଏବଂ ସଫଳତା ନିର୍ଭର କରେ ତୁମର କର୍ମନିଷ୍ଠା ଉପରେ। ଏପରି ଭାବରେ କର୍ମ କଲେ, ମନରେ ଦୁଃଖ, କ୍ଳାନ୍ତି, ଅବସାଦ ଆସେ ନାହିଁ, ଏହାଥିଲା ତାଙ୍କର ଅନେକ ପ୍ରାର୍ଥନା ସଭାରେ ଦୀକ୍ଷା। କ୍ରମେ ଦଳର ସକଳ କ୍ଷେତ୍ରରେ ସେ ଥିଲେ ପ୍ରେରଣା। ସେ କାହାରି ଉପରେ କେବେ କ୍ରୋଧ କରୁନଥିଲେ, କିନ୍ତୁ କେହି ତାଙ୍କୁ ଅମାନ୍ୟ କରୁନଥିଲେ। କାରଣ ତାଙ୍କର ଅନାସକ୍ତି, କର୍ମନିଷ୍ଠା, କର୍ମପ୍ରବଣତା ଏବଂ ଦୃଢ଼ ସଂକଳ୍ପର ଏକ ଅଦୃଶ୍ୟ ଭାବମୂର୍ତ୍ତି ସମସ୍ତଙ୍କୁ ଘେରି ରହିଥିଲା ଏକ ଭୟ ଓ ଭକ୍ତିର ବଳୟ ପରି। ଏହାହିଁ ଦେବତ୍ୱର ଲକ୍ଷଣ। କ୍ଷମତା ପ୍ରତି ଆସକ୍ତି ଥିଲେ ବିଘ୍ନ ଆସିପାରେ, କିନ୍ତୁ ଅନାସକ୍ତ କର୍ମଯୋଗୀ ପାଇଁ ବିଘ୍ନ କ'ଣ? ସେତ ଧ୍ୟାନମଗ୍ନ ସନ୍ୟାସୀ ପରି ଅବିଚଳ, ପରିବେଶର ପ୍ରଭାବ ତାଙ୍କ ପାଇଁ ସବୁବେଳେ ସମାନ, କାରଣ ସେ ସ୍ଥିତପ୍ରଜ୍ଞ, ଇନ୍ଦ୍ରିୟାନୁଭୂତିର ଊର୍ଦ୍ଧ୍ୱରେ।

ପୂର୍ବରୁ ସେ ଯେଉଁ ଦେଶବ୍ୟାପୀ ହରତାଳର ଡ଼ାକରା ଦେଇଥିଲେ, ସେହିପରି ସେ ବର୍ତ୍ତମାନ ଡ଼ାକରା ଦେଲେ ଅସହଯୋଗ ପାଇଁ। ଏହାକୁ ତାଙ୍କର ଅସହଯୋଗ ଆନ୍ଦୋଳନ କୁହାଯାଏ। ସେ ଡ଼ାକରା ଦେଲେ ବ୍ରିଟିଶ ସରକାରଙ୍କୁ ଅସହଯୋଗ କର, ବ୍ରିଟିଶ ତିଆରି ବସ୍ତ୍ରସବୁ ବର୍ଜନ କର, ସ୍କୁଲ କଲେଜର ପିଲାମାନେ ଇଂରାଜୀ ଶିକ୍ଷା ବର୍ଜନ କରନ୍ତୁ, କୋର୍ଟ କଚେରୀ ବନ୍ଦ କର। ଗାଡ଼ି ମୋଟର ଚଳାଇବା ବନ୍ଦ କରିଦିଅ। ହାଟ, ବଜାର, ରାସ୍ତା ଘାଟ ସବୁ ଜନଶୂନ୍ୟ କରିଦିଅ, ସୈନ୍ୟମାନେ ଅସ୍ତ୍ରଶସ୍ତ୍ର ଛାଡ଼ିଦିଅ। ସାରାଦେଶରେ ସବୁ କାମ ବନ୍ଦ ହୋଇଯାଉ, ବାପରେ ବାପ୍ ସେ ଡ଼ାକରାରେ କି ମନ୍ତ୍ରଶକ୍ତି ଥିଲା କେଜାଣି, ଦେଶବ୍ୟାପୀ ଚାରିଆଡ଼ ଶୁନଶାନ ହୋଇଗଲା। କେବଳ ଇଂରେଜ ମାନଙ୍କୁ ଛାଡ଼ିଦେଲେ କେଉଁଠାରେ ଜଣେ ହେଲେ ଭାରତୀୟଙ୍କୁ ଦେଖିବାକୁ ମିଳିଲା ନାହିଁ। ଗୋଟାଏ ମାତ୍ର ଡ଼ାକରେ ସାରା ଦେଶର ଏକତା ଫୁଟି ଉଠିଲା। ପ୍ରତିରକ୍ଷା ବିଭାଗର ସୈନ୍ୟମାନେ, କୋର୍ଟ କଚେରୀରେ ବିଚାରପତି ଓ ଓକିଲମାନେ ଏବଂ ସ୍କୁଲ କଲେଜର ବିଶିଷ୍ଟ ଶିକ୍ଷାବିତ୍; ସମସ୍ତେ

ବ୍ରିଟିଶ ସରକାରଙ୍କ ଠାରୁ ପାଇଥିବା ସବୁ ପୁରସ୍କାର, ମାନପତ୍ର ଓ ଉପାଧି ଫେରାଇ ଦେଲେ । ଗାନ୍ଧି ମଧ୍ୟ ବୋଅରଓ୍ୱାରରେ ପାଇଥିବା ମାନପତ୍ର ଫେରାଇ ଦେଲେ । ସ୍ତବ୍ଧ କାତର ସରକାର ତଟସ୍ଥ ହୋଇ ଚାହିଁ ରହିଲେ । ଜଣେ ଜନ ନାୟକଙ୍କ ଡ଼ାକରାରେ ସାରାଦେଶ ନିଶ୍ଚଳ ନିର୍ବେଦ; ଏହାଥିଲା ପୃଥିବୀ ଇତିହାସର ପ୍ରଥମ ଘଟଣା । ସଂଯମର ସାଧନା ଦ୍ୱାରା ଆତ୍ମାର ଦିବ୍ୟଶକ୍ତିକୁ ଜାଗ୍ରତ କରିପାରିଲେ ଏପରି ଅଲୌକିକ ଶକ୍ତି ସଂଚରି ଯାଏ ନିଷ୍ପ୍ରାଣ ଜଡ଼ ମଧ୍ୟରେ ବି । ଗାନ୍ଧିଜୀଙ୍କର ଅସହଯୋଗ ଆନ୍ଦୋଳନର ଉଦ୍ଦେଶ୍ୟ ଥିଲା ଭାରତରୁ ଶସ୍ତା ମୂଲ୍ୟରେ ଜାହାଜ ଜାହାଜ ତୁଳା ଆମଦାନୀ କରି ତାକୁ କଳରେ ଲୁଗା ତିଆରି କରି ଭାରତ ବଜାରରେ ଚଢ଼ା ମୂଲ୍ୟରେ ବିକ୍ରି କରିବା । ଶିଳ୍ପ ବିପ୍ଳବର ଲାଭଖୋର ବ୍ୟବସାୟକୁ ପ୍ରତିହତ କରିବା ସାଙ୍ଗେ ସାଙ୍ଗେ ଭାରତରେ କୌଳିକ ବୃତ୍ତିର ପ୍ରସାର ଘଟାଇ ବିପୁଳ ଆତ୍ମ ନିଯୁକ୍ତି ସୃଷ୍ଟି କରିବା, କାରଣ ଏହାଦ୍ୱାରା ଦେଶର ଆତ୍ମ ନିର୍ଭରଶୀଳତା ସୃଷ୍ଟିହେବ । ତାଙ୍କର ଏହି ଯୋଜନା ଲାଙ୍କାସାୟାରର ଶିଳ୍ପପତି ମାନଙ୍କୁ କ୍ଷତିଗ୍ରସ୍ତ କରିବା ସହିତ ବ୍ରିଟେନର ଅର୍ଥନୀତିକୁ ଦୋହଲାଇ ଦେଲା । ଏହାଥିଲା ଗାନ୍ଧିଜୀଙ୍କର ସାମ୍ରାଜ୍ୟବାଦର ଶୋଷଣ ବିରୁଦ୍ଧରେ ଏକ ପ୍ରଚଣ୍ଡ ଆକ୍ରମଣ । ଏହାପରେ ୩ବର୍ଷ ପର୍ଯ୍ୟନ୍ତ ସେ ଚଳାଇ ରଖିଲେ ତାଙ୍କର ସ୍ୱଦେଶୀ ଆନ୍ଦୋଳନ, ଅର୍ଥାତ୍ ଭାରତର ପାଞ୍ଚଲକ୍ଷ ଗାଁକୁ ସ୍ୱଦେଶୀ ସାମଗ୍ରୀ ଯୋଗାଇବା ସାଙ୍ଗେ ସାଙ୍ଗେ କୁଟୀର ଶିଳ୍ପର ବିକାଶ ଦ୍ୱାରା ଗ୍ରାମ୍ୟ ଭିତ୍ତିକ ଅର୍ଥନୀତିକୁ ସୁଦୃଢ଼ କରିବା । ଏଥିପାଇଁ ପ୍ରତ୍ୟେକ କଂଗ୍ରେସ କର୍ମୀଙ୍କୁ ଗାଁ ଗାଁରେ ଅରଟରେ ସୁତାକାଟି ହସ୍ତତନ୍ତ୍ରେ ବୁଣା ଲୁଗା ପିନ୍ଧିବାକୁ ପରାମର୍ଶ ଦେଲେ । ଚାହୁଁ ଚାହୁଁ ଏହା ଏକ ଅନ୍ଦୋଳନରେ ଏପରି ପରିଣତ ହୋଇଗଲା ଯେ, ପ୍ରତ୍ୟେକ ଗାଁରେ ଏହାର ପ୍ରସାର ବ୍ୟାପିଯାଇ ପ୍ରତ୍ୟେକ ଭାରତୀୟଙ୍କୁ ଏକତା ସୁତ୍ରରେ ବାନ୍ଧିଦେଲା । ଏହାଥିଲା ଗାନ୍ଧିଜୀଙ୍କର ସାଂଗଠନିକ ଶକ୍ତିର ଆଉ ଏକ ବଳିଷ୍ଠ ପ୍ରମାଣ ଓ ପ୍ରଭାବଶାଳୀ ଚତୁରତା । ପ୍ରକୃତରେ ପ୍ରଚଣ୍ଡ ଶକ୍ତିଶାଳୀ ସାମ୍ରାଜ୍ୟ ବିରୁଦ୍ଧରେ ଯୁଦ୍ଧ କରିବା ପାଇଁ ନିରସ୍ତ୍ର ଭାରତୀୟଙ୍କ ପାଇଁ ଏହାଛଡ଼ା ଅଧିକ ଶକ୍ତିଶାଳୀ ଅସ୍ତ୍ର ଆଉ କ'ଣ ହୋଇପାରେ ? ଏହି ସ୍ୱଦେଶୀ

ଆନ୍ଦୋଳନ ମାଧ୍ୟମରେ ଗାନ୍ଧିଜୀ ଭାରତର ପାଞ୍ଚ ଲକ୍ଷ ଗାଁ ସହିତ ସିଧାସଳଖ ସମ୍ପର୍କ ରଖିବାକୁ ସମର୍ଥ ହେଲେ । ଏହାପରେ ଗ୍ରାମ୍ୟ ଜୀବନର ସର୍ବାଙ୍ଗିନ ବିକାଶ ପାଇଁ ସେ ଆରମ୍ଭ କଲେ ତାଙ୍କର ସ୍ୱଦେଶୀ କାର୍ଯ୍ୟକ୍ରମ । ଲକ୍ଷ ଲକ୍ଷ ସଂଖ୍ୟାରେ ଅରଟ ଓ ହସ୍ତତନ୍ତ୍ର ଗ୍ରାମ୍ୟ ଶିଳ୍ପର ପ୍ରସାର ଯୋଜନା । ଏକ ଧ୍ୟାନରେ ଅରଟରେ ସୁତା କାଟିବାକୁ ଏକ ଆଧ୍ୟାତ୍ମିକ ବିପ୍ଳବ ବୋଲି ସେ ଆଖ୍ୟାଦେଲେ । ଏହାଦ୍ୱାରା ସ୍ୱଦେଶୀ ଭାବନାର ଏକ ନୂତନ ଯୁଗର ଅଭ୍ୟୁଦୟ ଘଟିଲା । ସେ କହୁଥିଲେ କିଛି ସମୟ ପାଇଁ ଶାରିରୀକ ଶ୍ରମ କରିବା ପ୍ରତ୍ୟେକ ବ୍ୟକ୍ତିର ଧର୍ମ । ଏହାଛଡ଼ା ସ୍ୱାସ୍ଥ୍ୟ ଓ ପରିବେଶର ସୁରକ୍ଷା ପାଇଁ ପ୍ରତ୍ୟେକ କଂଗ୍ରେସ କର୍ମୀକୁ ପରାମର୍ଶ ଦେଲେ । ଗାଁରେ ଖୋଲା ପଡ଼ିଆରେ ମଳ ତ୍ୟାଗ ପରିବର୍ତ୍ତେ ପାଇଖାନା ବ୍ୟବହାର କରିବା, ପ୍ରତି ଗାଁରେ ବିଦ୍ୟାଳୟ ସ୍ଥାପନ କରିବା, ହିନ୍ଦୁ ମୁସଲମାନଙ୍କ ମଧ୍ୟରେ ସାଂପ୍ରଦାୟିକ ସଦ୍‌ଭାବ ସୃଷ୍ଟି କରିବା ଏବଂ ପରିଷ୍କାର ପରିଚ୍ଛନ୍ନତା ଅଭ୍ୟାସ ଦ୍ୱାରା ହଇଜା ମହାମାରି ଇତ୍ୟାଦି ରୋଗ ବିରୁଦ୍ଧରେ ସଂଗ୍ରାମ କରିବାକୁ । ମୋଟା ମୋଟି ଭାବରେ ଏକ ବ୍ୟାପକ ଯୋଜନା ଦ୍ୱାରା ଗ୍ରାମ୍ୟ ଜୀବନକୁ ସୁସ୍ଥ, ସୁନ୍ଦର ଓ ଉପାର୍ଜନକ୍ଷମ କରିବାକୁ ଦିବାରାତ୍ରୀ ଲାଗି ପଡ଼ିଲେ । ଗାନ୍ଧିଜୀ ନିଜେ ମଧ୍ୟ ପ୍ରତିଦିନ ଅଧଘଣ୍ଟାଏ ଅରଟରେ ସୁତା କାଟି ଶାରୀରିକ ଶ୍ରମ କରିବାକୁ ଏକ ନିୟମରେ ପରିଣତ କରିଦେଲେ । ତାଙ୍କ ବିଚାରରେ ପ୍ରତି ଥର ଅରଟ ଘୁରିବା ସହିତ ରାମ, ରାମ, ରାମ ମନେ ମନେ ଉଚ୍ଚାରଣ କରିବା, ଈଶ୍ୱରଙ୍କୁ ଧ୍ୟାନ କରିବା ସହିତ ସମାନ । କାରଣ ଏହାଦ୍ୱାରା ଆଧ୍ୟାତ୍ମିକ ଚେତନାର ବିକାଶ ଘଟେ ଏବଂ ଏକାଗ୍ରତା ଅଭ୍ୟାସ ହୋଇଯାଏ । ତାଙ୍କ ତ୍ୟାଗର ଶେଷ ପର୍ଯ୍ୟାୟ ପୂର୍ଣ୍ଣାଙ୍ଗ କରିବାକୁ ଯାଇ ହସ୍ତତନ୍ତ୍ର ବୁଣା ଖଣ୍ଡେ ଛୋଟ ଧୋତି ଓ ଖଣ୍ଡେ ଚାଦର ଛଡ଼ା ଅନ୍ୟକିଛି ପରିଧାନ ବ୍ୟବହାର ନକରିବାକୁ ପ୍ରତିଜ୍ଞା କଲେ । ଏହାକୁ ଏକ ଆଦର୍ଶ ଭାବି ପ୍ରତ୍ୟେକ କଂଗ୍ରେସ କର୍ମୀ ମଧ୍ୟ ତାହା ଅନୁସରଣ କଲେ । ଏପରି ହାତବୁଣା ଧଳାବସ୍ତ୍ର ପରିଧାନ ଓ ଅରଟର ଚକ ସ୍ୱାଧୀନତା ଆନ୍ଦୋଳନର ପ୍ରତୀକ ହୋଇଗଲା । ତାଙ୍କର ଏସବୁ ଥିଲା ଏକ ସାଧନା ଓ ସାମ୍ରାଜ୍ୟବାଦ ବିରୁଦ୍ଧରେ ଏକ ନିରବ

ସଂଗ୍ରାମ । ତାଙ୍କର ଏପରି ନୀରବ ବିପ୍ଳବ ଶେଷରେ ସାମ୍ରାଜ୍ୟବାଦର ପତନ ଘଟାଇ ଇଂରେଜ ସରକାରଙ୍କୁ ଗାଦିଚ୍ୟୁତ କଲା । କେଉଁଠି ଖାଲି ପାଦରେ ଚାଲି ଚାଲି, କେଉଁଠି ତୃତୀୟ ଶ୍ରେଣୀରେ ଯାତ୍ରା କରି, କେଉଁଠି ଆଣ୍ଠୁଏ ବହଳ ପାଣି ଓ କାଦୁଅରେ ପଶି ପଶି ଗାନ୍ଧିଜୀ ଭାରତର ବହୁ ଦୁର୍ଗମ ପଥ ଅତିକ୍ରମ କରି ହଜାର ହଜାର ଗାଁକୁ ଯାଇ ପ୍ରଚାର କରୁଥିଲେ ତାଙ୍କର ଅହିଂସା ଓ ସ୍ୱଦେଶ ଭାବନାର ମନ୍ତ୍ର । ଖାଇବା, ପିଇବା, ଶୋଇବା କିଛି ଖାତିର ନକରି ସେ ସାରା ଭାରତକୁ ଏକତାବଦ୍ଧ କରିବାପାଇଁ ଅବିସ୍ରାନ୍ତ ଚାଲିଥିଲେ ଏବଂ ଦିନକୁ ପାଞ୍ଚ ଛଅଟି ଆୟୋଜିତ ସଭାରେ ଲୋକଙ୍କୁ ବୁଝାଇଥିଲେ । ଏହାଦ୍ୱାରା ସାରାଭାରତର ଏକତାର ସ୍ରୋତ ଅଧିକରୁ ଅଧିକ ବ୍ୟାପୀ ଯାଇ ମହାସ୍ରୋତରେ ପରିଣତ ହୋଇଥିଲା । ଶେଷରେ ଗାନ୍ଧିଜୀ ଧଳା ଖଦଡ଼ ବସ୍ତ୍ର ପରିହିତ ଶହ ଶହ ଅନୁଚରଙ୍କୁ ସାଙ୍ଗରେ ଧରି ଗୋଟିଏ ସଭାକୁ ପଦଯାତ୍ରା କରୁଥିଲେ । ଅପୂର୍ବ ସେ ଦୃଶ୍ୟ । ଖଣ୍ଡେ ଦୂରରୁ ଦେଖିଲେ ମନେ ହେଉଥିଲା ସତେ ଯେମିତି ଗଙ୍ଗା–ଯମୁନାର ମିଳିତ ଜଳରାଶି ପ୍ରବଳ ବେଗରେ ମାଡ଼ି ଚାଲିଛି ସାଗର ସଂଗମ ପାଇଁ । ଅତ୍ୟନ୍ତ ରମଣୀୟ ଦୃଶ୍ୟ, ସତେ ଯେମିତି ସେ ଛିଟିକା ଜଳ ଭିଜେଇ ଦେଇ ଯାଇଛି ଦୁଇକୂଳରେ ଅସଂଖ୍ୟ ଅଧିବାସୀ ମାନଙ୍କୁ । ଗାନ୍ଧି ଆଦର୍ଶରେ ସେମାନେ ସଂକ୍ରମିତ ହେଉଥିଲେ । ଗାଁକୁ ଗାଁ ଉଚ୍ଛୁଳି ଉଠୁଥିଲା ଗାନ୍ଧିକୀ ଜୟ ଗାନ୍ଧିକୀ ଜୟ । ଦେହରେ ମୋଟା ଖଦଡ଼ ନାକରେ ପୁରୁଣା ଶସ୍ତା ଚଷମାଟିଏ, ହାତରେ ବାଉଁଶର ଖଣ୍ଡେ ବାଡ଼ି, ଗାନ୍ଧି ଚାଲିଥିଲେ ତ ଚାଲିଥିଲେ । ସମସ୍ତଙ୍କ ଦେହରେ ଏକାପରି ଖଦଡ଼ ପୋଷାକ, ସଭା ଶେଷରେ ଜଣେ ବିଶ୍ୱସ୍ତ ଅନୁଚରଙ୍କ ମୁଣ୍ଡରେ ଉଡ଼ା ଯାଉଥିଲା ଭାରତର ଜାତୀୟ ପତାକା । ବିଜୟର ସଂକେତ ସ୍ୱରୂପ ଏବଂ ଅନ୍ୟ ସମସ୍ତ ବିଶ୍ୱସ୍ତ ଅନୁଚର ମୁଣ୍ଡରେ ବୋହି ନେଉଥିଲେ ସେମାନଙ୍କ ସଫା ସୁତୁରା ହାତ ତିଆରି ପାଇଖାନା ଗୁଡ଼ିକୁ । ତାଙ୍କର ସରଳ, ନିଷ୍ପାପ, ସ୍ୱେଚ୍ଛାକୃତ, ବିନୟଭାବ ଏବଂ ତାଙ୍କ ଦେହର ପବିତ୍ର ଭାବ ଆକୃଷ୍ଟ କରୁଥିଲା ଅସଂଖ୍ୟ ନରନାରୀଙ୍କୁ ତାଙ୍କର ଦର୍ଶନ ପାଇଁ । ମନେ ହେଉଥିଲା କେଉଁ ଅତୀତ କାଳରୁ ପଡିରହିଥିବା ପାଷାଣୀର ଉଦ୍ଧାର

ପାଇଁ ସତେ ଯେମିତି ପ୍ରଭୁ ରାମଚନ୍ଦ୍ରଙ୍କର ପାଦ ବାଜି ଚେଉଁ ଉଠିଛି ଲାବଣ୍ୟମୟୀ ତରୁଣୀ ଅହଲ୍ୟା। ଆସନ୍ନ ସ୍ୱାଧୀନତାର ବାସ୍ନା ବାରି ଚଳଚଞ୍ଚଳ ହୋଇଉଠିଛି ବନ୍ଦିଶାଳାରୁ ନିଷ୍ପ୍ରାଣ ଭାରତ ମା'।

ଅସ୍ପଷ୍ଟ ଛାୟା ପଥରେ ଅସଂଖ୍ୟ ଉଜ୍ଜ୍ୱଳ ତାରକା ଦୃଷ୍ଟିଗୋଚର ହେଲାପରି, ହସ୍ତତନ୍ତ ବୁଣା ଧଳା ଖଦଡ ପରିହିତ ଅସଂଖ୍ୟ ନରନାରୀ ମୁକ୍ତିର ମଶାଲ ଧରି ଗାଇଗାଇ ଚାଲିଛନ୍ତି 'ବନ୍ଦେ ମାତରମ୍, ବନ୍ଦେ ମାତରମ୍'। ଭାରତର ଟାଉନ ମାନଙ୍କରେ ବିଦେଶୀ ପୋଷାକର ପ୍ରଚଳନ ବେଶୀ। ତେଣୁ ଟାଉନ ମାନଙ୍କର ଅଧିବାସୀଙ୍କୁ ବିଦେଶୀ ପୋଷାକ ବର୍ଜନ ପାଇଁ ସେ ଯେତେବେଳେ ଆହ୍ୱାନ ଦେଉଥିଲେ, ଲୋକେ ଦେହରୁ ଗଦାଗଦା ପୋଷାକ ବାହାର କରି ଗାନ୍ଧିଜୀଙ୍କ ପାଦତଳେ ଅଜାଡି ଦେଇଥିଲେ ଏବଂ ଗାନ୍ଧୀ ତାକୁ ଜାଳି ଦେଉଥିଲେ। ଏପରି ଦୃଶ୍ୟସବୁ ସାରାଦେଶରେ ହଜାର ହଜାର ସଂଖ୍ୟାରେ ଦେଖିବାକୁ ମିଳିଲା। ବିଦେଶୀ ବର୍ଜନ ଆନ୍ଦୋଳନ ତୀବ୍ରତର ହେବାକୁ ଲାଗିଲା। ଗାନ୍ଧିଙ୍କୁ ବନ୍ଦୀ କରିବା ପାଇଁ ବ୍ରିଟିଶ ସରକାର ଭୟ କରୁଥିଲେ। କାରଣ ଏହାଦ୍ୱାରା ଗାନ୍ଧି ଜଣେ ବୀରର ସମ୍ମାନ ପାଇବେ ଏବଂ ସରକାର ନିନ୍ଦିତ ହେବେ, ଏଇ ଭୟହେତୁ। କିନ୍ତୁ ହଜାର ହଜାର ସଂଖ୍ୟାରେ କଂଗ୍ରେସ କର୍ମୀ ବନ୍ଦୀ ହେଲେ। ଦଳେ ବନ୍ଦୀ ହେବାର ଦେଖି ଆଉ ଦଳେ ଆଗେଇ ଆସୁଥିଲେ ସ୍ୱେଚ୍ଛାକୃତ ଭାବରେ ବନ୍ଦୀ ହେବାକୁ । ଜାତିପାଇଁ, ମାତୃଭୂମିର ସୁରକ୍ଷା ପାଇଁ ଏବଂ ସ୍ୱାଧୀନତା ପାଇଁ ଏପରି ହଜାର ହଜାର ନରନାରୀ ଦୁର୍ବିସହ ଯନ୍ତ୍ରଣାକୁ ଖାତିର ନକରି ଆପଣାଛାଏଁ ହାତ ବଢ଼େଇ ଦେବେ। ଏ ଦୃଶ୍ୟ ଦେଖି ସରକାରଙ୍କର ପୋଲିସ୍ ବାହିନୀ ସ୍ତମ୍ଭିଭୂତ ହୋଇଗଲେ। ନିରବ, ନିଶ୍ଚଳ ଶାନ୍ତ ମୂର୍ତ୍ତିଟିଏ ପରି ଠିଆ ହୋଇ ରହୁଥିଲେ ଅହିଂସାର ଅବତାର ଗାନ୍ଧିଜୀ। ଆଗରେ ଜଳି ଯାଉଥିଲା ଗଦାଗଦା ବ୍ରିଟିଶ କଳ ତିଆରି ପୋଷାକ ସବୁ। ତିରିଶ ହଜାର କଂଗ୍ରେସ କର୍ମୀ ବନ୍ଦୀ ହେଲେ। ସଭାମାନଙ୍କୁ ବଳ ପ୍ରୟୋଗ କରି ପୋଲିସ୍ ଭାଙ୍ଗି ଦେଲା, କଂଗ୍ରେସ କାର୍ଯ୍ୟାଳୟ ସବୁ ଭାଙ୍ଗି ଚୁରମାର କରିଦେଲେ। ଏସବୁ ଥିଲା ୧୯୨୧

ମସିହା ସେପ୍ଟେମ୍ବର ମାସର ଘଟଣା । ଏସବୁ ଦେଖି ୧ ୯ ୨ ୨ ମସିହା ଫେବୃଆରୀ ମାସରେ ଗାନ୍ଧିଜୀ ଅତ୍ୟନ୍ତ ବିନୟ ଭାବରେ ଭାଇସ୍ ରାୟଙ୍କୁ ଚିଠି ଲେଖି ଜଣାଇଦେଲେ ଯେ, ସେ ତାଙ୍କର ପ୍ରତିବାଦର ଡାକରାକୁ ଆହୁରି ବ୍ୟାପକ ଓ ତୀବ୍ରତର କରିବାକୁ ଯାଉଛନ୍ତି । ଅସହଯୋଗ ଆନ୍ଦୋଳନ ଆଇନ ଅମାନ୍ୟ ଆନ୍ଦୋଳନରେ ପରିଣତ ହେଲା । ଚାଷୀ ମାନଙ୍କୁ ସଂଗଠିତ କଲେ ଟିକସ୍ ନଦେବାକୁ । ସହରବାସୀଙ୍କୁ ଡାକରା ଦେଲେ ଆଇନ ଅମାନ୍ୟ ଆନ୍ଦୋଳନ କରିବାକୁ । ସୈନ୍ୟମାନଙ୍କୁ ସରକାରୀ ସେବା ବନ୍ଦ କରିବାକୁ । ଏସବୁର ଉଦ୍ଦେଶ୍ୟ ଥିଲା ବ୍ରିଟିଶର ଉପନିବେଶବାଦ ଶାସନ ବିରୁଦ୍ଧରେ । ସେ ସତର୍କ କରିଦେଇ ଦେଶବାସୀଙ୍କୁ କହିଲେ "British want, to put the struggle on the plane of mechin goes where they have the weapons and wedonot; our only assuance of beatiny them in our only assuanes beating them in putting the struggle on a plane where we have the weapons and they have not," ତାଙ୍କ ଡାକରାରେ ସ୍ୱଷ୍ଟ ଦିବାଲୋକରେ ହଜାର ହଜାର ଭାରତୀୟ ଜନତା ବିଚ୍ ରାସ୍ତାରେ ଠୁଳ ହୋଇ ବିଲାତର କଳ ତିଆରି ପ୍ରତ୍ୟେକ ବସ୍ତ୍ରକୁ ବର୍ଜନ କରିବାର ପ୍ରତିଜ୍ଞା କରି ବିକ୍ଷୋଭ ପ୍ରଦର୍ଶନ କଲେ । ହଜାର ହଜାର ଲୋକ କାରାବରଣ କଲେ ଏବଂ ପଛକୁ ପଛ କାରାବରଣ କରିବାକୁ ଅସରନ୍ତି ଲମ୍ବାଧାଡି ଲାଗି ରହିଲା । ବମ୍ବେର ଗଭର୍ଣ୍ଣର ଏହା ଦେଖି ଆଶ୍ଚର୍ଯ୍ୟରେ କହିଥିଲେ ବିକ୍ଷୋଭର ଏପରି ବିଶାଳ ପଟୁଆର ପୃଥିବୀ ଇତିହାସରେ କେବେ ଦେଖାଯାଇ ନଥିଲା ଏବଂ ଏତେ ଲୋକ ପଛକୁ ପଛ ଲାଗିରହିଥିଲେ ଯେ, ଇଞ୍ଚେବି ଯାଗା ଖାଲି ନଥିଲା । ମାତ୍ର ଦିଲ୍ଲୀର ଉତ୍ତର ପୂର୍ବାଞ୍ଚଳର ଏକ ଛୋଟିଆ ଗାଁରେ ଯେତେବେଳେ ବିକ୍ଷୋଭକାରୀ ମାନେ ଉତ୍ତେଜିତ ହୋଇ ହିଂସାକାଣ୍ଡ ଘଟାଇଲେ ସେ କାଳ ବିଳମ୍ବ ନକରି ଆନ୍ଦୋଳନକୁ ପ୍ରତ୍ୟାହାର କରିନେଲେ । କାରଣ ସେ ଦେଖିଲେ ଯେ, ଲୋକେ ଅହିଂସା ଆନ୍ଦୋଳନର ଅର୍ଥ ବୁଝିନାହାନ୍ତି । ତାଙ୍କ ବିଚାରରେ ଅହିଂସା ଆନ୍ଦୋଳନ ସଂପୂର୍ଣ୍ଣ ଭାବରେ ଉତ୍ତେଜନା

ଓ ହିଂସାମୁକ୍ତ ହେବା ଆବଶ୍ୟକ । ଉତ୍ତେଜନା ପ୍ରବଣ ପରିବେଶ ଭିତରେ ଉତ୍ତେଜିତ ନହୋଇ ଅବିଚଳ ରହିବା କେବଳ ସ୍ଥିତପ୍ରଜ୍ଞ ପକ୍ଷରେ ସମ୍ଭବ । ମଣିଷ ଅଲୌକିକ ପ୍ରତିଭା ସମ୍ପନ୍ନ ନହେଲେ ଏପରି ହେବା ସମ୍ଭବ ନୁହେଁ । ଗାନ୍ଧିଜୀ ନିଜର ଅଧ୍ୟବସାୟ, ସଂଯମ ଓ ଅଭ୍ୟାସଗତ ତପସ୍ୟା ବଳରେ ନିଜକୁ ସେଇ ସୋପାନକୁ ନେଇ ପାରିଥିଲେ । ରାମଚନ୍ଦ୍ର ଭଗବାନ ହେଲେ ବି ବନବାସ ସମୟରେ ନିଜର ମାନବୀୟ ଗୁଣକୁ ଛାଡ଼ି ନପାରି ପତ୍ନୀଙ୍କ ବିରହରେ ବାଚାଳ ପରି ପ୍ରଳାପ କରୁଥିଲେ । ମାତ୍ର ଗାନ୍ଧିଜୀ ସେ ସ୍ତର ଅତିକ୍ରମ କରି ଜଣେ ଅନାସକ୍ତ କର୍ମଯୋଗୀ ଭାବରେ ସ୍ଥିତପ୍ରଜ୍ଞ ହୋଇପାରିଥିଲେ । ଆନ୍ଦୋଳନକୁ ପ୍ରତ୍ୟାହାର କରିନେବା ଦେଖି ସରକାର ଭାବିଲେ ଗାନ୍ଧି ଭୟରେ ନରମି ଯାଇଛନ୍ତି । କ୍ଷମତା ନିଶାରେ ଅନ୍ଧ ବ୍ରିଟିଶ୍ ସରକାର ତାଙ୍କୁ ବୁଝିପାରିଥାନ୍ତା କିପରି ? ତେଣୁ ଗାନ୍ଧିଜୀଙ୍କୁ ବନ୍ଦୀ କଲେ । ବନ୍ଦୀଶାଳାରୁ ନେଇ ତାଙ୍କୁ ମାଜିଷ୍ଟ୍ରେଟଙ୍କ ପାଖରେ ହାଜର କରାଗଲା ସେତେବେଳେ ସେ ବିକ୍ଷୋଭର ନେତୃତ୍ୱ ନେଇଥିଲେ ବୋଲି ସ୍ୱୀକାର କରି ଏହାକୁ ଅପରାଧ ବୋଲି ମାନିଲେ ନାହିଁ । ମାତ୍ର ଆଇନ ଆଖିରେ ତାଙ୍କୁ ଦୋଷୀ ସାବ୍ୟସ୍ତ କରାଯିବାରୁ ସେ ଏକ ଆବେଦନ ପିଟିସନ୍ ଦ୍ୱାରା ଜଣାଇଲେ ଯେ, ତାଙ୍କୁ ଯେତେ ସମ୍ଭବ କଠୋର ଦଣ୍ଡ ମିଳୁ । ଫଳରେ ତାଙ୍କୁ ବନ୍ଦୀ କରି ପୁନା ନିକଟବର୍ତ୍ତୀ ଜରଭା ଜେଲରେ ୬ବର୍ଷ ପାଇଁ ନିକ୍ଷେପ କରିଦେଲେ । ସେ ଏଥିରେ ବିସ୍ମିତ କି ଦୁଃଖିତ ନହୋଇ କହିଲେ ସ୍ୱାଧୀନତା କେବଳ କାରା କକ୍ଷର ଚାରିକାନ୍ଥ ଭିତରେ ହିଁ ମିଳିଥାଏ । ମିଳି ନଥାଏ ଖେଳପଡିଆ ବା ସ୍କୁଲର ଶ୍ରେଣୀ ଗୃହରେ । ଜେଲରେ ତାଙ୍କ ସ୍ୱାସ୍ଥ୍ୟର ଅବନତି ହେତୁ ତାଙ୍କୁ ତିନିବର୍ଷ ପୂର୍ବରୁ ଜେଲ୍‌ରୁ ଛାଡି ଦିଆଗଲା । ଅବଶିଷ୍ଟ ତିନିବର୍ଷକୁ ସେ ଧୈର୍ଯ୍ୟର ସହ ବିତାଇ ଦେଲେ ସାରା ଦେଶ ଭ୍ରମଣ କରିବାରେ ଏବଂ ବିଶେଷ କରି ଅହିଂସା ଆନ୍ଦୋଳନର ପ୍ରକୃତ ଅର୍ଥ ତାଙ୍କର ଅନୁଚର କଂଗ୍ରେସ କର୍ମୀମାନଙ୍କୁ ବୁଝାଇବାରେ । ପ୍ରଭୁ ଯୀଶୁଖ୍ରୀଷ୍ଟ ତାଙ୍କ ପ୍ରେମର ଅର୍ଥ ବୁଝାଇବାକୁ ଦେଶ ଭ୍ରମଣ କରି ଶେଷରେ କ୍ରୁଶ ବିଦ୍ଧ ହୋଇ ପ୍ରାଣ ତ୍ୟାଗ କରିଥିଲେ । ଗାନ୍ଧିଜୀ ମଧ୍ୟ ତାଙ୍କର ଅହିଂସା ମନ୍ତ୍ର ବୁଝାଇବା ପାଇଁ ଦେଶ ସାରା

ଭ୍ରମଣ କରି ଶେଷରେ ଗୁଳି ଚୋଟରେ ପ୍ରାଣ ହରାଇଥିଲେ । ପ୍ରେମ ଓ ଅହିଂସାର ମହିମା ଏହିପରି । ଦୁର୍ଗତର ମୁକ୍ତିପାଇଁ ଏପରି ଆତ୍ମବଳିଦାନ ଚରମ ତ୍ୟାଗର ପ୍ରତୀକ । ସେପରି ଲୋକ କିଛି ପାଇବା ଆଶାରେ ସେବା କରିନଥାନ୍ତି । ଅସହାୟ ଓ ଦୁର୍ଗତର ସେବା ପାଇଁ ଜନ୍ମ ସେମାନଙ୍କର ଅଭିପ୍ରେତ । ଅନ୍ୟ ପାଇଁ ନିଜକୁ ସଳିତା କରି ଜଳି ଜଳି ଶେଷରେ ନିର୍ବାପିତ ହୋଇ ଯାଆନ୍ତି ସେମାନେ । କୁହାଯାଏ, ଦୁଷ୍ଟର ଦମନ ପାଇଁ ଭଗବାନ ଯୁଗେ ଯୁଗେ ଅବତାର ହୋଇ ନରରୂପ ଧାରଣ କରନ୍ତି । ଏପରି ଅବତାର ମାନଙ୍କ ମଧ୍ୟରେ, କେବଳ ସେମାନଙ୍କର ଚମତ୍କାରିତାକୁ ଛାଡିଦେଲେ ସମ୍ଭବତଃ ଗାନ୍ଧି ସେମାନଙ୍କ ଭିତରେ ଶ୍ରେଷ୍ଠ । ତାଙ୍କ ଆନ୍ଦୋଳନର ଆଉ ଏକ ପର୍ଯ୍ୟାୟ ଆରମ୍ଭ କରିବା ପାଇଁ ଗାନ୍ଧିଜୀ ୧୯୨୨ ମସିହା ଶେଷ ବେଳକୁ ପ୍ରସ୍ତୁତ ହୋଇଗଲେ । ଲାହୋରଠାରେ ଦିନେ ମଧ୍ୟ ରାତ୍ରିରେ କଂଗ୍ରେସ ଦଳର ନେତୃତ୍ୱ ନେଇ ଏକ ବିଶାଳ ଜନସଭାରେ ସେ ପ୍ରତିଜ୍ଞା କଲେ ପୂର୍ଣ୍ଣ ସ୍ୱାଧୀନତା ପାଇଁ । ସମୁଦ୍ର ଗର୍ଜନ ପରି ସଭାରେ ଗର୍ଜି ଉଠିଲା ସମସ୍ତଙ୍କ ଶାଣିତ କଣ୍ଠସ୍ୱର – 'ଆମେ ପ୍ରତିଜ୍ଞା କରୁଛୁ ପୂର୍ଣ୍ଣ ସ୍ୱାଧୀନତା ପାଇଁ' । ୨୬ଦିନ ପରେ ସାରା ଭାରତ ବ୍ୟାପୀ ସର୍ବତ୍ର କଂଗ୍ରେସ ଦଳର ସଭାମାନଙ୍କରେ ସମସ୍ତେ ପୁନରାବୃତ୍ତି କଲେ ଆମେ ଚାହୁଁ ପୂର୍ଣ୍ଣ ସ୍ୱାଧୀନତା, ଏହା ଆମର ପ୍ରତିଜ୍ଞା । ଏହା ଗାନ୍ଧି ଏବଂ ବ୍ରିଟିଶ ସରକାର ମଧ୍ୟରେ ଏକ ନୂଆ ମୁକାବିଲାର ସୂତ୍ରପାତ କଲା । ଏହାର ସମ୍ମୁଖୀନ ହେବାପାଇଁ ହଠାତ୍ କୌଣସି କାର୍ଯ୍ୟକ୍ରମ ଘୋଷଣା ନକରି ଅନେକ ଦିନ ପର୍ଯ୍ୟନ୍ତ ସେ ନିଜ ଅନ୍ତରାତ୍ମାର ଡାକ ଶୁଣିବା ପାଇଁ ଅପେକ୍ଷା କଲେ । ଚିନ୍ତାରେ ବୁଡିଗଲେ ଗାନ୍ଧି । କ'ଣ କରିବେ ସେ, କ'ଣ କରିବେ ସେ; ଏଇ ପ୍ରଶ୍ନ ସେ ନିଜକୁ ବାରମ୍ବାର ପଚାରିଲେ । ହଠାତ୍ ଦିନେ ସେ ଶୁଣିଲେ ତାଙ୍କ ଆତ୍ମାର ଡାକ ଲବଣ ସତ୍ୟାଗ୍ରହ । ତାଙ୍କର ମନେ ପଡିଲା ବହୁବର୍ଷ ପୂର୍ବେ ପ୍ରତିଜ୍ଞା କରିଥିବା ସେଇ ଇନ୍ଦ୍ରୀୟ ସଂଯମର କଥା, ଯୌନ ସମ୍ପର୍କ ବର୍ଜନର କଥା । ସେ ଭାବିଲେ ଲବଣ ସତ୍ୟାଗ୍ରହ କରି ସେ ଆଉ ଥରେ ସେହିପରି ବଜ୍ର ଶପଥ ନେବେ ପୂର୍ଣ୍ଣ ସ୍ୱାଧୀନତା ପାଇଁ । ଲବଣ, ପ୍ରତ୍ୟେକ ମଣିଷର ଏକ ନିତ୍ୟ

ବ୍ୟବହାର୍ଯ୍ୟ ବସ୍ତୁ। ବିସ୍ତୀର୍ଣ୍ଣ ସମୁଦ୍ରର ଜୁଆର ପାଣିରୁ ଲୋକେ ଏହାକୁ ସଂଗ୍ରହ କରନ୍ତି। ଏହା ପ୍ରକୃତିର ଦାନ। ଏହାକୁ ସଂଗ୍ରହ କରିବା ପାଇଁ ସରକାରଙ୍କ ଠାରୁ କୌଣସି ସହାୟତା ଆବଶ୍ୟକ ନୁହେଁ। ସରକାର ଏହା ଉପରେ ଟିକସ ଧାର୍ଯ୍ୟ କରିଛନ୍ତି କାହିଁକି ? ଏହା ଅନ୍ୟାୟ, ଏପରି ଟିକସ ବସାଇ ସରକାର କୋଟି କୋଟି ଟଙ୍କାର ରାଜସ୍ୱ ସଂଗ୍ରହ କରିବା ଅତ୍ୟନ୍ତ ଅମାନୁଷିକ। ଏହାର ପ୍ରତିବାଦ କରିବାକୁ ହେବ। ଏହା ହେବ ସରକାରଙ୍କ ବିରୁଦ୍ଧରେ ଅନ୍ୟ ଏକ ଅର୍ଥନୈତିକ ଅବରୋଧ। ଲୁଣ ସମସ୍ତଙ୍କ ଜୀବନ ସହିତ ଜଡିତ। ଏହାକୁ କେନ୍ଦ୍ର କରି ସତ୍ୟାଗ୍ରହ କଲେ କୋଟି କୋଟି ଲୋକ ଆଗ୍ରହରେ ସାମିଲ ହୋଇଯିବେ। ସମସ୍ତଙ୍କ ସହଯୋଗରେ ଏପରି ଆନ୍ଦୋଳନ ଅତି ସହଜ। ଏପରି ଭାବି ଭାବି ହଠାତ୍ ଦିନେ ନାଟକୀୟ ଢଙ୍ଗରେ ଗାନ୍ଧିଜୀ ଘୋଷଣା କରି ଦେଲେ ଲବଣ ସତ୍ୟାଗ୍ରହର କଥା। ଏ ଆନ୍ଦୋଳନର ବାର୍ତ୍ତା ସମୁଦ୍ର ଜୁଆର ପରି ତତ୍‌କ୍ଷଣାତ ମାଡିଗଲା ସାରା ଦେଶର ଗଳିକନ୍ଦି ଭେଦି। କଂଗ୍ରେସ ଦଳର ଲୋକେ ଚାରିଆଡେ ଆରମ୍ଭ କରିଦେଲେ ସଭା, ସମିତି, ଆଲୋଚନା, ତର୍କ ବିତର୍କ। ଉତ୍ତେଜନାର ଉଷ୍ମତା ଭରିଗଲା। ସାରା ଦେଶର ଶୀରା ପ୍ରଶୀରାରେ। ଗାନ୍ଧିଜୀଙ୍କ କଣ୍ଠସ୍ୱର ପ୍ରତିଧ୍ୱନୀତ ହେଲା ସହସ୍ର କଣ୍ଠରେ – ଲୁଣ ଆମ ପ୍ରତିଦିନ ଖାଦ୍ୟର ଏକ ଅତ୍ୟାବଶ୍ୟକ ପଦାର୍ଥ। ଏହା ପ୍ରକୃତିଦତ୍ତ ଏବଂ ସରକାରଙ୍କ ବିନା ସହାୟତାରେ ଆମେ ସମୁଦ୍ରର ଜୁଆର ଜଳରୁ ସଂଗ୍ରହ କରୁ। ସରକାର ଏହା ଉପରେ ଟିକସ୍ ବସାଇବା ଅନ୍ୟାୟ। ଏ ଟିକସ୍ ପରିମାଣ ଅଳ୍ପ ହେଲେ ମଧ୍ୟ ତାହା ପ୍ରତ୍ୟେକ ଖଟିଖିଆ ଲୋକର ଦୁଇ ସପ୍ତାହର ଉପାର୍ଜନ ସହିତ ସମାନ। ସରକାରଙ୍କର ଏ ଅନ୍ୟାୟର ଆମେ ପ୍ରତିବାଦ କରିବା, ଲୁଣ ଟିକସ୍ ଆମେ ଦେବା ନାହିଁ।

୧୯୩୧ ମସିହା ମାର୍ଚ୍ଚ ମାସ ୧୨ ତାରିଖ ସକାଳ ୬.୩୦ରେ ସେ ଆଶ୍ରମରୁ ଯାତ୍ରା ଆରମ୍ଭ କଲେ ୨୪୧ ମାଇଲ, ଦୂରରେ ଥିବା ସମୁଦ୍ର ଆଡକୁ। ହାତରେ ସେଇ ବାଉଁଶର ବାଡ଼ି। ନାକ ଉପରେ ପୁରୁଣା ଶସ୍ତା ଚଷମା। ଅଣ୍ଟାରେ ଧଳା ହାତବୁଣା ଖଣ୍ଡେ ଖଦଡ଼। ମେରୁଦଣ୍ଡ ସାମାନ୍ୟ ବଙ୍କା। ସାଙ୍ଗରେ ଥିଲେ ୭୯

ଶୃଙ୍ଖଳିତ ଅନୁଚର। ବ୍ରିଟିଶ୍ ସରକାର ବିରୁଦ୍ଧରେ ଏ ଥିଲା ଏକ ଐତିହାସିକ ଓ ଅଭିନବ ଯାତ୍ରା। ବ୍ୟାପକ ବେଗ୍‌ରେ ଖବର୍‌ଟା ବ୍ୟାପିଗଲା ସାରା ପୃଥିବୀରେ। ଧାଇଁ ଆସିଲେ ସାରା ପୃଥିବୀରୁ ଅସଂଖ୍ୟ ସାମ୍ବାଦିକ। ରାସ୍ତାଟା ଦୁଲୁକି ଉଠିଲା ସେମାନଙ୍କ ଗହଳି ଭିଡ଼ରେ। ଅହମ୍ମଦାବାଦର ହଜାର ହଜାର ନରନାରୀ ତାଙ୍କର ସ୍ୱାଗତ ପାଇଁ ରାସ୍ତାରେ ସବୁଜ ପତ୍ର ବିଛେଇ ଦେଇ ଲମ୍ବା ଧାଡିରେ ରହି ଠିଆ ହେଲେ। କାହାରିକୁ ଖାତିର ନକରି ହାତୀଟିଏ ଚାଲିଲା ପରି ସେ ନିର୍ଭୟରେ ଚାଲିଥିଲେ ତାଙ୍କର ଲକ୍ଷ୍ୟପଥରେ। ରାସ୍ତାର ଦୁଇ କଡରେ ଠିଆ ହୋଇ ତାଙ୍କୁ ସ୍ୱାଗତ କରୁଥିଲେ ହଜାର ହଜାର ଗ୍ରାମବାସୀ। ଏ ଯାତ୍ରାର ଅଗ୍ରଗତିକୁ କ୍ୟାମେରାରେ ତୋଳି ଧରୁଥିଲେ ଅସଂଖ୍ୟ ସାମ୍ବାଦିକ ମାନେ। ଯେଉଁ ସାମ୍ରାଜ୍ୟର ସୂର୍ଯ୍ୟ ଅସ୍ତମିତ ହୁଅନ୍ତି ନାହିଁ ବୋଲି ପ୍ରବାଦ ରହିଥିଲା। ପୃଥିବୀର ସେ ଶକ୍ତିଶାଳୀ ସାର୍ବଭୌମ ରାଜଶକ୍ତି ବିରୁଦ୍ଧରେ ଅହିଂସା ଯୁଦ୍ଧ ଘୋଷଣା କରି ଅନୁଚର ମାନଙ୍କ ସାଙ୍ଗରେ ଚାଲିଥିଲା ନିରସ୍ତ୍ର ପଟୁଆର ନିର୍ଭୟ ଚିତ୍ତରେ। କି ଅପୂର୍ବ ବୀରତ୍ୱର ସାହସିକତା ! କି ଅପୂର୍ବ ଏ ତାଙ୍କର ନିରସ୍ତ୍ର ଯୁଦ୍ଧ ଘୋଷଣା ! କି ଅପୂର୍ବ ଏ ଦୃଶ୍ୟ ! ପତ୍ରକାର ମାନେ ସ୍ତମ୍ଭିଭୂତ ହୋଇ ଉପଭୋଗ କରିଥିଲେ ପୃଥିବୀର ଏ ଅଦ୍ୱିତୀୟ ଅହିଂସା ଯୁଦ୍ଧକୁ। ସାରା ପୃଥିବୀ ସ୍ତବ୍ଧ ଚକିତ ହୋଇ ନୀରିକ୍ଷଣ କରୁଥିଲେ ଏହାର ଅଗ୍ରଗତି, ପରିଣତି ଓ ରାଜଶକ୍ତିର ପ୍ରତିକ୍ରିୟାକୁ। ଦିନ ପରେ ଦିନ ଖବର କାଗଜ ପୃଷ୍ଠା ମଣ୍ଡନ କରି ପରିବେଶିତ ହେବାରେ ଲାଗିଲା ଖବର। ଏପରି ଏକ ଅଭୁତପୂର୍ବ ଘଟଣା ଦେଖି ସାରା ପୃଥିବୀରେ ବିସ୍ମୟ ଭରିଗଲା। ଚାହୁଁ ଚାହୁଁ ଗାନ୍ଧିଜୀ ହୋଇ ଉଠିଲେ ସାହସିକତାର ଏକ ଶକ୍ତିଉସ୍ତ, ନିର୍ଭିକତାର ଏକ ଶକ୍ତ ଭାବମୂର୍ତ୍ତି ତାଙ୍କର ଉଭାହେଲା ପୃଥିବୀ ଆଗରେ। ସେ ହୋଇଗଲେ ଅହିଂସା ଯୁଦ୍ଧର ସର୍ବଶ୍ରେଷ୍ଠ ବୀରପୁରୁଷ। ପ୍ରେମ ଓ ଅହିଂସାର ମୂର୍ତ୍ତିମନ୍ତ ତେଜସ୍ୱୀ ଅବତାର। କେହି ତାଙ୍କୁ ଆଧାତ୍ମିକ ସିଦ୍ଧପୁରୁଷ ଏବଂ ଆଉ କେହି ତାଙ୍କୁ ଭଗବାନଙ୍କ ଅନନ୍ତ ଶକ୍ତିର ଅବତାର ଅଥବା ଶ୍ରୀରାମ, ଶ୍ରୀକୃଷ୍ଣ ଓ ବୁଦ୍ଧଙ୍କର ବୀରତ୍ୱ, ପ୍ରେମ ଓ ଅହିଂସାର ସମନ୍ୱିତ ଜୀବନ୍ତ ବିଗ୍ରହ ବୋଲି ଆଖ୍ୟାଦେଇ ଲେଖାମାନ ପ୍ରକାଶ କଲେ। ଶେଷରେ

ସେ ପହଞ୍ଚିଲେ ତାଙ୍କ ଲକ୍ଷ୍ୟସ୍ଥଳ ଭାରତ ମହାସାଗର କୂଳରେ ଥିବା ଦାଣ୍ଡୀ ଟାଉନ ନିକଟବର୍ତ୍ତୀ ସମୁଦ୍ର କୂଳରେ। ଏହାଥିଲା ଏପ୍ରିଲ୍ ମାସ ୫ ତାରିଖ ସନ୍ଧ୍ୟା ୬ଟା ବେଳର ଘଟଣା। ଭାରତ ଇତିହାସର ସ୍ୱାଧୀନତା ସଂଗ୍ରାମ ଅଧ୍ୟାୟରେ ଏହା ଗାନ୍ଧିଙ୍କର ଦାଣ୍ଡୀଯାତ୍ରା ଓ ଲବଣ ସତ୍ୟାଗ୍ରହ ନାମରେ ଅବିହିତ। ତା ପରଦିନ ସକାଳେ ଗାନ୍ଧିଙ୍କ ନିର୍ଦ୍ଦେଶରେ ସମସ୍ତେ ପବିତ୍ର ସମୁଦ୍ର ସ୍ନାନ କଲେ। ସ୍ନାନ ପରେ ଗାନ୍ଧିଜୀ ସମୁଦ୍ର କୂଳରୁ ମୁଠାଏ ବାଲି ଉଠାଇ ଆଣି ମୁଷ୍ଟିବଦ୍ଧ କରି ଉପରକୁ ଟେକିଲେ ଏବଂ ହାତ ଖୋଲି ଦେଇ ଜମାଟ ବାନ୍ଧି ଯାଉଥିବା ଲୁଣ ମୁଠାକ ଦେଖାଇ କହିଲେ, ଏଇ ଆମର ସ୍ୱାଧୀନତା, ଏହା ଉପରେ ଟିକସ ବସାଇବାକୁ କାହାରି ଅଧିକାର ନାହିଁ। ଏହାକୁ ପ୍ରତୀକ ସ୍ୱାଧୀନତା ଭାବି ପୂର୍ଣ୍ଣ ସ୍ୱାଧୀନତା ପାଇଁ ସଂଗ୍ରାମ କରିଯାଅ। ଗୋଟିଏ ସପ୍ତାହ ଭିତରେ ସାରା ଭାରତ ଟଳମଳ ହେବାକୁ ଲାଗିଲା। ସାରା ଦେଶର କଂଗ୍ରେସ କର୍ମୀମାନେ ସମୁଦ୍ର କୂଳରୁ ଲୁଣ ସଂଗ୍ରହ କରି ବାଣ୍ଟିବା ଆରମ୍ଭ କରିଦେଲେ। ଦେଶସାରା ବିଛେଇ ହୋଇଗଲା ଲୁଣ ମାରିବାର କୌଶଳ ଅସଂଖ୍ୟ ପ୍ରଚାରପତ୍ର ମାଧ୍ୟମରେ। ସର୍ବତ୍ର ରାସ୍ତା ଗୁଡିକରେ ବିଲାତି କଳ ତିଆରି କୁଢ଼କୁଢ଼ ଲୁଗାପଟା ଜଳିଲା। ଏହାକୁ ଦମନ କରିବା ପାଇଁ ସରକାର ହଜାର ହଜାର କର୍ମୀଙ୍କୁ ଗିରଫ କରି ଜେଲରେ ଭର୍ତ୍ତି କରିଦେଲେ। ଗାନ୍ଧି ବି ଥିଲେ ସେମାନଙ୍କ ଭିତରୁ ଜଣେ। ଜେଲକୁ ବନ୍ଦୀ ହୋଇ ଯିବା ପୂର୍ବରୁ କଂଗ୍ରେସ କର୍ମୀଙ୍କ ଉଦ୍ଦେଶ୍ୟରେ ସେ ତାଙ୍କର ଶେଷ ବାର୍ତ୍ତା ପଠାଇ ଦେଲେ। ସେ ବାର୍ତ୍ତାରେ ଥିଲା "The honour of India has been symbeolized by a fistful of salt on the hands of a man of non-violenos the first which held the salt may be broken but it will not yield up its salt"

ଅଳ୍ପ କେଇଜଣ ବ୍ରିଟିଶ୍ ଲୋକଙ୍କ ନିୟନ୍ତ୍ରଣ ଓ ପରାମର୍ଶରେ ବିଲାତର ଯେଉଁ ହାଉସ୍ ଅଫ୍ କମର୍ସର ତର୍କ ବିତର୍କ ଦ୍ୱାରା ଭାରତର ଶାସନ ପରିଚାଳିତ ହେଉଥିଲା। ୧୯୪୭ ମସିହା ୧୮ ତାରିଖରେ ତାହା ଭୟରେ ଥରି ଉଠିଲା। ସେମାନଙ୍କର

ଶାସନ ବ୍ୟାପୀ ଯାଇଥିଲା ପ୍ରାୟ ପଚାଶ କୋଟି ଭାରତୀୟଙ୍କ ଉପରେ । ଯେଉଁମାନେ ବିଛେଇ ହୋଇ ରହିଥିଲେ ପୃଥିବୀର ଏକ ତୃତୀୟାଂଶ ଭୂଭାଗରେ । ସେଦିନ ସେଇ ହାଉସ୍ ଅଫ୍ କମର୍ସର ମାନ୍ୟବର ସଭ୍ୟମାନେ ବିସ୍ମୟରେ ଅବାକ୍ ହେଲେ, ଯେତେବେଳେ ସେମାନଙ୍କର ନେତା ବଜାଇ ଦେଲେ ଭାରତରେ ବ୍ରିଟିଶ ସାମ୍ରାଜ୍ୟର ମରଣ ଘଣ୍ଟି । ବିରୋଧୀ ଦଳ ନେତା ଉଇନଷ୍ଟମ ଚରଚିଲ୍ଲୀ, ଯିଏ ବ୍ରିଟିଶ ଜାତିର କୃତିତ୍ୱର ଶତମୁଖରେ ପ୍ରଶଂସା କରୁଥିଲେ ସିଂହପରି ଗର୍ଜନ କରି ସେ ଲଜ୍ଜା ଓ ଦୁଃଖରେ ଝାଉଁଳି ପଡିଲେ ମ୍ରିୟମାଣ ହୋଇ । । ହାଉସ୍ ଅଫ୍ କମର୍ସ୍‌ର ଗତ ୪୦ବର୍ଷ ଧରି ଚର୍ଚ୍ଚିଲ ଥିଲେ ମାନ୍ୟବର ସଭ୍ୟ । ବ୍ରିଟିଶ ସାମ୍ରାଜ୍ୟର ପ୍ରସାର ପାଇଁ କୃତିତ୍ୱ ତାଙ୍କର ଅପରିସୀମ ସାହସିକ ବୀରତ୍ୱ ପାଇଁ ପୃଥିବୀରେ ବ୍ରିଟିଶ୍ ଜାତିଥିଲା ଇତିହାସ ପ୍ରସିଦ୍ଧ । ସେଇ ଜାତିର ସାମ୍ରାଜ୍ୟ ଆଜି ଭଗ୍ନସ୍ତୁପରେ ପରିଣତ ହେବାକୁ ଯାଉଛି । ଏକଥା ଦେଖି ଦୁଃଖ ଓ ଲଜ୍ଜାରେ ସେ ମ୍ରିୟମାଣ ହୋଇପଡିଲେ । ଅତୀତର ସ୍ମୃତି ସବୁ ଝଲସି ଉଠିଲା ତାଙ୍କ ମାନସପଟ୍ଟରେ । ବୁଦ୍ଧିମତାରେ ସେ ଥିଲେ ବିଚକ୍ଷଣ, ସାହସିକତାରେ ଦୁର୍ଦ୍ଧର୍ଶ ଯୋଦ୍ଧା, ବିଶ୍ୱାସରେ ଅଟଳ ପ୍ରତିଜ୍ଞ ଏବଂ ଭାରତକୁ ଭଲପାଇବା ଥିଲା ତାଙ୍କର ନିବୀଡତା । ଯୁବାବୟସରେ ସେ ଭାରତକୁ ଯାଇଥିଲେ ତାଙ୍କ ରେଜିମେଣ୍ଟର ସୁବେଦାର ଭାବରେ । ଭାରତର ଧୂଳିମାଟିରେ ସେ ପୋଲ ଖେଳିଥିଲେ । ଜଙ୍ଗଲରେ ପଶି ବାଘ ଶୀକାର କରିଥିଲେ ଏବଂ ଖାଇବର ଘାଟୀରେ ପଠାନ୍ ମାନଙ୍କ ସାଙ୍ଗରେ ଯୁଦ୍ଧ କରିଥିଲେ ଉତ୍ତରାପୂର୍ବାଞ୍ଚଳ ସୀମାନ୍ତରେ । ଭାରତ ଛାଡି ଆସିଲା ବେଳକୁ ତାଙ୍କୁ ୪୧ ବର୍ଷ ବୟସ ହୋଇଥିଲା ଏବଂ ଭାରତରେ ଦୁଇବର୍ଷ କାଳ ତାଙ୍କ ପିଅନ ଭାବରେ ସେବା କରିଥିବା ଭାରତୀୟଙ୍କୁ ପ୍ରତି ମାସରେ ସେ ଦୁଇପାଉଣ୍ଡ କରି ପଠାଇ ଦେଉଥିଲେ । ବ୍ରିଟେନର ରାଜତନ୍ତ୍ର ଉପରେ ତାଙ୍କର ବିଶ୍ୱାସ ଥିଲା ଏବଂ ସେ ଭାବୁଥିଲେ ଯେ, ଭାରତୀୟ ମାନେ ସେମାନଙ୍କ ସ୍ଥାନୀୟ ଅତ୍ୟାଚାରୀ ଶାସକ ମାନଙ୍କ ଠାରୁ ବ୍ରିଟିଶ ଶାସନାଧୀନ ହୋଇ ବେଶ୍ ଭଲରେ ଅଛନ୍ତି ଏବଂ ବ୍ରିଟିଶ ଶାସନପ୍ରତି ସେମାନଙ୍କର ଶ୍ରଦ୍ଧା, ଭକ୍ତି ଓ ବିଶ୍ୱାସ ଅଛି । କାରଣ

ବ୍ରିଟିଶ ଶାସନ ସେମାନଙ୍କ ସ୍ୱାର୍ଥକୁ ସୁରକ୍ଷା ଦେଇପାରୁଛନ୍ତି ଏବଂ ଯେଉଁ ଅଧାପାଠୁଆ ଭାରତୀୟ ମାନେ ରାଜନୈତିକ ଆନ୍ଦୋଳନ କରୁଛନ୍ତି ସେମାନେ ସଂକୀର୍ଣ୍ଣ ମନା। ୧୯୧୦ ମସିହାଠାରୁ ବ୍ରିଟେନ ବିରୁଦ୍ଧରେ ସେମାନଙ୍କର ଆନ୍ଦୋଳନକୁ ସେ ଦୃଢ଼ ହସ୍ତରେ ଦମନ କରିଆସିଛନ୍ତି ଏବଂ ତାଙ୍କର ଉତ୍ତରାଧିକାରୀ ପ୍ରଧାନମନ୍ତ୍ରୀ ଯେଉଁସବୁ ପଦକ୍ଷେପ ନେଉଛନ୍ତି ତାହା ବ୍ରିଟେନର ସାମ୍ରାଜ୍ୟକୁ ଭାଙ୍ଗି ଖଣ୍ଡ ଖଣ୍ଡ କରିଦେବ। ଗାନ୍ଧିଜୀ ଓ ତାଙ୍କର ଅନୁଗତ ମାନଙ୍କୁ ସେ ଉପେକ୍ଷା କରୁଥିଲେ। କାରଣ ତାଙ୍କ ଦୃଷ୍ଟିରେ ସେମାନେ ମ୍ୟାନ ଅଫ୍ ଷ୍ଟ୍ର ଯଦିଓ ୧୯୪୫ ମସିହା ନିର୍ବାଚନରେ ସେ ହାରିଯାଇଥିଲେ। ତଥାପି ତାଙ୍କ Consuvative Party House of Lordsରେ ସଂଖ୍ୟା ଗରିଷ୍ଠତା ବଳରେ ପାର୍ଲିଆମେଣ୍ଟକୁ ହୁଲସ୍ଥୁଲ୍ କରୁଥିଲେ। ତାଙ୍କର ଏହି କ୍ଷମତା ଭାରତର ସ୍ୱାଧୀନତାକୁ ପୁରା ଦୁଇବର୍ଷ କାଳ ଅଟକାଇ ଦେଇପାରିଥିଲା ଏବଂ ପାର୍ଲିଆମେଣ୍ଟରେ ସେ ତାଙ୍କ ଉତ୍ତରାଧିକାରୀ ସୋସିଆଲିଷ୍ଟ ପାର୍ଟିର ପ୍ରଧାନମନ୍ତ୍ରୀ ଅଟିଲଙ୍କର ସମସ୍ତ କାର୍ଯ୍ୟକୁ ନିରୀକ୍ଷଣ କରୁଥିଲେ ଧ୍ୟାନର ସହିତ। ସେଇ କ୍ଲେଇମେଣ୍ଟ ଅଟିଲ ପାର୍ଲିଆମେଣ୍ଟରେ ଠିଆ ହେଲେ କହିବା ପାଇଁ। ହାତରେ ତାଙ୍କ ବକ୍ତବ୍ୟର ଯେଉଁ କାଗଜ ଖଣ୍ଡକ ଧରିଥିଲେ ତାହାର ବହୁଭାଗ ଲର୍ଡ୍ ମାଉଣ୍ଟବିଟେନ ନିଜେ ଲେଖିଥିଲେ। ସେଇ ଯୁବକଙ୍କୁ କ୍ଷମତା ହସ୍ତାନ୍ତର ବିଷୟରେ ଭାରତୀୟ ନେତାମାନଙ୍କ ସହିତ ମତ ବିନିମୟ କରିବାକୁ ସେ ନୂଆଦିଲ୍ଲୀ ପଠାଉଛନ୍ତି। ଏକଥା ଭାବି ଅଟିଲଙ୍କର ବକ୍ତବ୍ୟ ଶୁଣିବାକୁ ସେ ଚାହୁଁନଥିଲେ। ମାଉଣ୍ଟବେଟେନ ଥିଲେ ଜଣେ ଅତ୍ୟନ୍ତ ସାହସୀ ଓ ଚତୁର ଆଡର୍ମିରାଲ। କ୍ଷମତା ହସ୍ତାନ୍ତର ନକରିବାକୁ ସେ ଛ'ମାସ ଧରି ଯୁକ୍ତି କରି ଆସୁଥିଲେ। କିନ୍ତୁ ଶେଷରେ ତାଙ୍କର ସମସ୍ତ ଯୁକ୍ତିକୁ ଉପେକ୍ଷା କରି ଆଜି ଅଟିଲ ମାଉଣ୍ଟବେଟେନଙ୍କୁ ଦିଲ୍ଲୀ ପଠାଇବାର ନିଷ୍ପତ୍ତି ଶୁଣାଇବାକୁ ଯାଉଛନ୍ତି ଭାବି ତାଙ୍କ ମୁହଁ କ୍ରୋଧରେ ଲାଲ ପଡିଗଲା। କିନ୍ତୁ ଆର୍ଟିଲ କହିଲେ His Majesty's government wishes to make it clear that it is definite untention to take the neassary steps to effect transfer of

power into responsible Indian Hands by a date not latte than june 1948. ସତେ ଯେମିତି ଆଶ୍ଚର୍ଯ୍ୟ ଓ ନିରବତାର ଖଣ୍ଡେ କଳାମେଘ ସଂପୂର୍ଣ୍ଣ ପାର୍ଲିଆମେଣ୍ଟକୁ ଆଚ୍ଛନ୍ନ କରିଦେଲା । ନିରବ ନିଶ୍ଚଳ ହୋଇଗଲେ ସମସ୍ତେ । ତିନିଶହ ବର୍ଷ ଧରି ଭାରତରେ ପ୍ରଭୁତ୍ୱ ବିସ୍ତାର କରିଥିବା ବ୍ରିଟିଶ୍ ସାମ୍ରାଜ୍ୟ ଆଜି ଭୁଷୁଡି ପଡିଲା ଭାବି ସମସ୍ତେ ଚକିତ ହୋଇଗଲେ । ଏହାଥିଲା କାଳର ପ୍ରଭାବ । ପୃଥିବୀର ଜନମତକୁ ଲକ୍ଷ୍ୟ କରି ମହାରାଣୀ ଭିକ୍ଟୋରିଆଙ୍କ ନିର୍ଦ୍ଦେଶରେ ବ୍ରିଟିଶ ପାର୍ଲିଆମେଣ୍ଟ ଆଜି ଯେଉଁ ନିଷ୍ପତ୍ତି ନେଲା, ତାହା ଥିଲା ଯୁଗର ଆହ୍ୱାନ ଏବଂ ଏହା ବ୍ରିଟିଶ୍ ଜାତିର ସମ୍ମାନ ରକ୍ଷା କରିବାର ଉପଯୁକ୍ତ ଉପାୟ । ମ୍ୟାନଚୋଷ୍ଟ ଗାଡିଆନ୍ ଏହା ଦେଖି କହିଲେ "The greastert disengagement in history was about to begin' କୋହରେ ଚର୍ଚ୍ଚିଲ୍‌ଙ୍କ କଣ୍ଠ ରୁଦ୍ଧି ହୋଇଯାଇଥିଲା । ସେ ଭାବ ବିହ୍ୱଳ ହୋଇ ଦୁଃଖରେ କହିଲେ The whole business was an attempt by Goverment to make use of brilliant was fiques in order to cover up a malancholy and disastrous transaction' ବିଷାଦର ଛାୟା ସାରା ପାର୍ଲିଆମେଣ୍ଟକୁ ଆବୋରି ବସିଥିଲା । ବିରୋଧୀ ଦଳ ନେତା ଚର୍ଚ୍ଚିଲ୍ ଉଠି ଠିଆ ହୋଇ ବ୍ୟାକୁଳ କଣ୍ଠରେ କହିଲେ 'Let us nt add by shameful flight, by a pumadiru, hurreed scuttle at least let us not add to the parags of sorrow so many of us feel, the taint and sneer of shame' ମାତ୍ର ଏସବୁ ଅସ୍ତଗାମୀ ସୂର୍ଯ୍ୟର ଗତିପଥକୁ ବଦଳାଇ ପାରିଲା ନାହିଁ । House of commors aknowledge the dielate of fomous history ୧୯୪୮ ମସିହା ଜୁନ୍ ମାସ ପୂର୍ବରୁ ବ୍ରିଟିଶ ରାଜର ପତନ ଘଟାଇ ଭାରତକୁ କ୍ଷମତା ହସ୍ତାନ୍ତର ପାଇଁ ହାଉସ୍ ଅଫ୍ କମର୍ସ ବହୁ ମତରେ ଭୋଟ ଦେଲା । ଦୂରଦର୍ଶିତା ହେତୁ ବାସ୍ତବତାକୁ ଗ୍ରହଣ କରିନେଇ ବ୍ରିଟିଶ ଜାତି ପ୍ରମାଣ କରିଦେଲା ତା'ର ଗୌରବମୟ ସ୍ୱାଭିମାନକୁ । ଯୁଗର ରୁଚି ସିନା ବଦଳି ଯାଇଛି,

ନହେଲେ ସେତେବେଳେ ବୀରତ୍ୱର ପ୍ରତୀକ ଥିଲା ସାମ୍ରାଜ୍ୟବାଦ । କାଳର ଆହ୍ୱାନରେ ଗ୍ରୀସ୍, ବେବିଲନ୍‌ର ସଭ୍ୟତା ଭାଙ୍ଗିଛି । ମାତ୍ର ପ୍ରଚଣ୍ଡ ଅହଂକାର ହେତୁ ସେମାନଙ୍କର ବର୍ବର ସଭ୍ୟତା ପାଇଛି ନିନ୍ଦା ଓ ଅପବାଦ। ସେ ଦୃଷ୍ଟିରୁ ଦେଖିଲେ ବ୍ରିଟିଶ୍ ଜାତି ଇତିହାସରେ ଅକ୍ଷୁର୍ଣ୍ଣ କରି ରଖିଛି ତାର ସ୍ୱାଭିମାନ ଓ ସମ୍ଭ୍ରାନ୍ତ ପଣିଆ ।

୧୬ବର୍ଷ ପୂର୍ବରୁ ୧୯୩୧ ମସିହା ଫେବୃଆରୀ ମାସରେ ଯିଏ ଗାନ୍ଧିଙ୍କୁ ଅର୍ଦ୍ଧ ନଙ୍ଗୁଳି ଫକିର ବୋଲି ଅବିହିତ କରିଥିଲେ, ସେ ହେଉଛନ୍ତି ବ୍ରିଟିଶ୍ ପାର୍ଲିଆମେଣ୍ଟ ହାଉସ୍ ଅଫ କମର୍ସର ପ୍ରଚଣ୍ଡ ତେଜସ୍ୱୀ ବାଗ୍ମୀ ଚର୍ଚ୍ଚିଲ । ଗତ ଦଶନ୍ଧି ବ୍ୟାପୀ ସେ ତାଙ୍କୁ ଭର୍ତ୍ସନା କରି ବିରୋଧ କରି ଆସିଛନ୍ତି ଏବଂ ସେହି କାରଣରୁ ସେ ଗାନ୍ଧିଙ୍କର ଶତ୍ରୁଭାବରେ ପରିଚିତ । ଯିଏ ବିଶ୍ୱବ୍ୟାପୀ ଆଶ୍ଚର୍ଯ୍ୟ ଜନକ ଲବଣ ସତ୍ୟାଗ୍ରହ କରି ଜେଲ ଯାଇଥିଲେ, ସେଇ ଗାନ୍ଧି ଅଣ୍ଟାରେ ଖଦଡଟିଏ ଗୁଡାଇ ଓ ହାତରେ ବାଡିଖଣ୍ଡେ ଧରି ଭାଇସ୍ ରାଏଙ୍କର ନିମନ୍ତ୍ରଣ ପାଇ ଆଜି ଲାଲ ଉଲେନ୍ କାର୍ପେଟ ଉପରେ ଚଢ଼ି ପାହାଚ ପରେ ପାହାଚ ଡେଇଁ ଆସୁଛନ୍ତି ଭାରତର ସ୍ୱଂୟ ପ୍ରତିଛବି ଓ ସମ୍ମାନିତ ଅତିଥି ରୂପରେ ଭାଇସ୍ ରାଏଙ୍କ ସହିତ ଚା'ପାନ ଓ ମନ୍ତ୍ରଣା କରିବାକୁ। ଏକଥା ଦେଖି ଚର୍ଚ୍ଚିଲଙ୍କର ଆଶ୍ଚର୍ଯ୍ୟର ସୀମା ନଥିଲା । ଆଜି ବ୍ରିଟିଶ୍ ସରକାରଙ୍କର ସେ ଅତିଥି । ବିରୋଧି ଦଳର ନେତା ଭାବରେ ସେ ଆଜି ମନ୍ତ୍ରଣା କକ୍ଷରେ । ଏମାନଙ୍କ ସାଙ୍ଗରେ ବସି ତାଙ୍କର ଆତିଥ୍ୟ କରିବେ, ତା ନହେଲେ ବ୍ରିଟିଶ୍ ଜାତି ପକ୍ଷରେ ଅସୌଜନ୍ୟ ହେବ । ତାଙ୍କର ମନେ ପଡିଲା, ତାଙ୍କ ପରି ଆଉ କେହି ଆରବ, ଆଫ୍ରିକା କିମ୍ବା ଏସିଆର ନେତା ଭବିଷ୍ୟତରେ ବ୍ରିଟିଶ କନ୍‌ଫରେନ୍ସ ହଲକୁ ଆସିବା କେବେ ସମ୍ଭବ ନୁହେଁ। ଏ କଥା କୁଣ୍ଠାର ସହିତ ମନେ ମନେ ଭାବୁଥିଲେ ଚର୍ଚ୍ଚିଲ। କିନ୍ତୁ କ'ଣ କରିବେ, ତାଙ୍କୁ ବିରୋଧୀ ଦଳ ନେତାଙ୍କ ଭୂମିକା ନିର୍ବାହ କରିବାକୁ ହେବ । ତଥାପି କାଲିର ହାଲ୍ଫ ନେକେଡ ଫକୀର ଆଜି ରାଜ ପ୍ରତିନିଧିଙ୍କ ସହିତ ସମାନ ହୋଇ ରାଜଭବନରେ ଚା'ପାନ କରି ମନ୍ତ୍ରଣା କରିବେ; ଚର୍ଚ୍ଚିଲ ଏହାକୁ ସହଜରେ ଗ୍ରହଣ କରିପାରୁ ନଥିଲେ, ମାତ୍ର ତାଙ୍କୁ ରାଜଧର୍ମ ରକ୍ଷା କରିବାକୁ ହେବ । ପ୍ରଧାନମନ୍ତ୍ରୀ

ଭାବରେ କାଲି ସେ ଶୁଣାଉଥିଲେ, ଆଜି ତାଙ୍କୁ ଶୁଣିବାକୁ ହେବ । ସମ୍ଭ୍ରାନ୍ତ ଶାସନର ଏହା ଏକ ନିର୍ଦ୍ଧାରିତ ସାମ୍ବିଧାନିକ ବ୍ୟବସ୍ଥା । ସାନ ବଡ଼ର ବିଚାର କେବଳ ଏକ ମାନସିକ ବିକାର । ଜାତି ପକ୍ଷରୁ ଶାସନ କାର୍ଯ୍ୟରେ ଏହାର ସ୍ଥାନ ନାହିଁ । ତାଙ୍କ ପାଇଁ ଯେଉଁ ଗାନ୍ଧି ଦିନେ ଅବଜ୍ଞାର ପାତ୍ର ଥିଲେ, ସେଇ ଗାନ୍ଧିଙ୍କ ବକ୍ତବ୍ୟରୁ ଆଜି ବ୍ରିଟିଶ୍ ସାମ୍ରାଜ୍ୟର ପତନର ସ୍ୱର ଶୁଭୁଛି । କାରଣ ସେ ସ୍ୱର ଆଜି ବ୍ରିଟିଶ୍ ଜାତିକୁ ଏକ କ୍ଷୁଦ୍ର ଶକ୍ତି ଭାବରେ ବିଶ୍ୱରେ ଉଭା କରିଦେବ । ମନ୍ତ୍ରଣା କକ୍ଷରେ ତାଙ୍କର ଏହି ମନ୍ତବ୍ୟ ପ୍ରଭାବଶୂନ୍ୟ ହୋଇ ବାୟୁରେ ମିଳେଇ ଗଲା । ତିନି ସପ୍ତାହ ବ୍ୟାପୀ ଏହି ଆଲୋଚନା ଯାହା ଗାନ୍ଧି ଇରଓ୍ୱିନ୍ ପ୍ୟାକ୍ଟ ନାମରେ ଖ୍ୟାତ । ଶେଷରେ ଗାନ୍ଧିଙ୍କର ହଜାର ହଜାର ଅନୁଚରଙ୍କୁ ବନ୍ଦୀମୁକ୍ତ କରାଗଲା । ଏହି ପ୍ୟାକ୍ଟର ବିଷୟବସ୍ତୁ ଥିଲା, ଦୁଇ ସାର୍ବଭୌମ ଶକ୍ତି ମଧ୍ୟରେ ବୁଝାମଣାର ଚୁକ୍ତିପତ୍ର ପରି । ବନ୍ଦୀମୁକ୍ତ କରିବାକୁ ଇରଓ୍ୱାନ ରାଜି ହେବାରୁ ଗାନ୍ଧିଜୀ ଆନ୍ଦୋଳନ ପ୍ରତ୍ୟାହାର କରିନେବାକୁ ସମ୍ମତି ଦେଲେ । ଗାନ୍ଧିଙ୍କର ଏହି ଐତିହାସିକ ବିଜୟ ତାଙ୍କୁ ସାରା ବିଶ୍ୱରେ ଅଦ୍ୱିତୀୟ ଜନନେତା ଭାବରେ ଉଭା କରିଦେଲା ଏବଂ ତାଙ୍କ ନେତୃତ୍ୱରେ ପୂର୍ଣ୍ଣ ସ୍ୱାଧୀନତା ସମ୍ଭବ ବୋଲି ସମସ୍ତଙ୍କ ମନରେ ଏକ ଦୃଢ଼ ବିଶ୍ୱାସ ଜନ୍ମିଲା । ଏହାପରେ ବ୍ରିଟିଶ୍ ସରକାର ତାଙ୍କୁ ନିମନ୍ତ୍ରଣ କଲେ ଲଣ୍ଡନରେ ଗୋଲଟେବୁଲ ବୈଠକରେ ଯୋଗଦେଇ ଭାରତର ଭବିଷ୍ୟତ ନିର୍ମାଣ କରିବାକୁ । ଛ' ମାସ ପରେ ସାରା ପୃଥିବୀକୁ ଆଶ୍ଚର୍ଯ୍ୟ କରି ଗାନ୍ଧି ଲଣ୍ଡନର ବକିଂମହାମ ପ୍ୟାଲେସ୍‌ରେ ପହଞ୍ଚିଲେ ସ୍ୱୟଂ ସମ୍ରାଟଙ୍କ ସହିତ ଚା'ପାନ କରିବାକୁ । ଏହି ସୌଜନ୍ୟ ମୂଳକ ସାକ୍ଷାତର ପ୍ରଥମେ ସମ୍ରାଟ ତାଙ୍କୁ ଏପରି ସ୍ୱଳ୍ପ ପରିଧାନର କାରଣ ପଚାରିବାରୁ ଗାନ୍ଧୀ ସ୍ମିତ ହସି ଉତ୍ତର ଦେଲେ ଆପଣ ତ ଆମ ସମସ୍ତଙ୍କ ପାଇଁ ଯଥେଷ୍ଟ ପିନ୍ଧିଛନ୍ତି । ସମ୍ରାଟଙ୍କ ସହ ଗାନ୍ଧିଙ୍କର ଏହି ସାକ୍ଷାତକାର ବିଶ୍ୱସାରା ପ୍ରଚାରିତ ହେଲା ହଜାର ହଜାର ଖବର କାଗଜ ମାଧ୍ୟମରେ । ମାତ୍ର ଗୋଲଟେବୁଲ ବୈଠକ ବିଫଳ ହେଲା । ଗାନ୍ଧି ଫେରି ଆସି କହିଲେ, ଭାରତର ପୂର୍ଣ୍ଣ ସ୍ୱାଧୀନତା ପାଇଁ ବ୍ରିଟିଶ୍ ସରକାର ଏପର୍ଯ୍ୟନ୍ତ ପ୍ରସ୍ତୁତ ହୋଇ ନାହାଁନ୍ତି । ସେମାନଙ୍କ କ୍ରୋଧକୁ କିପରି ଶାନ୍ତ

କରିହେବ ଏବଂ ସ୍ୱାଧୀନତା କେବେ ମିଳିବ ? ଏ ପ୍ରଶ୍ନର ଉତ୍ତର ଦେଇ ସେ କହିଲେ The seed which is being shown now may result in a softeneng of the British sprit ସାରା ବିଶ୍ୱର ଖବର କାଗଜ ଗୁଡିକ ତାଙ୍କ ଭବିଷ୍ୟତ କାର୍ଯ୍ୟପନ୍ଥା ଜାଣିବାକୁ ଆଗ୍ରହର ସହିତ ଅପେକ୍ଷା କରୁଥିଲେ । କିନ୍ତୁ ସେମାନେ ଜାଣି ନଥିଲେ ଯେ, ଗାନ୍ଧି ଗୋଟିଏ ଗାଲରେ ଚାପୁଡା ଖାଇଲେ ଅନ୍ୟ ଗାଲଟିକୁ ଦେଖାଇ ଦେଇ ବ୍ରିଟିଶ୍ ସାମ୍ରାଜ୍ୟକୁ ମୂଳରୁ ଉପାଡି ଫୋପାଡି ଦେବେ । ଗୋଲଟେବୁଲ ବୈଠକ ବିଫଳ ହେଲା ସତ । କିନ୍ତୁ ଲବଣ ସତ୍ୟାଗ୍ରହ ଭଳି ନୈତିକ ପ୍ରହାର ବ୍ରିଟିଶ୍ ସାମ୍ରାଜ୍ୟର ଅଣ୍ଟା ଭାଙ୍ଗି ଦେଇଥିଲା । ଭଙ୍ଗା ଅଣ୍ଟାରେ ସେ ଆଉ କ'ଣ କରିପାରନ୍ତା ? ଗୁଳିକରି ମାରିବା ଆଉ ଅନ୍ଧକାର କାରା କକ୍ଷରେ ନିକ୍ଷେପ କରିବା ଛଡା ସେମାନଙ୍କର ଆଉ କି ବଳଥିଲା ? ଭୌତିକ ସମ୍ପଦ ଆଉ ଆଇନର ଜୁଲମ ଦ୍ୱାରା ମଣିଷର ହୃଦୟକୁ ଜୟ କରିବା ଘଟଣା ମାନବ ଇତିହାସରେ ନାହିଁ । ଆତ୍ମଶକ୍ତିଠାରୁ ଆଉ କୌଣସି ଶକ୍ତି ଅଧିକ ଶକ୍ତିଶାଳୀ ନୁହେଁ । ଭାରତକୁ ବୈଦିକ ସଭ୍ୟତାର ଏହା ଦାନ । ଗାନ୍ଧିଜୀ ସେଇ ସାଂସ୍କୃତିକ ପରମ୍ପରାକୁ ପରୀକ୍ଷା କରି ଦେଖିଥିଲେ । ତେଣୁ ଗୋଲଟେବୁଲ ବୈଠକର ବିଫଳତା ତାଙ୍କୁ ନିରାଶ କରି ନଥିଲା । ବରଂ ତାଙ୍କ ଆତ୍ମଶକ୍ତିକୁ ଆହୁରି କଠୋର ଭାବରେ ଜାଗ୍ରତ କରିବା ପାଇଁ ତାଙ୍କୁ ପ୍ରେରଣା ଦେଇଥିଲା ।

ଏହାପରେ ତାଙ୍କ ଆନ୍ଦୋଳନ ପ୍ରତି ପୃଥିବୀର ଜନମତ ଜାଗ୍ରତ କରିବାକୁ ସେ ବିଦେଶ ଭ୍ରମଣରେ ବାହାରିଲେ । ତାଙ୍କ ସାଙ୍ଗରେ ନଥିଲେ କେହି ନୌକର, ଥିଲା କେବଳ ହାତରେ ଖଣ୍ଡେ ବାଡି, ଅଳ୍ପ କେଇଜଣ ଅନୁଚର ଏବଂ ଗୋଟିଏ ଛେଳି । ଛେଳିଟିରୁ ସେ ତାଙ୍କର ଖାଦ୍ୟ ପାଇଁ ସଂଗ୍ରହ କରନ୍ତି ଗିନାଏ କ୍ଷୀର । ବିଳାସମୟ ହୋଟେଲରେ ନରହି ସେ ରହିଲେ ଲଣ୍ଡନର ବସ୍ତି ଅଞ୍ଚଳର ଗୋଟିଏ ଛୋଟ ନିରାଡମ୍ବର ଘରେ ଏବଂ ବୁଲି ବୁଲି ଭେଟିଲେ ଚାର୍ଲି ଚାପ୍ଲିନ, ଜନ୍ ସାମୁଏଲ୍ସ, ଜର୍ଜ ବ୍ରେଣ୍ଡନ, the Arch Bishop of Canlebery, Horold dastee

ଖଣି ମାଲିକଙ୍କ ମ୍ୟାରିଓ ମାଉଣ୍ଟସନ୍ ଏବଂ କାମରୁ ଛଟେଇ ହୋଇଥିବା କୋଇଲା ଖଣିର ଶ୍ରମିକ ମାନଙ୍କୁ। ଏହିପରି ପ୍ରାୟ ସବୁ ପ୍ରଭାବଶାଳୀ ବ୍ୟକ୍ତି ମାନଙ୍କୁ ସାକ୍ଷାତ କରି ଆଳାପ ଆଲୋଚନା କଲେ। କିନ୍ତୁ ଉଇନଷ୍ଟନ ଚର୍ଚ୍ଚିଲ ଔଦ୍ଧତ୍ୟ ହେତୁ ସାକ୍ଷାତ ଦେବାକୁ ମନା କରିଦେଲେ। ଉପରୋକ୍ତ ନାମୀ ଦାମୀ ବ୍ୟକ୍ତି ମାନଙ୍କ ସାଙ୍ଗରେ ସେ ବହୁ ସମସ୍ୟା ଯଥା ବେକାରୀ, ଶ୍ରମିକ ଅଶାନ୍ତି ଏବଂ ଗୁରୁତର ସାମାଜିକ ଅନ୍ୟାୟ ସମ୍ପର୍କରେ ବିସ୍ତୃତ ଆଲୋଚନା କଲେ। ପ୍ରଥମେ ଯେଉଁ ଗାନ୍ଧି ଲଣ୍ଡନ ଆସିବା ବେଳେ ପାଟିରୁ କଥା ବାହାରୁନଥିଲା, ସେଇ ଗାନ୍ଧିଙ୍କ ପାଟିରେ ଏବେ ବାଟୁଳି ବାଜୁନାହିଁ। ତାଙ୍କର ଏସବୁ ଆଲୋଚନା ରେଡ଼ିଓରେ ଚର୍ଚ୍ଚା ହେଲା। ସାରା ପୃଥିବୀରେ ଗାନ୍ଧିଙ୍କ ଦର୍ଶନ ଚହଳ ସୃଷ୍ଟି କଲା। ଏସବୁ ସମସ୍ୟାର ସମାଧାନ ପାଇଁ ତାଙ୍କ ଦର୍ଶନର ନୂତନ ଦୃଷ୍ଟିକୋଣ ପାଶ୍ଚାତ୍ୟ ଭୂଖଣ୍ଡର ବୁଦ୍ଧିଜୀବି ମାନଙ୍କୁ ପ୍ରଥମେ ପ୍ରଥମେ ନୂଆ ନୂଆ ଲାଗିଲେ ମଧ୍ୟ ଅବାସ୍ତବ ନୁହେଁ ବୋଲି ମନେ ହେଲା। ମାତ୍ର ଏହା ଅତ୍ୟନ୍ତ କଷ୍ଟସାଧ୍ୟ ହୋଇଥିବାରୁ ଶିଳ୍ପ ବିପ୍ଳବର ପ୍ରଭାବିତ ଦେହ ସର୍ବସ୍ୱ ଲୋକେ ଏହାକୁ ଗ୍ରହଣ କରିବେ ନାହିଁ ବୋଲି ଚିନ୍ତାରେ ପଡିଗଲେ। ସାରା ପୃଥିବୀରେ ମଣିଷର ଚରିତ୍ର ସବୁଆଡେ ସମାନ। ସେମାନେ ପୁଣି ପ୍ରସିଦ୍ଧ ଚିନ୍ତାନାୟକ, ତେଣୁ ନବୁଝନ୍ତେ କିପରି ? ମାତ୍ର ବାସ୍ତବ କ୍ଷେତ୍ରରେ ତା'ର ପ୍ରୟୋଗ ଆଧ୍ୟାତ୍ମିକ ଚେତନାଶୂନ୍ୟ ମଣିଷ ପକ୍ଷରେ ଅସମ୍ଭବ। ମଣିଷ ସମସ୍ୟା ବହୁଳ। କିନ୍ତୁ ସେ ସବୁର ସରଳ ସମାଧାନ ଅଛି। ପ୍ରାଚ୍ୟ ଭୂଖଣ୍ଡର ପ୍ରାଚୀନ ସଭ୍ୟତାର ଆତ୍ମଶକ୍ତି ଉପରେ ଥିଲା ଗଭୀର ବିଶ୍ୱାସ। ଆତ୍ମାର ଶକ୍ତି ଅନନ୍ତ। ସେ ଅନନ୍ତ ଶକ୍ତିକୁ ଜାଗ୍ରତ କରିପାରିଲେ ସବୁ ସମସ୍ୟା ସାମାଧାନ କରିବା ସହଜ ହୋଇଯାଏ। ଶିଳ୍ପ ସମୃଦ୍ଧ ଆମେରିକା ପରି ରାଷ୍ଟ୍ର ଗୁଡିକ ଉଦ୍ଦେଶ୍ୟରେ ସେ ରେଡିଓରେ କହିଲେ ସାରା ପୃଥିବୀ ବର୍ତ୍ତମାନ କ୍ଷୁଧା ବ୍ୟାଧି ଓ ହିଂସାରେ ଜର୍ଜରିତ। ସମସ୍ୟାର ସମାଧାନ କରିବାକୁ ଯାଇ ମଣିଷ ଆଜି ବାଟବଣା ହୋଇଛି। ଶିଳ୍ପ ପ୍ରସାର ଦ୍ୱାରା ସମସ୍ୟାର ସମାଧାନ ହୁଏନା ବରଂ ଏହା ଅସରନ୍ତି ନୂଆ ସମସ୍ୟା ସୃଷ୍ଟି କରେ। କାରଣ ଏହା ମଣିଷକୁ ଆତ୍ମଚେତନା ଠାରୁ

ଅଲଗା କରି ଦେହ ସର୍ବସ୍ୱ କରିଦିଏ। ଏପରି ଏକ ଜଟିଳ ସମସ୍ୟାରୁ ପୃଥିବୀକୁ ଏକା ଭାରତର ପ୍ରାଚୀନ ଦର୍ଶନ ହିଁ ସମାଧାନର ନୂଆ ବାଟ ଦେଖାଇ ପାରିବ। ମାତ୍ର ଶିଳ୍ପ ପ୍ରସାର ଜନିତ ପ୍ରଭାବ ଦ୍ୱାରା ପାଶ୍ଚାତ୍ୟ ଭୂଖଣ୍ଡର ମାନସିକସ୍ଥିତି ଏପରି ଅବସ୍ଥାରେ ପହଞ୍ଚି ଯାଇଛି ଯେ, ତାହା ଗାନ୍ଧି ଦର୍ଶନକୁ ବୁଝିବାକୁ ଅସମର୍ଥ। ତେଣୁ ଗାନ୍ଧି ନିରାଶ ମନରେ ଭାରତ ଫେରିଆସିଲେ। ତାଙ୍କୁ ବିଦାୟକାଳୀନ ସମ୍ବର୍ଦ୍ଧନା ଜଣାଇବାକୁ ଫ୍ରାନ୍ସ, ସୁଇସ୍ ଏବଂ ଇଟାଲିଆନ୍ ମାନେ ଆସି ରେଳଷ୍ଟେସନରେ ରୁଣ୍ଡ ହେଲେ। ତୃତୀୟ ଶ୍ରେଣୀ ରେଳଡବାର ଝରକା ବାଟଦେଇ ଦନ୍ତହୀନ ଶୀର୍ଣ୍ଣ କଂକାଳ ଗାନ୍ଧି ସେମାନଙ୍କୁ ପ୍ରତି ନମସ୍କାର ଜଣାଇ ଚିନ୍ତାରେ ବୁଡିଗଲେ। ସମ୍ଭବତଃ ଧ୍ୟାନମଗ୍ନ ଗାନ୍ଧି ଭଗବାନଙ୍କୁ ସ୍ମରଣ କରି କହୁଥିଲେ - ଏ ବାଟବଣା ମଣିଷ ମାନଙ୍କୁ ଭଲବାଟ ଦେଖାଅ ପ୍ରଭୁ। ଭାରତ ଫେରିବା ପୂର୍ବରୁ ସେ ପ୍ୟାରିସ୍‌ର ଏକ ସଭାରେ ଉଦବୋଧନ ଦେଇଥିଲେ। ସୁଇଜରଲାଣ୍ଡ ଗସ୍ତ ବେଳେ ସେ ତାଙ୍କର ବନ୍ଧୁ ରୋମେନ୍ ରୋନାଲ୍ଡଙ୍କୁ ଭେଟିଲେ ଏବଂ ସେଠାରେ କେତେକ ଲୋକ ତାଙ୍କୁ କିଙ୍ଗ ଅଫ୍ ଇଣ୍ଡିଆ ବୋଲି ସମ୍ବୋଧନ କରି ତାଙ୍କର ସେବା ପାଇଁ ବ୍ୟାକୁଳ ହେଉଥିଲେ। ରୋମରେ ସେ ସାମ୍ବାଦିକ ମାନଙ୍କୁ ସାକ୍ଷାତ କରି କହିଥିଲେ Mussolini faseism would collapse like a house of cards. ଭାରତରେ ପହଞ୍ଚିଲା ବେଳକୁ ବମ୍ବେଠାରେ ଯେଉଁ ହଜାର ହଜାର ଲୋକ ତାଙ୍କୁ ସ୍ୱାଗତ କରିବାକୁ ରୁଣ୍ଡ ହୋଇଥିଲେ ସେମାନଙ୍କୁ ସମ୍ବୋଧନ କରି ସେ କହିଲେ I have come back empty handed, India would have to retrm civil disobdience. ଲଣ୍ଡନରେ ଯେଉଁ ଗାନ୍ଧି ବ୍ରିଟିଶ ସାମ୍ରାଜ୍ୟର ସମ୍ରାଟଙ୍କ ସହିତ ବସି ଚା'ପାନ କରିଥିଲେ, ସେହି ଗାନ୍ଧି ପୁଣି ଜେଲ ଯିବାକୁ ପ୍ରସ୍ତୁତ ହୋଇଗଲେ। ପରବର୍ତ୍ତୀ ୩ବର୍ଷ କାଳ ସେ ବାରମ୍ବାର ଜେଲ ଗଲେ ଏବଂ ଜେଲରୁ ମୁକୁଳିଲେ। ଅର୍ଥାତ୍ ବିଭିନ୍ନ ପର୍ଯ୍ୟାୟରେ ତିନିବର୍ଷ ପର୍ଯ୍ୟନ୍ତ ତାଙ୍କର ଜେଲକୁ ଯିବା ଆସିବା ଲାଗି ରହିଲା। ଲଣ୍ଡନରେ ଚର୍ଚ୍ଚିଲ ଗର୍ଜନ କରି କହିଥିଲେ। କିନ୍ତୁ ତା ସତ୍ତ୍ୱେ ବ୍ରିଟିଶ ସରକାର ୧୯୩୫ ମସିହାରେ 'ଦି

ଗଭର୍ଣ୍ଣମେଣ୍ଟ ଅଫ୍ ଇଣ୍ଡିଆ ଆକ୍ଟ ପାଶ୍' କରି ପ୍ରାଦେଶିକ ସ୍ୱୟଂ ଶାସନ ପ୍ରବର୍ତ୍ତନ କଲେ । ଶେଷରେ ଗାନ୍ଧି ଜେଲରୁ ମୁକୁଳିବା ପରେ ତିନିବର୍ଷ ପର୍ଯ୍ୟନ୍ତ ନିଜ ହୃଦୟର ବେଦନାକୁ ଲାଘବ କରିବା ପାଇଁ ଅସ୍ପୃଶ୍ୟତା ନିବାରଣ ଓ ଗ୍ରାମ୍ୟ ଜୀବନର ଦୁଃଖ ମୋଚନ ପାଇଁ ସେ ନିଜକୁ ଉତ୍ସର୍ଗ କରିଦେଲେ । ତାଙ୍କ ନିର୍ଦ୍ଦେଶରେ କଂଗ୍ରେସ କର୍ମୀ ମାନେ ଗାଁ ଗାଁରେ ସଭା ସମିତି ମାଧ୍ୟମରେ ଏହାର ବ୍ୟାପକ ପ୍ରଚାର କଲେ । ଚାହୁଁ ଚାହୁଁ ଏହା ଏକ ପ୍ରକାର ଆନ୍ଦୋଳନରେ ପରିଣତ ହୋଇଗଲା ଏବଂ ଧିରେ ଧିରେ ଏହାର ସୁଫଳ ମିଳିଲା । ଛୁଆଁ ଅଛୁଆଁ କମିବାକୁ ଲାଗିଲା ଏବଂ ଗାଁ ଗଣ୍ଡାରେ ପରିବେଶ ସୁସ୍ଥ ହେବାକୁ ଲାଗିଲା । ଦ୍ୱିତୀୟ ବିଶ୍ୱଯୁଦ୍ଧ ଆରମ୍ଭ ହେବା ବେଳକୁ ଗାନ୍ଧି ତାଙ୍କର ଅହିଂସା ନୀତିପ୍ରତି ଅତ୍ୟନ୍ତ ଅନୁରକ୍ତ ହୋଇପଡିଲେ । ଏହା ସେ ଆରମ୍ଭ କରିଥିଲେ ଭାରତର ଆଭ୍ୟନ୍ତରୀଣ ବିବାଦ ସବୁ ସମାଧନା କରିବା ପାଇଁ । ବର୍ତ୍ତମାନ ତାକୁ ସେ ପ୍ରୟୋଗ କଲେ ମାନବ ଜାତିକୁ ଧ୍ୱଂସ ମୁଖରୁ ଉଦ୍ଧାର କରିବା ପାଇଁ । ମୁସୋଲିନ୍ ଯେତେବେଳେ ଇଥୋପିଆକୁ ହିଂସାକାଣ୍ଡ ଦ୍ୱାରା ଦଳିମକ୍ଟି ପକାଇଲେ, ଗାନ୍ଧି ସେତେବେଳେ ଇଥୋପିଆ ବାସୀଙ୍କ ଉଦ୍ଦେଶ୍ୟରେ କହିଲେ Allow yourself to be slacet because is more effective than resistance since after all, mussline did not want a disert. ନାଜି ଅତ୍ୟାଚାରରେ ଉତ୍ପିଡ଼ିତ ହେବା ଦେଖି ସେ ଘୋଷଣା କଲେ It ever than the could be Justifiable was in the name of and forhumanity was against germany to prevent the wanteon persecution of a while race would be comltely justified. I do not believe in war, a clam and determined stand offered by unarmed man and womn possessing the strength of suffering given to them by Jehovah, That would convert (the Germans) to am application of human dignity' ଏପରିକି ଇଉରୋପରେ ନିର୍ଯାତିତ ହେଉଥିବା ଦୁର୍ଗତ ମାନେ ମଧ୍ୟ ଅହିଂସା ଉପରେ ବିଶ୍ୱାସ ରଖିବା ଉଚିତ । ଅହିଂସା ପ୍ରତି ତାଙ୍କର ଏପରି ଦୃଢ଼

ବିଶ୍ୱାସ ଦେଖି ସମଗ୍ର ବିଶ୍ୱ ଚମକୃତ ହେଲା ସତ, କିନ୍ତୁ ତାକୁ ବ୍ୟକ୍ତିଗତ ଜୀବନରେ ପାଳନ କରିବାକୁ କାହାରି ସାହସ ହେଲା ନାହିଁ କାରଣ ଏହ ସଂଯମ, ଶୃଙ୍ଖଳା ଓ ଅଭ୍ୟାସର କଥା। ସେପରି ସାଧନା କ୍ୱଚିତ ଲୋକଙ୍କ ପାଖରେ ଦେଖିବାକୁ ମିଳେ ଏବଂ ଏପରି ଲୋକମାନେ ଅନାସକ୍ତ ମୁକ୍ତ କର୍ମଯୋଗୀ। ଶେଷରେ ଯୁଦ୍ଧ ଯେତେବେଳେ ଆରମ୍ଭ ହୋଇଗଲା, ସେତେବେଳେ ସେ ନିଶ୍ଚିତ ଚିତ୍ତରେ ଧ୍ୟାନମଗ୍ନ ହୋଇ ଭଗବାନଙ୍କୁ ପ୍ରାର୍ଥନା କଲେ। ହେ ଭଗବାନ, ଭୟଙ୍କର ନରହତ୍ୟା କରିବାକୁ ଯାଉଥିବା ଏ ଅଜ୍ଞାନ ମାନଙ୍କୁ ଆଲୋକର ପଥ ଦେଖାଅ। ପ୍ରଚଣ୍ଡ ଝଡତୋଫାନ ପରେ ପ୍ରକୃତି ଯେପରି ଶାନ୍ତ ହୋଇଯାଏ। ସେହିପରି ହଠାତ୍ ଏକ ଚମତ୍କାର ଦେଖାଇ ଯୁଦ୍ଧଖୋର ମାନଙ୍କୁ ଶାନ୍ତ କରିଦିଅ ପ୍ରଭୁ। ଅହିଂସାର ମନ୍ତ୍ର ତାଙ୍କ ଚେତନାକୁ ଆବୋରି ବସିଥିଲା। ସେ ହୋଇ ଯାଇଥିଲେ ସତେ ଯେମିତି ବିଶ୍ୱପ୍ରାଣ। ଦ୍ୱିତୀୟ ବିଶ୍ୱଯୁଦ୍ଧ ସମୟରେ ଚର୍ଚ୍ଚିଲ କେତେକ ଦେଶବାସୀଙ୍କୁ ଆହ୍ୱାନ ଦେଇ କହିଥିଲେ, ଗାନ୍ଧିଜୀ ସେତେବେଳେ ଇଉରୋପରେ ଅତ୍ୟନ୍ତ ଧୈର୍ଯ୍ୟଶାଳୀ ବୀରମାନଙ୍କୁ ଖୋଜିବା ପାଇଁ ଡାକରା ଦେଇଥିଲେ। ସେ ଇଂରେଜ ମାନଙ୍କ ଉଦ୍ଦେଶ୍ୟରେ ଲେଖିଥିଲେ Invite hiller and mussolini to take what they want of the counties you cɘll your poossession. Let them take possission of your beautiful island with as many beautiful buildigs. you will give all this bu ruither your minds rnor you rouls. ମାତ୍ର ଗାନ୍ଧିଙ୍କର ଏହି ଡାକରା ସେମାନଙ୍କ କାନକୁ ଶୁଣାଗଲା। Like the gibherish of an crrelevant old like the gibberish of crrelevant old fool ପରି। ଗାନ୍ଧି ମଧ୍ୟ ନିଜ କଂଗ୍ରେସ ଆନ୍ଦୋଳର ନେତୃବର୍ଗଙ୍କୁ ଅହିଂସା ତତ୍ତ୍ୱ ବୁଝାଇ ପାରିନଥିଲେ, ଯେଉଁମାନେ ଭାରତକୁ ଯୁଦ୍ଧକୁ ଟାଣି ନେବାକୁ ଚାହୁଁଥିଲେ। ଏହି କାରଣ ପାଇଁ ସେମାନେ ଗାନ୍ଧୀଙ୍କର ସାଙ୍ଗ ଛାଡି ଦେଇଥିଲେ। ଏହି ଅବସରରେ ୧୯୪୨ ମସିହା ମାର୍ଚ୍ଚ ମାସରେ ଯେତେବେଳେ ଜାପାନର ଇମ୍ପେରିୟଲ ଆର୍ମି

ଭାରତରେ ଦ୍ୱାରଦେଶରେ ପହଞ୍ଚିଲେ । ସେତେବେଳେ ଚର୍ଚ୍ଚିଲ ସାର୍‌ ଷ୍ଟଫେର୍ଡ ହାତରେ ଏକ ପ୍ରସ୍ତାବ ଦେଇ ନୂଆଦିଲ୍ଲୀ ପଠାଇଲେ । ଏ ପ୍ରସ୍ତାବରେ ଥିଲା ଜାପାନର ପରାଜୟ । ଭାରତକୁ ବ୍ରିଟିଶ୍ ସାମ୍ରାଜ୍ୟର ସାର୍ବଭୌମ ଅଧିନରେ ଏକ ସ୍ୱାଧୀନ ସ୍ୱୟଂଶାସିତ ଦେଶର ମାନ୍ୟତା । ସାର ଷ୍ଟଫେଡ କ୍ରିପ୍ସ ଥିଲେ ଜଣେ ନିରାମିଂଶାସି ଏବଂ ଭାରତୀୟ କଂଗ୍ରେସ ଦଳର ବହୁ ନେତାଙ୍କର ବନ୍ଧୁ । ଏହାର ଉଦ୍ଦେଶ୍ୟ ଥିଲା, ବ୍ରିଟେନକୁ ସମର୍ଥନ କରି ଭାରତ ଜାପାନ ଆକ୍ରମଣକୁ ପ୍ରତିହତ କରୁ । ଜାପାନର ପରାଜୟ ପରେ ଏବଂ ବ୍ରିଟିଶ୍ ସାମ୍ରାଜ୍ୟର ଅଧିନରେ ସ୍ୱାଧୀନ ସ୍ୱୟଂ ଶାସିତ ଦେଶର ମାନ୍ୟତା; ଏହା ଚର୍ଚ୍ଚିଲଙ୍କ ଚତୁର କୌଶଳର ଏକ ନଗ୍ନରୂପ ଦେଖି କ୍ରିପ୍ସ ପହଞ୍ଚିବାର ଅଠଚାଳିଶ ଘଣ୍ଟାପରେ ଗାନ୍ଧି ଏହାକୁ ଗ୍ରହଣ ଯୋଗ୍ୟ ନୁହେଁ ବୋଲି କହିଲେ । ସେ କହିଲେ ଯେ, ଜାପାନର ଆକ୍ରମଣକୁ ଯଦି ଭାରତ ପ୍ରତିହତ କରିବ, ତେବେ ଅହିଂସା ଉପାୟରେ । କାରଣ ଭାରତ ହିଂସାରେ ବିଶ୍ୱାସ କରେନା । ଚର୍ଚ୍ଚିଲଙ୍କର ଏହି ପ୍ରସ୍ତାବରେ ମୁସଲିମ ଲିଗ୍ ମଧ ସ୍ୱୀକୃତି ମିଳିବାର ପ୍ରତିଶ୍ରୁତି ଥିଲା । ଅର୍ଥାତ୍ ମୁସଲିମ୍ ଲିଗ୍ ଭାରତକୁ ଦୁଇଭାଗ କରି ପାକିସ୍ଥାନ ରାଷ୍ଟ୍ର ଗଠନ କରିବାକୁ ଯେଉଁ ଦାବୀ କରି ଆସୁଛି, ତାହା ପୂରଣ କରିବାକୁ ହେବ । ଗାନ୍ଧି ମଧ ରାଜୀନତି କ୍ଷେତ୍ରରେ ଚର୍ଚ୍ଚିଲଙ୍କ ଠାରୁ କମ୍ ଚତୁର ନଥିଲେ । ସେ କ୍ରିପ୍ସଙ୍କୁ ଏ ପ୍ରସ୍ତାବ ଗ୍ରହଣ ଯୋଗ୍ୟ ନୁହେଁ ବୋଲି କହିଲା ପରେ କ୍ରିପ୍ସ ଫେରିଗଲେ ଏବଂ ତାପର ଦିନ ଥିଲା ଗାନ୍ଧିଙ୍କର ମୌନବ୍ରତ ସୋମବାର । ଏପରି ମୌନବ୍ରତ ସପ୍ତାହକୁ ଥରେ ପାଳନ କରିବା ଥିଲା ତାଙ୍କର ବହୁଦିନର ଅଭ୍ୟାସ । ଏହାଦ୍ୱାରା ସେ ତାଙ୍କର ଗଳାକୁ ଅବସର ଦେବା ସହିତ ସଂଯମ ଶକ୍ତିକୁ ବୃଦ୍ଧି କରୁଥିଲେ । ଜାପାନ ଆକ୍ରମଣକୁ ପ୍ରତିହତ କରିବା ସମ୍ପର୍କରେ ସେ ଗାନ୍ଧି କ୍ରିପ୍ସଙ୍କୁ କହିଲେ, ଜାପାନ ଆକ୍ରମଣକୁ ପ୍ରତିହତ କଲେ ଅସଂଖ୍ୟା ସୈନ ମୃତାହତ ହେବ ଏବଂ ରକ୍ତ ନଦୀ ଛୁଟିବ । ହତ୍ୟା ଏବଂ ରକ୍ତପାତ ଯୁକ୍ତିଯୁକ୍ତ କାରଣ ହେତୁ ଘଟିଲେ ସେ ବିରୋଧ କରିବେ ନାହିଁ, କିନ୍ତୁ ଏ କ୍ଷେତ୍ରରେ ସେପରି କୌଣସି ଯୁକ୍ତିଯୁକ୍ତ କାରଣ ନାହିଁ । ତାହା ଅନିଶ୍ଚିତ, କିନ୍ତୁ ଯୁଦ୍ଧରେ ମୃତାହତ ହେବା ନିଶ୍ଚିତ । ବିନା କାରଣରେ

ମୃତାହତ ଘଟଣାକୁ ସେ ପସନ୍ଦ କରନ୍ତି ନାହିଁ। ସୁତରାଂ ଚର୍ଚ୍ଚିଲ ଯେଉଁ ପ୍ରସ୍ତାବ ଦେଇଛନ୍ତି ତାକୁ ଗ୍ରହଣ କରିବା ସେହିପରି ଅବିମୃଶ୍ୟକାରିତା। ବ୍ରିଟେନ ଯଦି ଭାରତ ସହିତ ବନ୍ଧୁତା ଚାହେଁ ଏବଂ କ୍ଷମତା ହସ୍ତାନ୍ତର କରି ସ୍ୱାଧୀନ ଘୋଷଣା କରିବାକୁ ଆନ୍ତରିକ ଇଛାଥାଏ, ତେବେ ତାହା ଜାପାନର ପରାଜୟ ପରେ କାହିଁକି ? ପୂର୍ବରୁ ନୁହେଁ କାହିଁକି ? ବ୍ରିଟେନ ଯଦି ଭାରତ ଛାଡି ଚାଲିଯାଏ, ତେବେ ଜାପାନ ଆକ୍ରମଣର ପ୍ରଶ୍ନ ଉଠିବ କାହିଁକି ? ଭାରତ ଚାହେଁ ସ୍ୱାଧୀନତା। ବ୍ରିଟେନର ପ୍ରଭୁତ୍ୱକୁ ଅସ୍ୱୀକାର କରି ଭାରତ ଅହିଂସା ଯୁଦ୍ଧ କରୁଛି। ଚର୍ଚ୍ଚିଲଙ୍କର ଏ ପ୍ରସ୍ତାବକୁ ଗ୍ରହଣ କରି ଭାରତ ପୁଣି ବ୍ରିଟେନର ପ୍ରଭୁତ୍ୱକୁ ସ୍ୱୀକାର କରିବ କିପରି ? କାହାରି ହୁକୁମରେ ଭାରତ ଚଳିବାକୁ ଚାହେଁନା। ବ୍ରିଟେନ କ୍ଷମତା ହସ୍ତାନ୍ତର ନକରି ଯଦି ନରହତ୍ୟା ଓ କାରାଗାରରେ ନିକ୍ଷେପ କରିବାକୁ ଚାହେଁ, ତେବେ ଭାରତର ଜଣେ ମାତ୍ର ଲୋକ ଥିବା ପର୍ଯ୍ୟନ୍ତ ଅହିଂସା ଉପାୟରେ ପ୍ରତିବାଦ କରିବେ। ସମସ୍ତଙ୍କୁ ମାରି ବ୍ରିଟେନ ଯଦି ଏକ ଜନଶୂନ୍ୟ ମରୁଭୂମି - ଭାରତକୁ ଶାସନ କରିବାକୁ ଚାହେଁ, ତେବେ କରୁ। କ୍ରିପ୍ସଙ୍କର ଉତ୍ତର ଦେବାକୁ ଆଉ କିଛି ନଥିଲା। ସେ ଫେରିଗଲେ। ତାପରେ ସୋମବାର ଦିନ ମୌନବ୍ରତ ଶେଷରେ ଗାନ୍ଧିଜୀ ବ୍ରିଟେନକୁ ଚରମବାଣୀ ଶୁଣାଇ କହିଲେ କୁଇଟ୍ ଇଣ୍ଡିଆ। ଭାରତ ଛାଡି ଚାଲିଯାଅ। ଲିଭି ଇଣ୍ଡିଆ ଟୁ ଗଡ୍ ଅର୍ ଇଭିନ୍ ଆନଚେରୀ।

୧୯୪୨ ମସିହା ଅଗଷ୍ଟ ମାସ ୮ ତାରିଖ ମଧ୍ୟରାତ୍ର ପରେ ବମ୍ବେ ସଭାକକ୍ଷରେ ଭାରତୀୟ ଜାତୀୟ କଂଗ୍ରେସକୁ ଉଦବୋଧନ ଦେଇ ସେ କହିଲେ I want freedom immedially, This very night, before dawn if it can be had" ଗାନ୍ଧିଥିଲେ ଶାନ୍ତ ଏବଂ ନିରୁଦବିଗ୍ନ। ମାତ୍ର ତାଙ୍କର କଣ୍ଠସ୍ୱର ଥିଲା ବଜ୍ରପରି ଟାଣ, ଆଖିରେ ଅଟଳ ପ୍ରତିଜ୍ଞାର ତେଜ, ତାପରେ ସେ କହିଲେ Here is a mantra a short I give you, Do or die in the attempt we shall not live to on the attempt, we shall not live to Bee the per-

petuation of our slavery. କିନ୍ତୁ ସକାଳ ହେଲାପରେ ସ୍ୱାଧୀନତା ମିଳିଲା ନାହିଁ, ମିଳିଲା ଜେଲଦଣ୍ଡ । ଗାନ୍ଧି ଓ ସମସ୍ତ କଂଗ୍ରେସ ନେତୃବୃନ୍ଦଙ୍କୁ ବାନ୍ଧି ନେଇ ଅନ୍ଧକାର କାରକକ୍ଷରେ ନିକ୍ଷେପ କରିଦେଲା ବ୍ରିଟିଶ୍ ସରକାର ଯୁଦ୍ଧ ଶେଷ ପର୍ଯ୍ୟନ୍ତ । ଏହାର ପ୍ରତିବାଦ କରି କେତେକ ସ୍ଥାନରେ ଲୋକେ ହିଂସାକାଣ୍ଡ କଲେ, ଅନେକ ଇଂରେଜ ଆହତ ହେଲେ । ଏହାକୁ ନାପସନ୍ଦ କରି ଗାନ୍ଧି ଜେଲ ଭିତରୁ ଡାକରା ଦେଲେ ଉତ୍ତେଜିତ ହୋଇ ହିଂସାକାଣ୍ଡ ନକରିବାକୁ । ଗାନ୍ଧିଙ୍କୁ ଏପରି ଶାନ୍ତ ଓ ସଂଯମଶୀଳ ଦେଖି ବ୍ରିଟିଶ୍ ସରକାର ତାଙ୍କ ନୈତିକ ବଳ ପାଖରେ ଝାଉଁଳି ପଡିଲେ ସତ କିନ୍ତୁ ଟାଣପଣ ଛାଡିଲେ ନାହିଁ । ତିନି ସପ୍ତାହ ଭିତରେ ଅବସ୍ଥା ବ୍ରିଟିଶ୍ ସରକାରଙ୍କ ନିୟନ୍ତ୍ରଣକୁ ଆସିଗଲା । ଏହି ସୁଯୋଗ ମୁସଲିମ ଲିଗ୍‌ସର କର୍ଣ୍ଣଧାର ମାନେ ବ୍ରିଟିଶ ଚଳାଇଥିବା ଯୁଦ୍ଧକୁ ସମର୍ଥନ କରି ସରକାରଙ୍କର ଦୟା ଓ ଅନୁଗ୍ରହ ଲାଭକଲେ । ବ୍ରିଟେନ୍ ତ ଭାରତ ଛାଡିଲା ନାହିଁ ପରନ୍ତୁ ଛାଡିବା ପୂର୍ବରୁ ଭାରତକୁ ଭାଗ ଭାଗ କରି ଦେବା ପାଇଁ ଯୋଜନା ପ୍ରସ୍ତୁତ କଲେ । ଏହାଥିଲା ଗାନ୍ଧିଙ୍କର ଶେଷ କାରାବାସ । ତା ନହୋଇଥିଲେ ଗାନ୍ଧିଙ୍କର ସମୁଦାୟ କାରାବାସର ସମୟ ୨୩୩୮ ଦିନ ହୋଇଥାନ୍ତା । ଦକ୍ଷିଣ ଆଫ୍ରିକାରେ ୨୪୯ ଦିନ ଏବଂ ଭାରତରେ ୨୦୮୯ ଦିନ ଏଥର ତାଙ୍କର ସହଯୋଗୀମାନେ ତାଙ୍କୁ ଆଉ ଥରେ ଜରଭା ଜେଲରେ ନରଖି ଆଗ୍ରା ଖାନ୍ ପ୍ୟାଲେସରେ ରଖାଇଲେ । ଗାନ୍ଧିଜୀ ୨୧ ଦିନ ବ୍ୟାପୀ ଅନଶନ କରିବାକୁ ଘୋଷଣା କଲେ । ଚର୍ଚ୍ଚିଲ ଦିଲ୍ଲୀକୁ ଜଣାଇ ଦେଲେ If Gandhi wanted to starve himself to death, he was free to go and and do so. ଅନଶନ ଅଧାରେ ଗାନ୍ଧି ରୁଗ୍ଣ, ଦୁର୍ବଳ ଓ ନିସ୍ତେଜ ହୋଇ ଆସିଲେ । ଏ ଖବର ବିଜୁଳି ବେଗରେ ପ୍ରଚାରିତ ହୋଇଗଲା । ସାରା ଦେଶରେ ଆବେଗ, ଉତ୍କଣ୍ଠା ଓ ଦୁଃଖର ଛାୟା ଘୋଟିଗଲା । ତାଙ୍କର ଆରୋଗ୍ୟ କାମନା କରି ହଜାର ହଜାର ସ୍ଥାନରେ ଲୋକେ ପ୍ରାର୍ଥନା ଓ ସଭାମାନ ଆୟୋଜନ କରି ତାଙ୍କର ଗୁଣକୀର୍ତ୍ତନ କଲେ । ଚାରିଆଡେ ବ୍ରିଟିଶ୍ ସରକାର ବିରୁଦ୍ଧରେ ଉତ୍ତେଜନାର ବାତାବରଣ ଖେଳେଇ

ହୋଇଗଲା । ତାଙ୍କରି ଇଙ୍ଗିତରେ କଂଗ୍ରେସ କର୍ମୀମାନେ ଶାନ୍ତିରକ୍ଷା କରିବାକୁ ଦେଶ ସାରା ବୁଲି ବୁଲି ଲୋକଙ୍କୁ ବୁଝାଇବାକୁ ଲାଗିଲେ । ଗାନ୍ଧି କିନ୍ତୁ ଟଳିଲେ ନାହିଁ । ତାଙ୍କର ମୃତ୍ୟୁ ନିଶ୍ଚିତ ବୋଲି ଭାବି ଗୋପନରେ ତାଙ୍କ ଅନ୍ତେଷ୍ଟିକ୍ରିୟାର ପ୍ରସ୍ତୁତି କଲେ । ଦୁଇଜଣ ବ୍ରାହ୍ମଣଙ୍କୁ ଡାକି ଅନ୍ତେଷ୍ଟି କ୍ରିୟା ସମାପନ କରିବାକୁ ଜେଲରେ ଆଣି ରଖିଲେ ଏବଂ ତାଙ୍କ ଜୁଇରେ ଦେବାପାଇଁ ଚନ୍ଦନ କାଠ ଆଣି ଅନ୍ଧାର ରାତିରେ ଜେଲରେ ରଖାଗଲା । ଏସବୁ ଜାଣି ଗାନ୍ଧି ସାମାନ୍ୟ ହସିଦେଇ ଆଖି ବନ୍ଦ କରିଦେଲେ । ସେଇ ଅବସ୍ଥାରେ ମଧ୍ୟ ଗାନ୍ଧିଙ୍କର ସେଇ ହସରେ ଫୁଟିଉଠୁଥିଲା ଏକ ଦିବ୍ୟ ମଧୁର ଛବି । ଆଖିରେ ଥିଲା ଉଜ୍ଜ୍ୱଳ ତେଜ । ମୁଖମଣ୍ଡଳରେ ଉକୁଟି ଉଠୁଥିଲା କଠୋର ଏବଂ ଦୃଢ଼ ପ୍ରତିଜ୍ଞାର ଭାବ । ତାଙ୍କ ଅନ୍ତେଷ୍ଟି କ୍ରିୟାର ପ୍ରସ୍ତୁତି କଥା ଶୁଣି ସେ କ୍ଷୀଣ ଅଥଚ ନିରୁଦବିଗ୍ନ କଣ୍ଠରେ କହିଲେ ଚର୍ଚ୍ଚିଲଙ୍କୁ ଜଣାଇ ଦିଅ, ଭାରତର ସ୍ୱାଧୀନତା ପୂର୍ବରୁ ସେ ମରୁନାହାଁନ୍ତି । ଏକୋଇଶ ଦିନ କାଳ ଲୁଣପାଣି ଓ ବେଳେ ଅଧେ ମୌସମୀରସର କେଇ ଟୋପା ଓଠରେ ନେଇ ସେ ମରଣକୁ ଉପହାସ କଲେ । ହିମାଳୟ ପରି କଠୋର ଆତ୍ମା ତାଙ୍କର ମଳିନ ହେଲା ନାହିଁ । ଏକୋଇଶ ଦିନ ଉପବାସ ତାଙ୍କର ସଂପୂର୍ଣ୍ଣ ହେଲା, ସେ ବଞ୍ଚିରହିଲେ । ପ୍ରଚଣ୍ଡ ତାଙ୍କର ଆତ୍ମଶକ୍ତି । ସମସ୍ତେ ଅବାକ୍ ହୋଇଗଲେ । ତାଙ୍କ ଦର୍ଶନ ପାଇଁ ଆଗ୍ରା ଖାନ୍ ପାଲେସ ଚତୁର୍ଦ୍ଦିଗରେ ଲୋକ ଭିଡ ଥାଟପଟାଳି ଭାଙ୍ଗୁଥିଲେ । ସେମାନଙ୍କ ଭିତରେ ଉଗ୍ରଦେଶ ଭକ୍ତମାନେ ବ୍ରିଟିଶ୍ ବିରୁଦ୍ଧରେ କ୍ରୋଧରେ ଟକମକ ହୋଇ ରକ୍ତ ଚାଉଳ ଚୋବାଉଥିଲେ । ସେ ସିନା ବଞ୍ଚିଗଲେ କିନ୍ତୁ ଯେଉଁ ଚନ୍ଦନ କାଠ ତାଙ୍କ ଜୁଇରେ ଦେବା ପାଇଁ ଜେଲ କୋଠରୀରେ ଥିଲା ତାହା ଜଳିଲା ଆଉଜଣଙ୍କ ଜୁଇରେ । ସେ ହେଉଛନ୍ତି ସ୍ତ୍ରୀ କସ୍ତୁରବାଇ । ୧୯୪୪ ମସିହା ଫେବୃଆରୀ ମାସ ୨୨ ତାରିଖରେ ସ୍ୱାମୀଙ୍କ କୋଳରେ ମଥାରଖି ସେ ପ୍ରାଣ ତ୍ୟାଗ କଲେ । ସେ ଯେତେବେଳେ ମାତ୍ର ୧୩ବର୍ଷ ବୟସର ଜଣେ ସଂପୂର୍ଣ୍ଣ ନିରକ୍ଷର ବାଳିକା ଥିଲେ ସେତେବେଳେ ଗାନ୍ଧି ତାଙ୍କୁ ବିବାହ କରିଥିଲେ । ଗାନ୍ଧିଜୀ ବିଶ୍ୱାସ କରୁଥିଲେ ପ୍ରାକୃତିକ ଚିକିତ୍ସା ଉପରେ, ଇଂଜେକସନ୍ ଛୁଞ୍ଚି ମଣିଷ

ଦେହରେ ବିଷମୟ ପ୍ରତିକ୍ରିୟା ସୃଷ୍ଟି କରେ ବୋଲି ସେ ସଂପୂର୍ଣ୍ଣ ବିରୋଧି ଥିଲେ ଏଲୋପ୍ୟାଥିକ ଚିକିତ୍ସାର । ତେଣୁ ସେ ତାଙ୍କର ଧର୍ମପତ୍ନୀ ମୃତ୍ୟୁ ଶଯ୍ୟାରେ ପଡ଼ିଛନ୍ତି ବୋଲି ଜାଣିଥିଲେ ମଧ୍ୟ ଏଲୋପ୍ୟାଥିକ ଚିକିତ୍ସାକୁ ବାରଣ କରିଥିଲେ । ବ୍ରିଟିଶ୍ ସରକାର ମୂଲ୍ୟବାନ ପେନସିଲିନ୍ ଔଷଧ ତାଙ୍କ ପାଇଁ ଉଡ଼ାଜାହାଜରେ ପଠାଇଥିଲେ ମଧ୍ୟ ସେ ତାକୁ ଗ୍ରହଣ କଲେନାହିଁ କି, ନିଜ ପତ୍ନୀଙ୍କର ଚିକିତ୍ସା ପାଇଁ ବ୍ୟବହାର କଲେ ନାହିଁ । ତାଙ୍କର ମୃତ୍ୟୁ ପରେ ଗାନ୍ଧୀଙ୍କର ସ୍ୱାସ୍ଥ୍ୟ ଖରାପ ହୋଇଗଲା ଏବଂ ସେ ମ୍ୟାଲେରିଆ ହର୍ମନ ଏବଂ ଆମୋବାଇନ୍ ଡିଜିଜ୍ ରୋଗରେ ପୀଡିତ ହୋଇଗଲେ । ଶେଷରେ ତାଙ୍କ ସ୍ୱାସ୍ଥ୍ୟ ଏତେ ଗୁରୁତର ହୋଇପଡିଲା ଯେ ଚର୍ଚ୍ଚିଲ ତାଙ୍କୁ ଜେଲରୁ ଛାଡିଦେଲେ । କାରଣ ସେ ଚାହୁଁନଥିଲେ ତାଙ୍କ ମୃତ୍ୟୁ ବ୍ରିଟିଶ୍ ଜେଲରେ ହେଉ । ତାଙ୍କର କିନ୍ତୁ ମୃତ୍ୟୁ ହେଲା ନାହିଁ ଏବଂ ସେ ବ୍ରିଟିଶ୍ ଇଣ୍ଡିଆରେ ମରିବେ ନାହିଁ ବୋଲି କହୁଥିଲେ । ଜେଲ୍‌ରୁ ଯାଇ ସେ ଜଣେ ଧନୀ ବନ୍ଧୁଙ୍କର ବମ୍ବେ ନିକଟରେ ଛୋଟିଆ କୁଡିଆରେ ରହିଲେ । କ୍ରମେକ୍ରମେ ସେ ସୁସ୍ଥ ହୋଇଉଠିଲେ । ସେତେବେଳେକୁ ମରୁଡି ପ୍ରପୀଡିତ ଭାରତରେ ଗୁରୁତର ଖାଦ୍ୟାଭାବ ଦେଖାଗଲା । ଏକଥା ଭାରତର ଭାଇସ୍ ରାଏ ଚର୍ଚ୍ଚିଲଙ୍କୁ ଜଣାଇଲେ, ମାତ୍ର ସେ କର୍ଣ୍ଣପାତ କଲେ ନାହିଁ । କିଛି ଦିନ ପରେ ତାଙ୍କର ଜଣେ ବନ୍ଧୁ ଆସି ଦେଖିଲେ ଗାନ୍ଧିଙ୍କର ସେହି କୁଡିଆରେ ଜଣେ ଗାନ୍ଧୀଙ୍କ ମୁଣ୍ଡ ପାଖରେ ଠିଆ ହୋଇଛି । ଆଉ ଜଣେ ଧ୍ୟାନ ମୁଦ୍ରାରେ ବସିଛନ୍ତି ଏବଂ ତୃତୀୟ ଜଣକ ଚଟାଣ ଉପରେ ନିଘୋଡ ନିଦରେ ଶୋଇଛନ୍ତି ଏବଂ ସ୍ୱୟଂ ଗାନ୍ଧି ତାଙ୍କ ଖୋଲା ପାଇଖାନାରେ ବସି ଆକାଶକୁ ଚାହିଁଛନ୍ତି । ଏହା ଦେଖି ବନ୍ଧୁ ଜଣଙ୍କ ଖୁବ୍ ଜୋରରେ ହସିଲେ । ପାଇଖାନାରୁ ବାହାରି ଆସି ପଚାରିଲେ ହସିଲ କାହିଁକି ? ଉତ୍ତର ମିଳିଲା ବାପୁ ! ଏ କୋଠରୀକୁ ଦେଖ, ଜଣେ ଠିଆ ହୋଇଛନ୍ତି, ଆଉ ଜଣେ ଧ୍ୟାନମୁଦ୍ରାରେ ବସିଛନ୍ତି, ଆଉ ଜଣେ ଖାଲି ଚଟାଣଟା ଉପରେ ଆରାମରେ ଶୋଇଛନ୍ତି ଏବଂ ଆପଣ ପାଇଖାନାରେ ବସିଛନ୍ତି । ଏଇମାନେ ଭାରତକୁ ସ୍ୱାଧୀନ କରିବେ ?

୧୯୪୭ ମସିହା ମାର୍ଚ୍ଚ ମାସ ୨୦ ତାରିଖ ଦିନ ସକାଳେ ମାଉଣ୍ଟବେଟେନ୍ ନର୍ଥଲେଟ ବିମାନ ବନ୍ଦରରୁ ଭାରତ ଅଭିମୁଖେ ଯାତ୍ରା କଲେ ଭାରତରେ ନୂଆ ଭାଇସରାଏ ଭାବରେ। ସାଙ୍ଗରେ ଥିଲେ ପତ୍ନୀ ମାଉଣ୍ଟବେଟେନ, ଆଉ କେତେଜଣ ପଦସ୍ଥ ଅଫିସର ଆଉ ସାଙ୍ଗରେ ଆଣିଥିଲେ ନିଜର ୬୬ଟି ଗୋଟି ଆବଶ୍ୟକୀୟ ଜିନିଷପତ୍ର। ସେଥି ମଧ୍ୟରେ ଥିଲା କ୍ଲେମେଣ୍ଟଙ୍କ ସ୍ୱାକ୍ଷର ସମ୍ବଳିତ ୨ପୃଷ୍ଠାର ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ସର୍ତ୍ତନାମା ପତ୍ର। ଏହି ପତ୍ରରେ ଲେଖାଥିଲା ଜୁନ୍ ମାସ ୩୦ ତାରିଖ ସୁଦ୍ଧା ସେ କମନଓ୍ୱେଲଥ୍ ଅଧିନରେ ରଖି ଅଖଣ୍ଡ ଭାରତକୁ କ୍ଷମତା ହସ୍ତାନ୍ତର କରିବାକୁ ସମସ୍ତ ଉଦ୍ୟମ କରିବେ। ଏଥିପାଇଁ ୮ ମାସ ତଳେ ସାର୍ ଷ୍ଟଫୋଡକ୍ରିପ୍ସଙ୍କ ନେତୃତ୍ୱରେ ତିଆରି ହୋଇଥିବା କ୍ୟାବିନେଟ୍ ମିଶନର ସର୍ତ୍ତାବଳୀକୁ ଅନୁସରଣ କରିବେ। ଏହି ନିଷ୍ପତ୍ତିରେ ଭାରତର ରାଜନୈତିକ ନେତାମାନଙ୍କର ସହମତି ନେବା ଆବଶ୍ୟକ। ଅକ୍ଟୋବର ମାସ ୧ ତାରିଖ ସୁଦ୍ଧା ଅର୍ଥାତ୍ ଭାଇସ୍ ରାୟ ଭାବେ କ୍ଷମତା ପାଇବାର ୬ ମାସ ଭିତରେ ଅଖଣ୍ଡ ଭାରତକୁ କ୍ଷମତା ହସ୍ତାନ୍ତର କରିବା ଯଦି ସମ୍ଭବ ନହୁଏ, ତେବେ ଭାରତର ଭବିଷ୍ୟତ ପାଇଁ ଆଉ କି ପଦକ୍ଷେପ ନିଆଯାଇ ପାରେ ସେ ବିଷୟରେ ସେ ସୁପାରିଶ୍ କରିବେ। ଯାତ୍ରାରେ ମାଉଣ୍ଟବେଟେନଙ୍କ ସାଙ୍ଗରେ ଥିଲେ ତାଙ୍କ ଓ୍ୱାର୍ ଟାଇମର ଦୁଇଜଣ ଅଫିସର, ଷ୍ଟାଫ୍ ମୁଖ୍ୟ କ୍ୟାପଟେନ୍ ରୋନାଲଡୋ ବ୍ରୋକମ୍ୟାନ ଏବଂ ତାଙ୍କ ସିନିୟର ଏଡବ୍ଲ୍ୟୁସି ଏଲ.କମାଣ୍ଡର ପେଟର ହନର୍ସ । ଦୀର୍ଘ ନିଶ୍ୱାସଟିଏ ମାରି ମାଉଣ୍ଟବେଟେନ କହିଲେ ଆମେ ବର୍ତ୍ତମାନ ଭାରତକୁ ଯାଉଛୁ, ଯିବା ପାଇଁ ମୋର ଇଛା ନଥିଲା, କିନ୍ତୁ ସେମାନେ ମୋତେ ବାଧ୍ୟ କଲେ। ୩୫୦ବର୍ଷ ପୂର୍ବେ କ୍ୟାପଟେନ୍ ହକିନ୍‌ସ ପାଣି ଜାହାଜରେ ଭାରତ ପହଞ୍ଚିଲେ। ୩୫୦ ବର୍ଷ ପର୍ଯ୍ୟନ୍ତ ଇଂରେଜ ମାନେ ସେଠାରେ ରହି ବାଣିଜ୍ୟ କରୁ କରୁ ସାମ୍ରାଜ୍ୟ ସ୍ଥାପନ କରିଥିଲେ। ଆମେ ଆଜି ସେହି ଭାରତକୁ ଯାଉଛୁ। ହକିଁଙ୍କର ସେହି ଭାରତ ଯାତ୍ରାକୁ ସମାପ୍ତ କରିବା ପାଇଁ।

ଗାନ୍ଧୀଙ୍କର ବ୍ୟକ୍ତିଗତ ଜୀବନ ଥିଲା ଅତ୍ୟନ୍ତ ସରଳ ଅଥଚ ଅତ୍ୟନ୍ତ କଠୋର। ଆତ୍ମ ସମୀକ୍ଷା ପାଇଁ ଥିଲା ଏକ ଶକ୍ତ ବିଚାରବୋଧ। ସତ୍ୟପ୍ରତି ଥିଲା ପ୍ରଗାଢ଼

ଅନୁରକ୍ତି ଏବଂ ଶାନ୍ତି ପାଇଁ ଥିଲା ପ୍ରଚଣ୍ଡ ତୃଷ୍ଣା । ନୂଆଖାଲିର ବିଭୀଷିକାମୟ ହତ୍ୟାକାଣ୍ଡ ବେଳେ ଦୁଆର ଦୁଆର ବୁଲି ବୁଲି ସେ ଭିକ୍ଷା ମାଗୁଥିଲେ ଶାନ୍ତି ରକ୍ଷା କରିବାକୁ । ଜୀବନକୁ ଖାତିର ନଥିଲା ତାଙ୍କର । ସେ କହୁଥିଲେ, ଭଗବାନ ଜୀବନ ଦାନ କରିଛନ୍ତି ମଣିଷର ସେବା ପାଇଁ, କିଛି ଭଲ କାମ କରିବାକୁ । ବୃଥାଟାରେ ତାକୁ ନଷ୍ଟ କରିବା କାହିଁକି ? ତାଙ୍କ ଚରିତ୍ରର ବହୁମୁଖୀ ବିସ୍ତାରିତ ଜଟିଳ ପ୍ରତିଭାକୁ କଳନା କରିବାକୁ ଐତିହାସିକମାନେ ଥକି ପଡିଛନ୍ତି । କ୍ରମେ କ୍ରମେ ନୂଆଖାଲିରେ ଶାନ୍ତି ଫେରିଆସିଲା । ମାତ୍ର ଦୁଃଖ ତାଙ୍କର ଗଲା ନାହିଁ । ୩୦ବର୍ଷ କାଳ ସେ ଭାରତର ରାଜନୈତିକ ଦୃଶ୍ୟ ପଟ୍ଟରେ ମୁଖ୍ୟ ନାୟକ ଭାବରେ ଯେଉଁ ଅମରକୀର୍ତ୍ତୀ ସ୍ତମ୍ଭ ସ୍ଥାପନ କରିଛନ୍ତି ତାହା ଆଜି ପୃଥିବୀର ବିସ୍ମୟ କାହାଣୀ ହୋଇରହିଛି । ସେ ଥିଲେ ସାରା ଭାରତୀୟ ବିଚାରଧାରାର କେନ୍ଦ୍ରବିନ୍ଦୁ । ୩୦ ବର୍ଷ ଧରି ତାଙ୍କ ନେତୃତ୍ୱର ଅହିଂସା ନୀତି ସାରା ପୃଥିବୀକୁ ଚମକୃତ କରିଥିଲେ ମଧ୍ୟ ସେ ନିଜେ ଅସନ୍ତୋଷର ଜଳନ୍ତା ଜୁଇରେ ଛଟପଟ ହୋଇ ପ୍ରାଣ ତ୍ୟାଗ କଲେ । ତାଙ୍କ ପ୍ରାଣର ଭାରତକୁ ବିଭାଜିତ ହେବା ଦେଖି ଅନ୍ତରଙ୍ଗ ସହଯୋଗୀ ମାନଙ୍କ ଭିତରୁ କେହି ଜଣେ ଆସି ତାଙ୍କୁ ସାନ୍ତ୍ୱନା ଦେଲେ ନାହିଁ । କ୍ଷମତାର ଗାଦି ମାଡିବସିବାକୁ ସମସ୍ତେ ଛାଡି ଗଲେ । ନିଃସଙ୍ଗ ଜୀବନ ଦେଖି ସେ ବଞ୍ଚି ରହନ୍ତେ କିପରି ? ତାଙ୍କ ଡେଡ୍ ବଡି ଉପରେ ସିନା ସ୍ୱାଧୀନତା ଆସିନଥିଲା । ହେଲେ ତାଙ୍କୁ ମରଣଯନ୍ତାକୁ ଠେଲିଦେଇ ଯେଉଁ ସ୍ୱାଧୀନତା ଆସିଲା, ଭାରତର ବିଭାଜନ ଦେଖି ତାକୁ ସେ ଗ୍ରହଣ କରିନଥିଲେ । ଏପରି ମହାମାନବ ସଂସାରରେ ଆଉ କିଏ ଅଛି ? ୭୭ବର୍ଷର ବୃଦ୍ଧ ହେଲେ ବି ତାଙ୍କ ଆଦର୍ଶକୁ ଛାଡି ନଥିଲେ । ଜୀବନର ଶେଷ ପର୍ଯ୍ୟନ୍ତ ସେ ନିରନ୍ତର ଲାଗିଥିଲେ ତାଙ୍କ ପ୍ରିୟ ଜନନୀ ଭାରତର ସେବାରେ । ୪୦ବର୍ଷ ଧରି କଠୋର ସଂଯମ ଫଳରେ ଯୌନ ଆକାଂକ୍ଷା ତାଙ୍କର ସମ୍ପୁର୍ଣ୍ଣ ଭାବରେ ଆୟତ ହୋଇଯାଇଥିଲା । ଇନ୍ଦ୍ରିୟ ମାନେ ତାଙ୍କର ବଶୀଭୂତ ହୋଇଯାଇଥିଲେ । ଇନ୍ଦ୍ରିୟ ସଂଯମ ଦ୍ୱାରା ଅପାର ଶକ୍ତି ସଂଚୟ ହୁଏ ଏବଂ ଆତ୍ମ ନିୟନ୍ତ୍ରଣ ଓ ଜନସେବା ମଣିଷକୁ ଅନାଶକ୍ତ ମହାମାନବ କରିଦିଏ ।

ଏହାଥିଲା ପ୍ରାଚୀନ ଋଷିମୁନି ମାନଙ୍କର ଜୀବନ ଶୈଳୀ । ଗାନ୍ଧିଜୀ ଏପରି ପ୍ରେରଣା ଲାଭ କରିଥିଲେ ଶ୍ରୀମଦ୍ ଭଗବତ ଗୀତାରୁ, ଯାହା ତାଙ୍କୁ ଜୀବନର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ନୈରାଶ୍ୟର ଅନ୍ଧକାର ଭିତରେ ଆଶାର ଆଲୋକ ଦେଖାଇଥିଲା । ଅନାଶକ୍ତ କର୍ମଯୋଗୀ ହେବା ପାଇଁ ଗୀତା ହିଁ ଥିଲା ତାଙ୍କ ପ୍ରେରଣାର ଉତ୍ସ । ସେ ସ୍ୱୀକାର କରିଛନ୍ତି, ମହାଭାରତ ଯୁଦ୍ଧରେ ବିଶାଦଗ୍ରସ୍ତ ଅର୍ଜ୍ଜୁନଙ୍କୁ ଶ୍ରୀକୃଷ୍ଣଙ୍କର ଗୀତାବାଣୀ ଯେପରି ଉଦବୁଦ୍ଧ କରି କର୍ମକ୍ଷେତ୍ରରେ ନିଜର କର୍ତ୍ତବ୍ୟ ସମ୍ପାଦନ କରିବାକୁ ପ୍ରେରଣା ଦେଉଥିଲା । ସମସ୍ତ ସଂଶୟରୁ ମୁକ୍ତ କରି ଶ୍ରୀକୃଷ୍ଣଙ୍କର ସେହି ଗୀତାବାଣୀ ତାଙ୍କୁ ଆଲୋକର ପଥ ଦେଖାଇଛନ୍ତି ଜୀବନର ପ୍ରତିଟି ସଙ୍କଟମୟ ମୁହୂର୍ତ୍ତରେ । ଗୀତାର ଉଦାହରଣ ଦେଇ ସେ ତାଙ୍କ ପ୍ରାର୍ଥନା ସଭା ମାନଙ୍କରେ ବହୁବାର କହିଛନ୍ତି ଏ ସଂସ୍କାର ଏକ ଜୀବନ ବ୍ୟାପୀ ଯୁଦ୍ଧକ୍ଷେତ୍ର । ମଣିଷ ନିଜର ବିକାଶ ପାଇଁ ତାର ପୌରୁଷତ୍ୱ ଦେଖାଇ ପ୍ରତିଟି ମୁହୂର୍ତ୍ତରେ ଯୁଦ୍ଧ କରିଚାଲିଛି । ଯୁଦ୍ଧ କରିବା ତା'ର ଧର୍ମସମ୍ମତ କର୍ତ୍ତବ୍ୟ, ମାତ୍ର ଯୁଦ୍ଧରେ ଜୟ ବା ପରାଜୟ ସବୁ ବିଧାତା ହାତରେ, ତେବେ ବୀରତ୍ୱର ସହ ଜୀବନ ଯୁଦ୍ଧରେ ଅବତୀର୍ଣ୍ଣ ହୋଇ ନିଜର ସମସ୍ତ ସାମର୍ଥ୍ୟ ଦେଖାଇ ନିଷ୍ଠାର ସହ ଯୁଦ୍ଧ କରି କ୍ଳାନ୍ତ ହୋଇଗଲେ ଦୈବୀଶକ୍ତି ଅବଶ୍ୟ ସାହାଯ୍ୟ କରେ । ଭୟରେ ଯୁଦ୍ଧକ୍ଷେତ୍ର ଛାଡି ପଳାୟନ କରନ୍ତି କେବଳ ଭୀରୁ କାପୁରୁଷ ମାନେ । ଜୀବନର ପ୍ରତିଟି ସଂକଟମୟ ମୁହୂର୍ତ୍ତରେ ମା କୋଳରେ ଆଶ୍ରୟ ଭାବି ଗୀତାର ଆଶ୍ରୟ ନିଅ । ସତସ୍ତରୀ ବର୍ଷ ବୟସର ବୃଦ୍ଧ ଗାନ୍ଧିଜୀ ନିଃସଙ୍ଗ ହୋଇପଡିଥିଲେ । ପତ୍ନୀ ତାଙ୍କୁ ଛାଡି ଆରପାରିକୁ ଚାଲିଯାଇଥିଲେ ତିନିବର୍ଷ ଆଗରୁ । ପିତୃ ସ୍ନେହରେ ସେ କୋଳେଇ ନେଲେ ଉଣେଇଶ ବର୍ଷିଆ ଅଣନାତୁଣୀ ମନୁକୁ । ମନୁକୁ ପାଳି ପୋଷି ମଣିଷ କରିଥିଲେ କସ୍ତୁରବାଇ ଏବଂ ଗାନ୍ଧି । ତେଣୁ କସ୍ତୁରବାଇଙ୍କ ମୃତ୍ୟୁ ପରେ ଗାନ୍ଧି ହୋଇଗଲେ ମନୁର ବାପା ଓ ମା' । ଦିନରାତି ଛାଇ ପରି ପାଖେ ପାଖେ ଲାଗି ରହି ମନୁ ତାଙ୍କର ସମସ୍ତ କାମ କରୁଥିଲା । ଗାନ୍ଧି ପଚାରିବାରୁ ସେ ଦିନେ ମା'କୁ ସବୁକଥା କହିଲା ପରି ନିର୍ଭୟ ଚିତ୍ତ ମନୁ ସରଳ ନିଷ୍ପାପ ଝିଅଟିଏ ପରି

କହିଥିଲା, ତା ବୟସର ଝିଅ ମାନଙ୍କ ପରି ସେ କେବେ ଯୌନ ପିପାଶା ଅନୁଭବ କରିନାହିଁ। ଭଗବାନ ଶିବଙ୍କ ପରି ଗାନ୍ଧି କୁଣ୍ଡଳୀ ଯୋଗ କରୁଥିଲେ। ତେଣୁ ତାଙ୍କ ମନ ଓ ଦେହ ସବୁ ଇନ୍ଦ୍ରିୟାଶକ୍ତିରୁ ସମ୍ପୂର୍ଣ୍ଣ ମୁକ୍ତ ଥିଲା। ଏହି କାରଣରୁ ସେ ଅସାଧ୍ୟ କାମ ସବୁ କରିପାରୁଥିଲେ। କୁଣ୍ଡଳନୀ ଯୋଗ ବ୍ରହ୍ମଚର୍ଯ୍ୟ ପାଳନର ଶେଷ ସୋପାନ। ଏ ଅବସ୍ଥାରେ ମଣିଷ ସମସ୍ତ ଇନ୍ଦ୍ରିୟ ମାନଙ୍କୁ ବଶୀଭୂତ କରି ନିଶ୍ଚଳ, ନିରୁଦ୍‌ବିଗ୍ନ ଅନାଶକ୍ତ ହୋଇଯାଏ। ଗାନ୍ଧିଜୀ ସେହି ସୋପାନରେ ପହଞ୍ଚି ଥିଲେ।

ନୂଆଖାଲିରେ ପ୍ରବଳ ହିଂସାକାଣ୍ଡ ଆରମ୍ଭ ହେଲା, ଗାନ୍ଧିଜୀ ସେଠାକୁ ବାହାରିଲେ। ଏକଥା ଶୁଣି ମନୁ ଆସି ତାଙ୍କ ସାଙ୍ଗରେ ଯିବାକୁ କହିଲା। ଗାନ୍ଧିଙ୍କର ମନେ ପଡିଲା ମନୁର ପୂର୍ବକଥା। ସେ କହିଥିଲା, ତା ବୟସର ଅନ୍ୟ ଝିଅଙ୍କ ପରି ତାର କେବେ ଇନ୍ଦ୍ରିୟାଶକ୍ତି ନାହିଁ। ତାହାର ଏ କଥାର ସତ୍ୟତା ପରୀକ୍ଷା କରିବା ପାଇଁ ତାକୁ କହିଲେ, ସେଠାରେ ରାସ୍ତାଘାଟ ଖୁବ ଅପରିଷ୍କାର; ପାଣିକାଦୁଅରେ ପଚପଚ ରହିବାକୁ ଟିକେ ଯାଗା ମିଳିବ କି ନାହିଁ ମୁଁ ଜାଣେନା, ଯଦି ଛୋଟିଆ ଯାଗାଟିଏ ମିଳେ, ତେବେ ପାଳବିଛଣା କରି ଶୋଇବାକୁ ପଡିବ। ଯାଗା ଅଭାବ ହେତୁ ଆମ ଦୁଇଜଣଙ୍କୁ ଏକ ବିଛଣାରେ ଶୋଇବାକୁ ପଡିପାରେ। ଏକ ବିଛଣାରେ ଶୋଇଲେ ଇନ୍ଦ୍ରିୟ ପ୍ରତି ଆସକ୍ତି ଆସିପାରେ। ଏପରି ଅବସ୍ଥାରେ ତୁ ମୋ ସହିତ ଏକା ବିଛଣାରେ ଶୋଇବୁ କିପରି ? ମନୁ କହିଲା ମୁଁ ଆପଣଙ୍କ ଠାରୁ ବାପ ମା'ର ସ୍ନେହ ପାଇଛି। ଆପଣ ମୋର ବାପା ଏବଂ ମା'ବି। ମୁଁ ଆପଣଙ୍କୁ ଜାଣେ, ଆପଣଙ୍କର ସେ ଦୁର୍ବଳତା ନାହିଁ। ମୁଁ ଆପଣଙ୍କ ସାଙ୍ଗରେ ଏକ ବିଛଣାରେ ଶୋଇପାରିବି। ମୁଁ ସାଙ୍ଗରେ ନଗଲେ ଆପଣଙ୍କର ଦେଖାଶୁଣା କରିବ କିଏ ? ଆପଣଙ୍କର ତ ଅନେକ ନିୟମ। ସେସବୁ ଠିକ୍ ସମୟରେ ନକଲେ, ଆପଣଙ୍କ ଦେହ ଖରାପ ହୋଇପାରେ। ମୁଁ ଆପଣଙ୍କ ସାଙ୍ଗରେ ଯିବି। ଗାନ୍ଧି ଭାବିଲେ ଏପରି ଦୃଢ଼ମନା ଚରିତ୍ରବତୀ ଜଣେ ମାତ୍ର ମା' ଓ ଜଣେ ମାତ୍ର ସ୍ତ୍ରୀ ତିଆରି କରିପାରିଲେ ମଣିଷ ସମାଜକୁ ମୁଁ ଅଶେଷ ଦାନ କରିପାରିବି। ଗାନ୍ଧି ତାକୁ ସାଙ୍ଗରେ ନେବା ପାଇଁ ସମ୍ମତି ଜଣାଇ ନୀରବ ରହିଲେ ଏବଂ ତାଙ୍କର ନିତ୍ୟ

ବ୍ୟବହାର୍ଯ୍ୟ ଜିନିଷ ପତ୍ର ସଜାଡି ନେଇ ଯିବା ପାଇଁ ପ୍ରସ୍ତୁତ ହେବାକୁ କହି ଭାବନାରେ ବୁଡି ଗଲେ । ସେ ଭାବିଲେ, ଭାରତର କୋଟି କୋଟି ମହିଳାଙ୍କ ଭିତରୁ ସେ ଯଦି ଗୋଟିଏ ମାତ୍ର ମହିଳାକୁ ଉପଯୁକ୍ତ ତାଲିମ ଦେଇ ଆଦର୍ଶ ମା'ଟିଏ ବା ଆଦର୍ଶ ସ୍ତ୍ରୀଟିଏ ତିଆରି କରିପାରନ୍ତେ, ତେବେ ତାହା ହୁଅନ୍ତା ସମାଜ ପାଇଁ ଅତୁଳନୀୟ ଦାନ। ସେ ଯେଉଁ ଲକ୍ଷ୍ୟନେଇ ଯାତ୍ରା ଆରମ୍ଭ କରିଛନ୍ତି ତାକୁ ସଫଳ କରିବାକୁ ହେଲେ ଅନେକ ମହିଳାଙ୍କର ଯୋଗଦାନ ଆବଶ୍ୟକ । ମନୁଙ୍କ ପରି ନିଷ୍ଠା, କର୍ତ୍ତବ୍ୟ ପରାୟଣତା ଓ ଶୁଦ୍ଧ ଚରିତ୍ରର ଝିଅ-ବୋହୂମାନେ ଯଦି ଏକ ମହିଳା ସଂଗଠନ କରି ତାଙ୍କ କାର୍ଯ୍ୟରେ ସହଯୋଗ କରନ୍ତେ, ତେବେ ତାହା ସହଜରେ ସଫଳ ହୁଅନ୍ତା । କ୍ରମେ କ୍ରମେ ଏପରି ଏକ ମହିଳା ସଂଗଠନ ଗଢ଼ିବାରେ ଲାଗିଲା । କିଛି ଦିନ ପରେ ଭାରତର ପ୍ରତି ଗାଁରେ ନାରୀକର୍ମୀ ମାନେ ବିଛେଇ ହୋଇଗଲେ । ମଝିରେ ମଝିରେ ବାରମ୍ବାର ତାଙ୍କ ଦଳର ନାରୀ ଓ ପୁରୁଷ କର୍ମୀ ମାନଙ୍କୁ ଉପଦେଶ ଦେଇ କହିଲେ, ପୁରୁଷ ହେଉ ବା ନାରୀ ହେଉ, ଶକ୍ତି ସଂରକ୍ଷଣ ଓ କର୍ମ ନିଷ୍ଠାର ସର୍ବଶ୍ରେଷ୍ଠ ଉପାୟ ହେଲା ଇନ୍ଦ୍ରିୟ ସଂଯମ ଏବଂ ଇନ୍ଦ୍ରିୟ ସଂଯମ ହିଁ ଚରିତ୍ରକୁ ଶୁଦ୍ଧ କରେ । ସେପରି କରି ନପାରିଲେ ସେଇ ଚରିତ୍ର ତୁମକୁ ସଂକଟ ସମୟରେ ଠକି ଦେବ । କର୍ମୀମାନେ ତାଙ୍କ ଉପଦେଶକୁ ନିଷ୍ଠାର ସହ ମାନି ଚଳନ୍ତି । କିନ୍ତୁ କାମଶକ୍ତିକୁ ଦମନ କରିବା ସହଜ ନୁହେଁ। ତଥାପି କଂଗ୍ରେସ କର୍ମୀମାନେ ବାରି ହୋଇପଡୁଥିଲେ ସେମାନଙ୍କର ଆଚରଣ, ବ୍ୟବହାର, କର୍ମନିଷ୍ଠା ଓ ଚରିତ୍ରବତ୍ତାରେ । ଦିନକୁ ଦିନ ସେମାନଙ୍କ ଭିତରେ ଏକ ଉଜ୍ଜ୍ୱଳ ଚରିତ୍ରର ଭାବମୂର୍ତ୍ତି ଚହଟି ଉଠୁଥିଲା ଏବଂ ସମାଜରେ ସେମାନଙ୍କ ପ୍ରତି ଶ୍ରଦ୍ଧା, ସମ୍ମାନ ଓ ଆଦର ବଢୁଥିଲା । ଆସ୍ତେ ଆସ୍ତେ ତାଙ୍କ ମହିଳା ଦଳରେ ଅନେକ ଶିକ୍ଷିତା ଓ ସମ୍ଭ୍ରାନ୍ତ ବଂଶରୁ ମହିଳା ମାନେ ଯୋଗଦେବାକୁ ନିଜର ସୌଭାଗ୍ୟ ମନେ କଲେ । ଏହା ଦେଖି ଗାନ୍ଧିଜୀ ଭାବିଲେ ମନୁ ମଧ୍ୟ ସେମାନଙ୍କ ପରି ଜଣେ ଆଦର୍ଶ ମହିଳାକର୍ମୀ ହୋଇପାରିବ। ତା' ଚିନ୍ତାଧାରା, ମାନସିକ ବିକାଶ ପ୍ରଭାବଶାଳୀ ହୋଇପାରିବ ତାଙ୍କର ପ୍ରତ୍ୟେକ୍ଷ ତତ୍ତ୍ୱାବଧାନରେ । ସେ ମଧ୍ୟ ତାଙ୍କ ଦର୍ଶନ ଓ ଦେଶର

ରାଜନୈତିକ ଅବସ୍ଥା ସମ୍ପର୍କରେ ଅନର୍ଗଳ ଭାଷଣ ଦେଇ ଲୋକଙ୍କୁ ପ୍ରଭାବିତ କରିପାରିବ। ତା'ର ଶୁଦ୍ଧ ଚରିତ୍ର ଓ କୋମଳ ଆଚରଣ ମହିଳା କର୍ମୀଙ୍କ ମଧ୍ୟରେ ଏକ ଆଦର୍ଶ ହୋଇଯିବ। ଗାନ୍ଧୀ ଓ ମନୁ ମଧ୍ୟରେ ଏପରି ସ୍ନେହପୂର୍ଣ୍ଣ ନିବିଡ ସମ୍ପର୍କ ଦେଖି ଅନେକ ଲୋକ ତାଙ୍କ ବିଷୟରେ ଟୁପୁରୁ ଟାପୁରୁ ହେଲେ। ସେମାନେ ତାଙ୍କର ସରଳ ନିଷ୍ପାପ ମନ ହେତୁ ସେସବୁ ଉପେକ୍ଷା କରିଗଲେ। କିଛି ଦିନ ପର୍ଯ୍ୟନ୍ତ ଏକ ବିଛଣାରେ ରାତିରେ ଅବିଚଳିତ ଭାବେ ଶୋଇଲା ପରେ ଦିନେ ଗାନ୍ଧୀ ମନୁଙ୍କୁ କହିଲେ, ସେମାନଙ୍କ ମନ ନିର୍ମଳ ନୁହେଁ। ସେମାନଙ୍କ ଟୁପୁରୁ ଟାପୁରୁ ଶୁଣି ତାଙ୍କୁ ହସ ମାଡୁଛି। କାରଣ ସେମାନେ ବୁଝିପାରୁ ନାହାଁନ୍ତି, ବୁଝିବା ପାଇଁ ସାଧନା ଦରକାର। ସତ୍ୟ ସବୁବେଳେ ସତ୍ୟ। କାହାରି ଟୁପୁରୁ ଟାପୁରୁରେ ତାହା ମଳିନ ହୁଏନା। ସେମାନେ ଆଜି ବୁଝି ନାହାଁନ୍ତି, କାଲି ବୁଝି ପାରିବେ। ଏଥିପ୍ରତି କିଛି ପ୍ରତିକ୍ରିୟାର ଆବଶ୍ୟକତା ନାହିଁ।

ମୁର୍ଖଂ କରୋତି ବାଚାଳଂ, ପଙ୍ଗୁ ଲଙ୍ଘୟତେ ଗିରିଃ। ଏଠାରେ ଭଗବାନଙ୍କର ଯେଉଁ ଅଦ୍ଭୁତ ଓ ଆଶ୍ଚର୍ଯ୍ୟଜନକ ଶକ୍ତିର କଥା କୁହାଯାଇଛି ତାର ଅର୍ଥ କ'ଣ ? ଭଗବାନ ଆତ୍ମାରୂପରେ ସମସ୍ତଙ୍କ ଠାରେ ବିଦ୍ୟମାନ। ସେ ସମସ୍ତ ଶକ୍ତିର ଭଣ୍ଡାର। ଅର୍ଥାତ୍ ସାଧନା ଦ୍ୱାରା ଆତ୍ମାର ସେଇ ଶକ୍ତିକୁ ଜାଗ୍ରତ କରିପାରିଲେ ମଣିଷ ଅସାଧ୍ୟ ସାଧନ କରିପାରେ ଏହା ହିଁ ତା'ର ତାତ୍ପର୍ଯ୍ୟ। ସଂଯମ, ଶୃଙ୍ଖଳା, ନିୟମାନୁବର୍ତ୍ତିତା, ଅଧ୍ୟବସାୟ, ଏକାଗ୍ରତା, ବିଶ୍ୱାସ; ଏସବୁ ବ୍ରହ୍ମଚର୍ଯ୍ୟର ଗୋଟିଏ ଗୋଟିଏ ସ୍ତମ୍ଭ। ବ୍ରହ୍ମଚର୍ଯ୍ୟ ଏକ ତପସ୍ୟା। ଆତ୍ମଶକ୍ତିକୁ ଜାଗ୍ରତ କରିବା ପାଇଁ ଏସବୁ ତାର ଉପଚାର। ଏକାଗ୍ରତା ଓ ସମର୍ପଣର ଭାବ ନେଇ ମନ, ହୃଦୟ ଓ ଆତ୍ମାକୁ ଯେତେବେଳେ ସ୍ଥିର ଓ ଏକାଗ୍ର ଚିତ୍ତରେ ଏକ ବିନ୍ଦୁରେ ଠୁଳ କରାଯାଏ, ସେତେବେଳେ ଆତ୍ମାର ଅନନ୍ତ ଭଣ୍ଡାରରୁ ଶକ୍ତି ନିର୍ଗତ ହୁଏ, ଏହାହିଁ ଦୈବୀଶକ୍ତି। ତା'ର ପ୍ରଭାବକୁ କଳ୍ପନା କରିହୁଏନା। ଏହି ମଣିଷକୁ ମୁର୍ଖରୁ ବାଚାଳ ଏବଂ ଗିରି ଲଙ୍ଘିଯିବାକୁ ସମର୍ଥ କରେ। ଏହାର ଶକ୍ତି ଅପାର ଓ ଅମାପ। ସାଧନା ବଳରେ ଗାନ୍ଧିଜୀ ସେଇ ଶକ୍ତିକୁ ପ୍ରାପ୍ତ ହୋଇଥିଲେ।

କାଚ କାଞ୍ଚନ ସମ୍ପର୍କରେ ଆସିଲେ ମର୍କତ ମଣିର ଶୋଭା ଧାରଣ କରେ। ତା ନ ହୋଇଥିଲେ ଗାନ୍ଧିଙ୍କୁ ଆସି ଜବାହାର ଲାଲ୍ ନେହେରୁ, ସର୍ଦ୍ଦାର ବଲ୍ଲଭ ଭାଇ ପଟେଲଙ୍କ ଠାରୁ ଆରମ୍ଭ କରି ବିଲାତରେ ମହା ମହିମ ସମ୍ରାଟଙ୍କ ପର୍ଯ୍ୟନ୍ତ ସମସ୍ତଙ୍କର ତେଜ ତାଙ୍କ ପାଖରେ ଝାଉଁଳି ପଡ଼ିଥାନ୍ତା କିପରି ? ଏହି ଶକ୍ତିକୁ ଜାଗ୍ରତ କରିବାର କୌଶଳ ଗାନ୍ଧିଜୀ ଜାଣିଥିଲେ। ଏହି କାରଣରୁ ସେ ସରଳ ନିଃସ୍ୱାପ ମନୁକୁ ସଂଗଠନର ଗୁରୁଭାର ଅର୍ପଣ କରି ମୁର୍ଖରୁ ବାଚାଳ କରି ଗିରି ଲଙ୍ଘିଯିବାକୁ ସମର୍ଥ କରାଇଥିଲେ ଏବଂ ନିଜେ ମଧ୍ୟ ସାରା ବିଶ୍ୱରେ ରହସ୍ୟମୟ ବିସ୍ମୟ ହୋଇପାରିଥିଲେ। ଏହି ଶକ୍ତିକୁ ଜାଗ୍ରତ କରି ଆତ୍ମାନୁଭୂତି ଲାଭ କରିବା ପାଇଁ ୧୯୦୬ ମସିହାରେ ସେ ବ୍ରହ୍ମଚର୍ଯ୍ୟ ପାଳନର ନିଷ୍ପତ୍ତି ପତ୍ନୀ କସ୍ତୁରବାଇକୁ ଶୁଣାଇଲେ। ଜୀବନର ୪୨ ବର୍ଷ ଧରି ସେ ବ୍ରହ୍ମଚର୍ଯ୍ୟ ବ୍ରତ ପାଳନ କରି ଏହି ଶକ୍ତିକୁ ଧାରଣ କରିଥିଲେ। ଏହି ଦୈବୀଶକ୍ତି ମଣିଷକୁ ସେତିକିବେଳେ ମିଳେ ଯେତେବେଳେ ମଣିଷ ନିଷ୍ଠାର ସହିତ ଅକ୍ଲାନ୍ତ ପରିଶ୍ରମ କରି ଥକି ପଡ଼େ ଓ ଭଗବାନ ବା ଆତ୍ମାର ଶରଣକୁ ଯାଏ। ଏହି କଥା ଗୀତାରେ ଅବତାରଣା କରାଯାଇଛି । ଯେତେବେଳେ ପିତୃ ରାଜ୍ୟ ଉଦ୍ଧାର କରିବା ପାଇଁ ପାଣ୍ଡବମାନେ ପାଣ୍ଡବ ପ୍ରସ୍ଥରେ ନିଜର ରାଜଧାନୀ ସ୍ଥାପନ କରିବାକୁ ଅକ୍ଲାନ୍ତ ପରିଶ୍ରମ କରି ଥକି ଯାଇଥିଲେ। ତକ୍ଷକ ରତ୍ନଭଣ୍ଡାରକୁ ଜଗି ରହିବା, ବିଶ୍ୱକର୍ମା ରାଜଧାନୀ ନିର୍ମାଣ କରିବା ଏବଂ ଇନ୍ଦ୍ର ଆସି ଟାଙ୍ଗରା ଭୂଇଁକୁ ବୃଷ୍ଟିପାତ ଦ୍ୱାରା ଶସ୍ୟଶ୍ୟାମଳା କରିବା ଇତ୍ୟାଦି। ଏହା ସେହି ଭଗବାନ ବା ଆତ୍ମଶକ୍ତିର ବରଦାନ। ସେଥିପାଇଁ କୁହାଯାଏ, ମଣିଷ ପକ୍ଷରେ କିଛି ବି ଅସମ୍ଭବ ନୁହେଁ, ଯଦି ସେ ଭଗବାନଙ୍କଠାରେ ନିଷ୍ଠାର ସହ ଅଟଳ ଭକ୍ତି ରଖି କଠୋର ଅଧ୍ୟବସାୟ ଦ୍ୱାରା ଆତ୍ମ ଶକ୍ତିକୁ ଜାଗ୍ରତ କରିପାରେ। ନୂଆଖାଲିରୁ ଆରମ୍ଭ ହେଲା ମନୁର ଜନସେବା କାମ। ଗାନ୍ଧିଙ୍କର ପ୍ରତ୍ୟେକ୍ଷ ତତ୍ତ୍ୱବଧାନରେ ରହି ନିଷ୍ଠାର ସହ ନିରବଛିନ୍ନ ଜନସେବା ଦ୍ୱାରା ଗାନ୍ଧିଙ୍କର ମହିଳା ବାହିନୀରେ ସେ ହୋଇଗଲେ ଜଣେ ନମସ୍ୟା ମହିୟସୀ ମହିଳା। ତାକୁହିଁ ଆଶ୍ରା କରି ସାବରମତୀ ଆଶ୍ରମ ହୋଇ ଉଠିଲା ଏକ କର୍ମଚଞ୍ଚଳ

ସେବାକେନ୍ଦ୍ର ଓ ତୀର୍ଥସ୍ଥାନ । ସେ ପାଳଟି ଗଲେ ସମସ୍ତଙ୍କ ଆଦରର ମନୁ ବହେନ୍ । ମହାତ୍ମା ଗାନ୍ଧି ଓ ତା ଭିତରେ ଥିବା ଆତ୍ମାଚେତନାର ରହସ୍ୟ ବୁଝିବାକୁ କ୍ୱଚିତ ଲୋକ ସମର୍ଥ । କାରଣ ପ୍ରାଚୀନ ଭାରତର ସେ ମହନୀୟ ସଂସ୍କୃତି ପରଂପରାକୁ ଛାଡ଼ି ମଣିଷ ଆଜି ଦେହସର୍ବସ୍ୱ ହୋଇଥିବାରୁ ମନରେ ସେମାନଙ୍କର ମଇଳା ଜମିଯାଇଛି । ମଇଳାଦର୍ପଣରେ ଛବି କ'ଣ ସ୍ୱଷ୍ଟ ଦିଶେ ? ପ୍ରାଚୀନ ଭାରତର ସାଂସ୍କୃତିକ ପରଂପରାରେ ଥିଲା ମୁକ୍ତିର ସାଧନ । ମୁକ୍ତି ଥିଲା ଜୀବନର ଅନ୍ତିମ ଅଭିଳାସ । ମୁକ୍ତିର ଅର୍ଥ ଆତ୍ମାନୁଭୂତି । ସଂଯମର ସାଧନା ବିନା ସେପରି ମୁକ୍ତି କ'ଣ ମିଳିପାରେ ? ଜ୍ୟୋର୍ତିମୟ ଦିବ୍ୟ ଆତ୍ମା ହିଁ ଶାନ୍ତିମୟ ଜୀବନର ନିର୍ବାଣ ମୁକ୍ତି । ବ୍ରହ୍ମଚର୍ଯ୍ୟ ବ୍ରତ ପାଳନ କରିବାକୁ ଯେଉଁମାନେ ପ୍ରତିଜ୍ଞାବଦ୍ଧ, ସେହି ସେମାନଙ୍କର ସୁରକ୍ଷା ପାଇଁ ପ୍ରାଚୀନ ଋଷିମାନେ ଅବଧା ଅନୁଶାସନ ନିର୍ଦ୍ଧାରଣ କରିଛନ୍ତି । ଅର୍ଥାତ୍ ସେମାନେ ନାରୀ, ପଶୁ ଓ ନପୁଂସକମାନଙ୍କ ସାଙ୍ଗରେ ରହିବା ଅନୁଚିତ୍ । ସେମାନେ ନାରୀ ସହ ଏକ ବିଛଣାରେ ବସିବେ ନାହିଁ । କିଏ କା' ଶେଯରେ ଶୋଇବେ ନାହିଁ କିମ୍ୱା ନାରୀ ଦେହର କୌଣସି ଅଙ୍ଗକୁ ଚାହିଁବେ ନାହିଁ ।

ଗରମ ପାଣିରେ ସ୍ନାନ କରିବେ ନାହିଁ କି ଘିଅ, ଲହୁଣୀ, ଦହି କିମ୍ୱା ଚର୍ବିଜାତୀୟ ଖାଦ୍ୟ ଗ୍ରହଣ କରିବେ ନାହିଁ । ଗାନ୍ଧିଜୀ ବ୍ରହ୍ମଚର୍ଯ୍ୟ ପାଳନ କରୁନଥିଲେ ହିମାଳୟର କୌଣସି ଗୁମ୍ଫାରେ ଯାଇ ଧ୍ୟାନରେ ବସିବା ପାଇଁ । ପରନ୍ତୁ ବ୍ରହ୍ମଚର୍ଯ୍ୟ ପାଳନ କରୁଥିଲେ ଇନ୍ଦ୍ରିୟାଶକ୍ତିର ପ୍ରଜ୍ୱଳିତ କୁଣ୍ଡରେ ସମସ୍ତ କାମନାକୁ ଆହୁତି ଦେଇ ଆଧ୍ୟାତ୍ମିକ ଶକ୍ତିବଳରେ ନିଜ ଲକ୍ଷ୍ୟ ସ୍ଥଳରେ ପହଞ୍ଚିବା ପାଇଁ । ଲକ୍ଷ୍ୟ ପୂରଣ ପାଇଁ ନୈତିକ ବଳ ଅତ୍ୟନ୍ତ ଆବଶ୍ୟକ । ଏହା ନିଷ୍ଠା, ତ୍ୟାଗ ଓ ଏକାଗ୍ରତା ପାଇଁ ଶକ୍ତି ଦାନ କରେ । ବ୍ରହ୍ମଚର୍ଯ୍ୟ ପାଳନ କରୁଥିବା ବ୍ୟକ୍ତିର ହିମାଳୟ ଯିବା ଆବଶ୍ୟକ ନାହିଁ । କାରଣ ତାର କାମଶକ୍ତି ସମ୍ପୂର୍ଣ୍ଣ ଭାବରେ ନିଷ୍କ୍ରିୟ ହୋଇ ଯାଇଥାଏ । ସେ ମହିଳା ମାନଙ୍କ ମେଳରେ ରହିଲେ କିମ୍ୱା ଅତି ସୁନ୍ଦରୀ ରମଣୀ ସହ ଏକତ୍ର ଶୟନ କଲେ ମଧ୍ୟ ତା'ଠାରେ କାମଶକ୍ତି ଉଦ୍ରେକ ହୁଏ ନାହିଁ କି ସେଇ କାରଣରୁ କୌଣସି ପ୍ରତିକ୍ରିୟା

ଦେଖାଯାଏ ନାହିଁ । କାରଣ ସ୍ତ୍ରୀ ଓ ପୁରୁଷ ମଧ୍ୟରେ ପାର୍ଥକ୍ୟ ଜାଣିବା ପାଇଁ କେବଳ ଭିନ୍ନ ଭିନ୍ନ ଯୌନାଙ୍ଗ ଛଡ଼ା ଆଉ କୌଣସି ତଫାତ୍ ନଥାଏ । ସେ ନିସଂକୋଚରେ ମହିଳା ମେଳରେ ବିଚରଣ କରିପାରେ । ତାର ଯୌନାଙ୍ଗରୁ କୌଣସି କ୍ଷରଣ ନହୋଇ ଶକ୍ତିର ଏକ ଆସ୍ତରଣ ସାରା ଶରୀରରେ ବ୍ୟାପୀଯାଏ ।

ନିୟମିତ ଭାବେ ୩୦ବର୍ଷକାଳ ପ୍ରାର୍ଥନା ଧ୍ୟାନ ଓ କଠୋର ସାଧନା ଦ୍ୱାରା ୬୭ବର୍ଷ ବୟସରେ ଯେତେବେଳେ ସେ ଶାରୀରିକ ଓ ମାନସିକ ସ୍ତରରେ ଇନ୍ଦ୍ରିୟାଶକ୍ତିରୁ ସଂପୂର୍ଣ୍ଣ ମୁକ୍ତ ବୋଲି ଭାବୁଥିଲେ, ଠିକ୍ ସେତିକିବେଳେ ହଠାତ୍ ଇନ୍ଦ୍ରିୟଶକ୍ତିର ପ୍ରବଳ ତାଡନାରେ ସେ ଅସ୍ଥିର ହୋଇ ଉଠିଲେ । ଏଇ ମୁହୂର୍ତ୍ତକୁ ତାଙ୍କ ଜୀବନରେ ଘୋର ଅନ୍ଧକାର ବୋଲି କହିଛନ୍ତି । ଏହି ଘଟଣା ଘଟିଥିଲା ବମ୍ବେରେ ୧୯୩୬ ମସିହାରେ ରାତିରେ ଶୋଇ ଥିଲା ବେଳେ । ସ୍ୱପ୍ନରେ ସେ ଅନୁଭବ କଲେ ଯେ ତାଙ୍କ ଯୌନାଙ୍ଗ ସୁଦୃଢ଼ ଭାବରେ ଦୁଇ ଜଙ୍ଘ ମଝିରେ ଅସ୍ଥିର ଭାବରେ କମ୍ପି ଉଠୁଛି । ସେ ହଠାତ୍ ଶେଯରୁ ଉଠିବସି ଭାବିଲେ ଇନ୍ଦ୍ରିୟାଶକ୍ତି ତାଙ୍କର ସଂପୂର୍ଣ୍ଣ ଭାବରେ ନିଷ୍କ୍ରିୟ ହୋଇ ଯାଇଛି ବୋଲି ଯାହା ସେ ଭାବୁଥିଲେ ତାହା ସତ ନୁହେଁ । ସେ ନିଜକୁ ଆହୁରି କଠୋର କରିବା ପାଇଁ ତାଙ୍କ ପ୍ରଚେଷ୍ଟାକୁ ଅବ୍ୟାହତ ରଖିବାକୁ ପଡ଼ିବ ଏବଂ ସେଥିପାଇଁ ସେ ଆଉଥରେ ପ୍ରତିଜ୍ଞା କଲେ । ଏହି ଘଟଣା ତାଙ୍କୁ ଦାରୁଣ ଦୁଃଖରେ ଜର୍ଜରିତ କରିଦେଲା । ଏହାର କାରଣ ଜାଣିବାକୁ ସେ ଛ ସପ୍ତାହ ପର୍ଯ୍ୟନ୍ତ ମୌନବ୍ରତ ଧାରଣ କରି ଭାବିବାକୁ ଲାଗିଲେ । ତାଙ୍କ ମନକୁ ଆସିଲା, ସେ କ'ଣ ତେବେ ହିମାଳୟ ପଳାଇ ଯାଇ ସେଠାରେ ଏକ ନିର୍ଜନ ଗୁମ୍ଫା ମଧ୍ୟରେ ରହି ଧ୍ୟାନମଗ୍ନ ହେବେ । ଏପରି ଅନେକ ଦିନ ଭାବିଲା ପରେ ତାଙ୍କର ମନେ ହେଲା ସମ୍ଭବତଃ କୌଣସି ଏକ ଦୁଷ୍ଟଗ୍ରହର କୋପ ଦୃଷ୍ଟିରେ ପଡିଛନ୍ତି । ସେଥିରୁ ମୁକ୍ତି ପାଇବାକୁ ହେଲେ ନୈତିକ ଓ ଆଧ୍ୟାତ୍ମିକ ଶକ୍ତିକୁ ତାଙ୍କୁ ଆହୁରି ତୀକ୍ଷ୍ଣ କରିବାକୁ ହେବ । କାରଣ ତାଙ୍କର ଏ ଶକ୍ତିକୁ ସେ ଦୁଷ୍ଟଗ୍ରହ ଆହ୍ୱାନର ସମ୍ମୁଖୀନ ହେବାକୁ ପଡ଼ିବ ଏବଂ ତାଙ୍କ ଭିତରେ ଥିବା ସେ ସୈତାନକୁ ସମୂଳେ ଧ୍ୱଂସ କରିବାକୁ ହେବ ।

ଏପରି ଏକ ପ୍ରତିଜ୍ଞା କରି ସେ ତାଙ୍କ ଦେହ ମନରେ କେଉଁଠି ସେ ଦୁଷ୍ଟ ଛପି ରହିଛି ତାକୁ ଖୋଜିବାକୁ ଲାଗିଲେ। ଏପରି ଭୀଷ୍ମ ପ୍ରତିଜ୍ଞାର ପ୍ରଚଣ୍ଡ ପ୍ରହାରରେ, ସେ ଟଳି ନପଡ଼ି ଯିବ କୁଆଡେ? ତା ପ୍ରତି ପ୍ରଚଣ୍ଡ କ୍ରୋଧରେ ସେ ନାରୀମାନଙ୍କ ସହ ମିଳାମିଶାକୁ ବଢାଇ ଦେଲେ। ଆଶ୍ରମବାସୀ ପୁରୁଷ କିମ୍ବା ମହିଳା ହୁଅନ୍ତୁ, ସେମାନଙ୍କ ସାମନାରେ ଉଲଗ୍ନ ହୋଇ ସ୍ନାନ କଲେ ଏବଂ ପ୍ରତିଦିନ ନାରୀମାନେ ତାଙ୍କ ଦେହ ମୋଡ଼ା ମୋଡ଼ି କରିବାକୁ ଅନୁମତି ଦେଲେ ଓ ଏହି କାର୍ଯ୍ୟ ସେମାନେ କରୁଥିବାବେଳେ ସେ କଂଗ୍ରେସ ଦଳର ନେତାମାନଙ୍କୁ ସାକ୍ଷାତ୍ ଦେବାର ସମୟ ନିରୂପଣ କଲେ। ସେ ଯେପରି ଅଳ୍ପ ବସ୍ତ୍ର ପରିଧାନ କରୁଥିଲେ ସେହି ପରି ସେ ତାଙ୍କର ମହିଳା ସେବିକା ମାନଙ୍କୁ କହିଲେ। କାରଣ ତାଙ୍କର ବିଚାରରେ ବସ୍ତ୍ର କେବଳ ଏକ ମିଥ୍ୟା ଆବରଣ। ସେ ଭାବିଲେ, ଚର୍ଚ୍ଚିଲ ତାଙ୍କୁ ଲଙ୍ଗୁଳି ଫକିର କହିବାର ଏହା ହିଁ ପ୍ରକୃତ ଯବାବ। କାରଣ ସାରା ଭାରତରେ ଅର୍ଦ୍ଧାଧିକ ଅର୍ଦ୍ଧ ଉଲଗ୍ନ ଲୋକଙ୍କର ସେ ପ୍ରତିନିଧି। ଶେଷରେ ସେ ଘୋଷଣା କଲେ ଯେ ତାଙ୍କ ଆଦର୍ଶରେ ପ୍ରକୃତ ଅନୁପ୍ରାଣିତ ଶିଷ୍ୟମାନେ ଗୋଟିଏ କୋଠରୀରେ ଏକତ୍ର ଶୋଇବାର କୌଣସି ସମସ୍ୟା ନାହିଁ। ସେ ଭାବିଲେ ଏହା ହିଁ ସୈତାନ ପାଇଁ ଉପଯୁକ୍ତ ଦଣ୍ଡ। ତାଙ୍କୁ ସଂପୂର୍ଣ୍ଣ ଧ୍ୱସଂକରି ଧୂଳିସାତ ନକଲା ପର୍ଯ୍ୟନ୍ତ ଏ ତପସ୍ୟା ମୋର ଜୀବନର ଶେଷ ପର୍ଯ୍ୟନ୍ତ ଜାରି ରହିବ। ମନୁ ଏକ ଶେଯରେ ଶୋଇବାର ଘଟଣାକୁ ସେ ଭାବିଲେ ଏହା ମନୁର ମଧ୍ୟ ଆଧ୍ୟାତ୍ମିକ ଓ ନୈତିକ ଶକ୍ତିକୁ ସୁଦୃଢ଼ କରିବ। ନୂଆଖାଲିରେ ଶାନ୍ତି ରକ୍ଷା କାର୍ଯ୍ୟରେ ନିଯୁକ୍ତ ଥିବାବେଳେ ମନୁ ତାଙ୍କ ପାଖେ ପାଖେ ରହି ତାଙ୍କର ଦେଖାଶୁଣା କରୁଥିଲା। ଗାଁରୁ ଗାଁକୁ ଯିବାବେଳେ ଯିଏ ଯେଉଁଠି ଦେଲେ, ତାରି ଉପରେ ଦୁହେଁ ଏକତ୍ର ଶୋଉଥିଲେ। ଏପରିକି ପ୍ରଚଣ୍ଡ ଶୀତ ରାତିରେ ଦୁହେଁ ଦୁହିଁଙ୍କ ଉଷୁମ କୋଳରେ ଶୋଇ ପଡୁଥିଲେ। ଏକଥା ମନୁ ପରେ ଲେଖିଛନ୍ତି ଯେ, ଏପରି ଅବସ୍ଥାରେ ସେ ମା କୋଳରେ ଶୋଇଥିବା ଅନୁଭବ କରିଛନ୍ତି। ଦିନେ ଶୀତ ରାତିରେ ଗାନ୍ଧିଜୀ ପ୍ରଚଣ୍ଡ ଶୀତରେ ଥରୁଥିବା ଦେଖି ସେ ତାଙ୍କର ଦେହହାତ ମୋଡାମୋଡ଼ି କରିଥିଲେ ଏବଂ ଯାହା କିଛି ସାମାନ୍ୟ ବସ୍ତ୍ର ସେ

କୋଠରୀରେ ଥିଲା ତାକୁ ଗାନ୍ଧିଙ୍କୁ ଘୋଡ଼ାଇ ଦେଲେ ଏବଂ ଗାନ୍ଧି ନିଦରେ ଶୋଇଗଲା ପରେ ସେ ତାଙ୍କ ପାଖରେ ଶୋଇପଡ଼ିଲେ। ଗାନ୍ଧିଥିଲେ ନିର୍ବିକାର, ମନୁ ମଧ ସେହିପରି ନିର୍ବିକାର। ଇନ୍ଦ୍ରିୟ ସଂଯମ ପାଇଁ ଜୀବନ ବ୍ୟାପୀ ଯେଉଁ ଗାନ୍ଧି କଠୋର ସାଧନା କରୁଥିଲେ, ତାଙ୍କୁ ଗୋଟାଏ ସମୟରେ ଇନ୍ଦ୍ରିୟାସକ୍ତି ଅସ୍ଥିର କରିଦେବା ଦେଖି ଗାନ୍ଧିଙ୍କ କ୍ରୋଧ ହେବା ସ୍ୱାଭାବିକ ଏବଂ ସେଥିରୁ ନିଜକୁ ସଂପୂର୍ଣ୍ଣ ମୁକ୍ତ ରଖିବା ପାଇଁ ମନୁକୁ ପିତୃସ୍ନେହ ଦେଇ ତାର ଚରିତ୍ରକୁ ଶୁଦ୍ଧ କରିବା ପାଇଁ ତାକୁ କଠୋର ପରୀକ୍ଷାରେ ଉତ୍ତୀର୍ଣ୍ଣ ହେବାକୁ ସୁଯୋଗ ଦେବା ଯଥାର୍ଥ। ଜୀବନର ଶେଷ ଆଡ଼କୁ ସେ ଏକା ହୋଇ ଯାଇଥିଲେ। ସ୍ତ୍ରୀକୁ ହରାଇ ସାରିଥିଲେ। ତାଙ୍କ ସହିତ ବହୁଦିନ ପର୍ଯ୍ୟନ୍ତ ସ୍ୱାଧିନତା ସଂଗ୍ରାମରେ ଜଡ଼ିତ ଥିବା କେତେ ସହକର୍ମୀ ତାଙ୍କୁ ଛାଡ଼ି ଚାଲିଗଲେ। ଜେଲରେ ଥିବା ବେଳେ ଜଣେ ଘନିଷ୍ଠ ବନ୍ଧୁଙ୍କୁ ହରାଇଲେ। ତାଙ୍କ ବଡ଼ ପୁଅ, ପିତାଙ୍କର ଅନ୍ୟମାନଙ୍କ ସହ ଘନିଷ୍ଠ ସଂପର୍କ ହେତୁ ସେ ପିତୃ ସ୍ନେହରୁ ବଞ୍ଚିତ, ଏଇ କଥା ଭାବି ଗାନ୍ଧିଙ୍କ ସହ ସମ୍ପର୍କକୁ ତିକ୍ତ କରି ଅତ୍ୟଧିକ ମଦ୍ୟପାନ କରି ଶେଷରେ ମୃତ୍ୟୁ ବରଣ କଲେ। ଏକମାତ୍ର ସାନପୁଅ ପିତା ପୁତ୍ରର ସଂପର୍କ ରକ୍ଷା କରିଥିଲେ। ଅନ୍ୟ ଦୁଇ ପୁଅ ଦକ୍ଷିଣ ଆଫ୍ରିକାରେ ରହିବା କାରଣରୁ, ପିତା ପୁତ୍ର ମଧରେ କ୍ୱଚିତ ସଂପର୍କ ଥିଲା ତାଙ୍କର କେହି ଝିଅ ନଥିଲେ। ଏପରି ଅବସ୍ଥାରେ ସେ ଯେତେବେଳେ ସଂପୂର୍ଣ୍ଣ ନିଃସଙ୍ଗ ହୋଇଗଲେ, ସେତେବେଳେ ଏକମାତ୍ର ମନୁ, ଯାହାର ନୈତିକ ଆଧ୍ୟାତ୍ମିକ ବ୍ୟକ୍ତିତ୍ୱକୁ ଶୁଦ୍ଧ କରି ଗଢ଼ିବା ପାଇଁ ଦୀର୍ଘ ସାଧନା କରିଥିଲେ। ସେଇ କେବଳ ପିତୃସ୍ନେହକୁ ଛାଡ଼ି ନପାରି ତାଙ୍କ ପାଖେ ପାଖେ ରହି ସେବା ଶୁଶ୍ରୂଷା କରୁଥିଲେ। ତାଙ୍କ ଦୁଃଖମୟ ଅନ୍ତିମ ଜୀବନର ସାହାରା ମନୁକୁ କେନ୍ଦ୍ରକରି ମୁସଲିମ ଲିଗ୍‌ର କେତେକ ନେତା ଅପବାଦ ରଚନା କଲେ। ଏ ଖବର ଦିଲ୍ଲୀରେ ପହଞ୍ଚିବା ପରେ, ନୂଆ ଭାଇସ୍ ରାଏଙ୍କ ସହିତ ଆଲୋଚନା କରିବାକୁ ରୁଣ୍ଡ ହୋଇଥିବା କଂଗ୍ରେସ ନେତାମାନେ ଦୁଃଖରେ ଭାଙ୍ଗି ପଡ଼ିଲେ। ଶେଷରେ ଗୋଟିଏ ସନ୍ଧ୍ୟା ପ୍ରାର୍ଥନା ସଭାରେ ଗାନ୍ଧି ଏ ଅପବାଦର ସମ୍ମୁଖୀନ ହୋଇ କହିଲେ, ମନୁ ସବୁ ରାତିରେ ତାଙ୍କ

ସହ ଏକ ବିଛଣାରେ ରାତ୍ରିଯାପନ କରେ। ଏହା ଶୁଣି ତାଙ୍କ ଘନିଷ୍ଠ ସହଯୋଗୀମାନେ ଯେତେବେଳେ ଏହି ଖବର ଛାପିବାକୁ ତାଙ୍କ ଗିରିଜନ ପତ୍ରିକାକୁ ପଠାଇଲେ। ସେତେବେଳେ ପତ୍ରିକାର ଦୁଇଜଣ ସଂପାଦକ ପ୍ରତିବାଦ କରି ଛାଡି ଚାଲିଗଲେ ଏବଂ ପତ୍ରିକାର ଟ୍ରଷ୍ଟିମାନେ ଗାନ୍ଧି ଲେଖିଥିବା ଏକ ସମ୍ବାଦକୁ ଛାପିବା ପାଇଁ ମନା କରିଦେଲେ। ଅବସ୍ଥା ଅତ୍ୟନ୍ତ ଗମ୍ଭୀର ହୋଇପଡିଲା। ଏ ଅବସ୍ଥାରେ କ'ଣ କରାଯାଇପାରେ ବୋଲି ତାଙ୍କ ଘନିଷ୍ଠ ସହଯୋଗୀ ମାନେ ଚିନ୍ତାରେ ବୁଡିଗଲେ। ଠିକ୍ ଏତିକିବେଳେ ଗାନ୍ଧି ବିହାର ଗସ୍ତରେ ବାହାରିଲେ। କାରଣ ସେଠାରେ ହିନ୍ଦୁମାନେ ଗୋଟିଏ ମୁସଲମାନ ପରିବାରର ସଦସ୍ୟମାନଙ୍କୁ ହତ୍ୟା କରିଥିଲେ। ହିନ୍ଦୁ କଂଗ୍ରେସ କର୍ମୀମାନେ ସେଠାକୁ ଯିବାପାଇଁ ଭୟ କଲେ ଏବଂ ଅନେକ ବିଶିଷ୍ଟ କର୍ମୀ ସେଠାକୁ ନଯିବା ପାଇଁ ଆସି ଗାନ୍ଧିଙ୍କୁ ବୁଝାଇଲେ। ସେମାନେ କହିଲେ ଯେ, ସେ ଯଦି ସେଠାକୁ ଯିବେ, ତେବେ ସେଠାରେ ରକ୍ଷଣଶୀଳ ହିନ୍ଦୁମାନଙ୍କ ଉପରେ ମନୁଙ୍କ ସହିତ ତାଙ୍କର ଯେଉଁ ଅନୈତିକ ଅପବାଦ କଥା ଉଠିଛି ତାର ଗଭୀର ପ୍ରଭାବ ପଡିବ। ଏଣୁ ଏ ଅବସ୍ଥାରେ ସେ ସେଠାକୁ ଯିବା ଉଚିତ ହେବ ନାହିଁ। କିନ୍ତୁ ଗାନ୍ଧି ମନା କରିଦେଲେ। ସେମାନେ କହିଲେ ଯେ, ତାଙ୍କ ସାଙ୍ଗରେ ସେମାନେ ବିହାର ଗସ୍ତରେ ଯିବେ ନାହିଁ। ଅବସ୍ଥା ଅତ୍ୟନ୍ତ ଗମ୍ଭୀର ହୋଇ ଉଠିଲା। ହଠାତ ମନୁ କହିଲା, ଏକ ଅସତ୍ୟ କଥା ଉପରେ ତାକୁ ନେଇ ଯେଉଁମାନେ ଗାନ୍ଧୀଙ୍କ ନାଁରେ ଅପବାଦ କରୁଛନ୍ତି, ତେବେ ତାଙ୍କ ସାଙ୍ଗରେ କେହି ନଗଲେ ବି ସେ ଯିବେ ଏବଂ ଶେଷ ପର୍ଯ୍ୟନ୍ତ ତାଙ୍କ ପାଖେ ପାଖେ ରହି ସେବା କରିବେ। ମନୁଙ୍କ ଠାରୁ ଏକଥା ଶୁଣି ପୁରୁଖା କଂଗ୍ରେସ କର୍ମୀମାନେ କହିଲେ, ମନୁକୁ ଆମେ ଜାଣୁ। ସେ ଜଣେ ସରଳ ନିଷ୍ପାପ ଶୁଦ୍ଧ ଚରିତ୍ରର ଝିଅ। ତାର ଦୃଢ଼ ନୈତିକତାକୁ ଯେଉଁମାନେ ଜାଣନ୍ତି ନାହିଁ, କେବଳ ସେଇମାନେ ଏପରି ଏକ ଅସତ୍ୟ କଥାକୁ ନେଇ ଅପବାଦ କରିପାରନ୍ତି। ଏପରି ବୃଥା କଥାକୁ ନେଇ ଏତେ ଚିନ୍ତା କାହିଁକି ? ଇନ୍ଦ୍ରିୟ ସଂଯମ ଓ ବ୍ରହ୍ମଚର୍ଯ୍ୟ ପାଳନ ଗାନ୍ଧିଙ୍କର ଏକଥା କିଏ ନଜାଣେ ? ସୁଦୃଢ଼ ନୈତିକ ବଳ ନଥିଲେ, ଗାନ୍ଧି

କ'ଣ ସାରା ଭାରତକୁ ବ୍ରିଟିଶ୍ ବିରୁଦ୍ଧରେ ଏପରି ସଂଗଠିତ କରି ପାରିଥାନ୍ତେ ? କେହି କ'ଣ ଏପରି କରିପାରେ ? ଏ ତ ଅତି ଅଦ୍ଭୁତ ଓ ବିସ୍ମୟକର !

ଭାରତ ଇତିହାସର ଏକ ଘୋର ସଂକଟମୟ ଅଧ୍ୟାୟ । ୩୫୦ ବର୍ଷ କାଳ ବାଣିଜ୍ୟ ଓ ସାମ୍ରାଜ୍ୟ ସ୍ଥାପନ ପରେ ଇଂରେଜ ମାନଙ୍କୁ ନିଜ ଦେଶକୁ ଫେରିଯିବାକୁ ହେବ । ଆସିଥିଲା ବେଳେ ସେମାନେ କରିଥିଲେ ଅସଂଖ୍ୟ ହତ୍ୟା, ଅତ୍ୟାଚାର, ଲୁଣ୍ଠନ ଓ ଭ୍ରଷ୍ଟାଚାର । ଏବେ ଫେରିଯିବା ବେଳେ ଠିକ୍ ସେହିପରି କଲେ ସେ ସବୁର ପୁନରାବୃତ୍ତି । ସ୍ୱାଧୀନତା ପାଇଁ ଅସଂଖ୍ୟ ନରନାରୀ ପ୍ରାଣବଳୀ ଦେଲେ, କାରାବରଣ କଲେ ଆଉ କେତେ ଯେ ପିତୃହରା, ପୁତ୍ର ସହୋଦର ହରା ହେଲେ ଏବଂ କେତେ ଯେ, ରମଣୀ ବୈଧବ୍ୟ ଯନ୍ତ୍ରଣାରେ ଛଟପଟ ହୋଇ କରୁଣ ବିଳାପ କଲେ ତାର ସୀମା ନାହିଁ । ଖାଲି ଇଂରେଜ ନୁହଁନ୍ତି, ମୋଗଲ ପଠାନ୍, ପର୍ତ୍ତୁଗୀଜ ଇତ୍ୟାଦି କାଳକାଳ ଧରି ସମସ୍ତେ ଆସି ଏଠାରେ କରିଛନ୍ତି ଅକଥନୀୟ ଅତ୍ୟାଚାର । ଭାଙ୍ଗିଛନ୍ତି ଅନେକ ଦେବାଦେବୀ ମନ୍ଦିର । ଧର୍ମାନ୍ତର କରିବା ପାଇଁ କରିଛନ୍ତି ଅନେକ ଚକ୍ରାନ୍ତ । ସେମାନେ ସମସ୍ତେ କିନ୍ତୁ ଛାଡି ଚାଲିଯିବାକୁ ବାଧ୍ୟ ହୋଇଛନ୍ତି ଅପକୀର୍ତ୍ତି ଅପନିନ୍ଦା ପାଇଁ । ସବୁ ଅତ୍ୟାଚାରକୁ ଉପେକ୍ଷା କରି ଭାରତ ତିଷ୍ଠି ରହିଛି ଅକ୍ଷୂର୍ଣ୍ଣ ସୌର୍ଯ୍ୟ ବୀର୍ଯ୍ୟ ଧରି । ଆଜି ଇଂରେଜ ମଧ୍ୟ ସେହିପରି ଭାରତର ନୈତିକ ବଳପାଖରେ ପରାଜୟ ସ୍ୱୀକାର କରି ଛାଡି ଚାଲିଯିବାକୁ ବାଧ୍ୟ ହୋଇଛି ବିଷାଦର ଚରମ ଗ୍ଲାନୀରେ । ଭାରତ ଅଜେୟ, ଆତ୍ମା ତାର ଦୁର୍ଜୟ, ଶକ୍ତିର ଭଣ୍ଡାର । ଭାରତରେ ଆଜି ଜଳୁଛି ବିଦ୍ରୋହର ବହ୍ନି । ଜାତି, ଧର୍ମ, ବର୍ଣ୍ଣ ନିର୍ବିଶେଷରେ ଗାନ୍ଧିଙ୍କର ବିସ୍ମୟକର ନେତୃତ୍ୱରେ ସମସ୍ତେ ଆଜି ମେଳି ବାନ୍ଧିଛନ୍ତି ସେମାନଙ୍କୁ ବିତାଡିତ କରିବାକୁ । କ୍ଷମତା ହସ୍ତାନ୍ତର କରିବେ ସେମାନେ । ଭାଇସ୍‌ରାଏ ୱାଭେଲ ସମସ୍ତ କୌଶଳ କରି ଥକି ପଡିଲା ପରେ ନୂଆ ଭାଇସ୍‌ରାଏ ମାଉଣ୍ଟବେଟେନ ଆଜି ଆସୁଛନ୍ତି ତାଙ୍କର ଶେଷ କୌଶଳ ପ୍ରୟୋଗ କରିବାକୁ । ବିପୁଳ ସାଜସଜ୍ଜାରେ ପୁରି ଉଠୁଛି ବିଶାଳ ରାଜଭବନ । ଲାଲ ରଙ୍ଗର ପଶମ ଗାଲିଚା ବିଛେଇ ହୋଇଯାଇଛି ରାଜଭବନ । ବିରାଟ ପାହାଚ ଠାରୁ ସମସ୍ତ

ଅଳିନ୍ଦ । କେତେ ଜାତିର ଫୁଲ ସଜ୍ଜାରେ ଶୋଭାମୟ ଦିଶୁଛି ସମସ୍ତ ରାଜଭବନ । ଉଜ୍ଜ୍ୱଳ ନୀଳାଭ ଆଲୋକ ମାଳାରେ ଭାସି ଉଠୁଛି ବାହାର ଠାରୁ ଭିତରର ପ୍ରତ୍ୟେକ କକ୍ଷ ଓ ନୃତ୍ୟଶାଳା । ପାହାଚ ଉପରେ ଅସଂଖ୍ୟ ରାଜକର୍ମଚାରୀ ଗହଣରେ ବିଦାୟୀ ଓ୍ୱାଭେଲ୍ ସ୍ୱାଗତ କରିବାକୁ ନୂଆ ଭାଇସରାଏ ମାଉଣ୍ଟବେଟେନଙ୍କୁ । ଦିଲ୍ଲୀର ଇଣ୍ଡିଆ ଗେଟ୍‌ଠାରେ ଉଭୟ ଭାଇସରାଏ ପରସ୍ପରକୁ କ୍ଷମତା ହସ୍ତାନ୍ତର ଓ ବିଦାୟ ସମ୍ବର୍ଦ୍ଧନା ଦେବାର ପରମ୍ପରା ଅଛି । ଆଜି କିନ୍ତୁ ତାର ବ୍ୟତିକ୍ରମ ହେଲା, କାରଣ ଏହା ଥିଲା ବ୍ରିଟଶ୍ ଶାସନର ଅନ୍ତିମ ଦିବସ । ମାଉଣ୍ଟ ବେଟେନ ଆସିଲେ, ସାଙ୍ଗରେ ଲାବଣ୍ୟମୟୀ ପତ୍ନୀ ଲେଡି ମାଉଣ୍ଟବେଟେନ୍ ଓ ନାମୀ ଦାମୀ ମୋଟର ଗାଡିର ଲମ୍ବା ଧାଡି, ସ୍ୱାଗତ କରିବା ପାଇଁ କର୍ମଚାରୀ ମାନଙ୍କର ବିରାଟ ପଟୁଆର ଓ ବାଦ୍ୟକାର ମାନଙ୍କର ବିଚିତ୍ର ପରିପାଟି । ଓ୍ୱାଭେଲ ତାଙ୍କୁ ପାଛୋଟି ନେଲେ ରାଜଭବନର ସୁରମ୍ୟ ଅଫିସ୍‌କୁ । ଭାରତର ଅତ୍ୟନ୍ତ ଜଟିଳ ସମସ୍ୟାକୁ ସମାଧାନ କରିବା ପାଇଁ ଏହା ଥିଲା ତାଙ୍କର ପ୍ରଥମ ସୁଯୋଗ । ଭାରତୀୟମାନେ ସାମାନ୍ୟ ଶ୍ରମପରେ ଆଗ ନାନା ଉପଚାର ଦ୍ୱାରା ସତେଜ ହେଲା ପରେ ଅଫିସ୍ କାମ କରନ୍ତି, କାରଣ କର୍ମ ଅଭାବ ହେତୁ ବଳକା ସମୟ ସେମାନଙ୍କ ପାଖରେ ପ୍ରଚୁର । ଇଂରେଜ ମାନେ କିନ୍ତୁ ସମୟକୁ ସବୁଠାରୁ ମୂଲ୍ୟବାନ ମଣନ୍ତି । ତେଣୁ ସାମାନ୍ୟ ବିଶ୍ରାମ ନନେଇ ମାଉଣ୍ଟବେଟେନ ଆରମ୍ଭ କରିଦେଲେ ବ୍ୟସ୍ତ କାର୍ଯ୍ୟର ପ୍ରଥମ ପର୍ଯ୍ୟାୟ । ସେ ଆସନ ଗ୍ରହଣ କଲା ପରେ ଓ୍ୱାଭେଲ କହିଲେ, ସେ ଦୁଃଖିତ ଯେ ତାଙ୍କ ଯାଗାରେ ଆଜି ମାଉଣ୍ଟବେଟେନଙ୍କୁ ସେମାନେ ପଠାଇଛନ୍ତି । ମାଉଣ୍ଟବେଟେନ କହିଲେ କାହିଁକି, ମୁଁ କ'ଣ ସେଥିପାଇଁ ଉପଯୁକ୍ତ ନୁହେଁ? ନା, ନା, ପ୍ରକୃତରେ ସେ କଥା ନୁହେଁ, ମୁଁ ଆପଣଙ୍କୁ ଖୁବ୍ ଭଲପାଏ, କିନ୍ତୁ ସେମାନେ ଅସମ୍ଭବକୁ ସମ୍ଭବ କରିବା ପାଇଁ ଆପଣଙ୍କୁ ପଠାଇଛନ୍ତି । ତାହା ହିଁ ମୋର ଦୁଃଖ । ଏତକ କହି ଓ୍ୱାଭେଲ ଆସନ ଗ୍ରହଣ କଲେ । ସିଂହାସନ ସଦୃଶ ଆଉ ଗୋଟିଏ ଆସନରେ ମାଉଣ୍ଟବେଟେନ ଆଶ୍ଚର୍ଯ୍ୟରେ ପଚାରିଲେ । ଏଠାରେ ଏପରି କି ଅସମ୍ଭବ କାର୍ଯ୍ୟ କରିବାକୁ ହେବ? ଓ୍ୱାଭେଲ କହିଲେ ହଁ, କାମଟା

ଅସମ୍ଭବ, ଭାରତର ଭାଇସ୍ ରାଏଙ୍କ ବୁଦ୍ଧିମତ୍ତା ଦେଖିବା ପାଇଁ ସାରା ବିଶ୍ୱ ଆଜି ଅପେକ୍ଷା କରିଛି। ସମାଧାନ କରିବାକୁ ଅନେକ କୌଶଳ ଅବଲମ୍ବନ କରିଛି, କିନ୍ତୁ ପାରିଲି ନାହିଁ। ସେମାନେ ଆପଣଙ୍କୁ ସବୁକଥା କହିଥିବେ, କିନ୍ତୁ ବାସ୍ତବରେ ଏଠିକାର ସମସ୍ୟା ତା ଠାରୁ ଆହୁରି ଜଟିଳ ଓ ଗୁରୁତର। ମୋ ଜାଣିବାରେ ଏପରି ଗୁରୁଭାର ଆଗରୁ କାହାରିକୁ ସମ୍ମୁଖୀନ ହେବାକୁ ପଡ଼ିନଥିଲା। ବାଘ ଓ ସମୁଦ୍ର ମଝିରେ ଆପଣଙ୍କୁ କାମ କରିବାକୁ ହେବ। କେଉଁ ଦିଗକୁ ଯାଇ ଆପଣ କାମ କରିବେ, ତାହା ହିଁ ବୁଦ୍ଧିମତ୍ତାର ପରୀକ୍ଷା। ସମସ୍ୟା କ'ଣ ଏତେ ଜଟିଳ? ପଚାରିଲେ ମାଉଣ୍ଟବେଟେନ। ହଁ, ଗାନ୍ଧିଙ୍କର ପ୍ରତିଜ୍ଞା ଅଟଳ। ସେ କହୁଛନ୍ତି, ତାଙ୍କ ଡେଡ ବଡି ଉପରେ ଦେଶକୁ ବିଭାଜନ କର, ତା ପୂର୍ବରୁ ନୁହେଁ। ବିଭାଜନ ଦାବୀରେ ମୁସଲିମ୍ ଲିଗ୍ ଅଟଳ। ଗାନ୍ଧିଙ୍କ ନେତୃତ୍ୱରେ କଂଗ୍ରେସ ଦଳ ଓ ଜିନାଙ୍କ ନେତୃତ୍ୱରେ ମୁସଲିମ୍ ଲିଗ; ଉଭୟ ଆଡୁ ପ୍ରବଳ ଚାପର ସମ୍ମୁଖୀନ ଆମେ। ବିଭାଜନ ପାଇଁ ରାଜି ନହେଲେ ଡାଇରେକ୍ଟ ଆକ୍ସନ ପାଇଁ ଜିନାଙ୍କର ଧମକ । ପୂର୍ଣ୍ଣ ସ୍ୱାଧୀନତା ପାଇଁ ଗାନ୍ଧିଙ୍କର କର ଅବା ମର ଡାକରା, ଭାରତ ଛାଡ ଗାନ୍ଧିଙ୍କର କଠୋର ଦାବୀ ବ୍ରିଟିଶ୍ ଜେଲରେ ଆଉ ଯାଗା ନାହିଁ। ଦେଶର ଜଣେ ମାତ୍ର ଲୋକଥିବା ପର୍ଯ୍ୟନ୍ତ ବ୍ରିଟିଶ୍ ଶାସନର ପ୍ରତିବାଦ କରାଯିବ। ଭାରତକୁ ଜନଶୂନ୍ୟ ମରୁଭୂମି କରି ଶାସନ କରିବାକୁ ଚାହଁ ତ କର। ଗାନ୍ଧିଙ୍କର ଏହି ଧମକ ଆମକୁ ନିଷ୍କ୍ରିୟ କରିଦେଇଛି। ଗାନ୍ଧିଙ୍କର ଟିକସ ଛାଡ, ବିଦେଶୀ ବର୍ଜନ ଓ ଲବଣ ସତ୍ୟାଗ୍ରହ ଭଳି ଆନ୍ଦୋଳନ ସାରା ଦେଶକୁ ଅଚଳ କରିଦେବାର ଦୃଷ୍ଟାନ୍ତ ମିଳୁଛି। ବ୍ରିଟିଶ୍ ଫୌଜ ଏବେ ଭୟଭୀତ, ଏସବୁ ଜଟିଳ ସମସ୍ୟାରୁ ମୁକୁଳିବା ଅସମ୍ଭବ। ଏତକ କହି ୱାଭେଲ ନୀରବ ରହିଲେ।

ମାଉଣ୍ଟବେଟେନ ପଚାରିଲେ କ୍ଷମତାର ନିଶା କ'ଣ ନେତାମାନଙ୍କର। ୱାଭେଲ କହିଲେ, ସେ ପରୀକ୍ଷା ଆମେ କରିନାହୁଁ। ମାଉଣ୍ଟବେଟେନ ପଚାରିଲେ ଲଡକ୍ଲାଇବଙ୍କର ଡିଭାଇଡ ଆଣ୍ଡ ରୁଲ କଥା ଆପଣ ଶୁଣିଛନ୍ତି ? ହଁ ସେତେବେଳେ

ଅବସ୍ଥା ଥିଲା ଅଲଗା । ଦେଶୀୟ ରାଜାମାନେ ପରସ୍ପର ଥିଲେ ଘୋର ଶତ୍ରୁ । ବ୍ରିଟିଶ୍ ଅନୁଗ୍ରହ ପାଇଁ ଅନେକ ଥିଲେ ବ୍ୟାକୁଳ । ଦେଶୀୟ ଶାସନର ଅତ୍ୟାଚାରରୁ ମୁକୁଳିବା ପାଇଁ ଲୋକ ଥିଲେ ବ୍ୟଗ୍ର ଏବଂ ସେମାନଙ୍କ ଦାରିଦ୍ର୍ୟ ଥିଲା ଅକଥନୀୟ । ସାମାନ୍ୟ ଅନୁଗ୍ରହ ସେମାନଙ୍କ ପାଇଁ ଥିଲା ଆଶୀର୍ବାଦ । ମାଉଣ୍ଟବେଟେନ ପଚାରିଲେ ଏସବୁ ସମସ୍ୟା କ'ଣ ଏବେ ନାହିଁ ? ଓ୍ୱାଭେଲ କହିଲେ ହଁ ଅଛି । ଏକଥା ତ ସବୁଦିନେ ରହିବ, କାରଣ ମଣିଷର ଅଭାବ କେବେ ବି ପୂରଣ ହୁଏନା । ଯେତେ ମିଳିଲେ ବି ଆହୁରି ବଢ଼ିଯାଏ । କିନ୍ତୁ ବେଳେବେଳେ ମଣିଷ କମ୍ପ୍ରମାଇଜ୍ କରେନା । ଏହି କାରଣରୁ କେତେକ ଜିଦ୍‌ଖୋର ଜାତି ନିଶ୍ଚିହ୍ନ ହୋଇଗଲେଣି । ଭାରତୀୟମାନେ ବର୍ତ୍ତମାନ ସେହିପରି ଜିଦ୍‌ଖୋର । ମାଉଣ୍ଟବେଟେନ ଏକ ଦୃଷ୍ଟିରେ ଅନ୍ୟଆଡକୁ ଚାହିଁ ଚିନ୍ତାମଗ୍ନ ହୋଇଗଲେ । ଓ୍ୱାଭେଲ ତାଙ୍କ ସୁଟକେସ୍‌ରୁ ୨ଟି ଫାଇଲ ବାହାର କରି ଟେବୁଲ ଉପରେ ରଖିଲେ । ଗୋଟିଏ ଥିଲା କଳା ଭେଲଭେଟ ଉପରେ ଚିକ୍ ଚିକ୍ କରୁଥିବା କ୍ଷମତାର ପ୍ରତୀକ, ଯାହାକୁ ମାଉଣ୍ଟବେଟେନ ଗଳାରେ ଧାରଣ କରିବେ କ୍ଷମତା ଗ୍ରହଣ ବେଳେ ଏବଂ ଅନ୍ୟଟି ଥିଲା ମ୍ୟାଡ ହାଉସ୍ ଲେଖାଥିବା ମାନିଲା କାଗଜରେ ବନ୍ଧା ହୋଇଥିଲା ସୁନ୍ଦର ଫାଇଲଟିଏ । ଯେଉଁଥିରେ ଲେଖାଥିଲା ସମାଧାନର ପ୍ରସ୍ତାବ । ଓ୍ୱାଭେଲ ଠିଆ ହୋଇ କହିଲେ, ଏହା ଏକ ଭୟଙ୍କର ପ୍ରସ୍ତାବ । ସେ ଜାଣନ୍ତି, କିନ୍ତୁ ଏହାଛଡା ତାଙ୍କ ପାଖରେ ଆଉ କିଛି ବିକଳ୍ପ ନଥିଲା ।

ଗାନ୍ଧିଙ୍କ ଭାଷାରେ ଏହାଥିଲା 'ଲିଭ ଇଣ୍ଡିଆ ଟୁ ଗଡ୍ ଅର୍ ଇଭେନ୍ ଆନାରିଛ୍' ଇଂରେଜ ମାନେ ଗୋଟିଏ ପରେ ଗୋଟିଏ ପ୍ରତ୍ୟେକ ରାଜ୍ୟରୁ ମହିଳା, ପୁରୁଷ, ଶିଶୁ, ସୈନ୍ୟ ସମସ୍ତେ ଛାଡି ଚାଲିଯିବେ । ଏହା ଅତ୍ୟନ୍ତ ଦୁଃଖର କଥା । ମାତ୍ର ଆପଣଙ୍କୁ ଏ ପ୍ରସ୍ତାବ ଛଡା ଆଉ କିଛି ମୋର ଦେବାର ନାହିଁ । ମାଉଣ୍ଟବେଟେନ ଆଶ୍ଚର୍ଯ୍ୟ ହେଲେ ନାହିଁ । ସେ ଭାବିଲେ କେବଳ ଜଟିଳ ସମସ୍ୟାର ସମ୍ମୁଖୀନ ହେବା ପାଇଁ ଜୀବନ ତାଙ୍କର ଅଭିପ୍ରେତ । ବ୍ରିଟିଶ୍ ନୌସେନାର ଆଡମିରାଲ୍ ଭାବେ ଦ୍ୱିତୀୟ ବିଶ୍ୱଯୁଦ୍ଧ ବେଳେ ଅନେକ ଜଟିଳ ସମସ୍ୟାର ସେ ସମ୍ମୁଖୀନ ହୋଇଥିଲେ । ଆଗକୁ

ପାଦ ବଢ଼ାଇବାକୁ ଯେତେବେଳେ ଅନ୍ୟମାନେ ସାହାସ କରୁନଥିଲେ, ସେତେବେଳେ ସେ ତା'ର ସମ୍ମୁଖୀନ ହୋଇଛନ୍ତି। ଏଥିପାଇଁ କେବଳ ସାହାସ ହିଁ ତାଙ୍କର ଅବଲମ୍ବନ ଥିଲା। ଏବେବି ତାଙ୍କର ସେ ସାହାସ ଅଛି। ବ୍ରିଟିଶ୍ ସାମ୍ରାଜ୍ୟର ସମ୍ରାଟଙ୍କ ଇଛାରେ ପ୍ରଧାନମନ୍ତ୍ରୀ ଅଟିଲ ତାଙ୍କୁ ଏ ଦାୟିତ୍ୱ ଦେଇଛନ୍ତି। ଦାୟିତ୍ୱ ତୁଲାଇ ନପାରିଲେ ତାଙ୍କ ପ୍ରତି ଭରସା ସେମାନଙ୍କର ତୁଟିଯିବ। ବ୍ରିଟଶ୍ ଜାତି ତା'ର ସ୍ୱାଭିମାନ ରକ୍ଷା କରିବାକୁ ଚାହେଁ। ବିଶ୍ୱରେ ବ୍ରିଟିଶ୍ ଜାତି ତା'ର ସ୍ୱାଭିମାନ ରକ୍ଷା କରିବା ପାଇଁ ସମ୍ରାଟ ଚାହାଁନ୍ତି ଭାରତକୁ କ୍ଷମତା ହସ୍ତାନ୍ତର। ପୃଥିବୀର ବର୍ତ୍ତମାନ ଜନମତ ହିଁ ସେଇଆ। ନହେଲେ ପୃଥିବୀ ଆଗକୁ ଚାଲିଯିବ, ବ୍ରିଟିଶ୍ ପଛରେ ପଡିରହିବ। ଯୁଗର ପ୍ରଭାବ ସହିତ ପାଦ ମିଳାଇ ଚାଲିବା ବୁଦ୍ଧିମାନର କାମ। କେହି ଚାହିଁଲେ ବି କାଳର ପ୍ରଭାବରୁ ମୁକ୍ତ ରହିପାରିବ ନାହିଁ। ଏକଥାକୁ ଲକ୍ଷ୍ୟ କରି ସମ୍ରାଟ ଠିକ୍ ନିଷ୍ପତ୍ତି ନେଇଛନ୍ତି। ତାଙ୍କୁ ଏ କାମ ଅବଶ୍ୟ ସମ୍ପାଦନ କରିବାକୁ ହେବ। କ୍ଷମତା ହସ୍ତାନ୍ତର ଯଦି ନିଶ୍ଚିତ, ତେବେ ଭାରତର ନେତାମାନଙ୍କର ସହିତ ଉତ୍ତମ ବୁଝାମଣା ରଖି ଆଗେଇବାକୁ ହେବ। ବିଶେଷ କରି ହିନ୍ଦୁ-ମୁସଲମାନ ଦୁଇ ପ୍ରତିପକ୍ଷଙ୍କ ମଧ୍ୟରେ ଏକ ଗ୍ରହଣଯୋଗ୍ୟ ସୂତ୍ର ତାଙ୍କୁ ବାହାର କରିବାକୁ ହେବ। ତା ନହେଲେ ଉଗ୍ର ସାମ୍ପ୍ରଦାୟିକ ହିଂସାକାଣ୍ଡରେ ଭାରତରେ ରକ୍ତର ନଦୀ ବୋହିଯିବ। ଚର୍ଚ୍ଚିଲଙ୍କ ଭାଷାରେ ଦେୟାର ଉଇଲ ବି ବ୍ଲଡ ଅନ୍ ଦି ହେଡ ଅଫ୍ ଅଟିଲ ଏ ଅପବାଦରୁ ସେ ତାଙ୍କୁ ରକ୍ଷା କରିବେ, ନହେଲେ ଅପରାଗତା ଗ୍ଲାନିରେ ତାଙ୍କ ବୀରତ୍ୱର ସବୁ ପୁରୁଣା ରେକର୍ଡ ଭାଙ୍ଗି ଚୁରମାର ହୋଇଯିବ। ୱାଭେଲ ଓ ମାଉଣ୍ଟବେଟେନ କଥାବାର୍ତ୍ତା ଭିତରେ ଲେଡି ମାଉଣ୍ଟବେଟେନ ନିଜକୁ ନୂଆ ପରିବେଶ ସହିତ ପରିଚିତ କରାଇ ନେଉଥିଲେ। ରାଜଭବନର ବିଳାସମୟ ପ୍ରାଚୁର୍ଯ୍ୟ ସାଙ୍ଗକୁ ଅପୂର୍ବ ସାଜସଜ୍ଜାର ପରିପାଟୀ ଆଉ ସୁନ୍ଦର ଗହଳ ସବୁଜ ଉଦ୍ୟାନ ଭିତରେ ପେନ୍ଥା ପେନ୍ଥା ବାସ୍ନାଭରା ଫୁଲର ମହୋତ୍ସବ ତାଙ୍କ ଆଖିରେ ନନ୍ଦନକାନନର ଭ୍ରମ ସୃଷ୍ଟି କଲା। ରମଣୀୟ ସୌନ୍ଦର୍ଯ୍ୟରେ ବିମୋହିତ ଲେଡି ମାଉଣ୍ଟ ବେଟେନ ଶୟନ କକ୍ଷକୁ ପ୍ରବେଶ କରୁକରୁ ଜଣେ ପରିଚାରିକାକୁ

ସାମାନ୍ୟ କିଛି ହାଲକା ଖାଦ୍ୟ ତାଙ୍କର ଦୁଇ କୁକୁର ପାଇଁ ଆଣିବାକୁ କହିଲେ । ଦୁଇ କୁକୁର ମିଜେନ ଓ ଜିବକୁ ସେ ଆସିଲା ବେଳେ ଲଣ୍ଡନରୁ ଆଣିଥିଲେ । ପ୍ରାୟ ୩୦ ମିନିଟ୍ ପରେ ଦୁଇଜଣ ପରିଚାରକ ଦୁଇଟି ଟ୍ରେ'ରେ ଗରମ ଗରମ ଦୁଇ ପ୍ଲେଟ କୁକୁଡା ରୋଷ୍ଟ ଧରି ଅତି ସନ୍ତର୍ପଣରେ ଶୟନ କକ୍ଷକୁ ପ୍ରବେଶ କଲେ । ଲଣ୍ଡନରେ ଖାଦ୍ୟ କଟକଣା ହେତୁ କିଛି ସପ୍ତାହ ଧରି ସେ ଏପରି ଖାଦ୍ୟ ଖାଇନଥିଲେ । ସେସବୁ ତାଙ୍କ କୁକୁର ପାଇଁ ଆସିଥିବା ଦେଖି ଆଶ୍ଚର୍ଯ୍ୟରେ ଆଖି ବଡ଼ ବଡ଼ କରି ଚାହିଁଲେ । ଭାରତରେ ପୁଣି ଏପରି ଗରମ ଗରମ କୁକୁଡା ମାଂସ ରୋଷ୍ଟ କୁକୁରକୁ ଦିଆଯାଏ, ସେ ଭାବିପାରୁନଥିଲେ । ଖାଦ୍ୟର ବାସ୍ନାରେ ଦୁଇଟି ଯାକ ତାଙ୍କ ପୋଷା କୁକୁର ଲାଞ୍ଜ ପିଟି ଭୋ ଭୋ କରି ଭୁକୁଥିଲେ । ଏପରି ଖାଦ୍ୟ କୁକୁରକୁ ଦେବା ପାଇଁ ତାଙ୍କ ବିବେକ ବାଧା ଦେଲା । ଦୁଇଜଣ ପରିଚାରକ କୋଠରୀରୁ ବାହାରି ଗଲା ପରେ ସେ ପ୍ଲେଟ ଦୁଇଟିକୁ ଧରି ତରତର ହୋଇ ବାଥରୁମ୍‌କୁ ପଶିଗଲେ ଏବଂ ଭିତରେ କବାଟ କିଳି ଦେଇ ଟାଉ ଟାଉ କରି ଗିଳିଦେଲେ । ସେ ଲେଡି ମାଉଣ୍ଟବେଟେନ ପୁଣି ଥରେ ରାଜଭବନର ୨୫ଶହ କର୍ମଚାରୀଙ୍କର ଆତିଥ୍ୟର ଦାୟିତ୍ୱ ନେଲେ ।

ସକାଳର କଅଁଳ ସୂର୍ଯ୍ୟାଲୋକ ଇଂରେଜ ମାନଙ୍କର ଅତି ପ୍ରିୟ । ୧୯୪୭ ମାର୍ଚ୍ଚ ମାସ ୨୪ ତାରିଖ ଦିନ ମାଉଣ୍ଟବେଟେନ ଭାରତର ଭାଇସ୍ ରାଏ ଭାବରେ ଦାୟିତ୍ୱ ଗ୍ରହଣ କଲେ । ସୁନା ଓ ଗାଢ଼ ଲାଲ୍ ରଙ୍ଗର ବୈଦୁର୍ଯ୍ୟ ଖର୍ଚ୍ଚିତ ସିଂହାସନରେ ବସିଲା ପରେ ଏଚ୍.ସମ୍ରାଟ୍‌ଙ୍କ ପରି ସେ ହେଲେ ଏକ ସମ୍ଭ୍ରାନ୍ତ ଓ ବିଶ୍ୱ ପ୍ରସିଦ୍ଧ ସାମ୍ରାଜ୍ୟର ବିଂଶତମ ରାଜ ପ୍ରତିନିଧି, ଆଉ ଦିଲ୍ଲୀର ରାଜଭବନ ଥିଲା ଆୟତନରେ କେବଳ ଭେସଲିଜ୍, ପେଟ୍ରୋଭୋଜ ଅଫ୍ ଟ୍ରାସ୍କଙ୍କ ପରି । ଜଣେ ମାତ୍ର ଶାସକଙ୍କ ପାଇଁ ଏପରି ବିଶାଳ ବାସଭବନ ଆଗରୁ କେବେ ନିର୍ମିତ ହୋଇନଥିଲା, କି ଭବିଷ୍ୟତରେ ହେବ ନାହିଁ । ଭାରତ ଭଳି କ୍ଷୁଧାରେ ପୀଡିତ ପୃଥିବୀର କୌଣସି ଦେଶରେ ଏପରି ବିଶାଳ ଓ ବ୍ୟୟବହୁଳ ରାଜପ୍ରାସାଦ ବିଂଶ ଶତାବ୍ଦୀରେ ନିର୍ମିତ ହୋଇନାହିଁ । ଏହାର ବାହାର ପାଖ ଲାଲ୍ ଓ ଧଳା ପଥରରେ ଆଚ୍ଛାଦିତ । ମୋଗଲ ମାନଙ୍କ ଦ୍ୱାରା ନିର୍ମିତ ଏହାର

ଭିତର ପାଖ ଧଳା, ହଳଦିଆ, ସବୁଜ ଓ କଳା ରଙ୍ଗର ଅତି ଚିକ୍କଣ ପଥରରେ ନିର୍ମିତ। ଏହାର ସ୍ଥାପତ୍ୟ ସବୁ ଅତି ଯତ୍ନରେ ସୁରକ୍ଷିତ। ତାଜମହଲ ପରି ଏହାର କାନ୍ଥ ଏବଂ ଚଟାଣ ଅତ୍ୟନ୍ତ ମସୃଣ। ଏହାର ବାରଣ୍ଡା ସବୁ ଏତେ ଲମ୍ବା ଯେ, ତଳମହଲାରେ ରହୁଥିବା ଚତୁର୍ଥ ଶ୍ରେଣୀ କର୍ମଚାରୀ ମାନେ ବିନା ସାଇକେଲରେ ଏମୁଣ୍ଡରୁ ସେମୁଣ୍ଡ ଯାଇପାରନ୍ତି ନାହିଁ। ବାହାରେ ମୋଗଲ ଗାର୍ଡେନ ମଧ୍ୟରେ ଆହୁରି ୪୧୮ ଜଣ ମାଳି ନିଯୁକ୍ତ। ଏହା ଲୁଇସ୍ ଚତୁର୍ଦ୍ଦଶଙ୍କ ବଗିଚାର ମାଳିଙ୍କଠାରୁ ବେଶୀ। କଅଁଳ ଛନ ଛନ ବିଶାଳ ଚର୍ତୁଃକୋଣ ଲନ୍‌ରେ ସବୁଜ ଘାସ, ଫୁଲର ଅନେକ ପ୍ରକାର ଶଯ୍ୟା ଏବଂ ସେଥିରେ ଚଢ଼େଇ ମାନଙ୍କୁ ଘଉଡାଇବା ପାଇଁ ୫୦ଜଣ କର୍ମଚାରୀ ନିଯୁକ୍ତ। ଭାଇସ ରାଏଙ୍କ ୫୦୦ ଅଙ୍ଗରକ୍ଷୀ ସୁନା ଛାଉଣୀ ପୋଷାକ ପିନ୍ଧି ଗାଢ଼ କଳାରଙ୍ଗର ଘୋଡା ମାନଙ୍କ ଉପରେ ବସି ତାଙ୍କ ଆଗପଛରେ ଚାଲନ୍ତି। ଆଜିଠାରୁ ଭାଇସ୍ ରାଏ ତାଙ୍କ ଅଫିସ୍‌କୁ ଆସି କାମ ଆରମ୍ଭ କରିବା ପାଇଁ ସ୍ଥିର ହୋଇଥିଲା। ପ୍ରାସାଦର ଚଟାଣ ମାର୍ବଲ, ୩୭ ସାଲୁନ୍ ଓ ୩୪୦ କୋଠରୀ ଗୁଡିକର ଦ୍ୱାର ଓ ଝରକା ମୂଲ୍ୟବାନ ଶାଗୁଆନ୍ କାଠରେ ତିଆରି। ସକାଳୁ ସକାଳୁ କର୍ମଚାରୀ ମାନେ ଏସବୁ ଘସିମାଜି ଚକ୍‌ଚକ୍ କରିଛନ୍ତି। ବାହାରେ ବିଶାଳ ମୋଗଲ ଗାର୍ଡେନ। ୪୧୮ କର୍ମଚାରୀ ନିଯୁକ୍ତ ଦେଖାଶୁଣା କରିବା ପାଇଁ। ଭର୍ସିଲର ରାଜପ୍ରାସାଦରେ ଚତୁର୍ଦ୍ଦଶ ଲୁଇସ ନିଯୁକ୍ତ କରିଥିବା କର୍ମଚାରୀ ମାନଙ୍କ ଠାରୁ ଏମାନଙ୍କ ସଂଖ୍ୟା ବେଶୀ। ବିଶାଳ ଲନ୍‌ଟା ଛନ ଛନ ସବୁଜ ଘାସରେ ପରିପୂର୍ଣ୍ଣ। ତା'ର ରକ୍ଷଣା ବେକ୍ଷଣ କରିବା ପାଇଁ ଯେଉଁ କର୍ମଚାରୀ ମାନେ ନିଯୁକ୍ତ ସେମାନଙ୍କ ଭିତରେ ୫୦ଜଣ କେବଳ ପକ୍ଷୀ ମାନଙ୍କୁ ଘଉଡାଇବା ପାଇଁ। ଭାଇସ୍‌ରାଏଙ୍କ ବଡିଗାର୍ଡ ମାନଙ୍କ ସଂଖ୍ୟା ୫୦୦, ସେମାନେ ସବୁ ପଞ୍ଜାବୀ। ସେମାନଙ୍କ ପାଇଁ ୫୦୦ଟି କଳାଘୋଡା ଓ ସୁନା ଓ ଧଳାରଙ୍ଗର ପୋଷାକ। ପ୍ରାସାଦର ସବୁଆଡେ ସୁନା ଓ ଧଳାରଙ୍ଗର ପଗଡି ପିନ୍ଧା ଅସଂଖ୍ୟ ସିପାହୀ ନିଜ ନିଜ ସ୍ଥାନରେ କର୍ମରତ, ପିଅନ, ଚପରାସୀ, ରୋଷେୟା, ଝାଡୁଦାର ଓ ସୁରକ୍ଷାକର୍ମୀ ମାନଙ୍କ ସଂଖ୍ୟା ଅଗଣିତ। ଏ

ହେଲା ଭାଇସ୍ ରାଏଙ୍କ ରାଜଭବନ। ଶୋଷଣର ନଗ୍ନ ପ୍ରଦର୍ଶନ ଏପରି ବିଶାଳ ବିଳାଶପୂର୍ଣ୍ଣ ରାଜପ୍ରସାଦ ପୃଥିବୀରେ ବିରଳ। ଖାଦ୍ୟାଭାବ, ହଇଜା, ବସନ୍ତ, ମହାମାରୀ, ଅଶିକ୍ଷା ଓ କୁସଂସ୍କାର, ବେକାରୀରେ ଜର୍ଜ୍ଜରିତ ଭାରତରେ କେବଳ ଜଣେ ମାତ୍ର ଶାସକଙ୍କ ପାଇଁ ଏପରି ବିଶାଳ ବ୍ୟୟବହୁଳ ରାଜପ୍ରସାଦ ବିଂଶ ଶତାବ୍ଦୀରେ କଳ୍ପନାତିତ। ଶୋଷଣ ବିରୋଧରେ ଭାରତରେ ଯେଉଁ ସ୍ୱାଧୀନତା ସଂଗ୍ରାମ ଚାଲିଥିଲା ଏହା ତା'ର ନଗ୍ନ ଉଦାହରଣ। ୪୦କୋଟି ନିରନ୍ନ ବ୍ୟାଧିଗ୍ରସ୍ତ ଜନତାର ଟିକସ ଅର୍ଥକୁ ଜନତାର ସେବା ବଦଳରେ ନିଜର ପ୍ରାଚୁର୍ଯ୍ୟପୂର୍ଣ୍ଣ ବିଳାଶମୟ ଜୀବନ ପାଇଁ ବିର୍ନିବୟ କରିବା ଖାଲି ଶୋଷଣ ନୁହେଁ, ଅତ୍ୟାଚାର ମଧ୍ୟ। ନୃତ୍ୟ ପାଇଁ ନୃତ୍ୟଶାଳା, ଉପଭୋଗ ପାଇଁ ରଙ୍ଗଶାଳା, ଫୁଲର ଶଯ୍ୟା ପାଇଁ ଅସଂଖ୍ୟ ରୁପସୀ ରମଣୀ ଓ ତତ୍କ୍ଷଣାତ ସେବା ପାଇଁ ଦ୍ୱାର ବାହାରେ ଅହୋରାତ୍ର ଭୃତ୍ୟ ଦଣ୍ଡାୟମାନ। ଏସବୁ ବିଳାଶର ନଗ୍ନ ଦୃଶ୍ୟ ନୁହେଁ ତ ଆଉ କ'ଣ ?

ମାଉଣ୍ଟ ବେଟେନ ସିଂହାସନ ଆରୋହଣ କଲେ । ତାପରେ ଭେଲ୍‌ଭେଟ୍ ବକ୍ସରୁ ବାହାର କରି ତାଙ୍କୁ ପିନ୍ଧାଇ ଦିଆଗଲା ଷଷ୍ଠ ଜର୍ଜଙ୍କ ପ୍ରଦତ୍ତ ମେଡାଲ ଓ ୪ଟି ଉଜ୍ଜ୍ୱଳ ତାରକା ରାଜପ୍ରତିନିଧିର ପ୍ରତୀକ ସ୍ୱରୂପ। ଏସବୁ ହେଲା ମହାମହୀମ ଭାଇସରାଏଙ୍କ ଆଭୂଷଣ। ଶାସନକର୍ତ୍ତାର ଆଦେଶ ନିର୍ବାହ କରିବାକୁ ସମ୍ରାଟଙ୍କର ରାଜପ୍ରତିନିଧି ଭାବରେ, ମାଉଣ୍ଟବେଟେନଙ୍କ କୃତିତ୍ୱର ସ୍ମାରକୀ ସବୁ ସଜାଇ ରଖାଗଲା ସମସ୍ତଙ୍କର ନେତ୍ର ପବିତ୍ର କରିବାକୁ। କାରଣ ବ୍ରିଟିଶ୍ ଜାତିର ବିଶ୍ୱାସ, ତାଙ୍କ ସମ୍ରାଟ୍ ସ୍ୱୟଂ ଭଗବାନଙ୍କର ପ୍ରତିନିଧି। ସେ କୌଣସି ଭୁଲ୍ କରନ୍ତି ନାହିଁ। ସମସ୍ତ ପ୍ରଜା ସେମାନଙ୍କର ସେବକ। ତାଙ୍କୁ ପୂଜା କରିବା ଏବଂ ତାଙ୍କ ଆଦେଶ ପାଳନ କରିବା ଭଗବାନଙ୍କର ସେବା ପୂଜା ସହ ସମାନ । ରାଜତନ୍ତ୍ର ଶାସନରେ ଏପରି କୁସଂସ୍କାର ଓ ଅନ୍ଧ ବିଶ୍ୱାସ ପ୍ରାୟ ସବୁଦେଶରେ ଥିଲା, ଏବେବି ଅଶିକ୍ଷିତ ସମାଜ ମାନଙ୍କରେ ଏସବୁ ଅଛି। ଏହାର କାରଣ ଅଶିକ୍ଷା ଓ ପାରମ୍ପରିକ ଅନ୍ଧବିଶ୍ୱାସ। ଅନ୍ଧବିଶ୍ୱାସର ନଗ୍ନ ରୂପ ଦେଖିବାକୁ ମିଳୁଥିଲା ମିଶର ଦେଶରେ ରାଜା ଖୁଫୁଙ୍କ ଶାସନ କାଳରେ। ରାଜାଙ୍କ ସହିତ ମୃତ୍ୟୁବରଣ

କଲେ ପୁଣି, ରାଜାଙ୍କ ସହିତ ଜୀବନ୍ତ ହୋଇ ଉଠିବେ, ଏହା ଥିଲା ଉଗ୍ର ଅନ୍ଧବିଶ୍ୱାସର ନଗ୍ନ ଛବି। ଏପରିକି ରାଜାଙ୍କ ସହିତ ମୃତ୍ୟୁବରଣ କରିବାକୁ ଲୋକଙ୍କ ଭିତରେ ପ୍ରତିଯୋଗିତା ବି ହେଉଥିଲା। ଏସବୁ ଦୁର୍ଗତିରୁ ଲୋକେ ରକ୍ଷା ପାଇବାକୁ ସୁଯୋଗ ମିଳିଲା। ୧୯୪୫ ମସିହା ପରେ ଯେତେବେଳେ ରାଜତନ୍ତ୍ର ବଦଳରେ ଗଣତନ୍ତ୍ର ଯୁଗର ଅଭ୍ୟୁଦୟ ଘଟିଲା, ପୃଥିବୀର ଅଧିକାଂଶ ଦେଶ ରାଜତନ୍ତ୍ରରୁ ମୁକ୍ତି ପାଇ ଯୁଗ ଯୁଗ ଧରି ଅପଚୟ ହେଉଥିବା ମାନବ ସମ୍ବଳର ଉପଯୁକ୍ତ ବିନିଯୋଗ ପାଇଁ ସୁଯୋଗ ଆସିଲା। ଫଳରେ ଶିକ୍ଷା, ସ୍ୱାସ୍ଥ୍ୟ ଓ ଆର୍ଥିକ ବିକାଶ ହେତୁ ପୃଥିବୀର ମାନବ ସଭ୍ୟତା ଅଗ୍ରଗତି କଲା। ସୁତରାଂ ପରାଧୀନତା ହିଁ ସକଳ ଅଶାନ୍ତିର ମୂଳ କାରଣ। ପୃଥିବୀରେ ଏବେବି କେତେକ ଦେଶ ଅଛି ଯେଉଁଠି ପରାଧୀନତାର ଅନ୍ଧ କୋଠରୀରେ ପଡି ଲୋକେ ଛଟପଟ ହୋଇ ଜୀବନ କାଟୁଛନ୍ତି।

ଯେଉଁ ବ୍ୟକ୍ତି ଜଣକ ମାଉଣ୍ଟବେଟେନଙ୍କ ରାଜପ୍ରାସାଦ ପ୍ରବେଶ ବେଳର ସମସ୍ତ ଦାୟିତ୍ୱ ନିର୍ବାହ କରୁଥିଲେ, ସେ ହେଉଛନ୍ତି ଚର୍ଚ୍ଚିତ ସ୍ମିଥ। ଇଂଲଣ୍ଡର ଦକ୍ଷିଣରେ ଥିବା ଏକ ଗାଁରେ ତାଙ୍କର ଜନ୍ମ। ତାଙ୍କୁ ଯେତେବେଳେ ମାତ୍ର ୧୮ ବର୍ଷ, ସେବେଠାରୁ ସେ ମାଉଣ୍ଟବେଟେନଙ୍କର ସେବାରେ ନିଯୁକ୍ତ ରହି ୩୦ବର୍ଷ କାଟିଦେଲେଣି। ସେଦିନ ସକାଳେ ଭାଇସରାଏଙ୍କ ସେ ବିଶାଳ ସୌଧର ଗୋଟିଏ କୋଠରୀରେ କ୍ଷମତାର ପ୍ରତୀକ ଭାବରେ ଲାଗିଥିବା ମଲ୍ଲୀ ଫୁଲପରି ସିଲ୍କର ପୋଷାକଟିକୁ ମାଉଣ୍ଟ ବେଟେନଙ୍କ ପାଇଁ ଯତ୍ନର ସହ ସଜାଡି ରଖିଥିଲେ। ଛାଇ ପରି ପାଖେ ପାଖେ ରହି ତାଙ୍କର ସେବା କରିଛନ୍ତି ଏବଂ ତାଙ୍କ ଦୁଃଖ, ସୁଖ, ଜୟ, ପରାଜୟ ସବୁକୁ ନିଜର ବୋଲି ଭାବି ଆସିଛନ୍ତି। ବୃଦ୍ଧ ବେଳେ ମଧ୍ୟ ସେ ତାଙ୍କ ପାଖେ ପାଖେ ରହି ଆସିଛନ୍ତି ଏବଂ ସେଠାରେ ମାଉଣ୍ଟ ବେଟେନଙ୍କ କୃତିତ୍ୱ ଦେଖି ଗର୍ବ ଓ ଆନନ୍ଦରେ ଖୁସିର ଅଶ୍ରୁ ଢ଼ାଳିଛନ୍ତି। ଆଉ ଏକ ଘଟଣାରେ ଯେତେବେଳେ ଅସଂଖ୍ୟ ଜାପାନ ସୈନ୍ୟବାହିନୀ ଆତ୍ମସମର୍ପଣ କଲେ, ଅତ୍ୟନ୍ତ ଅପମାନଜନକ ଦୃଶ୍ୟ ଦେଖି ସେ ଦୁଃଖରେ ଭାଙ୍ଗି ପଡିଛନ୍ତି, ଏସବୁ ଦୃଶ୍ୟ ସେ ଦେଖିଛନ୍ତି ସିଙ୍ଗାପୁର ସିଟି ହଲ୍‌ରେ ଥିବାବେଳେ।

## ଅମୃତସ୍ୟ ପୁତ୍ର

ଦୁଆର କବାଟରେ କାହାର କରାଘାତ ହେଲା, ମାଉଣ୍ଟ ବେଟେନଙ୍କ ଧ୍ୟାନ ଭଙ୍ଗ ହେଲା । ସେ ଦୁଆର ଆଡକୁ ଚାହିଁଲେ । ଦୁଆରେ ଆଉ କେହି ନୁହେଁ, ପତ୍ନୀ ମାଉଣ୍ଟ ବେଟେନ ଭିତରକୁ ପଶିଆସିଲେ । ସ୍ୱର୍ଣ୍ଣାଭ କେଶରାଶିରେ ଉଜ୍ଜ୍ୱଳ ହୀରାର ଆଭୂଷଣ, ତନୁପାତଳୀ ଲାବଣ୍ୟମୟୀ ତରୁଣୀର କ୍ଷୀଣକଟି ଦେହରେ ଜଡିଯାଇଛି ଶୁଭ୍ର ସିଲକ୍ ଗାଉନ୍ । ମାଉଣ୍ଟ ବେଟେନଙ୍କର ମନେ ହେଲା ସତେ ଯେମିତି ସେହି ଅପୂର୍ବ ଶୋଭାମୟୀ ତରୁଣୀଟି ସେଦିନ ଷ୍ଟେସ ମାର୍ଜେଣ୍ଟଙ୍କ ଓ୍ୱେଷ୍ଟ ମିନିଷ୍ଟରରୁ ବାହାରି ଆସି ତାଙ୍କ ହାତ ଧରି ଅଳ୍ପ ଲାଜୁଆ ଭାବରେ ଶୀହରି ଉଠୁଛନ୍ତି । ମାଉଣ୍ଟବେଟେନ ତାଙ୍କୁ ଚାହିଁ ଚାହିଁ ରହିଲେ କିଛିକ୍ଷଣ ପ୍ରେମ ସମ୍ଭାଷଣ କରି । ଅପୂର୍ବ ସୁନ୍ଦରୀ ବୁଦ୍ଧିବତୀ ନାରୀ, ଉଜ୍ଜ୍ୱଳ ଆୟତ୍ତ ନେତ୍ର ସତେ ଯେମିତି ପ୍ରେମର ଶରାଘାତ କରୁଛି । ଅଜାଙ୍କର ପ୍ରଚୁର ଧନରାଶିର ସେ ଅଧିକାରିଣୀ । ତାଙ୍କ ଅଜା ଥିଲେ ସାର୍ ଏନେଷ୍ଟ କାସେଲ । ପିତାଙ୍କ ଠାରୁ ପାଇଥିଲେ ସାମାଜିକ ପ୍ରତିଷ୍ଠା, ଯାହାଙ୍କର ପୂର୍ବ ପୁରୁଷର କେହି ଜଣେ ଥିଲା ଊନବିଂଶ ଶତାବ୍ଦୀର ବ୍ରିଟିଶ୍ ପ୍ରଧାନମନ୍ତ୍ରୀ । ମାତାଙ୍କର ମୃତ୍ୟୁ ଘଟିଥିଲା ସେ ଯେତେବେଳେ ଥିଲେ ଖୁବ୍ ଛୋଟ । ମାତୃ ସ୍ନେହରୁ ବଞ୍ଚିତ ଲେଡି ମାଉଣ୍ଟ ବେଟେନ ଛୋଟ ଛୋଟ କଥାରେ ଆଘାତ ଅନୁଭବ କରୁଥିଲେ । ମାତ୍ର ସବୁ ନିଜଠାରେ ଚାପିରଖି ସବୁ ପରିସ୍ଥିତିରେ ନିଜକୁ ସମ୍ଭାଳି ନେଉଥିଲେ ମାତୃହରା ଅସହାୟ ହୋଇ । ସ୍ୱାମୀ ମାଉଣ୍ଟ ବେଟେନ ଥିଲେ ଭିନ୍ନ ପ୍ରକୃତିର ମଣିଷ । ଅସନ୍ତୁଷ୍ଟ ହେଲେ ଖୁବ ବିରକ୍ତିରେ କଠୋର ସମାଲୋଚନା କରୁଥିଲେ । ତାଙ୍କର ଏ ସ୍ୱଭାବକୁ ଦେଖି ଲେଡି ମାଉଣ୍ଟେନ ବେଟେନ ପତିଙ୍କୁ ସବୁବେଳେ ଶାନ୍ତ ରଖିବାକୁ ଖୁବ୍ ଯତ୍ନ କରୁଥିଲେ । ଏପରିକି ସେ ନଶୋଇବା ପର୍ଯ୍ୟନ୍ତ ଇତୁଇନ୍ ଅତି ଯତ୍ନର ସହିତ ତାଙ୍କ ପାଖେ ପାଖେ ରହି ସେବା ଯତ୍ନ କରୁଥିଲେ । ଯଦିଓ ସେ ଥିଲେ ଲଜ୍ଜ୍ୟାଶୀଳା । ତାଙ୍କର ଇଚ୍ଛାଶକ୍ତି ଥିଲା ପ୍ରଚଣ୍ଡ । ବିଭିନ୍ନ ସମୟରେ ବାହାରକୁ ଯିବା, ପାର୍ଟି ଆଟେଣ୍ଡ କରିବା, ସାମାଜିକ ଅନୁଷ୍ଠାନରେ ଯୋଗଦେବା ଏବଂ ସଭା ସମିତିକୁ ଯାଇ ଆଲୋଚନା ଶୁଣିବା ଥିଲା ତାଙ୍କର ଅଭ୍ୟାସ । ଦଶବର୍ଷରୁ ଉର୍ଦ୍ଧ୍ୱକାଳ ଧରି ସେ ସାଧାରଣ

ସଭାମାନଙ୍କରେ ବକ୍ତୃତା ଦେଇ ବେଶ୍ ଜଣାଶୁଣା ହୋଇଯାଇଥିଲେ। ସମ୍ଭବତଃ ଥଣ୍ଡାରେ ବାହାରେ ବୁଲାବୁଲି କରିବା ହେତୁ ସେ ପ୍ରାୟ ପ୍ରତିଦିନ ଶୀରପୀଡା ଭୋଗୁଥିଲେ। କିନ୍ତୁ ଏ କଥା ସେ କାହାକୁ ଜଣାଉନଥିଲେ। ଦୁଇଟି ପୃଥକ ପ୍ରକୃତିର ସ୍ୱାମୀ ଆଉ ସ୍ତ୍ରୀ ତିରିଶି ବର୍ଷକାଳ ଏକତ୍ର ବାସ କରିଥିଲେ। ବିବାହର ପ୍ରଥମ ଚଉଦବର୍ଷ ଧରି ଅଧିକାଂଶ ସମୟ ସେମାନେ କାଟିଥିଲେ ସମୁଦ୍ର ମଧ୍ୟରେ ଜଳଯାହାଜରେ ନିଜର ସମସ୍ତ ପୈତୃକ ଧନ ସମ୍ପଦର ମୋହଛାଡି। ନୌ-କେନ୍ଦ୍ରରୁ ବାହାରି ଲଣ୍ଡନ କିମ୍ବା ପ୍ୟାରିସ୍ ଇତ୍ୟାଦି ସ୍ଥାନରେ ଏ ଯାଗାରୁ ସେ ଯାଗାରୁ ବୁଲି ବୁଲି ଜଣେ ସାମାଜିକ ପ୍ରଜାପତି ପରି ପାର୍ଟିକୁ ଯିବା କିମ୍ବା ପାର୍ଟି ଦେବା କାର୍ଯ୍ୟରେ ଇଡୁଇନ୍ ସମୟ କଟାଇଥିଲେ। ଏପରି ସୁନ୍ଦର ଜୀବନ ଇଡୁଇନ୍‌ଙ୍କର ଶେଷ ହୋଇଗଲା ସୁମୋଲିନଙ୍କର ଇଥୋପିଆ ଉପରେ ଆକ୍ରମଣ ବେଳେ। ସେତେବେଳେ ସେ ଭାବିଲେ କୌଣସି ସାମାଜିକ ଓ ରାଜନୈତିକ କାର୍ଯ୍ୟରେ ନିଜକୁ ବୁଡାଇ ନରଖିଲେ ଜୀବନ ତାଙ୍କର ବୃଥା ହୋଇଯିବ। ତାପରେ ସେ ପାଲଟି ଗଲେ ଜଣେ ସମାଜସେବିକା ଏବଂ ତାଙ୍କର ବିଚାରଧାରା ହୋଇଗଲା ଉଦାର। ଯୁଦ୍ଧବେଳେ ସେ ୧୬୦୦୦ ସଦସ୍ୟ ବିଶିଷ୍ଟ ଏସ୍‌ଷ୍ଟି ଜନ୍ ଆମ୍ବୁଲାନ୍ସ ବ୍ରିଗେଡର ନେତୃତ୍ୱ ନେଇ ଆରମ୍ଭ କଲେ ଜାପାନର ମୃତାହତ ସୈନ୍ୟ ମାନଙ୍କର ସେବା ଓ ଅପସାରଣ କାମ। ବ୍ରିଟିଶ୍ ନୌସେନାପତି ଭାବରେ ମାଉଣ୍ଟବେଟେନ ଯୁଦ୍ଧ କରୁଥିଲା ବେଳେ ଜାପାନର ଆତ୍ମ ସମର୍ପଣ ତାଙ୍କୁ ଦାରୁଣ ଆଘାତ ଦେଉଥିଲା। ଏ ସେଇବେଳର କଥା, ସ୍ୱାମୀଙ୍କ ଅନୁରୋଧ କ୍ରମେ ସେ ଜାପାନର ମୃତାହତ ସୈନ୍ୟମାନଙ୍କ ଶିବିର ମାନଙ୍କୁ ଯାଇ ଅତ୍ୟନ୍ତ ଦକ୍ଷତାର ସହ ସେବାକାର୍ଯ୍ୟ କରୁଥିଲେ ଅକ୍ଳାନ୍ତ ଶ୍ରମ ସ୍ୱୀକାର କରି। ଏପରି ଗୁରୁ ଦାୟିତ୍ୱ ତୁଲାଇବାକୁ ଗଲାବେଳେ ତାଙ୍କର ସମ୍ବଳ ଥିଲା ମାତ୍ର ସ୍ୱାମୀଙ୍କର ଖଣ୍ଡେ ଚିଠି। ତାଙ୍କର ୩ଜଣ ଷ୍ଟାଫ ଅଫିସର୍ସ, ଜଣେ ସେକ୍ରେଟାରୀ ଓ ଜଣେ ଇଣ୍ଡିଆନ୍ ଏଡିସିଙ୍କୁ ଧରି । ଜଣେ ମାତ୍ର ବ୍ରିଟିଶ ସୈନ୍ୟ ପହଞ୍ଚିବା ପୂର୍ବରୁ ସେ ପର୍ଯ୍ୟନ୍ତ ଜାପାନ ନିୟନ୍ତ୍ରଣରେ ମାନିଲା ଏବଂ ହଂକଂ ନିର୍ଭୟ ଚିତ୍ତରେ ଏବଂ ମିତ୍ରଶକ୍ତି ପକ୍ଷରୁ କିଛି

ସାହାଯ୍ୟ ପହଞ୍ଚିବା ପୂର୍ବରୁ, ସେ ଜାପାନୀ ବନ୍ଦୀ ମାନଙ୍କ ପାଇଁ ସଂଗ୍ରହ କଲେ ଖାଦ୍ୟ, ବସ୍ତ୍ର ଓ ଔଷଧ। ତାଙ୍କର ଏହି ଉଦ୍ୟମ ହେତୁ ହଜାର ହଜାର କ୍ଷୁଧା ଓ ବ୍ୟାଧିରେ ପୀଡିତ ଅସହାୟ ବଞ୍ଚିଗଲେ। ଏହା ଦ୍ୱାରା ସେ ଅଶେଷ ଖ୍ୟାତି ଅର୍ଜନ କରିବା ସହିତ ସ୍ୱାମୀଙ୍କର ଜଣେ ଅତ୍ୟନ୍ତ ସାହସୀ ବନ୍ଧୁ ଭାବରେ ଅନେକ ଭାରତୀୟ ନେତା ମାନଙ୍କର ଘନିଷ୍ଠ ହୋଇଗଲେ । ତାଙ୍କର ସେମାନଙ୍କ ସହିତ ଏଇ ବନ୍ଧୁତା ମାଉଣ୍ଟବେଟେନଙ୍କୁ ପରେ ଯଥେଷ୍ଟ ସାହାଯ୍ୟ କଲା । ନାରୀର ହାତ ପୁରୁଷର ସଫଳତା ପଛରେ ମହତ୍ତ୍ୱର ଭୂମିକା ନିର୍ବାହ କରେ ବୋଲି ଯେଉଁ ପ୍ରବାଦ ରହଛି ତାହା ଶହେକୁ ଶହେ ପ୍ରମାଣ କରିଛି । ତା ନ ହୋଇଥିଲେ ମାଉଣ୍ଟବେଟେନଙ୍କ ପରି ଜଣେ କ୍ଷଣକୋପି ଦକ୍ଷତାର ସହ ସବୁ କାମ କରିବା ସମ୍ଭବ ହୋଇ ନଥାନ୍ତା । ବିଶେଷ କରି କ୍ଷମତା ହସ୍ତାନ୍ତର କାମରେ ସେ ଭାରତୀୟ ନେତା ମାନଙ୍କୁ ପ୍ରଭାବିତ କରି ସ୍ୱାମୀଙ୍କ ଉପରେ ଥିବା ଅସମ୍ଭବକୁ ସମ୍ଭବ କରି ପାରିଛନ୍ତି । ଚତୁର ବୁଦ୍ଧିମତା ଓ ଅପୂର୍ବ ଶୋଭା ତାଙ୍କୁ ବହୁ ଗୁରୁତ୍ୱପୂର୍ଣ୍ଣ କାମରେ ସଫଳ କାମ କରିଛି । ନାରୀର ସୌନ୍ଦର୍ଯ୍ୟରେ ପୁରୁଷ ବିମୋହିତ ହେବା ଏକ ସାଧାରଣ କଥା। ଏହା ହିଁ କହିବା ପାଇଁ ପୁରାଣକାରମାନେ ମହିଷାସୁର ଓ ଦୁର୍ଗାଙ୍କ ମଧ୍ୟରେ କଳ୍ପିତ ଯୁଦ୍ଧର ଅବତାରଣା କରିଛନ୍ତି । ପୁରୁଷ ଉପରେ ଏପରି ନାରୀର ପ୍ରଭାବ ସଂପର୍କରେ ପୁରାଣଠାରୁ ଇତିହାସ ପର୍ଯ୍ୟନ୍ତ ଅନେକ ଦୃଷ୍ଟାନ୍ତ ଲିପିବଦ୍ଧ ହୋଇଛି । ନାରୀ ଓ ପୁରୁଷ ମଧ୍ୟରେ ଏପରି ଆକର୍ଷଣ ସୃଷ୍ଟିପାଇଁ ପ୍ରକୃତିର ଏକ କୌଶଳ। ଯୁଦ୍ଧ ସମୟରେ କ୍ଳାନ୍ତ, ଅବସନ୍ନ ଏବଂ କ୍ଷତବିକ୍ଷତ ସୈନିକ ମାନଙ୍କର ସେବା କରି ଇଡୁଇନ୍ ଯେପରି ଉଚ୍ଚ ପ୍ରଶଂସା ଅର୍ଜନ କରିଛନ୍ତି, ସେହିପରି ଭାରତୀୟ ନେତାମାନଙ୍କ ମଧ୍ୟରେ କ୍ଷମତା ହସ୍ତାନ୍ତର ପ୍ରକ୍ରିୟାରେ ସ୍ୱାମୀଙ୍କୁ ବିପୁଳ ସାହାଯ୍ୟ କରିଛନ୍ତି । ନେତାମାନଙ୍କ ସହ ଏପରି ଏକ ବନ୍ଧୁତା ରକ୍ଷା କରିଥିଲେ ଯେ, ୧୦୦ଜଣ ଅତିଥିଙ୍କ ପାଇଁ ଏକ ନୈଶ ଭୋଜିରେ ସେ ସଭାପତିତ୍ୱ କରିଥିଲେ ଏବଂ ତା ପରଦିନ ଏକ ସାଧାରଣ ପରିଧାନରେ ଆଣ୍ଠୁଏ ବହଳ ପାଣି ଓ କାଦୁଅରେ ପଶି ପଶି ଯାଇ ହଇଜାରେ ଆକ୍ରାନ୍ତ ଏକ ଶିଶୁକୁ ନିଜ

କୋଳରେ ଟେକି ଧରିଥିଲେ । କ୍ଷମତା ପ୍ରତିଷ୍ଠା ଓ ପ୍ରାଚୁର୍ଯ୍ୟରେ ପରିପୂର୍ଣ୍ଣ ଏତେ ବଡ ଜଣେ ସଂଭ୍ରାନ୍ତ ପରିବାରର ମହିଳାଙ୍କ ଏହା ଅସାଧାରଣ ମହାନୁଭବତା । ପୀଡିତ ଶିଶୁଟିକୁ ଖାଲି କୋଳରେ ଧରିଥିଲେ ନୁହେଁ, ଭାରତର ଅଗଣିତ ଅବହେଳିତ ରୁଗ୍‌ଣ ଶିଶୁମାନଙ୍କର ଅସହାୟ ଦୃଶ୍ୟ ତାଙ୍କୁ ଦାରୁଣ ଦୁଃଖ ଦେଲା । ସମବେଦନାର ଅଶ୍ରୁଧାର ତାଙ୍କ ଆଖିକୁ ସଜଳ କରିଦେଲା । ଭାରତର ଗ୍ରାମାଞ୍ଚଳରେ ଲକ୍ଷ ଲକ୍ଷ କଂକାଳ ସାର ରୁଗ୍‌ଣ ଶିଶୁଙ୍କର କରୁଣ ଦୃଶ୍ୟ ସେ ଦେଖିଥିଲେ ଏବଂ ସ୍ୱାମୀଙ୍କ ଠାରୁ ଶୁଣିଥିଲେ । ସେ ଭାବିଲେ ଏପରି ଶିଶୁମାନଙ୍କର ସେବା କରିପାରିଲେ ଜନନୀ ଜୀବନ ତାଙ୍କର ସାର୍ଥକ ହୁଅନ୍ତା । ପ୍ରତ୍ୟେକ ଜନନୀର ହୃଦୟ କରୁଣାର ଭଣ୍ଡାର । ତାର କୋମଳ ମଧୁର ହାତର ସ୍ପର୍ଶ ବ୍ୟାଧିଗ୍ରସ୍ତକୁ ଯେପରି ବଂଚିବାର ଆଶା ପ୍ରଦାନ କରେ, ପୁରୁଷକୁ ସେହିପରି ପ୍ରଦାନ କରେ ପ୍ରେରଣା, ସମସ୍ୟାର ସମ୍ମୁଖୀନ ହେବାପାଇଁ । ସେଥିପାଇଁ କୁହାଯାଏ ନାରୀ ପ୍ରକୃତିର ପ୍ରତିଛବି । ତା ନ ହୋଇଥିଲେ ପ୍ରକୃତିର ବର୍ଣ୍ଣ ବୈଭବ ଏତେ ସୁନ୍ଦର ମଧୁର ହୋଇଥାନ୍ତା କାହିଁକି ? ତାର ନିବିଡ ଶ୍ୟାମଳ ଅରଣ୍ୟ ଶୋଭା ଅନ୍ତହୀନ ବିସ୍ତାରିତ ଆକାଶର ନୀଳିମା, ବିଶାଳ ବିସ୍ତୀର୍ଣ୍ଣ ଗଭୀର ସମୁଦ୍ରର ନୀଳ ଜଳରାଶି, ପଶୁପକ୍ଷୀ ସରୀସୃପର ବିଚିତ୍ର ସମାରୋହ ଆଉ ନଦନଦୀର କୁଳୁ କୁଳୁ ମଧୁର ସଂଗୀତ ସାଙ୍ଗକୁ ଅସୁମାରୀ ନାନା ବର୍ଣ୍ଣ ଫୁଲର ସମ୍ଭାର; ଏ ସବୁର ବେଶ ବିନ୍ୟାସ ଚିତ୍ତହରଣ କରୁଛି କବି, ଭାବୁକ ଓ ଦାର୍ଶନିକ ମାନଙ୍କର କେଉଁ ଅନାଦି କାଳରୁ । ଧନ୍ୟ ଈଶ୍ୱରଙ୍କର କଳାକୃତି, ଧନ୍ୟ ତାଙ୍କର ମହିମା । ୧୯୨୨ ମସିହା ଫେବୃୟାରୀ ମାସ, Prince of wales ଙ୍କ ସମ୍ମାନାର୍ଥେ ଆୟୋଜିତ ନୃତ୍ୟଶାଳାରେ ତାରୁଣ୍ୟରେ ଛଳ ଛଳ ଶୋଭାମୟୀ ଇଡୁଇନ୍‌ଙ୍କୁ ବିବାହ ପାଇଁ ପ୍ରସ୍ତାବ ଦେଇଥିଲେ ମାଉଣ୍ଟବେଟେନ ପ୍ରେମର ସମ୍ଭାଷଣ କରି । ଆଜି ବିବାହର ଚଉଦ ବର୍ଷ ପରେ, ଇଡୁଇନ୍‌ଙ୍କର ସେବାକାର୍ଯ୍ୟରେ ମୁଗ୍ଧ ମାଉଣ୍ଟ ବେଟେନ ତାଙ୍କୁ ସ୍ନେହରେ କୋଳାଗ୍ରତ କରି ଆଣି ବସାଇଲେ vice ray lady reading ଙ୍କର ଉଜ୍ଜ୍ୱଳ ସ୍ୱର୍ଣ୍ଣ ସିଂହାସନରେ । ପ୍ରାକୃତିକ ସୌନ୍ଦର୍ଯ୍ୟରେ ଭାରତ ସଦା ଉତ୍ସବ ମୁଖର ।

ସୌନ୍ଦର୍ଯ୍ୟପ୍ରିୟ ମୋଗଲ ମାନଙ୍କର ଅମର କଳାକୃତି ଓ ଭିକ୍ଟୋରିଆଙ୍କ ବିଳାସପୂର୍ଣ୍ଣ ରାଜଭବନରେ । ମାଉଣ୍ଟ ବେଟେନଙ୍କୁ ଭାଇସ ରାୟ ପଦରେ ଅଭିସିକ୍ତ କରିବା ଦିନ ଯେଉଁ ସୌନ୍ଦର୍ଯ୍ୟର ପଶରା ଉଛୁଳି ପଡୁଥିଲା, ଏବେ ବି ତାହା ସେହିପରି ଅକ୍ଷୁର୍ଣ୍ଣ ରହିଛି । ସେଇ ରାଜଭବନର ଦରବାର ହଲକୁ ଯେଉଁଦିନ ମାଉଣ୍ଟବେଟେନଙ୍କୁ ଜଳ ସ୍ଥଳ ଓ ଆକାଶବାହିନୀ ଗହଣରେ ପାଛୋଟି ନିଆଯାଇଥିଲା ଭାଇସ ରାୟ ହେବାକୁ, ତାର ବିଳାସପୂର୍ଣ୍ଣ ଦୃଶ୍ୟପଟ ଏବେ ବି ତାଙ୍କ ସ୍ମୃତିରେ ଜୀବନ୍ତ ହୋଇ ରହିଛି । ସେ ଦିନ ଶପଥ ଗ୍ରହଣ ଉତ୍ସବରେ ସେ କହିଥିଲେ "I am under no illusion about the difficulties of my task, i shall need the greatest good will of the greatest possible number and I am asking India today for that good will".

ଭାଇସ ରାୟ ପଦରେ ଅଭିସିକ୍ତ କରିବାର ଆଡମ୍ବର ପୂର୍ଣ୍ଣ ଉତ୍ସବ ସରିଯିବାର ପ୍ରାୟ ୪୫ ମିନିଟ୍ ପରେ ସାଦା ପୋଷାକରେ ଆସି ମାଉଣ୍ଟବେଟେନ ସିଂହାସନରେ ବସିଲେ । ବିଶାଳ ରାଜଭବନର ସମସ୍ତ କର୍ମଚାରୀ ନିଜ ନିଜ ସ୍ଥାନରେ ଉପସ୍ଥିତ ଅଛନ୍ତି । ପ୍ରଥମ ଆଦେଶ ହେଲା, ପ୍ରତିଦିନ କାମ ଆରମ୍ଭ ପୂର୍ବରୁ ସମସ୍ତେ ଉପସ୍ଥିତ ଷ୍ଟାଫ ମିଟିଙ୍ଗ କରିବେ ପରେ ଏହାକୁ ମର୍ଣ୍ଣିଙ୍ଗ ପ୍ରେୟାର ବୋଲି କୁହାଗଲା । ସିଂହାସନରେ ବସିବା ମାତ୍ରେ ତାଙ୍କ ଟେବୁଲ ଉପରେ ଜଉମୁଦଥିବା ଲଫାପାଟିଏ ଦେଖି ତାକୁ ଉଠାଇ ନେଇ ଭାବିଲେ, ତେବେ ଏହା କ'ଣ ଭାଇସ ରାୟ ଭାବରେ ତାଙ୍କର ପ୍ରଥମ କାମ । ଜଣେ ବ୍ୟକ୍ତି ନିଶାସକ୍ତ ଅବସ୍ଥାରେ କ୍ରୋଧରେ ତାଙ୍କ ସ୍ତ୍ରୀଙ୍କୁ ପିଟିପିଟି ମାରି ଦେଇଥିବା ଘଟଣାରେ ମୃତ୍ୟୁଦଣ୍ଡ ପାଇଥିବା ଅଭିଯୁକ୍ତକୁ ରାଜକ୍ଷମା ମିଳିବାକୁ ନିବେଦନ । ମାଉଣ୍ଟବେଟେନ ଆବେଦନ ପତ୍ରଟିକୁ ପଢିସାରିବା ପରେ ପୁରା ଗୋଟିଏ ମିନିଟ ଭାବିଲେ । ତା ପରେ ଫାଇଲରେ ଆଦେଶ ଦେଲେ There are no grounds for the exercise of the royal prerogative of mercy. ଏହା ପରେ ନିଜ ଅଫିସର କାନ୍ଥ ଉପରେ ନଜର ପକାଇ ଭାବିଲେ ଏହି

କକ୍ଷରେ "Many negotiation meeting have failed here" କବାଟ ଝରକା କାନ୍ଥ ସବୁ ନୂଆ କରି ରଙ୍ଗ ଦେବାକୁ ଆଦେଶ ଦେଲେ । ସେ ଭାବିଲେ ଏହାଦ୍ୱାରା ଯେଉଁ ଭାରତୀୟ ନେତାମାନଙ୍କ ସହ ସେ ଆଲୋଚନା କରିବେ, ସେମାନେ ନିଜକୁ ସୁଖ କର ଓ ସହଜ ଅନୁଭବ କରିବେ ଏବଂ ଯେଉଁ ଜଟିଳ ସମସ୍ୟାର ସମାଧାନ ପାଇଁ ତାଙ୍କୁ ଦିଲ୍ଲୀ ପଠାଯାଇଛି ସେଥିରେ ଉପଯୁକ୍ତ ସହଯୋଗ କରିଛନ୍ତି । କିନ୍ତୁ ସେମାନଙ୍କ ଉପରେ ବୁଦ୍ଧିର ପ୍ରଭାବ ପକାଇବା ପୂର୍ବରୁ ନିଜ ବ୍ୟକ୍ତିତ୍ୱର ପ୍ରଭାବ ପକାଇବାକୁ ହେବ । କାରଣ ତାଙ୍କ ପୂର୍ବରୁ ଯେଉଁ ଭାଇସ ରାଏମାନେ ଆସିଥିଲେ, ସେମାନେ ସବୁ ଆସିଥିଲେ କ୍ଷମତା ବିସ୍ତାର କରି ଶାସନ କରିବାକୁ । କିନ୍ତୁ ସେ ଆସିଛନ୍ତି କ୍ଷମତା ସହିତ ଭାରତକୁ ଛାଡିଦେଇ ଇଂରେଜ ମାନଙ୍କୁ ସାଙ୍ଗରେ ଧରି ଫେରିଯିବାକୁ, ଏତେବେଳେ ଭାରତୀୟ ମାନଙ୍କଠାରେ ବ୍ରିଟିଶ୍ ଜାତି ପ୍ରତି କ୍ରୋଧ, ଅସନ୍ତୋଷ ଓ ଘୃଣା ଦେଖା ଦେଇପାରେ । ଯେଉଁମାନେ ଏତେକାଳ ଧରି ପ୍ରଭୁତ୍ୱ ବିସ୍ତାର କରି ଭାରତୀୟ ମାନଙ୍କୁ ହୀନ ଭାବୁଥିଲେ । ସେମାନେ ବର୍ତ୍ତମାନ ନିନ୍ଦା ଓ ଅସମ୍ମାନର ପାତ୍ର ହୋଇପାରନ୍ତି । ତେଣୁ ସେମାନଙ୍କ ସହିତ ବନ୍ଧୁଭାବ ସୃଷ୍ଟି କରି ବ୍ରିଟିଶ୍ ଶାସନର ଗୌରବ ରକ୍ଷା କରିବା ସଙ୍ଗେ ସଙ୍ଗେ ସମ୍ମାନର ସହିତ ବିଦାୟ ନେବା ଆବଶ୍ୟକ । ତା ହେଲେ କମନ୍ ୱେଲଥର ସଦସ୍ୟ ଭାବରେ ବ୍ରିଟିଶ୍ ଜାତିର ବନ୍ଧୁହୋଇ ରହିବ ଭାରତ । ଏ କାର୍ଯ୍ୟ ଏକ ପ୍ରକାର ଅସମ୍ଭବ । ମାତ୍ର ତାଙ୍କୁ ତାହା ସମ୍ଭବ କରିବାକୁ ହେବ । ତେଣୁ ସେ ମୁସଲିମ୍ ଲିଗ୍ ଓ ନ୍ୟାସନାଲ କଂଗ୍ରେସର ନେତା ମାନଙ୍କ ଭିତରେ ଏକ ସୌହାର୍ଦ୍ଦ୍ୟପୂର୍ଣ୍ଣ ବାତାବରଣ ସୃଷ୍ଟି କରିବା ସହିତ ବିଭାଜନ ପ୍ରକ୍ରିୟାରେ ସେମାନଙ୍କୁ ସହମତ କରାଇବେ । ସେ ପ୍ରଥମେ ଆରମ୍ଭ କଲେ ତାଙ୍କ ଭାବମୂର୍ତ୍ତି ପ୍ରତି ଏକ ସମ୍ମାନ ଜନକ ବିସ୍ମୟକର ବ୍ୟକ୍ତି ପ୍ରତିଷ୍ଠାର ଯୋଜନା । ଯୁଦ୍ଧବେଳେ ଯେଉଁସବୁ ଉତ୍ସବାନୁଷ୍ଠାନକୁ ସ୍ଥଗିତ ରଖାଯାଇଥିଲା ସେ ସବୁର ପୁନରୁଦ୍ଧାର କରାଗଲା । ସମସ୍ତ ନିରାଡମ୍ବର ବଦଳରେ ଲୋଭନୀୟ ବ୍ୟୟ ବହୁଳ ସାଜସଜ୍ଜା କରାଗଲା ଏବଂ ରାଜଭବନର ପ୍ରବେଶ ପାଇଁ ନିୟମାବଳୀକୁ

ସହଜ ଓ ସରଳ କରାଗଲା । ରାଜଭବନରେ ଭୋଜନ କରିବା ପାଇଁ କେବଳ କେତେଜଣ ଉଚ୍ଚପଦାଧିକାରୀଙ୍କୁ ନିମନ୍ତ୍ରଣ କରିବା ପାଇଁ ଯେଉଁ ପରମ୍ପରା ଥିଲା, ତା ବଦଳରେ ସାଧାରଣ ଲୋକଙ୍କ ପାଇଁ ବ୍ୟବସ୍ଥା କରାଗଲା । ଭାରତୀୟ ରୁଚି ଅନୁସାରେ ନିରାମିଷ ଭୋଜନ ପାଇଁ ଖାଦ୍ୟ ପରିବେଷଣ କରାଗଲା । ସେମାନଙ୍କୁ କଣ୍ଟାଚାମଚ ବଦଳରେ ନିଜ ହାତରେ ଖାଇବାକୁ ବାରଣ କରାଗଲା ନାହିଁ । ଖାଇସାରିବା ପରେ ହାତଧୋଇବା ପାଇଁ ସେମାନଙ୍କ ପଛରେ ଟାଓଲ ଧରି ବିନୀତ ଭାବରେ ସମ୍ମାନ ଦେଖାଇ ଠିଆ ହୋଇ ରହିବା, ସେ ଏବଂ ତାଙ୍କ ସ୍ତ୍ରୀ କିମ୍ବା ପିଲାମାନେ ନିରାପତ୍ତାରକ୍ଷୀଙ୍କ ବିନା ସାହାଯ୍ୟରେ ବାହାରେ ବୁଲାବୁଲି କରିବା, ଭାରତୀୟ ମାନଙ୍କ ଘରକୁ ଯିବା ଆସିବା କରିବା ଏବଂ ସେମାନଙ୍କର ଉତ୍ସବାନୁଷ୍ଠାନ ମାନଙ୍କରେ ଯୋଗଦେବା କାର୍ଯ୍ୟକୁ ସହଜ ଓ ଅବାଧ ଇତ୍ୟାଦି କରିବା, ବନ୍ଧୁଭାବ ପ୍ରଦର୍ଶନ କରିବା କ୍ଷେତ୍ରରେ ସାରା ଦେଶରେ ଚହଳ ସୃଷ୍ଟି କଲା । ସେ ସମସ୍ତଙ୍କର ପ୍ରିୟ ହୋଇଗଲେ । ଯେଉଁ ଭାଇସରାଏଙ୍କୁ ଦେଖିବା ଏକ ସୌଭାଗ୍ୟ କଥା ଥିଲା, ସେ ଆଜି ଅତି ସାଦାସିଧା ଭାବରେ ସମସ୍ତଙ୍କୁ ଦେଖାଦେବା ଓ ରାଜଭବନକୁ ପଶିବା ପାଇଁ କୌଣସି ବାରଣ ନ ଥିବା ଦେଖି ସମସ୍ତେ ଭାବବିହ୍ୱଳ ହୋଇଗଲେ । ଫଳରେ ତାଙ୍କ ପ୍ରତି ସେହ୍ନ ଶ୍ରଦ୍ଧା ଭକ୍ତି ଓ ସମ୍ମାନ ବଢିଗଲା । ସେ ସମସ୍ତଙ୍କର ହୋଇଗଲେ ଅତ୍ୟନ୍ତ ପ୍ରିୟ ଭାଇସରାଏ । ଭାରତୀୟ ନେତାମାନେ ତାଙ୍କୁ ଜଣେ ପ୍ରିୟ ବନ୍ଧୁ ଭାବରେ ଗ୍ରହଣ କରିଗଲେ ଏବଂ ବ୍ରିଟିଶ୍ ଯେ ଗୋଟିଏ ଅବିଶ୍ୱାସୀ ଅତ୍ୟାଚାର ଓ ଶୋଷଣର ଜାତି ବୋଲି ଯେଁଉ ଶତୃଭାବ ଥିଲା ତା ଦୂର ହୋଇଗଲେ ମଧ୍ୟ ଅନେକଙ୍କୁ ରହସ୍ୟାବୃତ୍ତ ମନେହେଲା । ଜବାହାରଲାଲ ନେହେରୁ ତାଙ୍କୁ ଦିନେ କହିଥିଲେ, he was becoming a difficult man to negotiate with, becauwse he was drawing large croud thy anybody in is India. ଏହାକୁ ନେଇ ଏକ ନାଟକୀୟ ଦୃଶ୍ୟ ଆଙ୍କି ଦିଆଗଲା । ପ୍ରଥମେ ଏହାକୁ ମାଉଣ୍ଟ ବେଟେନ ବିଶ୍ୱାସ କଲେ ନାହିଁ । କିନ୍ତୁ ଦିଲ୍ଲୀର ନୂଆ ବର୍ଷଦିନ clement attlee ତାଙ୍କୁ ଯେପରି

ବର୍ଣ୍ଣନା କଲେ, ତାହା ଏକ ଶାନ୍ତ ଗାଁର ଛବିପରି ଦେଖାଗଲା । ତଥାପି ତାଙ୍କ ଅଫିସ୍‌ରେ ସେମାନେ କହିଥିଲେ ଯେ ସେ ଅତ୍ୟନ୍ତ ବୁଦ୍ଧିମାନ ଓ ଭାରତକୁ ଉତ୍ତମ ରୂପେ ବୁଝିଛନ୍ତି । କିନ୍ତୁ ତାଙ୍କର ଏପରି ସରଳତା, ହିନ୍ଦୁ ଓ ମୁସଲମାନ ମାନଙ୍କ ମଧ୍ୟରେ ଥିବା ଉଗ୍ର ସାଂପ୍ରଦାୟିକତା ଭାରତକୁ ଏକ ଗୃହଯୁଦ୍ଧ ଆଡକୁ ଟାଣି ନେବାରେ ଅଟିଲଙ୍କର ଏହି ମନ୍ତବ୍ୟ ମାଉଣ୍ଟ ବେଟେନଙ୍କ ମନରେ ଆଘାତ ଦେଇଥିଲା ସତ, କିନ୍ତୁ ଉଭୟ ସଂପ୍ରଦାୟର ନେତାମାନଙ୍କ ପ୍ରତି ବନ୍ଧୁତ୍ୱପୂର୍ଣ୍ଣ ଆଚରଣ ହିଁ ତାଙ୍କୁ ଭାରତ ବିଭାଜନରେ ସଫଳ କାମ କରିବ ଏ ବିଶ୍ୱାସରେ ଅଟଳ ରହିଲେ । ତାଙ୍କ ବିଚାରରେ ପ୍ରଭୁତ୍ୱ ଅପେକ୍ଷା ବନ୍ଧୁତ୍ୱ ବେଶି ଦରକାର ଏବଂ ତାଙ୍କର ଏହି ନୀତି ହିଁ ଉଭୟ ସଂପ୍ରଦାୟ ମଧ୍ୟରେ ଥିବା ଉଗ୍ର ଶତୃତାକୁ ପ୍ରଶମିତ କରିପାରିବ । ତାହା ହିଁ ହେଲା, ନଚେତ୍ ଭାରତ ବିଭାଜନ ତ ହୋଇ ନ ଥାନ୍ତା, କିନ୍ତୁ ଦେଶବ୍ୟାପୀ ସାଂପ୍ରଦାୟିକ ହିଂସାକାଣ୍ଡର ସୀମା ନ ଥାନ୍ତା ସୁତରାଂ ମାଉଣ୍ଟବେଟେନ୍ ଥିଲେ ଅତ୍ୟନ୍ତ ଚତୁର ଓ ବୁଦ୍ଧିମାନ । ସମସ୍ୟା ହେଲା ମୁସିଲିମ୍ ଲିଗ୍‌ର Direction day ଏବଂ ଇଣ୍ଡିଆ କଂଗ୍ରେସର କ୍ୱାଇଟ୍ ଇଣ୍ଡିଆ, ଏଇ ଦୁଇଟି ଡାକରା ମଧ୍ୟରେ ବିଚାର କରି ଉପଯୁକ୍ତ ନିଷ୍ପତ୍ତି ନେବା ତାଙ୍କ ବୁଦ୍ଧିମତ୍ତାର ଆଉ ଏକ ପରୀକ୍ଷା । ତାଙ୍କୁ ସମସ୍ୟାଟି ଅଧିକ ଜଟିଳ ମନେ ହେଲା । ମାତ୍ର ସମସ୍ୟାର ସମାଧାନ ପାଇଁ ହଠାତ୍ କୌଣସି ସୂତ୍ର ନ ମିଳିଲେ, ସେ ଦୁଃଖରେ ଭାଙ୍ଗି ପଡି ଅବସାଦ ଗ୍ରସ୍ତ ହୋଇଯିବେ, ଏହା ତାଙ୍କର ସ୍ୱଭାବ ନୁହେଁ, ତେବେ ଭାରତର ପ୍ରଶାସନ ଭୁଷୁଡି ପଡୁଛି । ଅଫିସର ମାନଙ୍କ ସଂଖ୍ୟା ଯୁଦ୍ଧ ସମୟରେ ଖୁବ କମ୍ କରି ଦିଆଯାଇଥିଲା । ଆଇ.ସି ଏସ୍ ଅଫିସରମାନେ ଅବସ୍ଥା ସମ୍ଭାଳିବାକୁ ଅସମର୍ଥ । ଆଲୋଚନା ଓ ଯୁକ୍ତିତର୍କ କରିବାର ସମୟ ଆଉ ନାହିଁ । ଏବେ ଖାଲି ନିଷ୍ପତ୍ତିର ବେଳ ଏବଂ ତାହା ପୁଣି ତୁରନ୍ତ । ହିନ୍ଦୁ ଓ ମୁସଲମାନ ମାନଙ୍କ ମଧ୍ୟରେ ଉତ୍ତେଜନା ଓ ଶତୃତା ବଢୁଛି । ଏପରି ଅବସ୍ଥାରେ କି ନିଷ୍ପତ୍ତି ନେଲେ ଏ ଭୟଙ୍କର ବିପଦକୁ ମୁକାବିଲା କରିହେବ, ଏହା ହିଁ ମାଉଣ୍ଟବେଟେନଙ୍କର ଚିନ୍ତା । ଯେଉଁ General Lord Ismay ଙ୍କୁ ଆଣିଥିଲେ ଚିଫ୍ ଅଫ୍ ଷ୍ଟାଫ୍ କରି,

ତାଙ୍କଠାରୁ ନୈରାଶ୍ୟ ଜନକ ରିପୋର୍ଟ ସବୁ ଆସିବାରେ ଲାଗିଛି । ୧୯୪୦ରୁ ୧୯୪୫ ପର୍ଯ୍ୟନ୍ତ ସେଥିରେ ଚର୍ଚ୍ଚିଲଙ୍କର ଚିଫ୍ ଅଫ୍ ଷ୍ଟାଫ୍ ଅର୍ଥାତ୍ ସେ ଥିଲେ ଜଣେ ଦକ୍ଷ ଅଫିସର । ତାଙ୍କ ରିପୋର୍ଟ ବି ଥିଲା ଉଦବେଗ ଜନକ । ତାଙ୍କ ରିପୋର୍ଟରେ ସେ କହିଥିଲେ । "India was a ship on fire in mid-ocean with ammunition in her hold, could they get the fire out before it reached the ammunition". ପଞ୍ଜାବର ବ୍ରିଟିଶ୍ ଗଭର୍ଣ୍ଣମେଣ୍ଟଙ୍କ ଠାରୁ ସେ ପ୍ରଥମ ହିଂସାକାଣ୍ଡ ରିପୋର୍ଟ ପାଇଲେ ଯେ, ସାରା ପଞ୍ଜାବରେ ଗୃହଯୁଦ୍ଧ ଚାଲିଛି । ସେ ତାଙ୍କ ରିପୋର୍ଟରେ ଦର୍ଶାଇଥିଲେ ଯେ ରାଓଲପିଣ୍ଡି ପାଖରେ ସାଂପ୍ରଦାୟିକ ଦଙ୍ଗା ହେତୁ ଶହେ ଜଣଙ୍କୁ ହତ୍ୟା କରାଯାଇଛି । ମାଉଣ୍ଟବେଟେନ ଭାଇସରାଏ ଭାବରେ ଦାୟିତ୍ୱ ନେବାର ମାତ୍ର ପାଞ୍ଚଦିନ ପରେ ୯୯ ଜଣ ଦଙ୍ଗାରେ ପ୍ରାଣ ହରାଇଥିଲେ । ତାର ଦୁଇଦିନ ପରେ ବମ୍ବେରେ ୪୧ ଜଣଙ୍କ କ୍ଷତବିକ୍ଷତ ମୃତଦେହ ରାସ୍ତାରେ ମିଳିଥିଲା । ଏ ସବୁର ମୁକାବିଲା ପାଇଁ ସେ ଉଚ୍ଚ ପୁଲିସ୍ ଅଫିସର ମାନଙ୍କୁ ଡାକି ପଚାରିଲେ, ଏ ଅବସ୍ଥାରେ ସେମାନେ ଭାରତର ଶାନ୍ତି ଶୃଙ୍ଖଳା ରକ୍ଷା କରି ପାରିବେ କି ? ସେମାନେ ଉତ୍ତର ଦେଲେ ନା, ଆମେ ପାରିବୁ ନାହିଁ । ତା ପରେ ସେ Field marshal Sir claude auchinleck, ଯିଏ କି ଥିଲେ Commander- in-charge of the Indian Armyଙ୍କୁ ସେଇ ଏକା ପ୍ରଶ୍ନ ପଚାରିଲେ ଏବଂ ସେଇ ଏକା ଉତ୍ତର ପାଇଲେ । ଏଥିରୁ ସେ ବୁଝିପାରିଲେ ଯେ, ଯେଉଁ ଗଭର୍ଣ୍ଣମେଣ୍ଟ ସାହାଯ୍ୟରେ ଭାରତକୁ ସେ ଶାସନ କରନ୍ତେ, ତାହା ଉଭୟ କଂଗ୍ରେସ ଦଳ ଓ ମୁସଲିମ୍ ଲିଗ୍‌ର ପ୍ରଚଣ୍ଡ ଚାପରେ ନିଷ୍କ୍ରିୟ ହୋଇପଡିଛନ୍ତି ଏବଂ ଶତ୍ରୁମେଳରେ ରହି କାମ କରିବା ଅସମ୍ଭବ ବୋଲି ୱାଭେଲ ଯେଉଁ ରିପୋର୍ଟ ଦେଇଥିଲେ ତାହା ଯଥାର୍ଥ, ସାରା ଦେଶର ହିନ୍ଦୁ ଓ ମୁସଲମାନ ମାନେ ଦୁଇଟି ଶତ୍ରୁଶିବିରରେ ପୃଥକ ହୋଇ ରହିଛନ୍ତି । ଏହା ଦେଖି ସେ ନିଜେ ପ୍ରତ୍ୟେକ୍ଷ ଭାବରେ ଶାସନ ଦାୟିତ୍ୱ ନେବାକୁ ସ୍ଥିର କଲେ । ମାତ୍ର ପ୍ରଶାସନ ଭୁଷୁଡି ପଡୁଥିଲା, ଏଣେ ପ୍ରଚଣ୍ଡ ହିଂସାକାଣ୍ଡ ସାରା

ଦେଶରେ ମାଡି ଯାଉଥିଲା ଦାବାଗ୍ନି ପରି । ଦାୟିତ୍ୱ ନେବାର ମାତ୍ର ପାଞ୍ଚଦିନ ମଧ୍ୟରେ ସବୁ ଆଡୁ ହିଂସାକାଣ୍ଡର ଖବର ତାଙ୍କୁ ବିବ୍ରତ କରିଦେଲା । ଅବସ୍ଥା ଏତେ ଗମ୍ଭୀର ଯେ ତାଙ୍କୁ ମାତ୍ର କେତୋଟି ସପ୍ତାହ ମଧ୍ୟରେ ଯାହା କିଛି ନିଷ୍ପତ୍ତି ନେବାକୁ ହେବ । ଏପ୍ରିଲ୍ ମାସ ୨ ତାରିଖରେ ସେ ଅଟିଲ ସରକାରକୁ ଯାହା ଜଣାଇ ଦେଇଥିଲେ, ସେଥିରେ ସେ ଲେଖିଥିଲେ, ଅବସ୍ଥା ଅତ୍ୟନ୍ତ ଉଦ୍‌ବେଗଜନକ, ମାତ୍ର ତାଙ୍କୁ ସମ୍ଭାଳିବାକୁ ହେବ । ଏପ୍ରିଲ୍ ୧୯୪୭ ମସିହା, ଗୋଟିଏ ଦିନରେ ମାଉଣ୍ଟ ବେଟେନ ସ୍ଥିର କଲେ ଭାରତର ଭାଗ୍ୟ ନିର୍ଦ୍ଧାରଣ କରିବାକୁ ମାତ୍ର ଚାରିଜଣ ଭାରତୀୟଙ୍କ ସାଙ୍ଗରେ ଆଲୋଚନା କରି । ଏ ଚାରିଜଣ ଭାରତୀୟ ଥିଲେ ମଧ୍ୟବୟସ୍କ ଓକିଲ ଏବଂ ସେମାନେ ଲଣ୍ଡନରେ ସେମାନଙ୍କର ସାମର୍ଥ୍ୟ ଦେଖାଇ ଥିଲେ । କୌଣସି ତର୍କ ବା ଆଲୋଚନା ସଭା ନୁହେଁ, ମାତ୍ର ଚାରିଜଣ ଭାରତୀୟ ଓକିଲ ସାଙ୍ଗରେ ତାଙ୍କ ଅଫିସ୍‌ରେ ଏକାନ୍ତ ଆଲୋଚନା କରି ସେ ନିଷ୍ପତ୍ତି ନେଲେ । ଏହି ଚାରିଜଣ ଓକିଲ ଗତ ତିରିଶ ବର୍ଷ ଧରି ବ୍ରିଟିଶ୍ ସରକାର ବିରୁଦ୍ଧରେ ଆନ୍ଦୋଳନ କରୁଥିଲେ । ମାଉଣ୍ଟବେଟେନଙ୍କ କି ବିଚିତ୍ର ବୁଦ୍ଧି ! ବ୍ରିଟିଶ୍ ବିରୁଦ୍ଧରେ ତିରିଶ ବର୍ଷ ଧରି ଆନ୍ଦୋଳନ କରି ଆସିଥିବା ସେଇ ଚାରିଜଣ ଓକିଲଙ୍କ ସାଙ୍ଗରେ ଏକ ନିଭୃତ ଆଲୋଚନା କରି ସେ ଭାରତର ଭାଗ୍ୟ ନିର୍ଦ୍ଧାରଣ କରିବେ ଏ କଥା କେହି ଭାବିପାରିବେ ନାହିଁ । କିନ୍ତୁ ମାତ୍ର ଭାରତର ଏକତାକୁ ଦେଖି ସେ ବିସ୍ମିତ । ମାତ୍ର ମୁସଲିମ୍ ଲିଗ୍‌ର ଦାବୀକୁ ଗ୍ରହଣ କରିନେଲେ ଭାରତର ବିଭାଜନ ହୋଇଯିବ ଏବଂ ତାହା ହେବ ଭାରତର ଦୁର୍ଭାଗ୍ୟ । ଭାରତକୁ କେତେ ରାଜଶକ୍ତି ଶାସନ କରିଗଲେଣି ହଜାର ହଜାର ବର୍ଷ, କିନ୍ତୁ କେହି ହେଲେ ଭାରତର ବିଭାଜନ କରି ନ ଥିଲେ । ହିମାଳୟଠାରୁ କୁମାରିକା ପର୍ଯ୍ୟନ୍ତ ବିଶାଳ ଅଖଣ୍ଡ ଭୂଖଣ୍ଡକୁ ଆଜି ସେ ଦୁଇଖଣ୍ଡ କରିବାକୁ ଯାଇଛନ୍ତି । ଏହା ତାଙ୍କ ପାଇଁ ଇତିହାସରେ ଏକ କଳଙ୍କ ହୋଇ ରହିବ, ଏ କଥା ସେ ଜାଣନ୍ତି । ମାତ୍ର ତାଙ୍କ ପାଖରେ କିଛି ବିକଳ୍ପ ନାହିଁ, ସେ ନିରୁପାୟ । ଏ ବିଭାଜନ ଦ୍ୱାରା କି ଭୟଙ୍କର ଦୁର୍ଦ୍ଦଶା ମାଡିଆସିବ ତାକୁ ୱାଭେଲଙ୍କ ପରି ସେ ମଧ୍ୟ କଳନା କରିନେଲେ । ମାତ୍ର

ତାଙ୍କୁ ବ୍ରିଟିଶ୍ ସମ୍ରାଟଙ୍କର ଆଦେଶ ପାଳିବାକୁ ହେବ । ତେଣୁ ତାଙ୍କୁ କଳ୍ପନାରେ ସେ ବିପଦର ଅର୍ଥାତ୍ ଉଭୟ ପକ୍ଷରେ ଦେଶବ୍ୟାପୀ ହିଂସାକାଣ୍ଡର ଆକାର ପ୍ରକାର ଯେତେ ହେବ ବୋଲି ମନେ ହେଉଥିଲା ତାକୁ ସଂକୁଚିତ କରିବା ତାଙ୍କର ହେବ ପ୍ରଧାନ କାମ। ଭାରତର ନେତାମାନଙ୍କ ସହଯୋଗ ବିନା ଏହା ସମ୍ଭବ ନୁହେଁ । ତେଣୁ ସେହିପରି ନେତାମାନଙ୍କ ସହ ମନ୍ତ୍ରଣା କରିବାକୁ ସେମାନଙ୍କୁ ସେ ଡାକିଛନ୍ତି । ସେମାନଙ୍କ ସହିତ ତାଙ୍କ ପ୍ରଥମ ମନ୍ତ୍ରଣା ବିଫଳ ହୋଇଗଲା । ମାତ୍ର ଯାହା ତାଙ୍କର ପୂର୍ବଭାଇସରାଏ ଓ୍ୱାଭେଲ ବର୍ଷ ବର୍ଷ ଚେଷ୍ଟା କରି ବିଫଳ ହୋଇଥିଲେ, ତାଙ୍କୁ କେଇଟା ସପ୍ତାହ ମଧ୍ୟରେ ସଫଳ କରିବେ ଯେ କୌଣସି ପ୍ରକାରେ। ତାଙ୍କ କ୍ଷମତା ବଳରେ ଏ ବିଶ୍ୱାସ ତାଙ୍କର ଥିଲା । ତେଣୁ କେଉଁ ଭାରତୀୟ ନେତା ତାଙ୍କୁ ଏ ଦିଗରେ ସାହାଯ୍ୟ କରିପାରିବେ ଚିନ୍ତା କରୁଥିଲା ବେଳେ ପ୍ରଥମେ ନେହେରୁଙ୍କ କଥା ତାଙ୍କ ମନକୁ ଆସିଲ। ନେହେରୁ ଜଣେ ପ୍ରାଚ୍ୟ ସମ୍ଭ୍ରାନ୍ତ ବଂଶର ଉଚ୍ଚ ଶିକ୍ଷିତ ଓ ତୀକ୍ଷ୍ଣ ମେଧାବୀ ଛାତ୍ର ହିସାବରେ ହ୍ୟାରେ ସ୍କୁଲରେ ଜଣାଶୁଣା ଲଣ୍ଡନରେ ବକିଂହାମ୍ ପାଲେସ୍‌କୁ ତାଙ୍କର ଯିବା ଆସିବା ଥିଲା । ସାଉଥଇଷ୍ଟ ହେଡ କ୍ୱାର୍ଟର ସିଙ୍ଗାପୁରରେ ଥିଲାବେଳେ ନେହେରୁଙ୍କୁ ସେ ସେଠାରେ ଦେଖିଥିଲେ । ଅତି ଉଜ୍ଜ୍ୱଳ ଚେହେରା, କାଚପରି ତୀକ୍ଷ୍ଣ ଆଖି, ପୋଷାକ ପରିଚ୍ଛଦରେ ସମ୍ଭ୍ରାନ୍ତ ଲକ୍ଷଣ, କଥାବାର୍ତ୍ତାରେ ସଂସ୍କାର ପୂର୍ଣ୍ଣ ମାର୍ଜିତ ଆଚରଣର ନେହେରୁ ସମସ୍ତଙ୍କ ନିକଟରେ ଆକର୍ଷଣର କେନ୍ଦ୍ରବିନ୍ଦୁ ଭାବରେ ସେ ବେଶ୍ ପରିଚିତ । ତେଣୁ ସେ ତାଙ୍କୁ ସାହାଯ୍ୟ କରିପାରିବେ । ସେ ଜଣେ ଉଚ୍ଚାଭିଳାଷୀ। ଭାରତକୁ କ୍ଷମତା ହସ୍ତାନ୍ତର ପରେ, ସେ ହୁଏତ ଭାରତର ପ୍ରଧାନମନ୍ତ୍ରୀ ହୋଇପାରନ୍ତି। ପ୍ରଧାନମନ୍ତ୍ରୀ ହେବାପାଇଁ ତାଙ୍କର ଅଭିଳାଷ ନିଶ୍ଚୟ ଥିବ। ବୁଦ୍ଧି ଓ ବିଦ୍ୟାରେ ସେ ବେଶ୍ ପାରଙ୍ଗମ୍ । ଷୋଳ ବର୍ଷ ବୟସରେ ସେ ଇଂଲଣ୍ଡ ଯାଇଥିଲେ ପାଠ ପଢିବାକୁ ଏବଂ ସେଠାରେ ସେ ସାତବର୍ଷ ରହି ପାଠ ପଢିଥିବାରୁ ତାଙ୍କର ରୁଚି ମଧ୍ୟ ପାଶ୍ଚାତ୍ୟାଭିମୁଖୀ ହୋଇଯାଇଛି । ଇଂରେଜମାନଙ୍କ ସମାଜରେ ସେ ବେଶ୍ ପରିଚିତ। ତାଙ୍କୁ କିନ୍ତୁ ବ୍ରିଟିଶ୍ କ୍ଲବରେ ସଦସ୍ୟ ହେବାକୁ

ସୁଯୋଗ ମିଳି ନ ଥିଲା । କାରଣ ସେଥିରେ ଜଣେ ଭାରତୀୟ । ସେଇ ଦୁଃଖରେ ସବୁଛାଡି ସେ ଭାରତୀୟ କଂଗ୍ରେସ ଦଳରେ ଯୋଗଦେଲେ ଏବଂ କିଛି ଦିନ ପରେ ତାଙ୍କର ନିଷ୍ଠା ଓ କର୍ତ୍ତବ୍ୟ ପରାୟଣତା ହେତୁ ସେ କଂଗ୍ରେସ ଦଳର ଜଣେ ପ୍ରଭାବଶାଳୀ ନେତା ଭାବରେ ସମ୍ମାନିତ ହେଲେ । ଦଳର ଅନ୍ୟ କେତେକ ନେତାଙ୍କୁ ନିଜ ଇଛାନୁସାରେ ନେତୃତ୍ୱ ମଧ ଦେଉଛନ୍ତି । ଦଳର ସବୁ ନେତାଙ୍କ ସହିତ ସେ ଘନିଷ୍ଠ। ତେଣୁ ସେଇ ଏକା ତାଙ୍କ ସପକ୍ଷରେ ବୁଝାଇ ପାରିବେ । ତାଙ୍କୁ ଯଦି ସେ ନିଜର ବନ୍ଧୁ କରିପାରନ୍ତି ତେବେ ତାଙ୍କ ଯୋଜନାରେ ସେ ସଫଳ ହେବେ ଏବଂ ସମ୍ରାଟ ଓ ପ୍ରଧାନମନ୍ତ୍ରୀଙ୍କ ପାଖରେ ତାଙ୍କ ଭାବମୂର୍ତ୍ତି ଅତ୍ୟନ୍ତ ଉଜ୍ଜ୍ୱଳ ହୋଇଯିବ । ଏ ସବୁ ସତ୍ୱେ ନେହେରୁ ପ୍ରତି ତାଙ୍କ ମନରେ ଭୟ ବି ଥିଲା । ସେ ଭାବୁଥିଲେ ନେହେରୁ ବିଦ୍ୟା ବୁଦ୍ଧିରେ ପରିପୂର୍ଣ୍ଣ, ଅତି ସମ୍ଭ୍ରାନ୍ତ ବଂଶରେ ତାଙ୍କଜନ୍ମ, ଲଣ୍ଡନର inns କୋର୍ଟରେ ଜଣେ ପ୍ରଖର ବୁଦ୍ଧିସମ୍ପନ୍ନ ବ୍ୟକ୍ତି ଭାବରେ ସେ ବେଶ୍ ଜଣାଶୁଣା ଏବଂ ରାଜନୈତିକ କୌଶଳରେ ସିଦ୍ଧହସ୍ତ। ତେଣୁ ସେ ଯଦି ଭାରତର ଅଖଣ୍ଡତା ପ୍ରତି ଆସକ୍ତ ସପକ୍ଷରେ ଯୁକ୍ତି କରି ତାଙ୍କୁ ପରାସ୍ତ କରି ଦିଅନ୍ତି କିମ୍ବା ଯେଉଁ ମାନଙ୍କ ସହ ଆଲୋଚନା କରିବାକୁ ଭାବିଛନ୍ତି, ସେମାନେ ଭାରତୀୟ ହେବା କାରଣରୁ ନେହେରୁ ଯଦି ସେମାନଙ୍କୁ ନିଜ ସପକ୍ଷରେ ଏକଜୁଟ କରିଦିଅନ୍ତି ତେବେ ତାଙ୍କର ସମସ୍ତ ଯୋଜନା ପଣ୍ଡ ହୋଇଯିବ । କିନ୍ତୁ ଏ କଥା ବି ସତ ଯେ କ୍ଷମତା ଓ ଅର୍ଥ ବଳରେ ସମସ୍ତଙ୍କୁ ଜିତିହେବ, କେବଳ କେତେ ଅର୍ଥ ବା କେତେ କ୍ଷମତା ତାଙ୍କର ଦରକାର ସେତକ ଜାଣିଲେ ହେଲା । ଦେଶ ବିଭାଜନ ହେଲେ ସେ ହେବେଁ ଭାରତର ପ୍ରଧାନମନ୍ତ୍ରୀ । ଇଣ୍ଟର ଗଭର୍ଣ୍ମେଣ୍ଟରେ ପ୍ରଧାନମନ୍ତ୍ରୀ ହେବା କାରଣରୁ ଏ ସୂଚନା ମିଳିଲାଣି। ଏତେ କ୍ଷମତାକୁ କିଏ କ'ଣ ମୂର୍ଚ୍ଛି ଦେଇ ପାରେ ! ହଁ, ଏଇ ଜାଲରେ ତାଙ୍କୁ ଧରିବାକୁ ହେବ। ସେ ଅତ୍ୟନ୍ତ ଧିରସ୍ଥିର ଓ ଭଦ୍ର । ମାତ୍ର ତାଙ୍କର ସେ ଖଦଡ ପୋଷାକ ତଳେ ଲୁଚି ରହିଛି ଏ ଭୟଙ୍କର ବାଘ । ବାଘର ପଂଝାରୁ କେହି କ'ଣ କେବେ ଖସିପାରେ ? କଂଗ୍ରେସ ଦଳରେ ସେ ଏକ ପ୍ରକାର ଏକଛତ୍ରବାଦୀ । ସେ

ଜଣେ ଶାନ୍ତ ଜାତୀୟବାଦୀ ନେତା। କେମ୍ବ୍ରିଜ୍‌ରେ ବିଜ୍ଞାନଶିକ୍ଷା ବେଳେ ଜ୍ୟୋତିଷମାନଙ୍କ କଥାକୁ ସେ କେବେ ବିଶ୍ୱାସ କରୁ ନ ଥିଲେ ଏବଂ ସେମାନଙ୍କର ଗଣନା ଅନୁସାରେ ଶୁଭ ଅଶୁଭକୁ ସେ ମାନୁନଥିଲେ । ତାଙ୍କର ବିଶ୍ୱାସ ଥିଲା କଠୋର ଶ୍ରମ ଓ ଉପଯୁକ୍ତ କର୍ମ ହେଉଛି ସମସ୍ତ ସଫଳତାର ଚାବିକାଠି। ତାଙ୍କ ପାଖରେ କୌଣସି ଧର୍ମାନ୍ଧତାର ସ୍ଥାନ ନ ଥିଲା। ଦେଶକୁ ଆର୍ଥିକ ଓ ସାମାଜିକ ଦୂରାବସ୍ଥାରୁ ଉଦ୍ଧାର କରିବାର ଏକ ମାତ୍ର ବାଟ, ଶିଳ୍ପ ପ୍ରସାର ଓ ବ୍ରିଟିଶ୍ ମାନଙ୍କୁ ସାହାଯ୍ୟ କର, ଦେଶକୁ ବିଭାଜନ କରିବା। ଦେଶର ସର୍ବତ୍ର ସେ ଭ୍ରମଣ କରିଛନ୍ତି, ତାଙ୍କ ସଭାସମିତିକୁ ହଜାର ହଜାର ଲୋକ ତାଙ୍କୁ ଦେଖିବାକୁ ଓ ଶୁଣିବାକୁ ଆସନ୍ତି। ସହରତଳି ବସ୍ତି ବାସିନ୍ଦାଙ୍କ ଆବର୍ଜନା ପୂର୍ଣ୍ଣ ପରିବେଶକୁ ବଦଳାଇବା ପାଇଁ ସେ ସବୁଠାରୁ ବେଶି ଗୁରୁତ୍ୱ ଦେଇଥିଲେ । ନଡା ଛପର ବଦଳରେ ପକ୍‌କା ଘର ନିର୍ମାଣ କରିବା ଥିଲା ତାଙ୍କର ଅନ୍ୟ ଏକ ଗୁରୁତ୍ୱପୂର୍ଣ୍ଣ ଉପଦେଶ । ତାଙ୍କ ସଭାରେ ଅଂସଖ୍ୟ ଲୋକ ରୁଣ୍ଡ ହୁଅନ୍ତି । ସେମାନଙ୍କ ଭିତରୁ ଅନେକ ଶୁଣିପାରନ୍ତି ନାହିଁ କି ଭୁଲି ପାରନ୍ତି ନାହିଁ । ଏପରି ଲୋକେ ତାଙ୍କୁ ଦେଖିଦେଲେ ସୌଭାଗ୍ୟ ମଣନ୍ତି ଏବଂ ତାଙ୍କୁ ଦେଖିବା ଏକ ପବିତ୍ର ଦର୍ଶନ ବୋଲି କହି ଆନନ୍ଦିତ ହୁଅନ୍ତି । ଗାନ୍ଧି ତାଙ୍କ ଆନ୍ଦୋଳନର ଅଗ୍ରଦୂତ ଭାବେ ନେହେରୁଙ୍କୁ ଉପସ୍ଥାପିତ କରିଥିଲେ । ସେ ଭାବୁଥିଲେ ଅଗ୍ନିଶିଖା ପରି ତାଙ୍କର ପ୍ରଚଣ୍ଡ ପ୍ରତିଭା ଓ ଅନର୍ଗଳ ବକ୍ତୃତା ଦେବାର ଦକ୍ଷତା ତାଙ୍କ ଆନ୍ଦୋଳନକୁ ସଫଳକାମୀ କରିବ। କିନ୍ତୁ ନେହେରୁ ଗାନ୍ଧିଙ୍କର କୌଣସି ଆନ୍ଦୋଳନାତ୍ମକ କାର୍ଯ୍ୟକ୍ରମକୁ ପସନ୍ଦ କରୁ ନଥିଲେ । ସେଥିପାଇଁ ଗାନ୍ଧିଙ୍କର civil disobedience, the salt march and quit India ଭଳି କାର୍ଯ୍ୟକ୍ରମକୁ ନେହେରୁ ପସନ୍ଦ କରୁ ନ ଥିଲେ । କିନ୍ତୁ ଗାନ୍ଧି ଅତ୍ୟଧିକ ପ୍ରଭାବଶାଳୀ ଜନନାୟକ ହୋଇଥିବାରୁ ଏବଂ କଂଗ୍ରେସ ଦଳ ତାଙ୍କ ଆଦର୍ଶକୁ ଗ୍ରହଣ କରି ତାଙ୍କରି ନିର୍ଦ୍ଦେଶରେ ପରିଚାଳିତ ହେଉଥିବାରୁ ନେହେରୁ ଭବିଷ୍ୟତରେ ପ୍ରଧାନମନ୍ତ୍ରୀ ହେବାକୁ ଅତ୍ୟନ୍ତ ବ୍ୟାକୁଳ ଥିବା କାରଣରୁ ବାଧ୍ୟ ହୋଇ ଗାନ୍ଧିଙ୍କର ପ୍ରଧାନ ଶିଷ୍ୟ ବୋଲି ଅଭିନୟ କରୁଥିଲେ । ଅଭିନୟ ମଧ୍ୟ ଅନେକ

ସମୟରେ ସୌଭାଗ୍ୟ ଆଣିଦିଏ, ନେହେରୁଙ୍କ କ୍ଷେତ୍ରରେ ତାହା ହିଁ ହୋଇଥିଲା । ତା ନ ହୋଇଥିଲେ ସର୍ଦ୍ଦାର ବଲ୍ଲଭ ଭାଇ ପଟେଲ ହିଁ ହୋଇଥାନ୍ତେ ଭାରତର ପ୍ରଧାନମନ୍ତ୍ରୀ । ତା ଛଡା ତାଙ୍କ ପ୍ରତି ଗାନ୍ଧିଙ୍କର ଅହେତୁକ ଅନୁକମ୍ପାର ଶ୍ରଦ୍ଧା ହେତୁ ନେହେରୁଙ୍କର କେହି ପ୍ରତିପକ୍ଷ ସାହସ କରି ତାଙ୍କ ବିରୁଦ୍ଧରେ ବିଦ୍ରୋହ କରି ନ ଥିଲେ । ସେଥିପାଇଁ କୁହାଯାଏ ପରିସ୍ଥିତି ଓ ପରିବେଶ ହିଁ ମଣିଷକୁ କ୍ଷମତା ଏବଂ ପ୍ରଭୁତ୍ୱ ଆଣିଦିଏ । କ୍ରମେ କ୍ରମେ ଗାନ୍ଧି ଓ ନେହେରୁଙ୍କ ମଧ୍ୟରେ ପିତା ପୁତ୍ରର ସଂପର୍କ ଗଢି ଉଠିଥିଲା । ପ୍ରତିଦିନ ଅନ୍ତତଃ ଅଧଘଣ୍ଟାଏ ନେହେରୁ ତାଙ୍କ ପାଦପାଖରେ ବସି କାଟୁଥିଲେ । ଗାନ୍ଧିଙ୍କ ସହିତ ନେହେରୁଙ୍କ ପ୍ରଥମ ସାକ୍ଷାତ୍ ଦିନରୁ ହିଁ ନେହେରୁ ଦଳ ଉପରେ ପ୍ରଭାବ ବିସ୍ତାର କରିବାକୁ ଲାଗିଲେ । କାରଣ ଅନ୍ୟ ଉପରେ ପ୍ରଭାବ ବିସ୍ତାର କରିବା ଥିଲା ତାଙ୍କର ଆଜନ୍ମ ଅଭ୍ୟାସ । ତାଙ୍କ ପିତା ଥିଲେ ଅତ୍ୟନ୍ତ ବିଳାସପ୍ରିୟ ଓ ଭଲ ମଦ୍ୟପାନ କରିବା ଥିଲା ତାଙ୍କର ଅଭ୍ୟାସ । ତାଙ୍କର ମୃତ୍ୟୁପରେ ନେହେରୁ ଗାନ୍ଧିଙ୍କୁ ପିତାର ସମ୍ମାନ ଦେଇ ତାଙ୍କର ଅତିପ୍ରିୟ ହୋଇ ପାରିଥିଲେ । ମାତ୍ର ଦୁନିଆକୁ ସେ ଯେତେଯେତେ ନୂଆ ଦୃଷ୍ଟି କୋଣରୁ ଦେଖୁଥିଲେ, ସେତେ ସେତେ ଗାନ୍ଧିଙ୍କଠାରୁ ସେ ଧିରେ ଧିରେ ଦୂରକୁ ଚାଲିଯାଉଥିଲେ । ତେଣୁ ସ୍ୱାଧିନତା ଆନ୍ଦୋଳନର ଶେଷ ପର୍ଯ୍ୟାୟ ବେଳକୁ, ପ୍ରଧାନମନ୍ତ୍ରୀ ହେବାର ଅଭିଳାସ ତାଙ୍କୁ ଗାନ୍ଧିଙ୍କଠାରୁ ପ୍ରାୟ ପୁରା ଅଲଗା କରିଦେଇଥିଲା । ଅନ୍ୟ ନେତାମାନଙ୍କର ସମର୍ଥନ ପାଇବା ଆଶାରେ ସେ ନିଜ ନେତୃତ୍ୱରେ ଏକ ଦଳ ଗଢିବାରେ ଲାଗିଥିଲେ । ଏ କାର୍ଯ୍ୟରେ ସେ ଏତେ ଚତୁର ଥିଲେ ଯେ, ତାଙ୍କର ଗାନ୍ଧିଙ୍କଠାରୁ ଅଲଗା ହେଉଥିବା କାହାରି ଆଖିରେ ଧରା ପଡୁ ନ ଥିଲା । ଚତୁର ଅଭିନୟ ଦ୍ୱାରା ଗାନ୍ଧିଙ୍କର ଆଶିର୍ବାଦକୁ ପୁଞ୍ଜି କରି ସେ ଦଳର ସର୍ବମୟ କର୍ତ୍ତା ଭାବରେ ନିଜକୁ ଠିଆ କରୁଥିଲେ । ସେ ମାଉଣ୍ଟବେଟେନଙ୍କ ସହ ଖୁବ୍ ଘନିଷ୍ଠ ହେବା ପାଇଁ ଅନେକ ସମୟରେ ତାଙ୍କ ଅଫିସକୁ ଯାଉଥିଲେ ଏବଂ ତାଙ୍କ ସମସ୍ୟାର ସରଳ ସମାଧାନ ପାଇଁ ପରାମର୍ଶ ଦେଉଥିଲେ । ମାଉଣ୍ଟ ବେଟେନଙ୍କର ମଧ୍ୟ ଆବଶ୍ୟକ ଥିଲା ତାଙ୍କର ସାହାଯ୍ୟ । କିନ୍ତୁ ସେ ନେହେରୁଙ୍କର

ଏହି କୌଶଳକୁ ଜାଣିପାରିନଥିଲେ । ଏ କ୍ଷେତ୍ରରେ ସେ ମାଉଣ୍ଟବେଟେନଙ୍କ ଭଳି ବିଚକ୍ଷଣ ପ୍ରତିଭାଶାଳୀ ବ୍ୟକ୍ତିଙ୍କୁ ପଛରେ ପକାଇ ଆଗକୁ ଆଗକୁ ମାଡି ଚାଲିଥିଲେ । ପରେ ମାଉଣ୍ଟବେଟେନଙ୍କ ଆଖିକୁ ଆଉ ଅଛପା ନ ଥିଲା । କିନ୍ତୁ ନେହେରୁଙ୍କ ସାହାଯ୍ୟ ତାଙ୍କର ଅତ୍ୟନ୍ତ ଆବଶ୍ୟକ ଭାବି ସେ କିଛି ନ ଦେଖିଲା ପରି ପ୍ରତିକ୍ରିୟା ପ୍ରକାଶ କରୁ ନଥିଲେ । ଏପରି କିଛି ଦିନ ଧରି ଉଭୟଙ୍କ ମଧ୍ୟରେ ବନ୍ଧୁତ୍ୱ ବଢିଯାଇଥିଲା ଏବଂ ମାଉଣ୍ଟବେଟେନ ଅନୁଭବ କଲେ ଯେ ନେହେରୁ ହିଁ ଉପଯୁକ୍ତ ବ୍ୟକ୍ତି ଯିଏ ବ୍ରିଟିଶ୍ ପ୍ରଧାନମନ୍ତ୍ରୀ ଏବଂ ତାଙ୍କ ଭିତରେ ଏକ ନୂତନ ଭାରତର ଚିତ୍ର ଆଙ୍କିପାରିବେ । ଦୁହେଁ କଥାବାର୍ତ୍ତା ହେଉ ହେଉ ମାଉଣ୍ଟବେଟେନ, ତାଙ୍କ ଉପରେ ନ୍ୟସ୍ତଥିବା ଦାୟିତ୍ୱ ବିଷୟରେ ନେହେରୁଙ୍କୁ କହିଲେ ଏବଂ ଦୁହେଁ ଏକମତ ହେଲେ ଯେ ଭାରତର ବିଭାଜନ ଏକ ଗୁରୁତର ହିଂସାକାଣ୍ଡ ସୃଷ୍ଟି କରିବ, କିନ୍ତୁ ଏହି କାରଣରୁ ଭାରତରେ ରକ୍ତର ନଦୀ ବହିଯାଉ, ଏହା ସେ ଚାହାଁନ୍ତି ନାହିଁ । ଏହାକୁ କିପରି ଭାବରେ ରୋକାଯାଇ ପାରିବ ? ପଚାରିଲେ ମାଉଣ୍ଟବେଟେନ । ଉତ୍ତରରେ ନେହେରୁ କହିଲେ ଦେଶର ଚାରିଆଡେ ବର୍ତ୍ତମାନ ହିଂସାକାଣ୍ଡ ଘଟୁଛି । ଏହାର ମୂଳ ନିଦାନ ନ ଖୋଜି ଗାନ୍ଧି ଔଷଧ ବଟିକା ଧରି ତାର ଉପଶମ ପାଇଁ ଅହିଂସାର ବାର୍ତ୍ତା ପ୍ରଚାର କରୁଛନ୍ତି । କୌଣସି କୌଣସି ସ୍ଥାନରେ ଏହା କିଛି କିଛି ଉପଶମ କରିପାରେ । ମାତ୍ର ସାରାଦେଶରେ ନୁହେଁ । ସେ ଚାହାଁନ୍ତି ଭାରତ ଅଖଣ୍ଡ ରହୁ, ଭଲକଥା, କିନ୍ତୁ ତାଙ୍କର ଏ ଅହିଂସା ମନ୍ତ୍ର ହିଂସାର ପ୍ରକୃତ ଅଗ୍ନିଶିଖାକୁ ନିର୍ବାପିତ କରିପାରିବ ନାହିଁ । ଏଥିପାଇଁ ଦୁଇ ସଂପ୍ରଦାୟର ନେତାମାନଙ୍କୁ ଡାକି ମନ୍ତ୍ରଣା କରିବା ଉଚିତ୍, ନ ହେଲେ ବିଭାଜନ ପାଇଁ ମନ ସ୍ଥିର କରିବାକୁ ହେବ । ମାଉଣ୍ଟବେଟେନଙ୍କୁ ଏହା ଉଚିତ୍ ମନେ ହେଲା । ସେ ଭାବିଲେ ନେହେରୁ ହିଁ ଏକମାତ୍ର ପ୍ରଭାବଶାଳୀ ନେତା ଯିଏ ଗାନ୍ଧିଙ୍କୁ ଏବଂ ଦୁଇ ସଂପ୍ରଦାୟର ନେତାମାନଙ୍କୁ ଏକ ଉପଯୁକ୍ତ ନିଷ୍ପତ୍ତିରେ ଏକମତ କରାଇ ପାରିବେ । ଆଉ ତା ଯଦି ସମ୍ଭବ ନ ହୁଏ, ତେବେ ସେଇ ନେହେରୁ ହିଁ କଂଗ୍ରେସର ନେତାମାନଙ୍କୁ ଗାନ୍ଧିଙ୍କୁ ଛାଡି ବିଭାଜନ ପାଇଁ ଏକମତ କରାଇ ପାରିବେ । କଂଗ୍ରେସ ଦଳ

ବିଭାଜନ ପାଇଁ ଏକମତ ହେଲେ ସେ ମଧ୍ୟ ଗାନ୍ଧିଙ୍କୁ ଛାଡି ବିଭାଜନ କାର୍ଯ୍ୟରେ ଆଗେଇ ଯିବେ ଏବଂ ଗାନ୍ଧିଙ୍କ ବିରୁଦ୍ଧରେ ଯିବାପାଇଁ କ୍ଷମତା ପାଇଯିବେ । ନେହେରୁ ଓ ମାଉଣ୍ଟବେଟେନଙ୍କ ମଧ୍ୟରେ ଏହି ମନ୍ତ୍ରଣା ହିଁ ବିଭାଜନ ପାଇଁ ମଞ୍ଜି ବୁଣିଦେଲା । ମନ୍ତ୍ରଣା ପରେ ନେହେରୁ ଉଠିଯିବାକୁ ବାହାରିଲେ, ତାଙ୍କୁ ଦରଜା ପାଖକୁ ଡାକିନେଇ ମାଉଣ୍ଟବେଟେନ କହିଲେ Mr. Nehru, I want you to regard me not as the last British viceroy winding up the Raj, but as the first to lead the way to a new India." ନେହେରୁ ତାଙ୍କୁ ଚାହିଁ କହିଲେ, Ah, now I know what they mean. When they speak of your charm as being so dangerous.

ଆଉ ଥରେ ବ୍ରିଟିଶ୍ ସମ୍ରାଟଙ୍କ ରାଜ ପ୍ରତିନିଧି ମାଉଣ୍ଟବେଟେନଙ୍କ ସାଙ୍ଗରେ ତାଙ୍କ ଅଫିସ୍‌ରେ ଗାନ୍ଧି ବସିଥିଲେ ମନ୍ତ୍ରଣା କରିବାକୁ । ମାଉଣ୍ଟବେଟେନଙ୍କୁ ଦିଶିଲା ସତେ ଯେମିତି ଏକ ଛୋଟିଆ ଚଢେଇଟିଏ ଯାକିଯୁକି ହୋଇ ତାଙ୍କ ଆରାମ ଚେୟାରରେ ବସିଛି । ସେ ଭାବିଲେ ଏଇ ଲଙ୍ଗୁଳି ଫକିର ତା ହେଲେ ଏତେ ପ୍ରଭାବଶାଳୀ । ସେମାନେ ଦିଶୁଥିଲେ ଡଉଲ ଡାଉଲ ଧଳା ରାଜହଂସ ସାଙ୍ଗରେ କୋତରା ବଣିଟିଏ ବସିଲା ପରି ଅସୁନ୍ଦର ଯୋଡିଟିଏ । ଶୁଭ୍ର ଉଜ୍ଜ୍ୱଳ ମୂଲ୍ୟବାନ ପରିଧାନରେ ସର୍ବାଙ୍ଗ ଆବୃତ ଲର୍ଡ୍ ଲୁଇସ୍ ବେଟେନ ଓ ଆଣ୍ଠୁ ପର୍ଯ୍ୟନ୍ତ ମୋଟା ଖଦଡ ଖଣ୍ଡେ, ଆଉ ଖଣ୍ଡେ ମେରୁଦଣ୍ଡ ଘୋଡାଇବାକୁ ନିଅଣ୍ଟ ଖଦଡ ପିନ୍ଧା ଲଙ୍ଗୁଳି ଫକିର ମହାତ୍ମାଗାନ୍ଧି ଯାହାଙ୍କ ଭିତରଟା ଦିବ୍ୟ ଆଭାରେ ଉଜ୍ଜ୍ୱଳ ଏବଂ ଯିଏ କୋଟି କୋଟି ନରନାରୀଙ୍କର ନମସ୍ୟ ଦେବତା । ରାଜଭବନର ଖଣ୍ଡେ ଆରାମ ଚେୟାର ଭିତରେ ଲୁଚିଯାଇଥିବା ମହାତ୍ମା ବସିଛନ୍ତି ଜାକିଜୁକି ହୋଇ ରାଜ ପ୍ରତିନିଧି ମାଉଣ୍ଟବେଟେନଙ୍କ ସାଙ୍ଗରେ । ମାଉଣ୍ଟବେଟେନଙ୍କ ସୁନ୍ଦର ବଳିଲା ବଳିଲା ଦେହରୁ ଫୁଟିଉଠୁଥିଲା ସମ୍ଭ୍ରାନ୍ତର ଲକ୍ଷଣ ଆଉ ଶୀର୍ଣ୍ଣ କଙ୍କାଳ ଅହିଂସାର ଅବତାର ଶୋଷଣ ବିରୁଦ୍ଧରେ ପ୍ରଚଣ୍ଡ ଯୋଦ୍ଧା ପୃଥିବୀର ସବୁଠାରୁ ଦରିଦ୍ର ମାନଙ୍କର ପ୍ରତିନିଧି ମହାତ୍ମାଗାନ୍ଧି ।

ମାଉଣ୍ଟବେଟେନ ଥିଲେ ଯୁଦ୍ଧକାଳୀନ ପ୍ରଯୁକ୍ତି ବିଦ୍ୟାର ଦକ୍ଷ ସେନାପତି । ଯାହାଙ୍କ ନେତୃତ୍ୱରେ ପରିଚାଳିତ ହେଉଥିଲେ ଲକ୍ଷ ଲକ୍ଷ ଯୋଦ୍ଧା ଏବଂ ଗାନ୍ଧିଥିଲେ ସମସ୍ତ ପ୍ରଯୁକ୍ତି ବିଦ୍ୟାର ବିରୋଧି ଜନନାୟକ, ଯାହାଙ୍କ ନେତୃତ୍ୱରେ ପରିଚାଳିତ ହେଉଥିଲେ ଅଖଣ୍ଡ ଭାରତର ବନ୍ଦିଶାଳାର କୋଟି କୋଟି ବନ୍ଦୀ । ମାଉଣ୍ଟବେଟନ ଥିଲେ କ୍ଷମତା ଓ ପ୍ରାଚୁର୍ଯ୍ୟର ଜୀବନ୍ତ ବିଗ୍ରହ । ଗାନ୍ଧିଥିଲେ ନୈତିକ ମୂଲ୍ୟବୋଧର ଦେବପ୍ରତିମ ପ୍ରଚଣ୍ଡ ପୁରୁଷ ଯାହାଙ୍କ ମୃତ୍ୟୁବେଳେ ମାଉଣ୍ଟବେଟନ କହିଥିଲେ "Mahatma Gandhi will go down in history on a par with Christ and Budh." ଗାନ୍ଧିଜୀଙ୍କ ବ୍ୟକ୍ତିତ୍ୱ ପ୍ରତି ମାଉଣ୍ଟବେଟେନ ଏତେ ପ୍ରଭାବିତ ହୋଇ ପଡିଥିଲେ ଯେ, ତାଙ୍କୁ ଭାଇସ ରାଏ ପଦରେ ଅଭିସିକ୍ତ କରାଇବାର ଉତ୍ସବ ପୂର୍ବରୁ ତାଙ୍କ ସହିତ ପ୍ରଥମ ବୈଠକରେ ଯୋଗ ଦେବାକୁ ନିମନ୍ତ୍ରଣ ପତ୍ର ପଠାଇଥିଲେ । ଗାନ୍ଧିଜୀ ସାଙ୍ଗେ ସାଙ୍ଗେ ତାର ଉତ୍ତର ଲେଖି ଥିଲେ ଏବଂ ସେ ତାଙ୍କ ବୈଠକରେ ଯୋଗ ଦେବାକୁ ବ୍ୟାକୁଳ ନୁହଁନ୍ତି କହି ତାଙ୍କର ଜଣେ ଶିଷ୍ୟକୁ ତାଙ୍କୁ ଦୁଇଦିନ ପରେ ଡାକରେ ପଠାଇବାକୁ କହିଥିଲେ । ସେତେବେଳେ ଗାନ୍ଧିଥିଲେ ବିହାର ଗସ୍ତରେ । ତାଙ୍କ ଉତ୍ତର ପାଇ ମାଉଣ୍ଟବେଟେନ ତାଙ୍କୁ ବିହାରରୁ ଦିଲ୍ଲୀ ଆଣିବା ପାଇଁ ନିଜର ଉଡାଜାହାଜ ପଠାଇଥିଲେ । କିନ୍ତୁ ଗାନ୍ଧି ତାଙ୍କୁ ଗ୍ରହଣ ନ କରି ତୃତୀୟ ଶ୍ରେଣୀରେ ରେଳଯାତ୍ରା କରିବାକୁ ପସନ୍ଦ କରିଥିଲେ । ଏହାଦ୍ୱାରା ତାଙ୍କ ବଳିଷ୍ଠ ବ୍ୟକ୍ତିତ୍ୱର ଯେଉଁ ଛବି ଆଙ୍କି ହୋଇଥିଲା, ତାକୁ ଦେଖି ମାଉଣ୍ଟବେଟେନ ଚକିତ ହୋଇଗଲେ । ଦୁଇଚାରି ଦିନ ପରେ ମାଉଣ୍ଟବେଟେନଙ୍କ ପ୍ରଥମ ବୈଠକରେ ଯୋଗ ଦେବାପାଇଁ ଗାନ୍ଧି ଆସି ପହଁଚିଲେ । ତାଙ୍କ ସ୍ୱାଗତ ପାଇଁ ମାଉଣ୍ଟବେଟେନ ଖୁବ୍ ଯତ୍ନ କରିଥିଲେ ଏବଂ ସ୍ତ୍ରୀ ଇଡୱିନ୍‌ଙ୍କୁ ବୈଠକରେ ଉପସ୍ଥିତ ରହିବାକୁ କହିଥିଲେ । ଗାନ୍ଧିଜୀଙ୍କୁ ବିଷର୍ଣ୍ଣ ଦେଖି ସେମାନେ ଭାବିଲେ ସମ୍ଭବତଃ ତାଙ୍କୁ ଉପଯୁକ୍ତ ଭାବେ ସ୍ୱାଗତ କରିବାରେ କିଛି ତ୍ରୁଟି ରହିଯାଇଛି । ତାଙ୍କର ମନେ ହେଲା କୌଣସି ଏକ ଅଜଣା ଆଘାତର ଯନ୍ତ୍ରଣା ତାଙ୍କୁ ସଂପୂର୍ଣ୍ଣ ବିଷାଦଗ୍ରସ୍ତ କରି ଦେଇଛି । ମାଉଣ୍ଟବେଟେନ ଥରେ ଉଦାସ ଆଖିରେ ସ୍ତ୍ରୀଙ୍କୁ

ଚାହିଁ ଦେଇ ଅତି ବିନୟରେ ଗାନ୍ଧିଙ୍କୁ ପଚାରିଲେ, ଆମ୍ଭେ ଆପଣଙ୍କୁ ଯଥୋଚିତ ଆତିଥ୍ୟ ଦେଇ ପାରିନାହୁଁ, କ୍ଷମା କରିବେ। ଆମ ଆତିଥ୍ୟରେ କ'ଣ ତୃଟି ରହିଗଲା। ଗାନ୍ଧି ଖୁବ୍ ନରମ କରି କ୍ଷୀଣ କଣ୍ଠରେ କହିଲେ- ଆପଣ ବୋଧହୁଏ ଜାଣନ୍ତି ତାହିଁ ଯେ ଅନେକ ଆଗରୁ ଦକ୍ଷିଣ ଆଫ୍ରିକାରେ ଥିବା ବେଳେ ମୁଁ ସମସ୍ତ ଭୌତିକ ବସ୍ତୁ ପ୍ରତି ସଂପୂର୍ଣ୍ଣ ଭାବରେ ମୋହ ତ୍ୟାଗ କରିଛି ଓ ସାରାଜୀବନ ମୁଁ ତାକୁ ପାଳନ କରୁଛି। ଏବେ ମୋ ପାଖରେ ଥିବା ସଂପତ୍ତି ହେଲା ଗୋଟିଏ ଚଷମା, ଖଣ୍ଡେ ବାଉଁଶ ବାଡି, ଗୋଟିଏ ଘଡି ଆଉ ସବୁଠାରୁ ମୂଲ୍ୟବାନ ବସ୍ତୁ ହେଲା ଖଣ୍ଡେ ଶ୍ରୀମଦ୍ ଭାଗବତଗୀତା । ବସ୍ତୁ ପ୍ରତି ମୋହ ତ୍ୟାଗ ମୋତେ ବଳ ଦେଇଛି ଈଶ୍ୱରଙ୍କ କାମ କରିବାକୁ । ତେବେ ମୋ ଦୁଃଖର କାରଣ ହେଲା ମୋ ଘଡିଟିକୁ କେହି ଜଣେ ରେଳଡବା ଭିଡ ଭିତରେ ଚୋରୀ କରି ନେଇଗଲା, ମୋର ଦୁଃଖ ସେ ଚୋରୀ ପାଇଁ ନୁହେଁ, ଦୁଃଖ କେବଳ ତାଙ୍କର ଅଜ୍ଞାନତା ପାଇଁ। ସେ ଜାଣେନା ପ୍ରତିଟି ମୂହୁର୍ତ୍ତ ଭଗବାନଙ୍କ କାମ କରିବା ପାଇଁ ସେ ଘଡିଟି ଥିଲା ମୋର ସହାୟକ । ତାଙ୍କ ଛଳ ଛଳ ଆଖିକୁ ଚାହିଁ ମାଉଣ୍ଟବେଟେନ କହିଲେ ମୁଁ ଆପଣଙ୍କୁ ଦୁଃଖ ଦେଇଥିବାରୁ କ୍ଷମା ମାଗୁଛି । ବହୁ ସମୟ ପର୍ଯ୍ୟନ୍ତ ନୀରବ ରହିଲା ପରେ ଗାନ୍ଧି ଆଖି ଖୋଲି ପଚାରିଲେ, ଆପଣ କ'ଣ ଚାହାଁନ୍ତି ? ମାଉଣ୍ଟବେଟେନ ବିନୟରେ କହିଲେ Mr. Gandhi, first I want to know who you are? ପ୍ରସନ୍ନ ଚିତ୍ତରେ ଗାନ୍ଧି ବଖାଣିଲେ ତାଙ୍କର କିଛି ଅନୁଭୂତି । ପାଶ୍ଚାତ୍ୟ ଜଗତ ଅନେକ କିଛି ଶୁଣିଛି ପ୍ରାଚ୍ୟ ଭୂଖଣ୍ଡର Zeroastar, Budha, Moses- Mahammad, Ramaଙ୍କଠାରୁ । ତା ସତ୍ତ୍ୱେ ଶହ ଶହ ବର୍ଷ ଧରି ପାଶ୍ଚାତ୍ୟ ଭୂଖଣ୍ଡ ଅଧିକାର କରି ଆସିଛି ପ୍ରାଚ୍ୟ ଭୂଖଣ୍ଡକୁ । ବର୍ତ୍ତମାନ କିନ୍ତୁ ଆଣବିକ ବୋମାର ଭୟଙ୍କରତା ଦେଖି ପାଶ୍ଚାତ୍ୟ ଜଗତ ପୁଣି ଥରେ ଆଖି ଫେରାଇ ପ୍ରାଚ୍ୟ ଭୂଖଣ୍ଡ ଆଡ଼କୁ ଶୁଣିବା ପାଇଁ । ସେ ପ୍ରଚାର କରୁଥିବା ପ୍ରେମ, ଅହିଂସା ଓ ଭାତୃଭାବର ମହାନ୍ ତତ୍ତ୍ୱ । ସେମାନଙ୍କ ଭିତରେ ଏ ଆଳାପ ଦୁଇଘଣ୍ଟା ଧରି ଚାଲିଲା । ମାଉଣ୍ଟବେଟେନ ଭାବିଲେ ରହସ୍ୟାବୃତ୍ତ ଗାନ୍ଧିଙ୍କୁ ବୁଝିବା ପାଇଁ

ତାଙ୍କ ଆଲୋଚନା ସଫଳ ହୋଇଛି । କଥାବାର୍ତ୍ତା ମଝିରେ ମୋଗଲ ଉଦ୍ୟାନରେ ଫଟୋ ଉଠାଇବା ପାଇଁ ଅନୁରୋଧ ଆସିବାରୁ ସେମାନେ ଉଠି ମୋଗଲ ଉଦ୍ୟାନକୁ ଚାଲିଗଲେ ଏବଂ ଫଟୋ ଉଠାପରେ ପୁଣି ଆଲୋଚନା କକ୍ଷକୁ ଫେରିଲେ। ଫେରିଲାବେଳେ ସେ ମାଉଣ୍ଟବେଟେନଙ୍କ କାନ୍ଧ ଉପରେ ହାତ ରଖି କହୁଥିଲେ ଛୋଟାର ବାଡିପରି ଦୁଇଜଣ ଝିଅ ତାଙ୍କ ପାଖେ ପାଖେ ରହନ୍ତି ଓ ସେ ସେମାନଙ୍କ କାନ୍ଧ ଉପରେ ଭରାଦେଇ ଚାଲନ୍ତି । ବର୍ତ୍ତମାନ ୭୭ବର୍ଷର ସେଇ ବିପ୍ଳବୀ ଯିଏ ସାରା ଜୀବନ ବ୍ରିଟିଶ୍ ବିରୁଦ୍ଧରେ ସଂଗ୍ରାମ କରି ଆସିଛନ୍ତି, ସିଏ ଭାରତର ଶେଷ ଭାଇସରାଏଙ୍କ କାନ୍ଧରେ ହାତପକାଇ ପ୍ରାର୍ଥନା ହଲକୁ ଯିବା ଢଙ୍ଗରେ ଆସି ମାଉଣ୍ଟବେଟେନଙ୍କ ସଭା କକ୍ଷରେ ପହଞ୍ଚିଲେ। ସେତେବେଳକୁ ଦିଲ୍ଲୀ ସହର ଗରମରେ ପାଚିଯାଇଥିଲା ଏବଂ ଅତି ଯତ୍ନରେ ରଖାଯାଇଥିବା ମୋଗଲ ଗାର୍ଡେନ ମଧ ଗରମରେ ଜଳୁଥିଲା । କିନ୍ତୁ ଭାଇସରାଏଙ୍କ ଅଫିସରେ ଯେଉଁ ଏ.ସି. ଲଗାଯାଇଥିଲା ତାହା ୭୫ଡିଗ୍ରୀ ପର୍ଯ୍ୟନ୍ତ ଅଫିସ କୋଠରୀଟିକୁ ଥଣ୍ଡା କୋମଳ ପବନରେ ଆମୋଦଦାୟକ ଶୀତଳତାରେ ସତେଜ କରି ରଖିପାରେ, ମାତ୍ର ଆଧୁନିକ ପ୍ରଯୁକ୍ତି ବିଦ୍ୟାର ଘୋର ବିରୋଧି ଗାନ୍ଧୀଙ୍କୁ ଏହା ଆମୋଦିତ କରିପାରିଲା ନାହିଁ । କିଛି ସମୟ ପରେ ମାଉଣ୍ଟବେଟେନ ଦେଖିଲେ ଗାନ୍ଧି ଶୀତରେ ଥରୁଛନ୍ତି । ସେ ବେଲ୍ ମାରିଲେ। D.A.C ଙ୍କ ସାଙ୍ଗରେ ଇଡୁଇନ୍ ଆସି ଚମକି ପଡି କହିଲେ My God, you will give the poorman pneumonia". ସାଙ୍ଗେ ସାଙ୍ଗେ ଏ.ସି.ବନ୍ଦ କରିଦେଇ ଗାନ୍ଧିଙ୍କ ଥରିଲା ଦେହକୁ ଘୋଡାଇ ଦେବା ପାଇଁ ସ୍ୱାମୀଙ୍କ ଗରମ ସ୍ୱେଟରଟିଏ ଆଣି ପିନ୍ଧାଇ ଦେଲେ । କିଛି ସମୟ ପରେ ଗାନ୍ଧି ଆଶ୍ୱସ୍ତି ଅନୁଭବ କଲେ। ମାଉଣ୍ଟବେଟେନ ତାଙ୍କୁ ନେଇଗଲେ ବାରଣ୍ଡାକୁ ଚା'ପାନ କରିବାକୁ। ଦଳେ ପରିଚାରକ ଚାଇନା ପ୍ଲେଟରେ ମାଉଣ୍ଟବେଟେନଙ୍କର ଖାଦ୍ୟ ଆଣି ଯତ୍ନର ସହ ଟେବୁଲ୍ ଉପରେ ରଖିଲେ। ଗାନ୍ଧିଙ୍କ ସାଙ୍ଗରେ ଆସିଥିବା ମନୁ ମଧ କିଛିଖାଦ୍ୟ ଗାନ୍ଧିଙ୍କ ପାଇଁ ଥୋଇ ଦେଲା। ଖାଦ୍ୟ ଥିଲା କିଛି ଲେମ୍ବୁରସ, ଛେଳି ଦହି ଏବଂ କିଛି

ଖଜୁରୀ । ଖାଇବା ପାଇଁ ତାଙ୍କୁ ଯେଉଁ ଚାମଚଟି ଦିଆଯାଇଥିଲା ତା'ର ଧରିବା ଅଂଶଟି ଭାଙ୍ଗିଯାଇଥିବାରୁ ଖଣ୍ଡେ ବାଉଁଶ କାଠିକୁ ସେଥିରେ ଲୁହା ତାରରେ ବାନ୍ଧିଦିଆ ଯାଇଥିଲା ଏବଂ ଯେଉଁ ପାତ୍ରରେ ଖାଦ୍ୟ ପରଶା ଯାଇଥିଲା ତାହା ଥିଲା ଜରଭା ଜେଲରୁ ମିଳିଥିବା ଟିଣର ପ୍ଲେଟଟିଏ। ଯାହା ପଛପଟେ ମରାଯାଇଥିଲା ବ୍ରିଟିଶ ସରକାରଙ୍କ ମୋହର । ଗାନ୍ଧି ସେ ଖାଦ୍ୟକୁ ଖାଇବା ପୂର୍ବରୁ ଛେଳିର ଦହିକୁ ଦେଖାଇ ଦେଇ ଗାନ୍ଧି ମାଉଣ୍ଟବେଟେନଙ୍କୁ କହିଲେ, It is nothing good, do try thin, ମାଉଣ୍ଟବେଟେନ ବଡ ବଡ ଆଖି କରି ଆଶ୍ଚର୍ଯ୍ୟରେ କହିଲେ, I do not think really I ever have. ଏତକ କହିଦେଇ ଭାବିଲେ, ଗାନ୍ଧି ତାଙ୍କର ଅତିଥି । ମୋ ଆଚରଣ ତାଙ୍କୁ କଷ୍ଟ ଦେଉଥିବ ନିଶ୍ଚୟ । ମାତ୍ର ଗାନ୍ଧି ଏତେ ଶିଘ୍ର ଟଳିବା ବ୍ୟକ୍ତି ନୁହଁନ୍ତି, ସେ ହସି ହସି କହିଲେ,There is always a first time for everything. Try it now ଭଦ୍ରାମୀ ରକ୍ଷାକରି ମାଉଣ୍ଟବେଟେନ ସେଥିରୁ ଚାମଚେ ନେଇ ପାଟିରେ ଦେଇ ଭାବିଲେ Ghastly ତେବେ ସେମାନଙ୍କର ବୈଠକ ଶାନ୍ତିପୂର୍ଣ୍ଣ ଭାବରେ ଶେଷହେଲା ଏବଂ ମାଉଣ୍ଟବେଟେନ ଗାନ୍ଧିଙ୍କଠାରୁ ବିଦାୟ ନେଇ ଅନ୍ୟ କାମରେ ଯୋଗଦେବା ପାଇଁ ଚାଲିଗଲେ ଏବଂ ମନେ ମନେ ଭାବିଲେ ପ୍ରକୃତରେ ଗାନ୍ଧିଙ୍କୁ ବୁଝିବା ବଡ କଷ୍ଟ । ତେଣୁ ତାଙ୍କ ସହିତ ବ୍ରିଟିଶ୍ ସରକାର ଆଲୋଚନା କରି ସଫଳ ହେବା କଷ୍ଟକର । କାରଣ ତାଙ୍କ ଦୃଷ୍ଟିରେ ସତ୍ୟ ହିଁ ଚରମ ବାସ୍ତବତା। ତାଙ୍କ ସତ୍ୟର ଦୁଇଟି ଦିଗ ହେଲା ସଂପୂର୍ଣ୍ଣ ସତ ଓ ଆପେକ୍ଷିକ । ତେଣୁ କେହି କେହି ଗାନ୍ଧିଙ୍କୁ ଦୋ-ମୁହାଁ କହନ୍ତି । ଯେ ପର୍ଯ୍ୟନ୍ତ ମଣିଷ ରକ୍ତମାଂସର ଶରୀର ଧାରଣ କରେ, ଦୈନନ୍ଦିନ ଆବଶ୍ୟକତା ଅନୁସାରେ ଆପେକ୍ଷିକ ସତ୍ୟକୁ ଆଶ୍ରୟ କରେ । ଶରୀର ଛାଡିଲା ପରେ ସବୁ ଚରମ ସତ୍ୟ ପାଲଟିଯାଏ । ଯେଉଁମାନେ ତାଙ୍କୁ ଦୋମୁହାଁ କହନ୍ତି ଗାନ୍ଧି ସେମାନଙ୍କୁ ଆପେକ୍ଷିକ ସତ୍ୟ ଓ ଚରମ ସତ୍ୟ ଭିତରେ ତଫାତ୍ ଜାଣିବା ପାଇଁ ଗୋଟିଏ ଉଦାହରଣ ଦେଇ କହନ୍ତି। ବରଫ ପରି ଥଣ୍ଡା ପାଣିର ଗୋଟିଏ ପାତ୍ରରେ ବାମ ହାତ ବୁଡାଅ ଓ ତା ପରେ ଉଷୁମ ପାଣିରେ ସେଇ

ହାତକୁ ବୁଡାଅ, ଦେଖିବ ଉଷୁମ ପାଣି ଗରମ ଲାଗୁଛି । ତା ପରେ ଡାହାଣ ହାତକୁ ଗୋଟିଏ ଗରମ ପାଣି ପାତ୍ରରେ ବୁଡାଅ ଏବଂ ପରେ ଉଷୁମ ପାଣି ପାତ୍ରରେ ବୁଡାଅ, ଦେଖିବ ଉଷୁମ ପାଣି ଥଣ୍ଡା ଲାଗୁଛି, କିନ୍ତୁ ଏହାର ତାପମାତ୍ରା ସମାନ । ପାଣିର ସ୍ୱାଭାବିକ ତାପମାତ୍ରା ହିଁ ଚରମ ସତ୍ୟ । କିନ୍ତୁ ଆପେକ୍ଷିକ ସତ୍ୟ ହେଉଛି ଅବସ୍ଥା ଚକ୍ରରେ ପାଣିର ଭିନ୍ନ ଭିନ୍ନ ଅବସ୍ଥାକୁ ଅନୁଭବ କରିବା । ତେଣୁ ଗାନ୍ଧିଙ୍କର ଆପେକ୍ଷିକ ସତ୍ୟ ସ୍ଥିର ନୁହେଁ, ଏହା ଅବସ୍ଥା ଭେଦରେ ପରିବର୍ତ୍ତନଶୀଳ । ଏହି କାରଣରୁ ଗାନ୍ଧି ମାଉଣ୍ଟବେଟେନଙ୍କୁ ଚତୁର ଓ ଦୋମୁହାଁ ବୋଲି ଲାଗୁଥାଇପାରେ । ଏପରି କି ଥରେ ଜଣେ ଅତ୍ୟନ୍ତ ବିଶ୍ୱସ୍ତ ଶିଷ୍ୟ ତାଙ୍କୁ ଏହି ପ୍ରଶ୍ନ ପଚାରି କହିଥିଲେ ଗତ ସପ୍ତାହରେ ଆପଣ ଯାହା କହିଥିଲେ, ଏ ସପ୍ତାହରେ ଅଲଗା କଥା କିପରି କହୁଛନ୍ତି ? ଗାନ୍ଧି ଉତ୍ତର ଦେଇ କହିଥିଲ, Ah" because I have learned something since last week" ତାଙ୍କର ଏହିପରି ବୁଦ୍ଧିମତ୍ତା ଓ ଅସୀମଜ୍ଞାନ ଦେଖି ମାଉଣ୍ଟବେଟେନ କୌଣସି ଗୁରୁତ୍ୱପୂର୍ଣ୍ଣ ପ୍ରସଙ୍ଗରେ କିଛି କହିଲା ବେଳେ ଗାନ୍ଧିଙ୍କୁ ଭୟ କରୁଥିଲେ । ସେ ଭାବୁଥିଲେ ଯେ, ଭାରତର ଏ ଜଟିଳ ସମସ୍ୟାକୁ ସମାଧାନ କରିବାରେ ସେ ତାଙ୍କୁ କୌଣସି ସାହାଯ୍ୟ କରିବେ ନାହିଁ ବରଂ ତାଙ୍କର ସବୁ ଯୋଜନାକୁ ପଣ୍ଡ କରିଦେଇ ନୂଆ ସମସ୍ୟା ଠିଆ କରିଦେବେ । ଅନେକ ଇଂରେଜ ମଧ୍ୟସ୍ଥି ମାନଙ୍କୁ ଯୁକ୍ତିରେ ବୋକା ବନେଇ ଦେଉଥିଲେ । ଇଏ ହେଉଛନ୍ତି ସେଇ ଗାନ୍ଧି ଯିଏ ୧୯୪୨ ମସିହାରେ ୱାଭେଲ୍‌ଙ୍କର ସମସ୍ତ ଯୁକ୍ତିକୁ ଖଣ୍ଡନ କରି କ୍ରିପସ୍‌ଙ୍କୁ ବିଲାତ ଫେରାଇ ଦେଇଥିଲେ ଏବଂ ଯିଏ ନିଜର ଆଦର୍ଶରୁ ତିଳେ ମାତ୍ର ନ ଟଳିବାରୁ ଭାରତୀୟ ନେତାମାନଙ୍କୁ ଏକଜୁଟ୍ କରାଯାଇ ପାରିନଥିଲା । ପ୍ରକୃତରେ ତାଙ୍କର ରହସ୍ୟମୟ ବ୍ୟକ୍ତିତ୍ୱକୁ ବୁଝିପାରିବା ସହଜ ନୁହେଁ, ବ୍ରିଟିଶ୍ କ୍ୟାବିନେଟ ମିଶନ ଭଳି ଯୋଜନାକୁ ଅକ୍ଳେଶରେ ଭାଙ୍ଗିଦେଇ ସମସ୍ତଙ୍କୁ ନିରାଶ କରିଦେଇଥିବା ଗାନ୍ଧିଙ୍କୁ ପ୍ରଭାବିତ କରିବା ଅସମ୍ଭବ । ଭାରତର ବିଭାଜନ ପ୍ରତି ନେହେରୁଙ୍କ ଉଦ୍ୟମ ସତ୍ତ୍ୱେ, ଯାହାଙ୍କୁ ଏକମତ କରିବା ଅସମ୍ଭବ ଥିଲା, ତାଙ୍କୁ କିପରି ବୁଝାଇ ହେବ ?

ସେ ପୁଣି ତାଙ୍କ ପ୍ରାର୍ଥନା ସଭାରେ କହିଲେଣି India would be divided over my deadbody. So long as I am alive, I will never agree to the partition of India ମାଉଣ୍ଟବେଟେନ ଚିନ୍ତିତ ହୋଇପଡିଲେ । ସେ ଭାବିଲେ ଯଦି ଅନିଚ୍ଛୁକ ଗାନ୍ଧିଙ୍କୁ ଭାରତ ବିଭାଜନ ପାଇଁ ବାଧ୍ୟ କରାଯାଏ, ତେବେ ସେ ପ୍ରାଣ ତ୍ୟାଗ କରିବେ । କିନ୍ତୁ ସେ ଚାହାଁନ୍ତି ତାଙ୍କ ହୃଦୟର ପରିବର୍ତ୍ତନ, ମୃତ୍ୟୁ ନୁହେଁ, ଏହା ଏକ ଜଟିଳ ପରିସ୍ଥିତି ଏବଂ ଏହାର ପରିଣତି ଅତି ଭୟଙ୍କର । ତେବେ ଏଥିରୁ ମୁକ୍ତି ପାଇବାର ଉପାୟ କ'ଣ ? ବ୍ରିଟିଶର ଡିଭାଇଡ୍ ଆଣ୍ଡ ରୁଲ୍ ସମସ୍ତଙ୍କୁ ଜଣା । ଏହି କୌଶଳ ହିଁ ସାରା ଭାରତକୁ ଜୟକରି ଶାସନ କରିବାକୁ ବ୍ରିଟିଶକୁ ମିଳିଛି ସାର୍ବଭୌମ କ୍ଷମତା । କିନ୍ତୁ ଆଜି ଏ କୌଶଳ ପ୍ରୟୋଗ କରିବା ଏତେ ସହଜ ନୁହେଁ । କାରଣ ସେତେବେଳେ ରାଜତନ୍ତ୍ର ଥିଲା ପୃଥିବୀ ବ୍ୟାପୀ ଶାସନତନ୍ତ୍ର । ଏବେ କିନ୍ତୁ ଗଣତନ୍ତ୍ରର ମୋହ ସମସ୍ତଙ୍କୁ ଘାରିଛି । ଗଣତନ୍ତ୍ର ପାଇଁ ଏବେ ପୃଥିବୀ ବ୍ୟାପୀ ଏକ ଅଧିକାର ସଚେତନତା ଯୁଗର ଅଭ୍ୟୁଦୟ ଘଟିଛି । ଦ୍ୱିତୀୟ ବିଶ୍ୱଯୁଦ୍ଧରେ କିଏ ହାରିଲା ଆଉ କିଏ ଜିତିଲା ପୃଥିବୀର ରାଜନୀତିରେ ବର୍ତ୍ତମାନ ଏହା ଏକ ପ୍ରସଙ୍ଗ ହୋଇନାହିଁ । ପ୍ରସଙ୍ଗ ହେଉଛି ଗଣତାନ୍ତ୍ରିକ ଶାସନ କ୍ଷମତା ହସ୍ତାନ୍ତର ପାଇଁ ଓ୍ୱାଭେଲଙ୍କୁ ଅନୁମତି ମିଳି ନ ଥିଲା । ଏବେ କିନ୍ତୁ ତାଙ୍କୁ ସେ ଅନୁମତି ମିଳିଛି ଏବଂ କ୍ଷମତା ହସ୍ତାନ୍ତର କରିବା ତାଙ୍କର ଏକମାତ୍ର କାମ । କାରଣ ପୃଥିବୀର ଜନମତକୁ ଉପେକ୍ଷା କରିବା ବର୍ତ୍ତମାନ ବ୍ରିଟିଶ୍ ଜାତି ପକ୍ଷରେ ସମ୍ଭବ ନୁହେଁ, ବଳ ପ୍ରୟୋଗ କରି, କ୍ଷମତା ଜାବୁଡି ଧରିବାକୁ ଚାହିଁଲେ ସାରା ବ୍ରିଟିଶ୍ ଜାତିର ଭାବମୂର୍ତ୍ତି ପୃଥିବୀ ଇତିହାସରେ କଳଙ୍କିତ ହୋଇଯିବ । ତେଣୁ ନିଜର ସମ୍ମାନ ରକ୍ଷା କରି କ୍ଷମତା ଛାଡିବାକୁ ବ୍ରିଟିଶ୍ ଜାତି ବାଧ୍ୟ ହୋଇଛି ଏବଂ ଏ କାର୍ଯ୍ୟ ସମାପନ କରିବାକୁ ତାଙ୍କୁ ହିଁ ଦାୟିତ୍ୱ ଦିଆଯାଇଛି । ସେ କାମ କରି ନ ପାରିଲେ ବ୍ରିଟିଶ୍ ଇତିହାସରେ ସେ କ୍ଲାଇଭ୍, ହିଷ୍ଟିଙ୍ଗ୍ସ, ଓ୍ୱେଲେସୋଲି, ଲର୍ଡ୍ କ୍ଲାଇଭଠାରୁ ନ୍ୟୁନ୍ ବୋଲି ବିବେଚିତ ହେବେ । ଏ ଅପମାନକୁ ସହିଯିବା ତାଙ୍କ ପାଇଁ ସହଜ ନୁହେଁ, ଜାପାନ ଆତ୍ମସମର୍ପଣ କଲାବେଳେ କ୍ଷତଚିହ୍ନ ତାଙ୍କର ଏ

ପର୍ଯ୍ୟନ୍ତ ଶୁଣିନାହିଁ । ଆଉ ଥରେ ଅପମାନିତ ହୋଇ ବ୍ରିଟିଶ୍ ଜାତିକୁ ସେ ନିନ୍ଦିତ କରିବାକୁ ଚାହାଁନ୍ତି ନାହିଁ । ତେବେ ତାଙ୍କ ପାଇଁ ମୁକ୍ତିର ବାଟ କ'ଣ ? ସେ ବିବ୍ରତ ଅନୁଭବ କଲେ । ମହମ୍ମଦ ଜିନାଙ୍କ ନେତୃତ୍ୱରେ ସାରା ମୁସଲମାନ ସଂପ୍ରଦାୟ ବିଭାଜନ ପାଇଁ ଏକମତ । କାରଣ ଜିନାଙ୍କୁ ଅମାନ୍ୟ କରିବା ପାଇଁ ତାଙ୍କ ଭିତରେ କେହି ନାହିଁ । କିନ୍ତୁ ହିନ୍ଦୁଙ୍କ ଭିତରେ ନେହେରୁ, ଗାନ୍ଧିଙ୍କ ନେତୃତ୍ୱକୁ ଅମାନ୍ୟ କରିପାରିବେ ନାହିଁ, ଆଉ ଯଦି ବା କରନ୍ତି, ତେବେ ଗାନ୍ଧି ଆମରଣ ଅନଶନ କରିବେ । ଏ କ୍ଷେତ୍ରରେ ଗାନ୍ଧି quit India ଡାକରା ଦେଇଥିଲା ବେଳେ ଯେଉଁ କଥା leave India to Got or anarchy କହିଥିଲେ ତାହା ହିଁ ହେବ । ଅରାଜକତା ବ୍ୟାପିଯିବ, ରାସ୍ତାଘାଟରେ ପ୍ରଚଣ୍ଡ ହିଂସାକାଣ୍ଡ ଘଟିବ ଏବଂ ବ୍ରିଟିଶ୍ ପାର୍ଲାମେଣ୍ଟରେ ଚର୍ଚ୍ଚିଲ ଯେଉଁ ଭବିଷ୍ୟବାଣୀ ଅଟିଲ୍ଙ୍କୁ ଶୁଣାଇଥିଲେ blood will be on your head ତାହା ସତ ହେବ । ତଥାପି ନେହେରୁଙ୍କ ଦ୍ୱାରା କଂଗ୍ରେସକୁ ବିଭାଜନ ପାଇଁ ଏକମତ କରିବାକୁ ହେବ, ହେଉପଛେ କଂଗ୍ରେସ ଦଳର ବିଭାଜନ । ନେହେରୁ, ସର୍ଦ୍ଦାର ବଲ୍ଲଭ ଭାଇ ପଟେଲ ଓ ଲିଆକତ୍ ଅଲ୍ଲୀ ଖାଁ କ୍ଷମତା ପାଇଁ ପାଗଳ । ଏଇମାନଙ୍କ ସାହାଯ୍ୟରେ ସେ ଦେଶର ବିଭାଜନ କରିବେ, ଏହାଛଡା ତାଙ୍କ ପାଖରେ ଆଉ କିଛି ଉପାୟ ନାହିଁ । ତେବେ ହିନ୍ଦୁ ଓ ମୁସଲମାନଙ୍କୁ ନେଇ ତାଙ୍କୁ ଆଉ କେତେ ଦଫା ଆଲୋଚନା କରିବା ବିଜ୍ଞତାର କାର୍ଯ୍ୟହେବ । ପୁଣି ଯେତେବେଳେ ପରବର୍ତ୍ତୀ ଆଲୋଚନା ପାଇଁ ସେମାନେ ବୈଠକ ଗୃହରେ ପହଁଚିଲେ, ମାଉଣ୍ଟବେଟେନ ଆଲୋଚନା ଆରମ୍ଭ କରି କହିଲେ It had always been British policy not to yield to force, what may, Britain is going to leave India କିନ୍ତୁ ଗାନ୍ଧିଙ୍କର ଅହିଂସା ଅସ୍ତ୍ରର ସବୁବେଳେ ବିଜୟ ହୁଏ । ଗାନ୍ଧି ଅତ୍ୟନ୍ତ ଭଦ୍ର ଭାବରେ କହିଲେ ତୁମେ ବିଦାୟ ନେଲା ବେଳେ Don't partion India. Don/t divide India. ତା କଲେ ଭାରତରେ ରକ୍ତର ନଦୀ ବହିଯିବ ।

ମାଉଣ୍ଟବେଟେନ କହିଲେ Division Indian is the last solution, but what alternative is oepn to him ? ଗାନ୍ଧି କହିଲେ ହଁ ଅଛି, ଗୋଟିଏ ବାଟ ଅଛି, Give the moslemy the baby instead of Cutting it in half. Place three hundred million Hindus udner moslem rule by asking his Vivid Jinnah and his muslim league to form a Govt. then hand over power to that Govt. give Jinnah all India instead of just the part he wanted. ତେବେ ଆପଣ ଯାହା ଭାବୁଛନ୍ତି ତାକୁ କ'ଣ ଆପଣଙ୍କ କଂଗ୍ରେସ ଦଳ ଗ୍ରହଣ କରିବ ? ମାଉଣ୍ଟ ବେଟେନ ଗାନ୍ଧିଙ୍କୁ ପଚାରିଲେ । କଂଗ୍ରେସ ! ଗାନ୍ଧି କହିଲେ, କଂଗ୍ରେସ କେବେ ଭାରତର ବିଭାଜନ ଚାହେଁନା ଏବଂ ଏଥିପାଇଁ ଯେତେ ମୂଲ୍ୟ ଦେବାକୁ ହେଉପଛେ, କଂଗ୍ରେସ ଦଳ ତାହା କରିବ । ମାଉଣ୍ଟବେଟେନଙ୍କ ଏ ପ୍ରଶ୍ନ ହଠାତ୍ ଗାନ୍ଧିଙ୍କର ଚେତ୍‌ନାକୁ ଆଘାତ ଦେଲା । ସେ ଭାବିଲେ କଂଗ୍ରେସ ଦଳ ପ୍ରତି ମାଉଣ୍ଟବେଟେନ କାହିଁକି ସନ୍ଦେହ କରୁଛନ୍ତି । ମୁସଲିମ୍ ଲିଗ୍ ପ୍ରତି ତାଙ୍କର ଯଦି କୌଣସି ସନ୍ଦେହ ନାହିଁ ତେବେ କଂଗ୍ରେସ ପ୍ରତି କାହିଁକି ? ତାଙ୍କ ଭିତରେ ମୂହୁର୍ତ୍ତକ ପାଇଁ ଝଡର ଏକ ଲହରୀ ଖେଳିଗଲା ତେବେ ସେ କ'ଣ କଂଗ୍ରେସ ଦଳକୁ ସଂଗଠିତ କରି ରଖିବାରେ ବିଫଳ ହୋଇଛନ୍ତି ! ଜିନାଙ୍କ ନେତୃତ୍ୱରେ ମୁସଲିମ୍ ଲିଗ୍ ମଧ୍ୟରେ ଯଦି କୌଣସି ଫାଟ ନାହିଁ, ତେବେ କଂଗ୍ରେସ ଦଳପ୍ରତି ମାଉଣ୍ଟବେଟେନଙ୍କର ଏ ସନ୍ଦେହ କାହିଁକି ? ନା, ସେମାନେ ସଂଖ୍ୟାଲଗୁ, ନିଜର ଆତ୍ମରକ୍ଷା ପାଇଁ ସଂଖ୍ୟାଲଘୁ ସଂପ୍ରଦାୟ ସବୁବେଳେ ସଂଗଠିତ ହୋଇ ରହିବା ସ୍ୱାଭାବିକ । କିନ୍ତୁ ମାଉଣ୍ଟବେଟେନ ଭାରତୀୟ ନେତାମାନଙ୍କ ସାଙ୍ଗରେ ଆଲୋଚନା ଆରମ୍ଭ କଲା ଦିନରୁ କଂଗ୍ରେସ ଦଳର କିଛି ନେତା ତାଙ୍କଠାରୁ କରଛଡା ଦେବାପରି ଲାଗୁଛି କାହିଁକି ? ବ୍ରିଟିଶ୍ ଜାତିର ଡିଭାଇଡ୍ ଆଣ୍ଡ ରୁଲ୍ ପଲିସି କଥା ସମସ୍ତେ ଜାଣନ୍ତି । କଂଗ୍ରେସ ଦଳ ଭିତରେ ମାଉଣ୍ଟବେଟେନ ଏହି ପଲିସି ପ୍ରୟୋଗ କରି ନାହାଁନ୍ତି ତ ! ଏହା ଯଦି ସେ କରିଥାନ୍ତି, ତେବେ

କଂଗ୍ରେସ ଦଳର କିଏ ଏହାର ଶୀକାର ହୋଇଛି ? ତାଙ୍କ ମନକୁ ପାପ ଛୁଇଁଲା । ସେ ଭାବିଲେ, ଯେଉଁ ଅଳ୍ପ କେତେ ଜଣ ଇଂରେଜ ଲୋକ ୧୮୮୫ ମସିହାରେ କଂଗ୍ରେସ ଦଳ ପ୍ରତିଷ୍ଠା କରିଥିଲେ । ପାଠୁଆମାନଙ୍କୁ ବ୍ରିଟିଶର ସ୍ତାବକ କରିବା ପାଇଁ, ସେ କଂଗ୍ରେସ ଆଜି ତାର ଶାଖା ପ୍ରଶାଖା ବିସ୍ତାର କରି ମାଡିଯାଇଛି ସାରା ଦେଶକୁ, ଯେଉଁ କଂଗ୍ରେସ ଦଳର ଆଭିମୁଖ୍ୟ ହୋଇଛି ବ୍ରିଟିଶକୁ ବାହାର କରିଦେଇ ଦେଶକୁ ସ୍ୱାଧିନ କରିବାକୁ । ସେ କଂଗ୍ରେସ ଦଳରେ ପୁଣି ଫାଟ ସୃଷ୍ଟି ହୋଇଛି । ଯଦି ହୋଇଥାଏ, ତେବେ କିଏ ଏ ମିର୍‌ଜାଫର୍ ? ନା, ଏପରି ଭାବିବା ତାଙ୍କର ଏକ ଭ୍ରମ । ହଠାତ୍ ମାଉଣ୍ଟବେଟେନ ପଚାରିଲେ, ଜିନାଙ୍କର କ'ଣ ପ୍ରତିକ୍ରିୟା ହେବ ? ଗାନ୍ଧି ହସି ହସି ଉତ୍ତର ଦେଲେ, ତାଙ୍କୁ ପଚାର, ସେ ତ ବଡ ଚତୁର, ମାଉଣ୍ଟବେଟେନ ପୁଣି କହିଲେ, ଆପଣଙ୍କ ପ୍ରସ୍ତାବ କଂଗ୍ରେସ ଦଳ ଗ୍ରହଣ କରିବ ବୋଲି ଆପଣ ଯଦି ମୋତେ ପ୍ରତିଶ୍ରୁତି ଦେବେ, ତେବେ ମୁଁ ଆପଣଙ୍କ ପ୍ରସ୍ତାବକୁ କାର୍ଯ୍ୟକାରୀ କରିବାକୁ ଚେଷ୍ଟା କରିବି । ଗାନ୍ଧି କହିଲେ ଅବଶ୍ୟ । ମୁଁ ସାରା ଦେଶର ଏ ମୁଣ୍ଡରୁ ସେ ମୁଣ୍ଡ ପର୍ଯ୍ୟନ୍ତ ବୁଲି ବୁଲି ଏହାକୁ ଗ୍ରହଣ କରିବାକୁ କହିବି, କିନ୍ତୁ ଆପଣଙ୍କ ନିଷ୍ପତ୍ତି ନିଶ୍ଚିତ ତ ? ତାର କେଇଘଣ୍ଟା ପରେ ଗାନ୍ଧି ପ୍ରାର୍ଥନା ସଭାକୁ ଯାଉଥିଲେ । ସାଙ୍ଗରେ ଜଣେ ପତ୍ରକାର ଆଳାପ କରି କରି ଚାଲିଥିଲେ, ଗାନ୍ଧୀ ଖୁବ୍ ପ୍ରସନ୍ନ ଦିଶୁଥିଲେ । ହଠାତ୍ ଅଟକି ଯାଇ ସେ ପତ୍ରକାରଙ୍କୁ କହିଲେ, ସମ୍ଭବତଃ ମୁଁ ସୁଅର ଗତିପଥକୁ ଓଲଟେଇ ଦେଇଛି ।

ଏକ ଦୃଷ୍ଟିରେ ଅନ୍ୟ ଆଡକୁ ଚାହିଁ ସେ ଦିନ ମାଉଣ୍ଟବେଟେନ ଭାବୁଥିଲେ, ଖଦଡ ପିନ୍ଧା ଏ କ୍ଷୁଦ୍ରକାୟ ବୁଢା ତ ଭାରି ଚାଲକ୍ । ମତେ ବୋକା ବନେଇବାକୁ ବସିଛି । ଛୋଟିଆ ଚଢେଇଟିଏ ପରି ଯାକିଯୁକି ହୋଇ ଚେୟାରର କେଉଁ କୋଣରେ ସିନା ଛପିଗଲା ପରି ବସିଥାଏ, ହେଲେ ମୁଁ ଜାଣିନଥିଲି, ପେଡି ଭିତରେ ମୋଡିମାଡି ହୋଇ ଶୋଇଥିବା ଉତ୍କଟ ବିଷଧର ସାପଟିଏ ବୋଲି ସେ । ଶାନ୍ତ, ଶିଷ୍ଟ, ନୀରବ, ନିରୀହ ପୋଷା ପକ୍ଷୀଟିଏ ପରି ସିନା ଦିଶେ, ହେଲେ ଆକାଶର କେଉଁ ଦିଗକୁ ସେ

କେତେବେଳେ ଫୁର୍‌କିନା ଉଡିଯିବ କହି ହେବନାହିଁ । ତାଙ୍କ ସାଙ୍ଗରେ ଆଲୋଚନା କଲାବେଳେ ତାଙ୍କୁ ହୁସିଆର ହେବାକୁ ପଡିବ, ନ ହେଲେ କେତେବେଳେ କେଉଁଖାଲରେ ପକାଇ ଦେବ, କହିହେବ ନାହିଁ, ଭାରି ଚାଲାକ୍ ସିଏ । ବଲ୍ଲଭ ଭାଇ ପଟେଲ କିନ୍ତୁ ରାଜନୀତିରେ ଖୁବ୍ ଭଲ । ଖୁବ୍ ଦୃଢ ଭାବରେ କଂଗ୍ରେସ ପାର୍ଟିଟାକୁ ସେଇ ଚଳଉଛନ୍ତି । ସାଙ୍ଗରେ ଆଲୋଚନା କରିବାକୁ ସେ ହିଁ ହୋଇଥାନ୍ତେ କଂଗ୍ରେସର ଉପଯୁକ୍ତ ପ୍ରତିନିଧି । ତାଙ୍କ ଭଳି ସେ ଅତ୍ୟନ୍ତ ଦୃଢ ଅଥଚ ବାସ୍ତବବାଦୀ ନେତା, ତାଙ୍କୁ ହିଁ ଧରିବାକୁ ହେବ । ତା ହେଲେ ଜଟିଳ ସମାଧାନ କରିବା ସହଜ ହେବ। ବର୍ତ୍ତମାନ ସମସ୍ୟାର କାରଣ ଏତେ ଜଟିଳ ନୁହେଁ, ତାଙ୍କ କ୍ଷମତାକୁ ଚାଲେଞ୍ଜ କରି ପଟେଲଙ୍କ ସ୍ୱରାଷ୍ଟ୍ର ବିଭାଗରୁ ଯେଉଁ ଚିଠିଖଣ୍ଡକ ଆସିଛି ତାହା ସରକାରୀ ଦପ୍ତରର ଏକ ଧରାବନ୍ଧା ସାଧାରଣ କାଗଜ ଖଣ୍ଡେ ହେଲେ ମଧ୍ୟ ଭାଷା ଭାବରେ ଅପମାନ ଜନକ । ତଥାପି ପଟେଲଙ୍କ ଦୃଢ ବ୍ୟକ୍ତିତ୍ୱ । ଏହା ଏକ ପ୍ରତିଫଳନ ପରି ଲାଗୁଛି । ଟେବୁଲ୍ ଉପରେ ପଡିଥିବା ସେଇ କାଗଜ ଖଣ୍ଡକୁ ଉଠାଇ ଆଣି ସେ ଆଉ ଥରେ ପଢିଲେ। ପଟେଲଙ୍କ ଦୃଢତା ବେଶ୍ ଜଣାଶୁଣା । ତାଙ୍କ ପରି ଜଣେ ନୂଆ ପ୍ରତିପକ୍ଷଙ୍କ ସହ ତାଙ୍କୁ ଆଲୋଚନା କରିବାକୁ ହେବ । ଦେଖାଯାଉ ସେ ତାଙ୍କୁ କେତେଦୂର ହଲଚଲ କରିପାରୁଛନ୍ତି । ବମ୍ବେର ଏକ କୋର୍ଟ ରୁମରେ ସେଦିନ ପଟେଲ ତାଙ୍କ ମହକିଲଙ୍କର କେଶ୍ ଲଢୁଥିଲେ । ଏହି ସମୟରେ ଜଣେ କର୍ମଚାରୀ ତାଙ୍କ ହାତକୁ କାଗଜ ଖଣ୍ଡେ ବଢାଇ ଦେଇ ଚାଲିଗଲେ । ପଟେଲ ଆଖିପକାଇ ଦେଖିନେଲେ । କାଗଜ ଖଣ୍ଡକରେ ଲେଖାଥିଲା ତାଙ୍କ ପତ୍ନୀଙ୍କ ମୃତ୍ୟୁ ଖବର । ସଂପୂର୍ଣ୍ଣ ନିରୁଦ୍‌ବିଗ୍ନ ପଟେଲ କାଗଜ ଖଣ୍ଡକୁ ପକେଟରେ ପୁରାଇ ଦେଇ ଅବିଚଳିତ ଭାବରେ ତାଙ୍କ ଯୁକ୍ତିର ବାକ୍ୟଟିକୁ ସଂପୂର୍ଣ୍ଣ କଲେ । ଏଇ ଘଟଣାଟି ତାଙ୍କ ଦୃଢତା ଓ କର୍ତ୍ତବ୍ୟ ପରାୟଣତାର ଆଜି ବି କିମ୍ବଦନ୍ତୀ ହୋଇ ରହିଛି । କୁହାଯାଏ ସେ କେବେ ଭାବବିହ୍ୱଳ ହୁଅନ୍ତି ନାହିଁ । ସାଂସାରିକ ଭାବାବେଶ କେବେ ତାଙ୍କୁ କର୍ତ୍ତବ୍ୟ ପଥରୁ ବିଚଳିତ କରେନାହିଁ । ତାଙ୍କୁ ଦେଖିଲେ ସଂପୂର୍ଣ୍ଣ ସଂଯତ ଓ ଗମ୍ଭୀର ଦିଶନ୍ତି।

ତାଙ୍କ ବଳିଷ୍ଠ ଚେହେରାରୁ ସିଂହଠାଣୀର ଆଭାସ ମିଳେ ଏବଂ ସେ ତାଙ୍କ ନିଷ୍ପତ୍ତିରେ ସବୁବେଳେ ଅତ୍ୟନ୍ତ କଠୋର ଭାବରେ ଅଟଳ । ବୁଦ୍ଧିମତ୍ତାରେ ବି ସେ କୁଆଡେ ଜଣେ ପ୍ରଚଣ୍ଡ ପୁରୁଷ । ଏଭଳି ଜଣେ ବ୍ୟକ୍ତି ସହିତ ବୁଦ୍ଧିପରୀକ୍ଷା କରିବାରେ ମଜା ଅଛି । ସେ ତବେ କ'ଣ ବୁଦ୍ଧିକୁ ସଂଚୟ କରି ରଖନ୍ତି । କଥା କହିବାରେ ସେ କୃପଣ । ଦିନକୁ ଦଶଟି ବାକ୍ୟ ବି ସେ ତାଙ୍କ ପତ୍ନୀଙ୍କୁ କହିନଥାନ୍ତି । ସେ ପ୍ରକୃତରେ ଜଣେ ଭାରତୀୟ । ତାଙ୍କ ପିତା ଥିଲେ ଜଣେ କୃଷକ ଏବଂ ସେ କୃଷକର ଘରେ ରହନ୍ତି । ବମ୍ବେ ପାଖ ଗୁଜୁରାଟ ପ୍ରଦେଶରେ ତାଙ୍କ ଜନ୍ମ । ପ୍ରତିଦିନ ସକାଳ ଚାରିଟାରେ ଶେଯ ଛାଡିବା ଏବଂ ରାତି ନ'ଟା ତିରିଶରେ ଶଯ୍ୟା ଗ୍ରହଣ କରିବା ତାଙ୍କର ଅଭ୍ୟାସ । ଶେଜରୁ ଉଠିଲା ପରେ ପାଇଖାନାରେ ବହୁତ ସମୟ କାଟନ୍ତି ଏବଂ ଦେଶର ତିରିଶ ଖଣ୍ଡ ସମ୍ବାଦପତ୍ର ପଢନ୍ତି । ତାଙ୍କର ଏକମାତ୍ର କନ୍ୟା ତାଙ୍କର ସବୁକଥା ଦେଖାଶୁଣା କରନ୍ତି । ଝିଅ ସାଙ୍ଗରେ ବନ୍ଧୁତା ତାଙ୍କର ବେଶୀ । ଏପରିକି ଗୋଟିଏ ରୁମରେ ବାପ ଝିଅ ଶୁଅନ୍ତି । ଦୁଇ ଦଶନ୍ଧି ଧରି ଝିଅ ମନିବେନ୍ ତାଙ୍କର ସେକ୍ରେଟାରୀ A.D.C ଓ ଘରର ବିଶ୍ୱାସୀ ପରିଚାଳିକା । ତାଙ୍କ ପିତାଙ୍କ ଠାରୁ ସେ ଜାତୀୟତାବାଦରେ ଉଦବୁଦ୍ଧ । ୧୮୫୭ ମସିହା ସିପାହୀ ବିଦ୍ରୋହ ବେଳେ ତାଙ୍କ ପିତା ବ୍ରିଟିଶ୍ ବିରୁଦ୍ଧରେ ଲଢିଥିଲେ । ଗୋବର ଘସିର ନିଆଁ ଜାଳି ସେ ତାଙ୍କ କୁଡିଆରେ ପିଲାବେଳର ଶୀତରାତି କଟାଇଥିଲେ । ପରେ ପରେ ସେ ତାଙ୍କର ଜମିଚାଷ ଛାଡି ଦେଇ ଅହମଦାବାଦର ଲୁଗାକଳରେ କାମ କଲେ । ସେ ରାତିରେ ପଢୁଥିଲେ ଏବଂ ତେତିଶବର୍ଷ ବୟସ ପର୍ଯ୍ୟନ୍ତ ସଂଚୟ କରି ଓକିଲାତି ପଢିବାକୁ ଲଣ୍ଡନ ଯାଇଥିଲେ । ଲଣ୍ଡନରେ ସେ ଯାହା କିଛି ଦେଖିଲେ ତା ହେଲା Library of the Inns of Court ନେହେରୁ ଲଣ୍ଡନର ଯେଉଁ ବିଳାସମୟ ଘରେ ରହୁଥିଲେ ତାକୁ ସେ ଦେଖି ନାହାଁନ୍ତି । ପଇସା ସଞ୍ଚୟ କରିବାକୁ ସେ ପ୍ରତିଦିନ ଦୁଇଥର ଦଶମାଇଲ ବାଟ ତାଙ୍କ ଘରୁ ଚାଲିଚାଲି ଯାଆନ୍ତି । ଯେଉଁ ଦିନ କୋର୍ଟ ଯିବାକୁ ତାଙ୍କୁ ଡାକରା ଆସିଲା, ସେ ଦିନ ବି ଚାଲିଚାଲି ଯାଉଥିଲେ । ସେ ଲଣ୍ଡନରୁ ଫେରିବା

ପରେ ଆଉ କେବେ ଭାରତ ଛାଡିନାହାଁନ୍ତି । ଅହମଦାବାଦରେ ସେ ସ୍ଥାୟୀ ଭାବରେ ରହିଲେ ଏବଂ ଯେଉଁ ଲୁଗାକଳରେ ସେ ଆଗରୁ ଶମିକ ଭାବେ କାମ କରୁଥିଲେ, ସେଇ କଳ ମାଲିକର ଓକିଲ ଭାବେ କାମ ଆରମ୍ଭ କଲେ । ଅହମଦାବାଦରେ ଥିଲାବେଳେ ଗାନ୍ଧି ସେଠାରେ ଯେଉଁ ଭାଷଣ ଦେଇଥିଲେ ତାର ଏକ ଛାପା କପି ସେ ଜଣଙ୍କଠାରୁ ପାଇ ପଢିଲେ । ପଢିଲାପରେ, ଗୋବର ଘଷି ନିଆଁ ପାଖରେ ସେ ପିତାଙ୍କ ଠାରୁ ଯାହା ଶୁଣିଥିଲେ, ତାର ଏକ ଦୃଶ୍ୟ ତାଙ୍କ ଆଖି ଆଗରେ ଭାସିଉଠିଲା, ଦିନେ ପଟେଲ ଆସି ଗାନ୍ଧିଙ୍କୁ ସାକ୍ଷାତ କଲେ ଏବଂ ତାଙ୍କ କାମରେ ନିଜକୁ ନିୟୋଜିତ କରିବାକୁ କହିଲେ । ୧୯୨୨ ମସିହାରେ ଗାନ୍ଧି ପଟେଲଙ୍କୁ କହିଲେ, Civil disobedience କ'ଣ କରିପାରେ ତାହା ଦେଖିବା ପାଇଁ ବମ୍ବେ ବାହାରେ ବର୍ଦ୍ଦୋଲିର ୧୩୭ଟି ଗାଁର ୮୭୦୦୦ ଲୋକଙ୍କୁ ନେଇ ଗୋଟିଏ ସଂଗଠନ କର । ପଟେଲଙ୍କର ସେ ସଂଗଠନ ଏତେ ପ୍ରଭାବଶାଳୀ ହେଲା ଯେ ଗାନ୍ଧିଙ୍କ କଳ୍ପନାର ବାହାରେ । ସେଇ ଦିନଠାରୁ ପଟେଲ ନେହେରୁଙ୍କ ସାଙ୍ଗରେ ମିଶି ସ୍ୱାଧିନତା ଆନ୍ଦୋଳନରେ ଠିକ୍ ଗାନ୍ଧିଙ୍କ ତଳକୁ ରହି କାମ କଲେ ଏବଂ ତାଙ୍କର ଅତ୍ୟଧିକ ନିଷ୍ଠା ଓ ଅଧ୍ୟବସାୟ ହେତୁ ସେ ଭାରତର ପ୍ରତ୍ୟେକ ପୁରପଲ୍ଲୀଠାରୁ ଆରମ୍ଭ କରି ସହର ବଜାର ପର୍ଯ୍ୟନ୍ତ କଂଗ୍ରେସ ଦଳର କ୍ରିୟାଶୀଳତାକୁ ଦୃଢ କରିବାରେ ଲାଗିଲେ । ଶାରୀରିକ ଶ୍ରମ ପାଇଁ କିମ୍ବା ମଫସଲ ଗାଁ ଗଣ୍ଡାକୁ ପାଦରେ ଚାଲିଚାଲି ଯାଇ କାମ କରିବାକୁ ନେହେରୁଙ୍କର ଥିଲା ଘୋର କୁଣ୍ଠା । ସେ ଥିଲେ ଜଣେ କଠୋର ଓ ଦୃଢମନା ଜଣେ ବଳିଷ୍ଠ ବ୍ୟକ୍ତିତ୍ୱ । ପ୍ରକୃତରେ ତାଙ୍କରି ପାଇଁ ହିଁ କଂଗ୍ରେସ ଦଳ ଏକ ଦେଶବ୍ୟାପୀ ଦୁର୍ବାର ରାଜନୈତିକ ଶକ୍ତି ଭାବରେ ଉଭାହେଲା ଏବଂ ଗାନ୍ଧିଙ୍କ ନିର୍ଦ୍ଦେଶରେ ତାଙ୍କର ପ୍ରତ୍ୟେକ କାର୍ଯ୍ୟକ୍ରମକୁ ସେ ସଫଳ ଭାବରେ ରୂପାୟିତ କରିବାରେ ଅପୂର୍ବ ଓ ଅଦ୍ଭୁତ ଦକ୍ଷତା ଦେଖାଇଲେ । ଗାନ୍ଧିଙ୍କୁ ଛାଡିଦେଲେ ସେଇ ପଟେଲ ହିଁ କଂଗ୍ରେସ ଦଳର ସର୍ବେସର୍ବା, ଦଳ ଉପରେ ତାଙ୍କର ଅଖଣ୍ଡ ପ୍ରଭାବ ରହିଛି । ତେଣୁ ସେ ଚାହିଁଲେ ଦେଶର ବିଭାଜନ ପାଇଁ କଂଗ୍ରେସ ଦଳକୁ ଏକମତ

କରାଇ ପାରିବେ, ସେ ଦକ୍ଷତା ତାଙ୍କର ଅଛି । ତାଙ୍କରି ସାଙ୍ଗରେ ସେ ଏବେ ଆଲୋଚନା କରିବେ । ମାତ୍ର ତାଙ୍କ ମନ୍ତ୍ରଣାଳୟରୁ ଯେଉଁ ଚିଠି ଆସିଛି ତାହା ଅପମାନ ଜନକ । ସେଥିରେ ତାଙ୍କ କ୍ଷମତାକୁ ଚାଲେଞ୍ଜ କରାଯାଇଛି । ଏପରି ଅବସ୍ଥାରେ ସେ ତାଙ୍କ ସାଙ୍ଗରେ କିପରି ଆଲୋଚନା କରିବେ ? ନା, ଏହାକୁ ଅପମାନଜନକ ଭାବି ତାଙ୍କ ସହ ଆଲୋଚନା ନ କଲେ, ସେ ଜିତିଗଲେ ବୋଲି ଭାବିବେ । ତା ହେଲେ ତାଙ୍କ ଠାରୁ ସେ ସାହାଯ୍ୟ ପାଇବେ କିପରି ? ନା, ତାଙ୍କ ସହିତ ସେ ଆଲୋଚନା କରିବେ । ସେ ପଟେଲଙ୍କୁ ଚାହିଁଲେ ଏବଂ ଟେବୁଲ ଉପରେ ପଡିଥିବା ତାଙ୍କ ମନ୍ତ୍ରଣାଳୟର ସେଇ ଚିଠି ଖଣ୍ଡିକ ଧରାଇ ଦେଇ କହିଲେ । ଏହାକୁ ଆପଣ ପ୍ରତ୍ୟାହାର କରି ନିଅନ୍ତୁ । ପଟେଲ କହିଲେ, ନା, ମୁଁ ପ୍ରତ୍ୟାହାର କରିବି ନାହିଁ । ମାଉଣ୍ଟବେଟେନ ଆହୁରି ଅପମାନିତ ବୋଧ କଲେ ଏବଂ କ୍ଷୀଣକଣ୍ଠରେ କହିଲେ, ତା ହେଲେ ମୁଁ ମୋ ପ୍ଲେନକୁ ଆସିବାକୁ କହିବି କାହିଁକି ? ପଟେଲ ପଚାରିଲେ । ମାଉଣ୍ଟବେଟେନ କହିଲେ, ମୁଁ ଚାଲିଯିବି, ଭାବନ୍ତୁ ନାହିଁ ମୁଁ ଏଠି ରହିବି ଓ ଆପଣମାନେ ମୋତେ ବୋକା ବନେଇବେ । ଆପଣ ଯଦି ଭାବୁଥାନ୍ତି ଯେ ଆପଣ ଏପରି ନିଷ୍ଠୁର ଭାବରେ ମୋ ପ୍ରତି ବ୍ୟବହାର କରୁଥିବେ ଏବଂ ମୁଁ ସ୍ଥିର ହୋଇ ବସିଥିବି, ତେବେ ଆପଣ ଭୁଲ୍ ଭାବୁଛନ୍ତି । ଏକେତ ଆପଣ ସେ ଚିଠିଟିକୁ ଫେରାଇ ନେବେ ନଚେତ୍ ଆମ ଦୁହିଁଙ୍କ ଭିତରୁ ଜଣକୁ ଚାଲିଯିବାକୁ ହେବ ଏବଂ ଜାଣି ରଖନ୍ତୁ ଯେ ମୁଁ ଯଦି ଚାଲିଯାଏ, ତେବେ ଯିବା ପୂର୍ବରୁ ମୁଁ ଆପଣଙ୍କ ପ୍ରଧାନମନ୍ତ୍ରୀ ଓ ଜିନାଙ୍କୁ କହିଦେବି ମୋ ଯିବାର କାରଣ କ'ଣ । ଆଜି ଯଦି ଆମର ଏ ଆଲୋଚନା ବିଫଳ ହୁଏ ଏବଂ ମୁଁ ଚାଲିଯାଏ, ତେବେ ଦେଶରେ ଯେଉଁ ସବୁ ହତ୍ୟାକାଣ୍ଡ ଘଟିବ ଓ ରକ୍ତର ନଦୀ ବୋହିଯିବ, ସେଥିପାଇଁ ମୁଁ ନୁହେଁ, ଆପଣ ହିଁ ଦାୟୀ ହେବେ । କାହିଁକି ? ପଟେଲ କହିଲେ କ୍ଷମତା ହସ୍ତାନ୍ତର କରିବାକୁ ବ୍ରିଟିଶ ପ୍ରଧାନମନ୍ତ୍ରୀ ଆପଣଙ୍କୁ ଅଧିକାର ଦେଇଛନ୍ତି, ସେ ଦାୟିତ୍ୱ ତୁଲାଇ ନ ପାରିଲେ ଆପଣ ଦାୟୀ ହେବେ, ମୁଁ ନୁହେଁ,

ମାଉଣ୍ଟବେଟେନ କହିଲେ। କିନ୍ତୁ ଭାରତକୁ ବିଭାଜନ ନ କରି ଏହା କ'ଣ ସମ୍ଭବ । ବିଭାଜନ ପରେ କ୍ଷମତା ହସ୍ତାନ୍ତର କଲେ ଯେ ହିଂସାକାଣ୍ଡ ନ ଘଟିବ, ତା ନୁହେଁ, କିନ୍ତୁ ତାହା ଦିନେ ଦି ଦିନ ପରେ ଉଭେଇଯିବ । କିନ୍ତୁ ବିଭାଜନ ନ କରି କ୍ଷମତା ହସ୍ତାନ୍ତର କଲେ, ଅନିର୍ଦ୍ଦିଷ୍ଟ କାଳ ପାଇଁ ହିଂସାକାଣ୍ଡ ଲାଗିରହିବ ଏବଂ ସେପରି କଲେ କାହାକୁ କ୍ଷମତା ହସ୍ତାନ୍ତର କରାଯିବ ? ଅଖଣ୍ଡ ଭାରତର ନେତା କିଏ ? ଜିନାଙ୍କର ମୁସଲିମ୍ ଲିଗ୍ ବିଭାଜନ ପାଇଁ ଦାବୀ କରୁଛନ୍ତି। ଜିନାକୁ କ'ଣ ଅଖଣ୍ଡ ଭାରତର ନେତା ବୋଲି ମାନିନେବେ ? ଗାନ୍ଧୀଙ୍କୁ ଏ କଥା ମୁଁ ପଚାରିଥିଲି। ତାଙ୍କର ମତ ଭାରତକୁ ବିଭାଜନ ନ କରି ତିରିଶ କୋଟି ଭାରତୀୟଙ୍କୁ ତାଙ୍କ ନେତୃତ୍ୱାଧୀନ ସରକାର ଶାସନ କରନ୍ତୁ । ତାଙ୍କର ଏ ମତକୁ କ'ଣ ଆପଣ ଗ୍ରହଣ କରିବେ ? ଏପରି କଲେ କ'ଣ ହିଂସାକାଣ୍ଡ ଘଟିବ ନାହିଁ ? ସାରା ଦେଶର ହିନ୍ଦୁ ସଂପ୍ରଦାୟ କ'ଣ ଜିନାଙ୍କୁ ମାନିନେବେ ? ଏ ପରିସ୍ଥିତିରେ ବିଭାଜନକୁ ରୋକିହେବ କିପରି ? ପଟେଲ କହିଲେ ତା ହେଲେ ବ୍ରିଟିଶ୍ ପୋଲିସ୍, ଡିଭାଇଡ୍ ଆଣ୍ଡ ରୁଲକୁ ଏଠାରେ ଆପଣ ପ୍ରୟୋଗ କରି ଦେଶକୁ ବିଭାଜନ କରିବାକୁ ଚାହାଁନ୍ତି। ମାଉଣ୍ଟବେଟେନ୍ ପଚାରିଲେ, ତେବେ ଆପଣଙ୍କର ଆଉ କି ପ୍ରସ୍ତାବ ଅଛି ? ପଟେଲ ଅନେକ ସମୟ ପର୍ଯ୍ୟନ୍ତ ନୀରବ ରହିଲା ପରେ ସେ କାଗଜଖଣ୍ଡକୁ ଆଣି ଟୁକୁରା ଟୁକୁରା କରି ଚିରିଦେଲେ ଏବଂ ଅନେକ ସମୟ ପର୍ଯ୍ୟନ୍ତ ବସି ଭାବିଲେ ବିଧିର କି ବିଚିତ୍ର ବିଡମ୍ବନା । ଗୋଟାକ ପରେ ଗୋଟାଏ ବିଦେଶୀ ଶକ୍ତି ଆସି ଭାରତକୁ ଶାସନ କଲାପରେ ଛାଡି ଚାଲିଯାଇଛନ୍ତି । ଆଜି ବି ଇଂରେଜମାନେ ଯିବାକୁ ବସିଛନ୍ତି । କିନ୍ତୁ ହଜାରେ ବର୍ଷ ଧରି ଶାସନ କଲାପରେ ଯେଉଁ ମୋଗଲ ସାମ୍ରାଜ୍ୟର ପତନ ଘଟିଥିଲା, ସେଇ ମୋଗଲ ଦାୟାଦ ମାନଙ୍କୁ ଆଜି ଦେଶରୁ ଅଧାଦେବା ପାଇଁ ସରକାରୀ ସ୍ୱୀକୃତି ମିଳିବାକୁ ଯାଉଛି। ଏହାକୁ ନେଇ ଅସଂଖ୍ୟ ନୃସଂଶ ନରସଂହାର ବିଭୀଷିକା ମାଡିଆସୁଛି । କ୍ଷମତାକୁ ଆସିବାକୁ ନରହତ୍ୟା କରିବାକୁ ପଡେ, ଛାଡିବାକୁ ଯିବାବେଳେ ବି ନରହତ୍ୟା ହୁଏ କାହିଁକି ? ମଣିଷ ମନର 'ମୋ' ଭାବନା ଏହାର

କାରଣ। ପ୍ରତ୍ୟେକ ଅଂଚଳ ସେଠାକାର ଅଧିବାସୀଙ୍କ ପାଇଁ ଜନ୍ମଦାତ୍ରୀ ଜନନୀ । ମଣିଷ ମନର ଏଇ ଭାବନା ଛୋଟିଆ ଗାଁଠାରୁ ପୃଥିବୀ ପର୍ଯ୍ୟନ୍ତ ପରିବ୍ୟାପ୍ତ । ଏହା ହିଁ ହିଂସାର କାରଣ । କିନ୍ତୁ ମଣିଷ ପାଏ କ'ଣ ? କେବଳ ଦୁଃଖ। ଆଜି ଯାହା ମୋର କାଲି ତାହା ଆଉ ଜଣଙ୍କର । ସମୟର ଆହ୍ୱାନରେ ନିରନ୍ତର ଏପରି ଘଟିଚାଲିଛି। ମୋର ବୋଲି କହି ଯେଉଁମାନେ ଜାବୁଡ଼ି ଧରୁଛନ୍ତି, ଜୋର କରି ସମୟ ତାଙ୍କଠାରୁ ଛଡ଼ାଇ ନେଉଛି । ସମୟ ପାଖରେ ସମସ୍ତେ ହୀନ ବଳ । ତେବେ ମୋର ବୋଲି କହିବା କେବଳ ବୃଥା । ସବୁକିଛି ସମାଜ ବା ରାଷ୍ଟ୍ରର । ଏ ଭାବନାର ପ୍ଲେଟୋଙ୍କ ଗଣତନ୍ତ୍ର ବି ଅବାସ୍ତବ ହୋଇଗଲା । ତେବେ କେଉଁ କଥା ମଣିଷ ପାଇଁ ଠିକ୍ ? ମଣିଷ ତେବେ କ'ଣ ଚାହେଁ, କ'ଣ ତାକୁ ଶାନ୍ତି ଦେଇ ପାରିବ ? ମଣିଷର ଜୀବନ କ'ଣ କେବଳ ଅଶାନ୍ତି ? ଶାନ୍ତି କ'ଣ ମଣିଷ ପାଇଁ ଅଲଭ୍ୟ ? ଯେଉଁମାନେ ଶାନ୍ତିର ବାଟ ଦେଖାଇଛନ୍ତି ସେ ବାଟ ଖୋଜି ପାଇବା ଭାରି କଷ୍ଟ, ଆଉ ପାଇଲେ ବି ସେ ବାଟରେ ଚାଲିବା ଅସମ୍ଭବ । ଆଉ ଚାଲିଲେ ବି ସଭ୍ୟତା ଭାଙ୍ଗିଯିବ ଏବଂ ସମୃଦ୍ଧ ହୋଇ ପାରିବ ନାହିଁ । ସଭ୍ୟତା ନ ବଢ଼ିଲେ ମଣିଷ ତାର ଜୀବନୀ ଶକ୍ତିକୁ କରିବ କ'ଣ । ଏ ସବୁ ପ୍ରଶ୍ନ ଅଛିଣ୍ଡା ଅଙ୍କର ଅତୁଆ ସୂତା ପରି କେବଳ ଗୋଟାଏ ଗୋଲକ ଧନ୍ଦା। ଭାରତକୁ ଆଜି କ୍ଷମତା ମିଳୁଛି ସତ, କିନ୍ତୁ ଅଖଣ୍ଡ ଭାରତକୁ ନୁହେଁ । ହଜାର ହଜାର ବର୍ଷ ଧରି ଭାରତକୁ ବିଦେଶୀ ମାନେ ଶାସନ କରିଥିଲେ, କିନ୍ତୁ କେହି ତାକୁ ଭାଗ ଭାଗ କରି ନ ଥିଲେ, ଇଂରେଜ ଆଜି ତାହା କରିବାକୁ ଯାଉଛନ୍ତି । ଘଟଣା ଚକ୍ରରେ ତାକୁ ରୋକିବା ସମ୍ଭବ ନୁହେଁ, ରୋକିଲେ ବି ହିଂସାକାଣ୍ଡ ଦ୍ୱାରା ଅଜସ୍ର ରକ୍ତପାତ ହେବ, ନ ରୋକିଲେ ବି ତାହା ହିଁ ହେବ । ସମ୍ଭବତ ଭାରତ ଏପରି ଦୁର୍ଦ୍ଦଶା ଆଗରୁ କେବେ ଭୋଗି ନଥିଲା। ଭାରତ ଆଜି ଘୋର ସଂକଟର ସମ୍ମୁଖୀନ। ଯେଉଁମାନେ ବିଭାଜନ ଚାହାଁନ୍ତି, ସେମାନେ ଏ ଦେଶର ମଣିଷ ନୁହଁନ୍ତି । ହୋଇଥିଲେ ଜନ୍ମ କଲା ମାଆକୁ କାଟି ଦୁଇଖଣ୍ଡ କରି ଖଣ୍ଡେ ନେବାକୁ ଏପରି ଜିଦ୍ କରି ନ ଥାନ୍ତେ । ପଟେଲ ଆଉ କିଛି ଭାବିପାରୁ ନ ଥିଲେ । ଖାଲି ଏତକ ଭାବୁଥିଲେ ଯେ

ସେ ବି ଆଜି ମା'କୁ ମାରି ଦୁଇଭାଗ କରି ନେବାକୁ କମ୍ ଦାୟୀ ନୁହଁନ୍ତି । ସିରାଜଉଦଲାଙ୍କୁ ହତ୍ୟା କରି ଯେଉଁ ଡିଭାଇଡ୍ ଆଣ୍ଡ ରୁଲ୍ ପଲିସି ଦ୍ୱାରା କ୍ଲାଇବ୍ ବ୍ରିଟିଶ୍ ସାମ୍ରାଜ୍ୟର ମଞ୍ଜି ପୋତିଥିଲେ ଆଜି ସେଇ ପଲିସି ଦ୍ୱାରା ଇଂରେଜ ଭାରତକୁ ଭାଗ ଭାଗ କରି ଦେବାକୁ ବସିଛି ଆଉ ଆମେ ସବୁ ଅସହାୟ । ଏହା ବିଧିର ବିଡମ୍ବନା ନୁହେଁ ତ ଆଉ କ'ଣ ?

ଦିଲ୍ଲୀର ସହରତଳି ଅଂଚଳ, ଅଳିଆ ଆବର୍ଜନା ଦୁର୍ଗନ୍ଧରେ ପରିପୂର୍ଣ୍ଣ ପରିବେଶ । ଅସଂଖ୍ୟ ରୋଗବ୍ୟାଧି ପୀଡିତ କଙ୍କାଳ ସାର ଶିଶୁମାନଙ୍କର ଫୁଙ୍ଗୁଳା ଦେହ, ସେଇଠି ଜଳୁଥିଲା ମିଞ୍ଜି ମିଞ୍ଜି ଛୋଟିଆ ଇଲେକଟ୍ରିକ୍ ବଲଟିଏ । ଝାଟି ମାଟି କୁଡିଆର ସନ୍ତସନ୍ତିଆ ଚଟାଣ ଉପରେ ପାଳ ବିଛଣାଟିଏ ପାରିଦେଇ ଶୋଇଥିଲେ ଗାନ୍ଧି । ଆଖିକୁ ନିଦ ନାହିଁ, ଅଜସ୍ର ଭାବନାରେ ଭାରାକ୍ରାନ୍ତ ତାଙ୍କର ମନ, ପଥର ଖଣ୍ଡେ ଧରି ପାଦ ଘଷୁଥିଲା ମନୁ, କ୍ଲାନ୍ତ ଅବସନ୍ନ ଦେହ । ମନରେ କିନ୍ତୁ ଅଦମ୍ୟ ସାହସ । ଅଶିକ୍ଷା ଓ କୁସଂସ୍କାରରେ ପୂର୍ଣ୍ଣ ହିନ୍ଦୁ ସଂପ୍ରଦାୟ ମଧ୍ୟରେ ଉତ୍କଟ ଅସ୍ପୃଶ୍ୟତା ହିନ୍ଦୁ ସମାଜକୁ ଦୁର୍ବଳ କରି ରଖିଛି । ଏଥିରୁ ହିନ୍ଦୁ ସମାଜକୁ ରକ୍ଷା କରିବାକୁ ହେବ, ଗାନ୍ଧିଙ୍କ ଭାବନାର ଅନ୍ତ ନ ଥିଲା । ହିନ୍ଦୁ ସମାଜରେ ଥାଇ ମଧ୍ୟ ଅସ୍ପୃଶ୍ୟତା ମାନେ ଅକଥନୀୟ ଦୁର୍ଦ୍ଦଶା ଭୋଗୁଛନ୍ତି । ସେମାନଙ୍କ ସଂଖ୍ୟା ଭାରତ ଜନସଂଖ୍ୟାର ଶତକଡା ଛ' ଭାଗ । ପୂର୍ବଜନ୍ମର ପାପ ହେତୁ ସେମାନେ ଅସ୍ପୃଶ୍ୟ ହୋଇ ଜନ୍ମ ହୋଇଛନ୍ତି ବୋଲି ଅପବାଦ ଅଛି । ଦେହର ରଙ୍ଗ କଳା, ଅପରିଷ୍କାର ପୋଷାକ ପରିଛନ୍, ଅଖାଦ୍ୟ ଭକ୍ଷଣ, ଅତ୍ୟନ୍ତ ବିନୟ ଭାବ, ଏ ସବୁକୁ ନେଇ ସେମାନଙ୍କର ପରିଚୟ । ସବର୍ଣ୍ଣ ମାନଙ୍କ ପାଖରେ ସେମାନଙ୍କ ଛାଇ ପଡିବା ଅପବିତ୍ର । ସେମାନଙ୍କ ସାମାନ୍ୟ ସଂସ୍ପର୍ଶ ସବର୍ଣ୍ଣଙ୍କ ପାଇଁ ସଂପୂର୍ଣ୍ଣ ନିଷେଧ, ଏପରିକି ରାସ୍ତାରେ ସେମାନଙ୍କ ପାଦଚିହ୍ନକୁ ସ୍ପର୍ଶ କରିବା ବି ପାପ । ସେମାନଙ୍କ ହାତରୁ ପାଣିପିଇବା, ସେମାନଙ୍କ ଦ୍ୱାରା କୂଅରୁ କଢାଯାଇଥିବା ପାଣିକୁ ଛୁଇଁବା, ସେମାନଙ୍କ ବାସନରେ ଖାଇବା, ମନ୍ଦିର ଦର୍ଶନ ବା ପ୍ରବେଶ, ହିନ୍ଦୁଙ୍କ ମଶାଣିରେ ସେମାନଙ୍କ ଶବ ସଂସ୍କାର ଇତ୍ୟାଦି ବି ସେମାନଙ୍କ

ପାଇଁ ମନା । ଏପରିକି ସେମାନଙ୍କୁ ଶବଦାହ କରିବାକୁ ମନା । ଦୂର ଖୋଲା ପଡିଆରେ ସେମାନଙ୍କ ଶବକୁ କୁକୁର ଶାଗୁଣା ଖାଇବା ଥିଲା ପରମ୍ପରା । ଗୋରୁଗାଇ ପରି ସୋମନଙ୍କୁ ବିକା କିଣା କରିବାର ପ୍ରଥା ମଧ୍ୟ ଭାରତର କେତେ ଅଞ୍ଚଳରେ ପ୍ରଚଳିତ । ଗାନ୍ଧି କିନ୍ତୁ ଆରମ୍ଭ କଲେ ସେମାନଙ୍କ ସେବା, ସେମାନଙ୍କୁ ପାଖରେ ବସାଇବା, ସେମାନଙ୍କୁ ଛୁଇଁବାର ବାରଣକୁ ନ ମାନିବା, ସେମାନଙ୍କ ସାଙ୍ଗରେ ଖାଇବା, ସେମାନଙ୍କର ମଇଳା, ସଫା କରିବା ଏବଂ ସେମାନଙ୍କ ବସ୍ତିରେ ବାସ କରିବା ଇତ୍ୟାଦି ସେ ନିଃସଂକୋଚରେ କରିବା ସହିତ ସେମାନଙ୍କୁ ଶିକ୍ଷାଦାନ କରିବାକୁ ସେମାନଙ୍କ ବସ୍ତିରେ ବିଦ୍ୟାଳୟ ମାନ ପ୍ରତିଷ୍ଠା କଲେ ଏବଂ ସରକାରୀ ଚାକିରୀରେ ନିଯୁକ୍ତି ପାଇଁ ଚେଷ୍ଟା କଲେ । ଏହି ପରି କ୍ରମେ କ୍ରମେ ପରିଷ୍କାର ରହିବା ଚେଷ୍ଟା ଏବଂ ନିଜ ଅଧିକାର ପ୍ରତି ସଚେତନ ହେଲେ । ଗାନ୍ଧି ଭାବିଲେ, ଏଇମାନେ କାଲି ମନ୍ତ୍ରୀ ହେବେ, ବଡ ବଡ ଚାକିରୀ କରିବେ ଏବଂ ଏମାନଙ୍କର ଶିକ୍ଷା, ଆର୍ଥିକ ଓ ସାମାଜିକ ଅବସ୍ଥା ବଦଳିଯିବ ଏବଂ ଯେଉଁ ଭାରତ ଜାତିଭେଦ ହେତୁ ଭାଗ ଭାଗ ହୋଇ ଦେଶକୁ ଦୁର୍ବଳ କରି ରଖିଛି, ତାହା ବଦଳି ଯାଇ ଭାରତକୁ ଏକତାବଦ୍ଧ କରିବ । ଏଇ ଏକତାବଦ୍ଧ ଆଗାମୀ କାଲିର ଭାରତକୁ ସୁଦୃଢ, ସଭ୍ୟ, ଶିକ୍ଷିତ ଓ ଧନଶାଳୀ କରିବ । ଅତୀତରେ ଭାରତ ଉପରେ ଯେତେଥର ବୈଦେଶିକ ଆକ୍ରମଣ ହୋଇଛି, ଅସ୍ପୃଶ୍ୟମାନେ ପ୍ରତିହିତ କାର୍ଯ୍ୟରେ ସାମିଲ ହୋଇ ନାହାନ୍ତି । ଜାତୀୟ ସ୍ୱାର୍ଥଠାରୁ ସେମାନଙ୍କୁ ସବୁବେଳେ ଅଲଗା କରି ରଖାଯାଇଛି । ଫଳରେ ମାନବ ସମ୍ବଳର ଅପଚୟ ହୋଇଛି । ଏହାକୁ ଲକ୍ଷ କରି ଓଡିଶାର ସୂର୍ଯ୍ୟବଂଶୀ ରାଜାମାନଙ୍କ ପରି ଭାରତର ଅଳ୍ପ କେତେଜଣ ରାଜା ସେମାନଙ୍କ ସୈନ୍ୟବାହିନୀରେ ଏମାନଙ୍କୁ ନିଯୁକ୍ତି ଦେଇ ଶତ୍ରୁ ଆକ୍ରମଣରୁ ନିଜ ରାଜ୍ୟକୁ ରକ୍ଷାକରିଥିଲେ । ଗାନ୍ଧିଜୀ ନିଜେ ଦେଶସାରା ବୁଲି ଅସ୍ପୃଶ୍ୟତା ନିବାରଣ ପାଇଁ ପ୍ରଚାର କରିଥିଲେ ଏବଂ ତାଙ୍କ କଂଗ୍ରେସ ଦଳର କର୍ମୀ ମାନଙ୍କ ଦ୍ୱାରା ଏ କାମ କରିବା ସାଙ୍ଗେ ସାଙ୍ଗେ ତାଙ୍କ ହରିଜନ ପତ୍ରିକାକୁ ଏ ବାର୍ତ୍ତାର ପ୍ରଚାର ପାଇଁ ମୁଖପାତ୍ର କରିଥିଲେ । କେବଳ ତାଙ୍କରି ପାଇଁ ଅସ୍ପୃଶ୍ୟତା ବହୁ

ପରିମାଣରେ କମିଯାଇଛି ଏବଂ ଶିକ୍ଷାର ପ୍ରସାର ହେତୁ ସେମାନେ ତାଙ୍କର ମାନବ ସମ୍ବଳକୁ ଉପଯୁକ୍ତ ଭାବରେ ବିନିଯୋଗ କରିପାରୁଛନ୍ତି । ଆଜି ସିନା ପୁରୁଣା ହୋଇଗଲାଣି, କିନ୍ତୁ ଏ କ୍ଷେତ୍ରରେ ସେ ଯେଉଁ ନୂତନ ଚେତନାର ଅଭ୍ୟୁଦୟ ଘଟାଇଥିଲେ, ତାହା କେବଳ ଭାରତ ନୁହେଁ, ଦକ୍ଷିଣ ଆଫ୍ରିକା ଓ ଆମେରିକା ଭଳି ଦେଶରେ ମଧ୍ୟ ଏକ ନବଜାଗରଣ ସୃଷ୍ଟି କରିଥିଲା । ଶ୍ରୀମଦ୍ ଭାଗବତର ବର୍ଣ୍ଣିତ ଚାରିବର୍ଣ୍ଣର ସୃଷ୍ଟି ସଂପର୍କରେ ଲୋକଙ୍କୁ ବୁଝାଇବା ସହିତ ପ୍ରତ୍ୟେକ ମଣିଷର ଶରୀର ସମାନ ଉପାଦାନରେ ଗଠିତ ଏବଂ ପ୍ରତ୍ୟେକ ମଣିଷର ରକ୍ତ ସମାନ ଇତ୍ୟାଦି ଯାହା ସେ ପ୍ରଚାର କରୁଥିଲେ, ତାକୁ ପ୍ରତିବାଦ କରିବା ପାଇଁ ସ୍ୱାର୍ଥାନ୍ୱେଷୀ ସମାଜପତି ମାନଙ୍କର ସାହାସ ନ ଥିଲା । ତାଙ୍କରି ମାର୍ଗଦର୍ଶନ ହିଁ ଆଜି ଦୁର୍ବଳ ଶ୍ରେଣୀର ଲୋକଙ୍କୁ ସେମାନଙ୍କ ଅଧିକାର ପ୍ରତି ସଚେତନ କରିଛି ଏବଂ ସାମାଜିକ, ଆର୍ଥିକ ରାଜନୈତିକ ସ୍ଥିତାବସ୍ଥାର ଘୋର ପରିବର୍ତ୍ତନ ଘଟାଇଛି ।

ସେ ଦିନ ପ୍ରଚଣ୍ଡ ଗ୍ରୀଷ୍ମରେ ଗାନ୍ଧିଜୀ ମୁଣ୍ଡରେ ଖଣ୍ଡେ ଓଦା ଗାମୁଛା ପକାଇ ଦିଲ୍ଲୀର ଏକ ସହର ତଳି ଅଂଚଳରେ ଜଣେ ଦରିଦ୍ର କୁଡିଆରେ ବିଶ୍ରାମ ନେଉଥିଲେ । ପାଖରେ ଘେରି ରହିଥିଲେ ଅନେକ କଂଗ୍ରେସ କର୍ମୀ ଓ ସାଧାରଣ ଲୋକେ । ଗାନ୍ଧିଜୀ ଦେଖିଲେ, ଯେଉଁ ଦିନ ସେ ସାରାଭାରତକୁ ତାଙ୍କ ନେତୃତ୍ୱ ବଳରେ ଏକତ୍ର କରି ରଖି ପାରିବେ ବୋଲି ମାଉଣ୍ଟବେଟେନ୍‌ଙ୍କୁ କହିଥିଲେ ଓ ଜିନାଙ୍କ ନେତୃତ୍ୱରେ ସରକାର ଗଢିବାକୁ ପ୍ରସ୍ତାବ ଦେଇଥିଲେ, ସେଇଦିନଠାରୁ ଯେଉଁ କଂଗ୍ରେସ ନେତାମାନଙ୍କୁ ଗତ ତିରିଶ ବର୍ଷ ସେ ଧରି ତିଆରି କରି ଆସିଥିଲେ, ସେମାନେ ତାଙ୍କଠାରୁ କରଛଡା ଦେଇ ବୁଲୁଛନ୍ତି କାହିଁକି ? ତିରିଶବର୍ଷ ଧରି ତାଙ୍କ ନେତୃତ୍ୱରେ ସେମାନେ କାମ କରୁଥିଲେ ନିଜ ସ୍ୱାର୍ଥପାଇଁ, ଆଜି ତାଙ୍କୁ ଛାଡିଦେଉଛନ୍ତି ସ୍ୱାର୍ଥ ପାଇଁ, ସ୍ୱାଧିନ ଭାରତରେ ସେମାନେ ଉଚ୍ଚ କ୍ଷମତାରେ ଅଧିଷ୍ଠିତ ହେବେ, ଏହା ହିଁ ସେମାନଙ୍କର ସ୍ୱାର୍ଥ । ସ୍ୱାର୍ଥ ପାଖରେ ସମସ୍ତେ ବନ୍ଧା ପଡିଛନ୍ତି । ବୃହତର ସ୍ୱାର୍ଥପାଇଁ ବ୍ୟକ୍ତିଗତ ସ୍ୱାର୍ଥ ଛାଡିବା, ଏ ବିଚାର ସେମାନଙ୍କର ନାହିଁ । ଲୌହମାନବ ଭାବରେ ଯେଉଁ ପଟେଲ ପରିଚିତ,

ପ୍ରଚଣ୍ଡ ଶକ୍ତିର ଅଧିକାରୀ ହୋଇ ମଧ୍ୟ ମାଉଣ୍ଟବେଟେନଙ୍କ ବିଭାଜନ ପ୍ରସ୍ତାବ ଆଗରେ ସିଏ ବି ଆଜି ହୀନବଳ । କଂଗ୍ରେସ ଦଳକୁ ଏକତ୍ର କରି ରଖିବା ତାଙ୍କ ପକ୍ଷରେ ଅସମ୍ଭବ, ଏଣେ ଜିନାଙ୍କ ନେତୃତ୍ୱରେ ଭାରତ ସରକାର ଗଠିତ ହେବାର ଭୟ ତାଙ୍କୁ ଅସହାୟ ଓ ନିରୁପାୟ କରିଛି। ତେବେ ସେ କ'ଣ କରିବେ ? ଗୃହଯୁଦ୍ଧ ଦେଖି ମ୍ରିୟମାଣ ଭୀଷ୍ମ ବାଧ୍ୟ ହୋଇ ଇଛାକୃତ ଶରଶଯ୍ୟା କରିଥିଲେ। ଏହା କ'ଣ ତାଙ୍କ ପାଇଁ ଏକ ବିକଳ୍ପର ବାଟ ? ଅହିଂସା, ମୌନବ୍ରତ ଓ ଅନଶନ, ତାଙ୍କର ଅସ୍ତ୍ର। ସେଇ ଅସ୍ତ୍ରର ପ୍ରହାରରେ କାଲି ଯେଉଁମାନେ ଧରାଶାୟୀ ହେଉଥିଲେ ଆଜି ସେମାନେ ହିଂସାକୁ ଆଦରି ନେବା ପାଇଁ ବାଧ୍ୟ। ତେବେ ତାଙ୍କର ଅହିଂସା ମନ୍ତ୍ର କ'ଣ ବ୍ୟର୍ଥ ? ନା, ଅହିଂସାର ପରାଜୟ ନାହିଁ, ସେ ଅଜେୟ, ତାର ଶେଷ ନାହିଁ, ତେବେ ସେ କ'ଣ କରିବେ। ତାଙ୍କର ମନେ ପଡିଲା ଗୀତାରେ ଶ୍ରୀକୃଷ୍ଣଙ୍କର କର୍ମସନ୍ୟାସ କଥା। ସେ ସେଇ ପଥ ବାଛିନେବେ, ଅନାସକ୍ତ କର୍ମଯୋଗ। ଅନାସକ୍ତ କର୍ମଯୋଗୀର ପୁଣି ଦୁଃଖ କ'ଣ ? ଗାନ୍ଧି ଆଶ୍ୱସ୍ତ ହେଲେ ତାଙ୍କ ପାଖରେ ରୁଣ୍ଡ ହୋଇଥିବା ଲୋକେ ପଚାରିଲେ, ବାବୁଜି ଏ ସଂକଟମୟ ମୂହୁର୍ତ୍ତରେ ଆମ ପାଇଁ କ'ଣ ଆପଣଙ୍କର ନିର୍ଦ୍ଦେଶ ? କର୍ମ ସନ୍ୟାସ ଯୋଗ, ପାରିବ ତ ? ସମସ୍ତେ ସମସ୍ତଙ୍କ ମହୁଁକୁ ଚାହିଁଲେ। ଗାନ୍ଧି ଗୋଟିଏ ମିନିଟ୍ ପାଇଁ ଆଖି ବନ୍ଦ କରି ଧ୍ୟାନ ମୁଦ୍ରାରେ ବସିଲେ। ଆଖି ଖୋଲିଲା ବେଳକୁ ଆଉ କେହି ସେଠାରେ ନଥିଲେ। ମନୁ ପାଷାଣୀ ଅହଲ୍ୟା ପରି ନୀରବରେ ବସି ଅଶ୍ରୁମୋଚନ କରୁଥିଲେ। ଗାନ୍ଧିଜୀ ଭାବୁଥିଲେ, କେତେ ନଚାଇବୁ ଆଉ ଗୋପାଳ ! ତଥାପି ଗାନ୍ଧି ଆଶା ଛାଡି ନ ଥିଲେ। ନେହେରୁ ଓ ପଟେଲଙ୍କ ସହ ତାଙ୍କର ଆଲୋଚନା ହେବା ଅତ୍ୟନ୍ତ ଜରୁରୀ ବୋଲି ତାଙ୍କର ମନେ ହେଲା। ଅନିଛା ସତ୍ତ୍ୱେ ସେମାନେ ଆସିଲେ । ଗାନ୍ଧିଜୀ କହିଲେ, ଅଖଣ୍ଡ ଭାରତ ମୋର ଜୀବନର ବ୍ରତ। ତୁମେ କ'ଣ ଏ କଥା ଚାହଁନା ? ସେମାନେ ଅନେକ ସମୟ ଧରି ନୀରବରେ ଭାବିଲେ। ଗାନ୍ଧିଙ୍କ ଆଦର୍ଶରେ ଅନୁପ୍ରାଣୀତ ହେବାର ଗୋଟାଏ ସୀମା ଅଛି। ସେମାନଙ୍କର ଶତୃ ଜିନାଙ୍କ ନେତୃତ୍ୱରେ ଭାରତ ସରକାର ଗଠିତ ହେଲେ, ତାକୁ

ସେ କିପରି ଗ୍ରହଣ କରିବେ ? ତେବେ ତାଙ୍କୁ କ'ଣ ଆଉ ଥରେ ସାମ୍ରାଜ୍ୟ ବିସ୍ତାର କରିବାକୁ ହେବ ? ତା ହେଲେ ସ୍ୱାଧିନତାର ମୂଲ୍ୟ କ'ଣ ? ଏଇ ସ୍ୱାଧିନତା ପାଇଁ ଅଗଣିତ ଲୋକ ପ୍ରାଣବଳୀ ଦେଇଛନ୍ତ । କାରାବରଣ କରିଛନ୍ତି, ସର୍ବସ୍ୱାନ୍ତ ହୋଇଛନ୍ତି, କେତେ ପିତା ପୁତ୍ରହରା, କେତେ ପୁତ୍ର ପିତୃହରା ଆଉ କେତେ ରମଣୀ ବୈଧବ୍ୟର ଦାରୁଣ ଯନ୍ତ୍ରଣାରେ ଛଟପଟ ହୋଇଛନ୍ତି ଏବଂ କେତେ ଜାତୀୟ ସଂପତ୍ତି ଧ୍ୱଂସ ହୋଇଛି । ଜିନାଙ୍କ ନେତୃତ୍ୱରେ ସରକାର ଗଠିତ ହେଲେ ତାକୁ ଗ୍ରହଣ କରିବା ଅସମ୍ଭବ । ତା ହେଲେ ହିଂସାକାଣ୍ଡର ମାତ୍ରା ଆହୁରି ବଢିଯିବ । ଭାରତ ବିଭାଜନ ହେଲେ ହିଂସାକାଣ୍ଡର ମାତ୍ରା କମିଯିବ ନିଶ୍ଚୟ । ଦିନେ ଦୁଇଦିନ ପରେ ସମସ୍ତେ ପ୍ରକୃତିସ୍ଥ ହୋଇ ଆପଣା ବାଟରେ ଚାଲିଯିବେ । ଅଖଣ୍ଡ ଭାରତ ପାଇଁ ଜିଦ୍ ଧରି ବସିଲେ ହିଂସାକାଣ୍ଡ ଲାଗିରହିବ, ଅରାଜକତା ଖେଳିଯିବ । ଗାନ୍ଧିଙ୍କର ଅଖଣ୍ଡ ଭାରତ ପ୍ରସ୍ତାବକୁ ଗ୍ରହଣ କରିବା ଅସମ୍ଭବ । ଗାନ୍ଧି ଆଉ ଥରେ ପଚାରିବା ପୂର୍ବରୁ ସେମାନେ ଉଠି ଚାଲି ଯାଇଥିଲେ । ଯନ୍ତ୍ରଣାର ତରଙ୍ଗଟିଏ ସର୍ବାଙ୍ଗରେ ତାଙ୍କର ଖେଳିଗଲା ପ୍ରକୃତିସ୍ଥ ହେଲା ପରେ । ଭଗ୍ନ ହୃଦୟ ଗାନ୍ଧି ଭାଇସରାଏଙ୍କୁ ଜଣାଇ ଦେଲେ, କଂଗ୍ରେସ ଦଳକୁ ସାଥିରେ ନେବାପାଇଁ ସେ ଅସମର୍ଥ । ଜିନାଙ୍କ ସହିତ ଆଲୋଚନା କରିବାକୁ ମାଉଣ୍ଟବେଟେନ ଉଚିତ୍ ମନେ କଲେ । ଜିନା ଆସିଲେ, ଜଣେ ପଦସ୍ଥ କର୍ମଚାରୀ ତାଙ୍କୁ ଆଦର ଯତ୍ନ କରି ଭାଇସରାଏଙ୍କ ବୈଠକ କକ୍ଷରେ ନେଇ ବସାଇଲେ ଓ ତାଙ୍କ ଆସିବା ଖବର ମାଉଣ୍ଟବେଟନଙ୍କୁ ଜଣାଇଲେ । ଆଗ୍ରହରେ ଅପେକ୍ଷା କରିଥିବା ଭାଇସରାଏ ଆସି ଆସନ ଗ୍ରହଣ କରି ତାଙ୍କୁ ଚାହିଁଲେ । ତାଙ୍କ ପଛେ ପଛେ ଆସିଲେ ଇଡୁଇନ୍ । ଜିନା ଦିଶୁଥିଲେ ଦୃଢପ୍ରତିଜ୍ଞ ଅଟଳ ବିଗ୍ରହ ପରି । ମନେ ହେଉଥିଲା ସତେ ଯେମିତି ପାଦେ ବି ପଛକୁ ହଟିବା ପାଇଁ ପ୍ରସ୍ତୁତ ନୁହଁନ୍ତି । ମାଉଣ୍ଟବେଟେନ ତାଙ୍କୁ ସାଙ୍ଗରେ ରଖି ଫଟୋ ଉଠାଇବା ଜାଣି ସେ ନିଜକୁ ସଜାଡି ନେଉ ନେଉ ଭାବିଲେ, ତାଙ୍କୁ ଦୁଇଙ୍କ ମଝିରେ ରଖି ଫଟୋ ଉଠାହେବ । ମାତ୍ର ଦୁହିଁଙ୍କ ମଝିରେ ଆସି ଠିଆ ହୋଇଗଲେ ଇଡୁଇନ୍ । ଦୁଇଟି ଶକ୍ତ କଣ୍ଟା ମଝିରେ ସତେ ଯେମିତି

ଫୁଟିଲା ସତେଜ ଗୋଲାପଟିଏ ପରି । ଫଟୋ ଉଠିଲା ଦୁହେଁ ଆସି ବସିଲେ । ଜିନାଙ୍କ ସହିତ ଏହା ଥିଲା ମାଉଣ୍ଟବେଟେନଙ୍କର ପ୍ରଥମ ସାକ୍ଷାତ୍ ଆଉ ଜିନା ଥିଲେ ସବୁ ଭାରତୀୟ ନେତାମାନଙ୍କ ମଧ୍ୟରେ ପ୍ରଥମ ନେତା, ଯିଏ ଶେଷଥର ପାଇଁ ଭାଇସରାଏଙ୍କ ବୈଠକ କୋଠରୀକୁ ଆସିଥିଲେ । ମାଉଣ୍ଟବେଟେନ ପଚାରିଲେ how do you to ? ଜିନ୍ନା ଉତ୍ତର ଦେଲେ I am still at my place, ମାଉଣ୍ଟବେଟେନ ତାଙ୍କୁ ଖୁବ୍ ଦମ୍ଭ ଓ ଗମ୍ଭୀର ଦେଖି ତାଙ୍କ ସାଙ୍ଗରେ ବନ୍ଧୁତ୍ୱପୂର୍ଣ୍ଣ ଆଳାପ କଲେ । ଜିନା କିନ୍ତୁ ଥିଲେ ଜଣେ କଠୋର ନେତା, ଯିଏ ସିଧା ଭାବରେ ଆଲୋଚ୍ୟ ପ୍ରସଙ୍ଗକୁ ଆସିବା ଲୋକ । ବୃଥା ଆଲୋଚନାରେ ସମୟ କାଟିବାକୁ ସେ ପସନ୍ଦ କରନ୍ତି ନାହିଁ । କିଛି ସମୟ ବନ୍ଧୁତ୍ୱପୂର୍ଣ୍ଣ ଆଲୋଚନା ପରେ ଜିନା ନିଜକୁ ଖୁବ୍ ସହଜ କରିନେଲେ । ତାଙ୍କ ପରିବାର ଗୁଜୁରାଟର କାଥିଆୱାର୍ଡରୁ ଆସିଥିଲେ ଏବଂ ତାଙ୍କ ଜେଜେ ବାପା ଧର୍ମାନ୍ତର ଗ୍ରହଣ କରି ମୁସଲମାନ ହୋଇଯାଇଥିଲେ । ତା ନ ହୋଇଥିଲେ ଦୁଇ ପରସ୍ପର ଶତ୍ରୁ ଗାନ୍ଧି ଓ ଜିନା ଏକା ସଂପ୍ରଦାୟର ଲୋକ ହୋଇଥାନ୍ତେ । ଦୁହିଁଙ୍କ ଭିତରେ ଥିଲା ରାଜନୈତିକ ଶତୃତା । ଯେଉଁ ଜିନା ଦିନେ ପାକିସ୍ଥାନର ଜନ୍ମଦାତା ଭାବେ ସମ୍ମାନୀତ ହେବେ, ସେଇ ଜିନା ଦିନେ ୧୯୩୩ ମସିହା ବସନ୍ତ ଋତୁରେ ଥିଲେ ଲଣ୍ଡନର Waldrof ହୋଟେଲରେ ରିହାମତ ଅଲ୍ଲୀ ନାମକ ଜଣେ ଗ୍ରାଜୁଏଟଙ୍କର ଅତିଥି । ସେ ହିଁ ପ୍ରଥମେ ପାକିସ୍ଥାନ ନାମରେ ମୁସଲମାନ ରାଷ୍ଟ୍ର ଗଠନ କରିବାର ପ୍ରସ୍ତାବ ଦେଇଥିଲେ ଏବଂ ଏ ପ୍ରସ୍ତାବ ଶୁଣୁ ଶୁଣୁ ଜିନା କହିଥିଲେ, Pakistan, Imposisble dream ତଥାପି ରିହାମତ ତାଙ୍କୁ ଜଣେ ମୁଖ୍ୟ ନେତା ଭାବରେ ଏ ଦିଗରେ କାର୍ଯ୍ୟ କରିବାକୁ ଅନୁରୋଧ କରିଥିଲେ । କିନ୍ତୁ ତାଙ୍କର ରାଜନୈତିକ ଜୀବନ ସେ ଆରମ୍ଭ କଲେ ହିନ୍ଦୁ ମୁସଲିମ୍ ମଧ୍ୟରେ ଏକତା ଆଣିବାକୁ ଜଣେ ଶାନ୍ତିପ୍ରିୟ ନେତା ଭାବରେ । ଲଣ୍ଡନରୁ ଲ' ପାଶ୍ କରି ସେ ଭାରତ ଫେରିଲା ବେଳକୁ ତାଙ୍କର ଖାଦ୍ୟପେୟ, ପୋଷାକ ପରିଛନ୍ନ ଓ ଜୀବନ ଶୈଳୀ ସଂପୂର୍ଣ୍ଣ ବଦଳି ଯାଇଥିଲା ଏବଂ ସେ ଜଣେ ପୁରା ସାହେବ ପରି ହୋଇ ଯାଇଥିଲେ । ସେ

ସବୁବେଳେ ସୁନ୍ଦର ଓ ସ୍ୱତନ୍ତ୍ର ଭାବେ ତିଆରି ହୋଇଥିବା ସୁଟ୍ ପିନ୍ଧୁଥିଲେ ଏବଂ ଦିନକୁ ତିନି ଚାରିଥର ପୋଷାକ ବଦଳାଉ ଥିଲେ । ବମ୍ବେ ସହରର ଧୂଳିମଳିରୁ ରକ୍ଷାପାଇବା ପାଇଁ। ଭଲମନ୍ଦ ପ୍ରତି ତାଙ୍କର ଖୁବ୍ ସୌକ ଥିଲା। ଆଇନ ବିଦ୍ୟାରେ ତାଙ୍କର ଭଲ ଜ୍ଞାନ ଥିଲା । ଜଣେ ଖୁବ୍ ବୁଦ୍ଧିମାନ ଓକିଲ ଭାବରେ ତାଙ୍କର ନା ଥିଲା ଓ ସେ ରାଜନୀତିରେ ଯୋଗଦେଇ ଦଶବର୍ଷ କାଳ ବ୍ରିଟିଶ୍ ବିରୁଦ୍ଧରେ କଂଗ୍ରେସ ଦଳର ହିନ୍ଦୁ ମୁସଲମାନ ମାନଙ୍କ ମଧ୍ୟରେ ଏକତାକୁ ଦୃଢ଼ କରିବା ପାଇଁ ଆନ୍ତରିକ ଉଦ୍ୟମ କରିଥିଲେ ଅର୍ଥାତ୍ ସେ ଥିଲେ ବ୍ରିଟିଶ୍ ବିରୋଧି ଓ ଅଖଣ୍ଡ ଭାରତର ପୂଜାରୀ। ଗାନ୍ଧିଙ୍କ ସାଙ୍ଗରେ ତାଙ୍କର ଶତୃତା ଆରମ୍ଭ ହେଲା ଯେତେବେଳେ ଗାନ୍ଧି କଂଗ୍ରେସ ଦଳର ସର୍ବମୟ କର୍ତ୍ତା ହୋଇ ଉଠିଲେ। Civil disobedience ପାଇଁ ଆହ୍ୱାନ ଦେଇ ଗାନ୍ଧି ଯେତେବେଳେ ସଫଳତାର ପାହାଚ ଚଢ଼ିଲେ, ଜିନା ସେତେବେଳ ଗାନ୍ଧିଙ୍କୁ କହିଲେ ଏ ଆହ୍ୱାନ କେବଳ ନିର୍ବୋଧ ଓ ଅଶିକ୍ଷିତ ମାନଙ୍କ ପାଇଁ civil disobedience is for ignorant and the illeterate" ୧୯୩୭ ମସିହା ନିର୍ବାଚନ ପରେ କଂଗ୍ରେସ ଦଳ ତାଙ୍କ ସହିତ କୌଣସି ବୁଝାମଣା କରିବ ନାହିଁ କି ମୁସଲମାନ ବହୁଳ ରାଜ୍ୟ ମାନଙ୍କରେ ସେମାନଙ୍କୁ କୌଣସି କ୍ଷମତା ଦିଆଯିବ ନାହିଁ ବୋଲି ଯେତେବେଳେ କହିଲେ, ସେତେବେଳେ ଜିନା ଖୁବ୍ ଆଘାତ ପାଇଲେ। ଜିନା ଥିଲେ ଅତ୍ୟନ୍ତ ଉଚ୍ଚାଭିଳାଷୀ ଓ ଅହଂକାରୀ। କଂଗ୍ରେସ ଦଳର ଏ ଘୋଷଣା ତାଙ୍କୁ ଖୁବ୍ ଆଘାତ ଦେଲା ଏବଂ କଂଗ୍ରେସ ଶାସିତ ଭାରତରେ ସେ କିମ୍ବା ତାଙ୍କ ମୁସଲିମ୍ ଲିଗ୍ କୌଣସି ନ୍ୟାୟୋଚିତ ବିଚାର ପାଇବେ ନାହିଁ ବୋଲି ତାଙ୍କର ହୃଦବୋଧ ହେଲା। ସେହିଦିନଠାରୁ କଂଗ୍ରେସ ଦଳ ତାଙ୍କ ଆଖିରେ ଶତ୍ରୁ ହୋଇଗଲା। ନେହେରୁ ଓ ପଟେଲଙ୍କୁ ପଛରେ ପକାଇ ସେ ହୋଇଗଲେ ଗାନ୍ଧିଙ୍କର ସିଧାଶତୃ । ସେ ଭାବିଲେ ଆଜି ପର୍ଯ୍ୟନ୍ତ ସେ କଂଗ୍ରେସ ଓ ମୁସଲିମ୍ ମଧ୍ୟରେ ଏକତା ଆଣିବା ପାଇଁ ଚେଷ୍ଟା କରିଛନ୍ତି। ପ୍ରତିଦିନ ସକାଳୁ ହିନ୍ଦୁଙ୍କ ଭଳି ସେ ଦାଢ଼ି କାଟିଛନ୍ତି। କୌଣସି ଶୁକ୍ରବାର ଦିନ ସେ ମସ୍‌ଜିଦକୁ ଯାଇ କୋରାନ ଆବୃତ୍ତି କରିନାହାଁନ୍ତି।

ଅବଶ୍ୟ ତାଙ୍କ ଠାରୁ ଗାନ୍ଧିଙ୍କର କୋରାନ୍ ବିଷୟରେ ଅଧିକ ଜ୍ଞାନ ଅଛି। ମାତ୍ର ସେ ମାୟାବି, ବଡ ଚତୁର। ମୁସଲିମ୍ ଲିଗ୍ ପ୍ରତି ତାଙ୍କର ଦରଦ କେବଳ ଛଳନା, ତେଣୁ ଗାନ୍ଧି ତାଙ୍କର ଶତ୍ରୁ। ଚାରିବର୍ଷ ତଳେ ରିହାମତ ତାଙ୍କୁ ପାକିସ୍ଥାନ ରାଷ୍ଟ୍ର ଗଢିବା ପାଇଁ ଯେଉଁ ପରାମର୍ଶ ଦେଇଥିଲେ ଏବଂ ଯାହାକୁ ସେ impossible dream ବୋଲି କହିଥିଲେ, ଆଜି ତାହା ହିଁ ତାଙ୍କୁ କରିବାକୁ ହେବ। ଭାରତରେ ମୁସଲିମ୍ ଲିଗ୍‌କୁ ତାଙ୍କୁ କ୍ଷମତାସୀନ କରିବାକୁ ହେବ। ହେଉ ପଛେ ଭାରତର ବିଭାଜନ। ଗାନ୍ଧି ଯେଉଁ ଅଖଣ୍ଡ ଭାରତର ସ୍ୱପ୍ନ ଦେଖୁଛନ୍ତି ତାକୁ ସେ ଭାଙ୍ଗି ଚୁରମାର କରିଦେବେ। ଗାନ୍ଧି ମଧ୍ୟ ଭାରତକୁ ଅଖଣ୍ଡ କରି ରଖିବା ପାଇଁ ଅସମର୍ଥ। କାରଣ କଂଗ୍ରେସ ଦଳ ଉପରେ ତାଙ୍କ ନେତୃତ୍ୱର ଶକ୍ତି ଦୁର୍ବଳ ହୋଇଗଲାଣି। ଭାରତକୁ ଅଖଣ୍ଡ କରି ରଖିବା ପାଇଁ ତାଙ୍କର ପଟ୍ଟଶିଷ୍ୟ ନେହେରୁ ଓ ପଟେଲ ମଧ୍ୟ ଆଉ ତାଙ୍କ ସାଙ୍ଗରେ ନାହାଁନ୍ତି। ସେମାନେ ବି କ୍ଷମତା ପାଇଁ ପାଗଳ। ହିଂସାକାଣ୍ଡ ରୋକିବା ପାଇଁ ଏବେ କେହି ସମର୍ଥ ନୁହଁନ୍ତି। ତେଣୁ କ୍ଷମତା ଦଖଲ କରିବାକୁ ଏଇଟା ତାଙ୍କ ପାଇଁ ସୁବର୍ଣ୍ଣ ସୁଯୋଗ। ମୁସଲିମ୍ ଲିଗ୍‌କୁ ତାଙ୍କୁ ଆହୁରି ଶକ୍ତିଶାଳୀ କରିବାକୁ ହେବ। ଅହଂକାରରେ ସେ ଜର୍ଜରିତ ହୋଇ ଉଠିଲେ।

ଜିନା ଭୋଗବିଳାସ ପ୍ରାଚୁର୍ଯ୍ୟ ଭିତରେ ଜୀବନକୁ ଆକଣ୍ଠ ଉପଭୋଗ କରିଛନ୍ତି। ଏ.ସି. ରୁମ୍‌ରେ ଜୀବନ କାଟିବା ତାଙ୍କର ଅଭ୍ୟାସ। ଧୂଳିମାଟିରେ ଆବର୍ଜନାପୂର୍ଣ୍ଣ ଭାରତର ରାସ୍ତାଘାଟ ପ୍ରତି ତାଙ୍କର ଉତ୍କଟ ଘୃଣା। ଖରା, ବର୍ଷା, ଶୀତରେ ବାହାରେ ବୁଲି କାମ କରିବା ଯେପରି ତାଙ୍କର ପ୍ରକୃତି ବିରୁଦ୍ଧ, ସଭା ସମିତିରେ ଲୋକ ଗହଳି ମଧ୍ୟ ତାଙ୍କ ପାଇଁ ସେହିପରି ବିଷତୁଲ୍ୟ। ରାଜନୀତିରେ ସଂଘର୍ଷ କ'ଣ ସେ ଜାଣନ୍ତି ନାହିଁ, ଜୀବନରେ କିଛି ବୋଲି କିଛି ତ୍ୟାଗ ନାହିଁ। ଗଣତାନ୍ତ୍ରିକ ବ୍ୟବସ୍ଥାରେ ଲୋକବଳ ହିଁ ରାଜନୀତିରେ ପ୍ରଧାନ ସମ୍ବଳ। ପୃଥିବୀର ପ୍ରତ୍ୟେକ ଦେଶରେ ରାଜନେତାମାନେ ଅଧିକରୁ ଅଧିକ ଲୋକସଂପର୍କ ପାଇଁ ବ୍ୟାକୁଳ। ଲୋକଙ୍କ ସାଙ୍ଗରେ ରହିବା ଏବଂ ସେମାନଙ୍କ ସମସ୍ୟା ସହିତ ଜଡିତ ରହିବା ରାଜନେତା

ମାନଙ୍କର ପ୍ରଧାନ କାମ । ଜିନା ସେ ସବୁ କିଛି ଜାଣନ୍ତି ନାହିଁ କି ଜାଣିବା ଆବଶ୍ୟକ ମନେ କରନ୍ତି ନାହିଁ। ନିଜ ମାତୃଭାଷାରୁ ଦୁଇପଦ ନିର୍ଭୁଲ ଭାବରେ କହିପାରନ୍ତି ନାହିଁ କି ଲେଖିପାରନ୍ତି ନାହିଁ। ସେଇ ଜିନା ଆଜି ପାକିସ୍ଥାନର ଜାତିପିତା ଏବଂ ରାଷ୍ଟ୍ରପତି ହେବାକୁ ଯାଉଛନ୍ତି। ସମୟର କି ବିଚିତ୍ର ଲୀଳା। ଜୀବନ ବ୍ୟାପୀ କାମ କରି କେହି କେହି କ୍ଷମତାର ସ୍ୱାଦ ଚାଖିପାରନ୍ତି ନାହିଁ, ଆଉ କେହି କିଛି ନ କରିବି, ହାତୀ ତାଙ୍କ ମୁଣ୍ଡରେ ସୁନା କଳସ ଢାଳିଦିଏ। ହିନ୍ଦୁ ଦର୍ଶନରେ ଏହାକୁ ପୂର୍ବଜନ୍ମର ପ୍ରାରବ୍ଧ ବୋଲି କୁହାଯାଏ, ପିତା ମାତାଙ୍କର ମୁସିଲିମ୍ ଧର୍ମ ହେତୁ ସେ ଜଣେ ମୁସଲମାନ ବୋଲି ପରିଚିତ। ନ ହେଲେ ତାଙ୍କୁ ମୁସଲମାନ ବୋଲି କହିବାର କିଛି କାରଣ ନାହିଁ। ଖାଇବା ପିଇବା, ପୋଷାକ ପରିଚ୍ଛଦ ଆଉ ରଙ୍ଗ ଢଙ୍ଗ ସବୁଥିଲେ ବିଲାତି କାଇଦା, ଏପରିକି ଇଂରେଜୀ ଭାଷା ତାଙ୍କର ମାତୃଭାଷା ପରି। ତଥାପି ଭାରତର କୋଟି କୋଟି ମୁସଲମାନଙ୍କର ସେ ଅଦ୍ୱିତୀୟ ନେତା। ଜନଗହଳିକୁ ସେ ଭଲ ପାଆନ୍ତି ନାହିଁ କି, ଜନଗହଳି ପୂର୍ଣ୍ଣ ଉତ୍ସବାନୁଷ୍ଠାନକୁ ଯିବାପାଇଁ ତାଙ୍କର ଘୋର କୁଣ୍ଠା। କେତେବେଳେ ବା କେମିତି ଯଦି ଭାରତର ମୁସଲିମ୍ ବହୁଳ ସହର ମାନଙ୍କୁ ସେ ଯାଆନ୍ତି, ସାଙ୍ଗରେ ଥାଏ ବାଣ ବାଜା, ରୋଷଣୀର ପଟୁଆର, ଚାଟୁକାର ମାନଙ୍କର ଜୟ ଜୟ ଧ୍ୱନୀ ଏବଂ ରୂପା ଛାଉଣିରେ ସୁସଜ୍ଜିତ ହାତୀ ଉପରେ ଜଣେ ରାଜାଠାଣୀରେ ବସି ମହା ଆଡମ୍ବରରେ ସେ ଯାଆନ୍ତି। ତାଙ୍କ ପ୍ରାସାଦର ଶୋଭାମୟ ବଗିଚା ଦେଖି ବହୁ ବିତ୍ତଶାଳୀମାନେ ଈର୍ଷା କରନ୍ତି। ଆଇନ ଶାସ୍ତ୍ର ଓ ଖବର କାଗଜଛଡା ସେ ପ୍ରାୟ ଆଉ କିଛି ପଢନ୍ତି ନାହିଁ। ସାରା ପୃଥିବୀର ଅସଂଖ୍ୟ ଖବର କାଗଜ ସେ ମଗାନ୍ତି ଏବଂ ପ୍ରତ୍ୟେକ କାଗଜରେ ପ୍ରକାଶିତ ଭଲ ଭଲ ଅଂଶ ଗୁଡିକୁ କାଟି ତାଙ୍କ ଅଫିସରେ ଥାକ ମାରି ରଖନ୍ତି। ଗାନ୍ଧି, ନେହେରୁ, ପଟେଲଙ୍କ ପ୍ରତି ତାଙ୍କର ଅଶେଷ ଘୃଣା । ନେହେରୁ ତାଙ୍କ ଆଖିରେ ଜଣେ ବିଲାତି ପ୍ରଫେସର, ପଟେଲ ଜଣେ ନିପଟ ମଫସଲି ଆଉ ଗାନ୍ଧିଜଣେ ଚତୁର ଶୃଗାଳ। ଜିନାଙ୍କ ପ୍ରାସାଦରେ ଥରେ ଗାନ୍ଧିଙ୍କ ସାଙ୍ଗରେ ସାକ୍ଷାତ ହୋଇଥିଲା। ସେତେବେଳେ ତାଙ୍କ ପେଟ ଉପରେ ଓଦା କପଡାର ପଟି

ଓ ବଗିଚାକୁ ଲାଗି ପର୍ଶିୟାନ୍ କାର୍ପେଟକୁ ଦେଖି ମୋ ମନରେ ତାଙ୍କ ପ୍ରତି ଦୟା ହୋଇଥିଲା । ଜିନାଙ୍କର କେହି ବନ୍ଧୁ ନ ଥିଲେ, ତାଙ୍କ ସାଙ୍ଗରେ ଅନେକ ଲୋକ ସହଯୋଗୀ ଥିଲେ । କିନ୍ତୁ ସେମାନଙ୍କ ଭିତରେ କେହି ତାଙ୍କର ଶିଷ୍ୟ ନ ଥିଲେ, ଥିଲେ କେବଳ ଅନୁଗାମୀ । ସେ ଏକୁଟିଆ ରହୁଥିଲେ ଏବଂ କେବଳ ଭଉଣୀକୁ ଛାଡି ପରିବାରର ଅନ୍ୟ ସମସ୍ତଙ୍କୁ ସେ ଉପେକ୍ଷା କରୁଥିଲେ । ତାଙ୍କର ସ୍ୱପ୍ନଥିଲା ପାକିସ୍ତାନ । ସେ ଥିଲେ ଛ' ଫୁଟ ଉଚ୍ଚର ଡେଙ୍ଗା ମଣିଷଟିଏ । ମାତ୍ର ଓଜନ ଥିଲା ୧ ୨ ୦ ପାଉଣ୍ଡ । ସେ ଥିଲେ ରୁଗ୍ଣ । କେବଳ ମଦ, ସିଗାରେଟ୍ ଏବଂ ଇଛାଶକ୍ତି ବଳରେ ସେ ବଂଚି ରହିଥିଲେ । କୁହାଯାଏ ଯେ, ସେ ଅନେକ ପାପ କାର୍ଯ୍ୟରେ ସଂପୃକ୍ତ କିନ୍ତୁ ଇଛାଶକ୍ତି ତାଙ୍କର ଅତୁଟ ଥିଲା ।

୧ ୯ ୪ ୭ ମସିହା ଏପ୍ରିଲ ମାସ ପ୍ରଥମ ପନ୍ଦର ଦିନ ଭିତରେ ମାଉଣ୍ଟ ବେଟେନ ଜିନାଙ୍କ ସହ ଛ' ଥର ଆଲୋଚନା କରିଥିଲେ ଏବଂ ଶେଷରେ ଭାରତର ରାଜନୈତିକ ସଂକଟର ସାମଧାନ ପାଇଁ ସୂତ୍ର ବାହାର କରିଥିଲେ । ପ୍ରକୃତରେ ଦେଖିବାକୁ ଗଲେ, ସେ ସମାଧାନର ସୂତ୍ର ବାହାର କରିବାକୁ ଅସମର୍ଥ ଥିଲେ, ଆଉ ଯାହାକୁ ସମାଧନାର ସୂତ୍ର ବୋଲି କୁହାଯାଇଛି, ତାହା ସମାଧାନର ସୂତ୍ର ନ ହୋଇ ସବୁଦିନ ପାଇଁ ସମସ୍ୟାକୁ ଜଟିଳ କରିଦେଲା । ହିନ୍ଦୁ ଓ ମୁସଲମାନ ମଧ୍ୟରେ ରାଜନୈତିକ ବିବାଦ ଥିଲା ଦୁଇ ସଂପ୍ରଦାୟ ମଧ୍ୟରେ ଧର୍ମଭାବନାକୁ ନେଇ । କିନ୍ତୁ ଜିନା ବିଭାଜନ ପାଇଁ ଜିଦ୍ ଧରିବାରୁ ପ୍ରଚଣ୍ଡ ହିଂସାକାଣ୍ଡ ଘଟି ଅସଂଖ୍ୟ ଜୀବନ ଓ ଧନହାନୀ ହେଲା ଏବଂ ଅଖଣ୍ଡ ଭାରତ ଦ୍ୱିଖଣ୍ଡିତ ହୋଇଗଲା । ଭାରତକୁ ପ୍ରକୃତି ଦେଇଛି ସୁରକ୍ଷାର କବଚ । ଭାରତ ମାତାର ମଥାରେ ହୀରାର ମୁକୁଟ । ଦୁଇ ପାର୍ଶ୍ୱରେ ସାଗର ମେଖଳା ଏବଂ ଦକ୍ଷିଣରେ ପାଦ ପଖାଳୁଛି ସାଗରର ନୀଳ ଜଳରାଶି । ପୁଣି ଅସଂଖ୍ୟ ନନ୍ଦନଦୀ ଓ ପାହାଡ ପର୍ବତ ସବୁ ଆକ୍ରମଣକାରୀର ଗତି ପଥରୋଧ କରୁଛି ବାରମ୍ବାର । ତଥାପି ମଣିଷର ଅସାଧ୍ୟ କିଛି ନାହିଁ । ଧନଧାନ୍ୟ ଗୋପଲକ୍ଷ୍ମୀ ଭରା ଭାରତ ଆକୃଷ୍ଟ କରି ଆସିଛି ଅନେକ ଲୁଣ୍ଠନକାରୀଙ୍କର ଲୋଲୁପ ଦୃଷ୍ଟିକୁ । ସେମାନଙ୍କ

ଭିତରୁ ଅନେକ ଆସି ହଜାର ହଜାର ବର୍ଷଧରି ଶାସନ କରିଛନ୍ତି ଓ ଯାଇଛନ୍ତି । କିନ୍ତୁ ଦେଶୀୟ ରାଜାମାନଙ୍କ ଭିତରେ ପ୍ରଚଣ୍ଡ ଶତୃତା ସତ୍ୱେ କେହି ଅଖଣ୍ଡତାକୁ ଭାଙ୍ଗି ଖଣ୍ଡ ଖଣ୍ଡ କରି ନାହାଁନ୍ତି କିମ୍ବା ଭାଙ୍ଗିବାକୁ ସମର୍ଥ ହୋଇନାହାଁନ୍ତି, ଅନ୍ତଃସଲିଳା ଭାରତୀୟ ଭାବନା ହେତୁ । ସେ ଭାବନାକୁ ଭାଙ୍ଗି ଅଖଣ୍ଡ ଭାରତକୁ ଖଣ୍ଡ ଖଣ୍ଡ କରିଦେଲେ ଜିନା, ନେହେରୁ, ପଟେଲ ଓ ସେମାନଙ୍କର ମୁସଲିମ୍ ଲିଗ୍ ଓ ଜାତୀୟ କଂଗ୍ରେସ ଦଳ । ସଂକୀର୍ଣ୍ଣ ସ୍ୱାର୍ଥକୁ ବୁଝି ସେମାନେ ଉର୍ଦ୍ଧ୍ୱକୁ ଉଠିପାରିଲେ ନାହିଁ । ପ୍ରକୃତରେ ସେମାନେ ଜାତୀୟତାବୋଧରେ ଉଦ୍‌ବୁଦ୍ଧ ହୋଇଥିଲେ ଉଭୟ ସଂପ୍ରଦାୟ ଭିତରେ ଥିବା ଶତୃତା କବଳରେ ସେମାନେ ଗଢିପାରିଥାନ୍ତେ ଭାତୃତ୍ୱର ସେତୁ । ଏ ଦୃଷ୍ଟିରୁ ଦେଖିଲେ ସେମାନେ ସମସ୍ତେ ବୈଦେଶିକ ଆକ୍ରମଣକାରୀଙ୍କ ଠାରୁ ଭାରତର ଅଧିକ ଶତୃ, ଜାତୀୟନେତା ନୁହଁନ୍ତି ସେମାନେ । ବିଭାଜନ କଲା ପରେ ବି ସେମାନେ କୋଉ ତ୍ୟାଗ ଓ ସେବାର ଆଦର୍ଶ ଦେଖାଇଲେ ? ସେମାନେ ବି ଆକ୍ରମଣକାରୀଙ୍କଠାରୁ ଅଧିକ ଶୋଷଣକାରୀ । ସେମାନଙ୍କ ଚତୁର କୌଶଳକୁ ବୁଝି ନ ପାରି ଅଖଣ୍ଡ ଭାରତର ଲୋକେ ସେମାନଙ୍କୁ ମୁକ୍ତିଦାତାର ସମ୍ମାନ ଦେଉଛନ୍ତି, କାହାକୁ ସେମାନେ ମୁକ୍ତ କଲେ ? ଅଖଣ୍ଡ ଭାରତକୁ କେହି ଯଦି ମୁକ୍ତ କରିଥାଏ ତେବେ ସେ ହେଲା, ଗାନ୍ଧିଙ୍କର ପ୍ରେମ ଓ ଅହିଂସା । ଏବେ ଏମାନେ ଖାଲି ଭୋଗର ଜାନୁଆର । କିଛି ନାହିଁ ତ୍ୟାଗ ଏମାନଙ୍କର । କିଛି ତ୍ୟାଗ ଏମାନେ କରିଛନ୍ତି ବୋଲି ଯେଉଁ ଅହଂକାର କରୁଛନ୍ତି, ସେତକ ନ କରିଥିଲେ ଭୋଗ ଓ ପ୍ରାଚୁର୍ଯ୍ୟ ଭିତରେ ଏମାନେ ଆଜି ବିଳାସମୟ ଜୀବନ କାଟୁଥାଆନ୍ତେ କିପରି ? ତ୍ୟାଗ ଅପେକ୍ଷା ଭୋଗ ଏମାନଙ୍କର ବେଶୀ । ରାଜା ମହାରାଜା ମାନଙ୍କଠାରୁ ଏମାନେ ବେଶୀ ଶୋଷଣ କରୁଛନ୍ତି । ନେହେରୁଙ୍କୁ ଜଣେ ଦୃଢ ଜାତୀୟତାବାଦୀ ନେତା ଭାବରେ ଫୁଲଚନ୍ଦନ ଦେଇ ପୂଜା କରାଯାଏ, ଜିନାଙ୍କ ଠାରୁ ବି ସେ କମ୍ ଭୋଗବିଳାସୀ ନୁହଁନ୍ତି । ମାଉଣ୍ଟବେଟେନଙ୍କ ବିଭାଜନ ପ୍ରସ୍ତାବକୁ ଜିନା ଗ୍ରହଣ କରିବା ପୂର୍ବରୁ ନେହେରୁ ଯଦି ଗାନ୍ଧିଙ୍କ ପ୍ରତି ବିଶ୍ୱାସ ଘାତକତା କରି ନ ଥାନ୍ତେ, ତେବେ ଅବସ୍ଥା ହୁଏତ ଭିନ୍ନ ମୋଡ ନେଇଥାନ୍ତା ।

ଗାନ୍ଧି ଏପରି ନିରାଶ ଅନୁଭବ କରି ନ ଥାନ୍ତେ । ସେଇ ନେହେରୁ ଗୃହମନ୍ତ୍ରୀଙ୍କ ଝିଅ ରୁବିଆକୁ ପଣବନ୍ଦୀରୁ ମୁକ୍ତ କରିବା ପାଇଁ, ଭାରତୀୟ ସେନା ସଂପୂର୍ଣ୍ଣ କାଶ୍ମୀରକୁ ଦଖଲ କରିବାକୁ ଯାଉ ଯାଉ ସେମାନଙ୍କୁ ଫେରାଇ ଆଣିବାକୁ ଆଦେଶ ଦେଇ ନ ଥାନ୍ତେ । ତା ହୋଇଥିଲେ କାଶ୍ମୀର ସମସ୍ୟା ସବୁଦିନ ପାଇଁ ସାମଧାନ ହୋଇ ଯାଇଥାଆନ୍ତା । ତେଣୁ ତାଙ୍କୁ ଅସଲ ଜାତୀୟତାବାଦୀ ନେତା କୁହାଯିବ କିପରି ? ସ୍ୱାର୍ଥ ତାଙ୍କୁ ଅନ୍ଧ କରିଦେଇଥିଲା । ଗାନ୍ଧି ଭାରତର ଆତ୍ମାକୁ ଜାଣିଥିଲେ, ନେହେରୁଙ୍କର ସେ ମହାନୁଭବତା ନ ଥିଲା । ସେ ଥିଲେ ଚରମ ସ୍ୱାର୍ଥପର । କାରଣ ସେ ଚାହିଁଥିଲେ ଭାରତ ଅଖଣ୍ଡ ହୋଇ ରହିପାରିଥାନ୍ତା । ବିଭାଜନର ଅନ୍ତିମ ପର୍ଯ୍ୟାୟରେ ମାଉଣ୍ଟବେଟେନ ଜିନାଙ୍କ ସହିତ ଯେଉଁ ଆଲୋଚନା କରିଥିଲେ ତାହା ପନ୍ଦର ଦିନ ଧରି ଚାଲିଥିଲା । ଅର୍ଥାତ୍ ନେହେରୁଙ୍କ ହାତରେ ଯଥେଷ୍ଟ ସମୟ ଥିଲା ନିଜକୁ ଜଣେ ରାଷ୍ଟ୍ରୀୟ ନେତା ଭାବେ ସାବ୍ୟସ୍ତ କରିବାକୁ । ତାହା ସେ କଲେ ନାହିଁ । ନେହେରୁ ଓ ଜିନାଙ୍କ ମଧ୍ୟରେ ଜଣେ ରାଷ୍ଟ୍ରପତି ଓ ଆଉଜଣେ ପ୍ରଧାନମନ୍ତ୍ରୀ ହେବା ପାଇଁ ଯଦି ପ୍ରସ୍ତାବ ହୋଇଥାନ୍ତା, ତେବେ ସମ୍ଭବତଃ ବିଭାଜନକୁ ରୋକାଯାଇ ପାରିଥାନ୍ତା ଏବଂ ଭାରତ ଅଖଣ୍ଡ ହୋଇ ରହିଥାନ୍ତା । ପୁଣି ଜିନା ଜଣେ ଖୁବ୍ ଜିଦଖୋର ବ୍ୟକ୍ତିଥିଲେ ସତ, ମାତ୍ର ତାଙ୍କୁ ଶାନ୍ତ ଓ ସମ୍ମତ କରିବା ପାଇଁ ସେପରି କିଛି ବିଶେଷ ପଦକ୍ଷେପ ନିଆଗଲା ନାହିଁ କି ଜିନାଙ୍କର ଯୁକ୍ତିକୁ ଖଣ୍ଡନ କରାଯାଇ ପାରିଲା ନାହିଁ । ଏ ଦିଗରେ ନେହେରୁ ଥିଲେ ଅତ୍ୟନ୍ତ କ୍ଷୁଦ୍ରମନା । ଜିନାଙ୍କ ସାଙ୍ଗରେ ଏକାଠି ବସି ଆଲୋଚନା କରିବାକୁ ତାଙ୍କର ସାହାସ କି ସାମର୍ଥ୍ୟ ନ ଥିଲା । ସେ ଜିନାଙ୍କୁ ଡରୁଥିଲେ ଏବଂ ତାଙ୍କ ସାଙ୍ଗରେ କଥା ହେଉ ନଥିଲେ । ଏହା କେବେହେଲେ ଜଣେ ରାଷ୍ଟ୍ରୀୟ ନେତାର ଲକ୍ଷଣ ନୁହେଁ । ଏ ଦୃଷ୍ଟିରୁ ଯେଉଁମାନେ ତାଙ୍କୁ ଉଚ୍ଚମନା କହନ୍ତି, ସେମାନେ ଠିକ୍ କହନ୍ତି ନାହିଁ । ଏକେତ ସେ ଯେଉଁ ଗାନ୍ଧିଙ୍କୁ ତିରିଶବର୍ଷ ଧରି ପିତାର ସମ୍ମାନ-ଦେଉଥିଲେ, ତାଙ୍କ ପ୍ରତି ବିଶ୍ୱାସଘାତକତା କଲେ ଏବଂ ଗାନ୍ଧିଙ୍କୁ ପିତା ବୋଲି ଯେଉଁ ସମ୍ମାନ ଦେଉଥିଲେ ତାହା ଥିଲା ତାଙ୍କର ଛଳନା । ତା ନ ହୋଇଥିଲେ ବିଭାଜନକୁ ବିରୋଧ

କରି ଗାନ୍ଧି ଯେତେବେଳେ କହିଲେ ବିଭାଜନ କରିବ ତ ମୋ ଶବ ଉପରେ କର। ସେତେବେଳେ ସେ କ'ଣ ତାଙ୍କୁ ଛାଡ଼ି ଚାଲିଯାଇଥାନ୍ତେ -? ନେହେରୁ ଏକଥା ବୁଝିବାକୁ ଅସମର୍ଥ ଥିଲେ ଯେ, ଯେଉଁ ଜିନାଙ୍କୁ ଶତ୍ରୁ ବୋଲି ଭାବୁଥିଲେ ସେଇ ଜିନା ଦଶବର୍ଷ କାଳ ହିନ୍ଦୁ ମୁସଲମାନଙ୍କ ମଧ୍ୟରେ ସଂପ୍ରଦାୟିକ ସଦ୍‌ଭାବ ରକ୍ଷା କରିବାରେ ଦୀର୍ଘ ୧୦ବର୍ଷ କାଳ ଆନ୍ତରିକ ଉଦ୍ୟମ କରିଥିଲେ। ସେଇ ସ୍ୱାର୍ଥପର ନେହେରୁ ଭାରତର ବିଭାଜନକୁ ଗ୍ରହଣ କରିଥାନ୍ତେ କିପରି ? ବିଭାଜନ ପୂର୍ବରୁ ମାଉଣ୍ଟବେଟେନ ପନ୍ଦରଦିନ ଧରି ଯେଉଁ ଛ' ଥର ଦଶଘଣ୍ଟା ଧରି ଜିନାଙ୍କ ସାଙ୍ଗରେ ଆଲୋଚନା କରିଥିଲେ, ସେଥିରେ ଜିନା ଯୁକ୍ତି କରିଥିଲେ ଯେ, ଅଖଣ୍ଡ ଭାରତ ବୋଲି ଯାହାକୁ କୁହାଯାଇଛି ତାହା ମାନଚିତ୍ରରେ ଦେଖାଯାଇପାରେ, କିନ୍ତୁ ବାସ୍ତବରେ ତାହା ଦୁଇଟି ସ୍ୱତନ୍ତ୍ରରାଷ୍ଟ୍ର। ଗୋଟିଏ ହିନ୍ଦୁବହୁଳ ଆଉ ଗୋଟିଏ ମୁସଲମାନ ବହୁଳ। ଦୁଇଟି ଦେଶର ଭାଷା ସଭ୍ୟତା, ସାହିତ୍ୟ, ଧର୍ମ ଓ ପରମ୍ପରା ସଂପୂର୍ଣ୍ଣ ଭିନ୍ନ। ଦୁଇ ଦେଶ ମଧ୍ୟରେ ଯାହା କିଛି ଏକତା ହେଲା ବ୍ରିଟିଶ୍‌ର ଦାସତ୍ୱ। ଭାରତର ବିଭାଜନ ଭୟଙ୍କର ରକ୍ତପାତର କାରଣ ହେବ ବୋଲି ମାଉଣ୍ଟବେଟେନ ଯେତେବେଳେ ଜିନାଙ୍କୁ କହିଲେ, ଜିନା ସେତେବେଳେ ତାଙ୍କୁ ଦୃଢ ପ୍ରତିଶ୍ରୁତି ଦେଇ କହିଲେ ଯେ ସେପରି ଭାବିବା ଅମୂଳକ ବରଂ ବିଭାଜନ ପରେ ଦୁଇଦେଶ ପରସ୍ପରର ବନ୍ଧୁ ଭାବରେ ଶାନ୍ତିରେ ରହିବେ ଏବଂ ଉଭୟ ଦେଶ ବିକାଶ ପଥରେ ଆଗେଇଯିବେ । ମାଉଣ୍ଟବେଟେନ ତାଙ୍କର ସମସ୍ତ ଜ୍ଞାନ, ବୁଦ୍ଧି ଓ କୌଶଳ ପ୍ରୟୋଗ କରି ତାଙ୍କୁ ବୁଝାଇବାକୁ ଚେଷ୍ଟାକଲେ ମଧ, ସେ ତାଙ୍କ ନିଷ୍ପତ୍ତିରୁ ତିଳେ ମାତ୍ର ନ ହଟି ନିଜ ଜିଦ୍‌ରେ ଅଟଳ ରହିଲେ। କାରଣ ସେ ଥିଲେ ଜଣେ ଏକଛତ୍ରବାଦୀ ଏବଂ ଅନ୍ୟ କାହାରି ପରାମର୍ଶ ଗ୍ରହଣ କରିବାକୁ ସେ ପ୍ରସ୍ତୁତ ନ ଥିଲେ। ବର୍ଷକ ତଳେ କଲିକତାରେ ଘଟିଥିବା ନୃସଂଶ ହତ୍ୟାକାଣ୍ଡର ପ୍ରତିଶୋଧ ନିଆଁ ତାଙ୍କ ମନରେ ଦାଉ ଦାଉ ହୋଇ ଜଳୁଥିଲା। ତେଣୁ ସେ ମାଉଣ୍ଟବେଟେନଙ୍କ ସମସ୍ତ ପରାମର୍ଶକୁ ଉପେକ୍ଷା କରି ବିଭାଜନ ପାଇଁ ଦୃଢ ଦାବୀ କଲେ। ଯୁକ୍ତିରେ ପରାସ୍ତ ମାଉଣ୍ଟବେଟେନ ନିରୁପାୟ ହୋଇ

ମୌନ ସମ୍ମତି ଜଣାଇବା ମାତ୍ରେ ଜିନା ଆଉ ପାଦେ ଆଗେଇ ଯାଇ କହିଲେ, ପଞ୍ଜାବ ଓ ବେଙ୍ଗଲ ହିନ୍ଦୁ ବହୁଳ ରାଜ୍ୟ ହେଲେ ମଧ୍ୟ, ସେ ଦୁଇଟି ରାଜ୍ୟ ପାକିସ୍ଥାନ ସାଙ୍ଗରେ ରହିବ । କାରଣ ଦୁଇ ରାଜ୍ୟର ସଂଖ୍ୟାନ୍ୟୁନ ମୁସଲିମ୍‌ମାନେ ହିନ୍ଦୁ ମାନଙ୍କ ଦ୍ୱାରା ଶାସିତ ହେବାକୁ ପସନ୍ଦ କରିବେ ନାହିଁ । ପୁଣି ଯେଉଁ ବ୍ରିଟିଶ୍ ମୋଗଲ ସାମ୍ରାଜ୍ୟର ପତନ ଘଟାଇ ଭାରତ ଅଧିକାର କରିଥିଲେ ବର୍ତ୍ତମାନ ସେଇ ବ୍ରିଟିଶ୍ କ୍ଷମତା ହସ୍ତାନ୍ତର କରୁଛନ୍ତି । ତେଣୁ ମୋଗଲ ମାନଙ୍କ ପୁରା ଭାରତ ମିଳିବା ଉଚିତ୍ । ମାଉଣ୍ଟବେଟେନ ଏହାର ପ୍ରତତିବାଦ କଲେ । ସେ କହିଲେ, ତା ହେଲେ ଦୁଇ ଦୁଇ ଭାଗରେ ବିଭକ୍ତ କରି ଭାରତ ଓ ପାକିସ୍ଥାନ ମଧ୍ୟରେ ବାଣ୍ଟିଦେବା ଉଚିତ୍ ହେବ । ଜିନା ତୁରନ୍ତ ପ୍ରତିବାଦ କରି କହିଲେ, ଏପରି ପାକିସ୍ଥାନକୁ ସେ ଗ୍ରହଣ କରିବେ ନାହିଁ । କାରଣ ଏହାଦ୍ୱାରା ବ୍ୟାପକ ହିଂସାକାଣ୍ଡ ହେବ । ସେ ଦୁଇ ରାଜ୍ୟର ଲୋକ ହିନ୍ଦୁ ହୁଅନ୍ତୁ କି ମୁସଲିମ୍, ପ୍ରଥମେ ସେମାନେ ପଞ୍ଜାବୀ କିମ୍ବା ବେଙ୍ଗଲ । ତା ଛଡା ସେପରି କଲେ, ପାକିସ୍ଥାନ ଏକ ଆର୍ଥିକ ସ୍ୱଚ୍ଛଳ ରାଷ୍ଟ୍ର ହୋଇପାରିବ ନାହିଁ । ମାଉଣ୍ଟବେଟେନ କହିଲେ, ସେମାନେ ପଞ୍ଜାବୀ ହୁଅନ୍ତୁ କି ବେଙ୍ଗଲୀ ହୁଅନ୍ତୁ ପ୍ରଥମେ ସେମାନେ ଭାରତୀୟ । ସେମାନଙ୍କର ଆଲୋଚନା ପୁଣି ଅଡୁଆ ପରିସ୍ଥିତିକୁ ଟାଣି ହୋଇଗଲା । କିଛି ସମୟ ନୀରବ ରହିଲା ପରେ ମାଉଣ୍ଟବେଟେନ କହିଲେ, ଭାରତର ବିଭାଜନ ହେଲେ କୌଣସି ପକ୍ଷର ଲାଭ ହେବ ନାହିଁ, କାରଣ ତା ଦ୍ୱାରା ଭାରତ ସବୁଯାକ ଶିକ୍ଷାୟତନକୁ ପାଇ ଧନୀରୁ ଧନୀ ହେବ ଏବଂ ପାକିସ୍ଥାନ କିଛି ନ ପାଇ ଦରିଦ୍ର ହୋଇ ରହିଯିବ । ପୁଣି ଜଳ, ଜଙ୍ଗଲ, ବେଳାଭୂମି ଓ ଖଣିଜ ସଂପଦ, ସବୁ କିଛି ଭାରତ ପାଇଯିବ । ଏ କଥା କ'ଣ ଆପଣ ଜାଣିପାରୁନାହାଁନ୍ତି । ତଥାପି ଜିନା ନିଜ ଜିଦ୍‌ରେ ଅଟଳ ଥିବା ଦେଖି ମାଉଣ୍ଟବେଟେନ ମନେ ମନେ ଭାବିଲେ, ଏ ଜଣେ ଉଚ୍ଚଶିକ୍ଷିତ, Inns of Courtରେ ଅଭିଜ୍ଞ ଓ ବୁଦ୍ଧିମାନ । କିନ୍ତୁ ଏତେ ଦୁଷ୍ଟବୁଦ୍ଧି କିପରି ହେଲେ ? ବାସ୍ତବତା ପ୍ରତି ଆଖି ବୁଜି ଦେଉଛନ୍ତି କିପରି ? ଅନ୍ୟମାନଙ୍କୁ ବୁଝାଇ ହେବ, କିନ୍ତୁ ଏ ବଞ୍ଚିଥିଲା ପର୍ଯ୍ୟନ୍ତ ବୁଝାଇବା ସମ୍ଭବ ନୁହେଁ, ସେ ପୁଣି ଭାବିଲେ ୪୦କୋଟି ଲୋକଙ୍କର ଏ

ବିଶାଳ ଭାରତ ଏକତ୍ରିତ ହୋଇ ରହିଲେ ଅଳ୍ପ କିଛି ଦିନ ପରେ ପୃଥିବୀରେ ଅନ୍ୟତମ ବିକଶିତ ରାଷ୍ଟ୍ର ହୋଇପାରିବ । କିନ୍ତୁ ଜିନାଙ୍କର ଜିଦ୍ ଯୋଗୁ ସବୁ ବ୍ୟର୍ଥ ହୋଇଯିବ । ସେ ଚାହାଁନ୍ତି ଭାରତ ଅଖଣ୍ଡ ହୋଇରହୁ । ମାତ୍ର ବିଭାଜନ ପାଇଁ ଜିନା ଅଟଳ । ସେ ଆଉ କ'ଣ କରିବେ ? ତାଙ୍କୁ ଭାରତ ପଠାଯାଇଥିଲା କ୍ଷମତା ହସ୍ତାନ୍ତର କରିବାକୁ । ଭାରତକୁ ଖଣ୍ଡ ଖଣ୍ଡ କରିବାକୁ ନୁହେଁ, ମାତ୍ର ନିଜ ଦେଶପ୍ରତି ସେ ଅନୁଗତ ରହିବେ । ବ୍ରିଟେନ ରାଜାଙ୍କ ପ୍ରଧାନମନ୍ତ୍ରୀଙ୍କ ଇଚ୍ଛାକୁ ସେ ପୂରଣ କରିବେ, ହେଉ ପଛେ ବିଭାଜନ । ବିଭାଜନ ହେଲେ ପ୍ରଚଣ୍ଡ ହିଂସାକାଣ୍ଡ ଘଟିବ, ଅରାଜକତା ବ୍ୟାପିଯିବ, ବିକାଶ ପଥରେ ଘୋର ବାଧା ଉପୁଜିବ । କିନ୍ତୁ ସେ କ'ଣ କରିବେ ? ବିଭାଜନକୁ ରୋକିବା ପାଇଁ ସମସ୍ତ କୌଶଳ ତାଙ୍କର ବ୍ୟର୍ଥ ହୋଇଯାଇଛି । ଏବେ ଜିନାଙ୍କ ଇଚ୍ଛାକୁ ପୂରଣ କରିବା ପାଇଁ ସେ ବାଧ୍ୟ । ଭାରତକୁ ବିଭାଜନ କରିବାକୁ ହେବ । ତା ନ ହେଲେ ସେ କ୍ଷମତା ହସ୍ତାନ୍ତର କରିପାରିବେ ନାହିଁ । ବୈଠକ କକ୍ଷ ଛାଡି ଜିନା ଚାଲିଗଲାପରେ, ମାଉଣ୍ଟବେଟେନ ଅନେକ ସମୟ ଧରି ଧ୍ୟାନରେ ବସିଲା ପରି ନୀରବ ନିଶ୍ଚଳ ହୋଇ ବସିରହିଲେ । ସେ କିଛି ଭୁଲ୍ କରି ନାହାଁନ୍ତି ତ ? ଐତିହାସିକ ମାନେ ତାଙ୍କ ଭୂମିକାକୁ ନେଇ କିଭଳି ଚିତ୍ରଣ କରିବେ ? ତାଙ୍କୁ କେହି ନିନ୍ଦା କରିବେ ନାହିଁ ? ଏମିତି ଅନେକ କଥା ଭାବି ସେ ଝାଉଁଳି ପଡିଲେ । ଭାରତର ଅନେକ ନେତା ଓ ଐତିହାସିକମାନେ ତାଙ୍କୁ ସମାଲୋଚନା କରି ତାଙ୍କୁ ଦାୟୀ କରବେ । କିନ୍ତୁ ବାସ୍ତବରେ ତାଙ୍କର ଏଥିରେ ଦୋଷ କ'ଣ ? ନେହେରୁ ଓ ପଟେଲଙ୍କ ଭଳି ନେତାମାନେ ତ ନୀରବ ସମର୍ଥନ ଦେଇ ଗାନ୍ଧିଙ୍କଠାରୁ ଅଲଗା ହୋଇଗଲେ । ମାଉଣ୍ଟବେଟେନ ଆଉ କ'ଣ କରିଥାନ୍ତେ ? ଗଣତାନ୍ତ୍ରିକ ଚେତନାରେ ଭାରତ ଅତ୍ୟନ୍ତ ଦୁର୍ବଳ । ନେତାମାନଙ୍କର ଏପରି ଆଚରଣର ପ୍ରତିବାଦ କରିବାକୁ ସାହାସ ନାହିଁ । ଯୁଗଯୁଗ ଧରି ପରାଧୀନ ରହିଲା ପରେ ଦାସତ୍ୱର ଭାବ ସେମାନଙ୍କୁ ଦୁର୍ବଳ କରିଦେଇଛି । ଅନ୍ୟାୟର ପ୍ରତିବାଦ କରିବାକୁ ସେମାନଙ୍କର ଯେପରି ନୈତିକ ସାହସ ନାହିଁ, ଜାତିପ୍ରୀତିରେ ସେହିପରି କଠୋର ନୁହଁନ୍ତି । ବ୍ୟକ୍ତିଗତ ସ୍ୱାର୍ଥ ପାଖରେ

ସେମାନଙ୍କର ଜାତୀୟତାବୋଧ ସବୁବେଳେ ପରାଜୟ ସ୍ୱୀକାର କରିଛି। ବ୍ରିଟିଶ୍ ହେଉ କି ମୋଗଲ ହେଉ, କୌଣସି ଆକ୍ରମଣ ବେଳେ ସେମାନେ ଭାରତୀୟତାର ପରିଚୟ ଦେଇନାହାଁନ୍ତି। ଅପର ପକ୍ଷରେ ଦୟା, ଅନୁଗ୍ରହ ଓ ଅନୁକମ୍ପା ପାଇବା ଆଶାରେ ବୈଦେଶିକ ଶତୃପାଖରେ ସବୁବେଳେ ମୁଣ୍ଡ ବିକିଦେଇଛନ୍ତି। କେବଳ ମୁଷ୍ଟିମେୟ କେତେଜଣ ସ୍ୱାଧିନଚେତା ବୀରପୁରୁଷ ସେମାନଙ୍କର ପ୍ରତିରୋଧ କରି ପ୍ରାଣବଳୀ ଦେଇଛନ୍ତି। ସ୍ୱାଧିନତା ପାଇଲା ପରେ ବି ସେମାନଙ୍କ ମନରେ ଏଇ ଦାସତ୍ୱର ଭାବ ବଂଚିରହିବ ଏବଂ ଶାସନ କ୍ଷେତ୍ରରେ କ୍ଷମତାପ୍ରାପ୍ତ ଅଧିକାରୀ ମାନେ ଜାତୀୟ ସ୍ୱାର୍ଥଠାରୁ ବ୍ୟକ୍ତିଗତ ସ୍ୱାର୍ଥପ୍ରତି ଅଧିକ ଯତ୍ନବାନ ହେବେ। ଦୁର୍ନୀତି ସେମାନଙ୍କୁ ଗ୍ରାସ କରିବ। ଶାସନରେ ଶୋଷଣ ସାଧାରଣ ଜନତାକୁ ଅସ୍ଥିର କରିଦେବ। ବହୁବର୍ଷ ପର୍ଯ୍ୟନ୍ତ ଗଣତାନ୍ତିକ ବିଚାରବୋଧ ଜନତା ମଧ୍ୟରେ ଦେଖାଯିବ ନାହିଁ। ଗଣତାନ୍ତିକ ଛଳନାତ୍ମକ ପ୍ରକ୍ରିୟାରେ ଲୋକେ କିଣାବିକା ହେବେ। ଉଚ୍ଚତର ସୋପାନରେ କ୍ଷମତାରେ ଅଧିଷ୍ଠିତ ରାଜନେତାମାନେ ରାଜା ମହାରାଜାଙ୍କଠାରୁ ଶୋଷଣରେ ବଳିଯିବେ। ଲୋକେ ନୀରପେକ୍ଷ ବିଚାର ପାଇବେ ନାହିଁ। ଦେଶ ସ୍ୱାଧିନ ହେଲେ ମଧ୍ୟ ସାଧାରଣ ଜନତା ପରାଧୀନ ରହିଲା ପରି ଯନ୍ତ୍ରଣା ଭୋଗିବେ। ଦେଶଧନୀ ଓ ଦରିଦ୍ର ମଧ୍ୟରେ ଦୁଇଭାଗ ହୋଇଯିବ। ବହୁପରୀକ୍ଷା ନିରୀକ୍ଷା କରି ଶହ ଶହ ବର୍ଷ କାଟିଲା ପରେ ହୁଏତ ସାଧାରଣ ଜନତା ମଧ୍ୟରେ ଗଣତାନ୍ତିକ ଚେତନାର ବିକାଶ ଘଟିବ। ଖାଲି ଭାରତ କାହିଁକି ପୃଥିବୀର ସବୁଦେଶରେ ଏହା ହିଁ ସାଧାରଣ ଜନତାର ଚରିତ୍ର। କାରଣ ପୃଥିବୀର ସବୁଆଡେ ମଣିଷର ଚରିତ୍ର ସମାନ।

ଭାବନା ରାଜ୍ୟରୁ ଫେରି ଆସିଲେ ମାଉଣ୍ଟବେଟେନ। ତେବେ ବିଭାଜନର ଅନ୍ତିମ ପର୍ଯ୍ୟାୟ ଏବେ ଉପସ୍ଥିତ। ନେହେରୁ ଓ ପଟେଲଙ୍କୁ ଏକମତ କରିବାକୁ ହେବ। ତାପରଦିନ ସକାଳେ ମାଉଣ୍ଟବେଟେନ ପୂର୍ବଦିନ ଜିନ୍ନାଙ୍କ ସହିତ ତାଙ୍କର ଆଲୋଚନାକୁ ସମୀକ୍ଷା କରୁଥିଲେ। ଏକାର୍ଯ୍ୟ ଅତ୍ୟନ୍ତ କଷ୍ଟକର ମନେହେଲା କାରଣ ୩୫୦ବର୍ଷ ଧରି ଭାରତରେ ବ୍ରିଟିଶ୍ ଉପନିବେଶକୁ ସମାପ୍ତ କରିବାକୁ ହେବ।

ଭାରତର ଦୁଇ ମୁଖ୍ୟ ରାଜ୍ୟ ପଞ୍ଜାବ ଓ ବେଙ୍ଗଲଙ୍କୁ ଭାଗ ଭାଗ କରି ୯୭୦ ମାଇଲ ବ୍ୟବଧାନରେ ଥିବା ଦୁଇଟି ଅଂଚଳକୁ ପାକିସ୍ଥାନ ରାଷ୍ଟ୍ରଗଠନ କରିବାକୁ ହେବ । ପାକିସ୍ଥାନର ଗୋଟିଏ ମୁଣ୍ଡରୁ ଅନ୍ୟ ମୁଣ୍ଡକୁ ଜଳ ପଥରେ ଯିବା ପାଇଁ ୨୦ଦିନ ସମୟ ଲାଗିବ ଏବଂ ତାହା ପୁଣି କରାଚୀରୁ ମଶିଲିସ୍ ଗଲେ ପାକିସ୍ଥାନର ମାତ୍ର ଅଧା ଗସ୍ତ କରିହେବ । ଚାରି ଇଞ୍ଜିନ ବିଶିଷ୍ଟ ଉଡାଜାହାଜରେ ଯାତ୍ରା କଲେ ତାହା ଅତ୍ୟନ୍ତ ବ୍ୟୟ ବହୁଳ ହେବ । ଯଦିଓ ଉଭୟ ଅଂଳଚର ଅଧିବାସୀ ମାନଙ୍କର ଆଲ୍ଲା –ଏକ । ଈଶ୍ୱର ହେଉଛନ୍ତି ଭଗବାନ । ମନସ୍ତାତ୍ତ୍ୱିକ ଓ ଭାଷାଗତ ବ୍ୟବଧାନ ଖୁବ୍ ଅଲଗା । ଫ୍ରାନସ୍ ଓ ଗ୍ରୀକ୍ ମାନଙ୍କ ପରି ସେମାନେ ଅଲଗା ଅଲଗା । ଚେହେରାରେ ମଧ୍ୟ ସେମାନେ ପୃଥକ୍ । ବେଙ୍ଗଲୀମାନେ ଏସିଆର ଏକ ଜାତିପରି ଓ ପଞ୍ଜାବୀମାନେ ତିନିଶହ ବର୍ଷ ଧରି ଯୁଦ୍ଧଖୋର ଜାତି ଭାବରେ ପରିଚିତ ଏବଂ ସେମାନଙ୍କ ଚେହେରା ତୁର୍କିସ୍ତାନ, ରୁଷିଆ ଓ ପାରସ୍ୟ ଅଧିବାସୀଙ୍କ ବଂଶଧର ପରି । ଭାଷା, ଇତିହାସ କିମ୍ବା ସଂସ୍କୃତିରେ ସେମାନଙ୍କର କୌଣସି ମେଳ ନାହିଁ ।

ଏତେ ଦୂରରେ ଥିବା ଦୁଇଟି ଅଂଚଳକୁ ଗୋଟିଏ ରାଷ୍ଟ୍ରରେ ରଖି ଶାସନ କାର୍ଯ୍ୟ କିପରି କରିହେବ ? ଜିନା ଏଭଳି ଗୋଟିଏ ପ୍ରସ୍ତାବ ଦେଲେ କିପରି ? ଏ ଦୁଇଟି ଅଂଚଳର ଅବସ୍ଥିତି ସଂପର୍କରେ ତାଙ୍କର ଧାରଣା ନାହିଁ ନା ଶାସନକାର୍ଯ୍ୟ କେତେ ଜଟିଳ ହେବ ଅନୁମାନ କରି ପାରୁନାହାଁନ୍ତି ? ତଥାପି ତାଙ୍କୁ ପଞ୍ଜାବ ଓ ବେଙ୍ଗଲକୁ ଭାଙ୍ଗିବାକୁ ପଡିବ । ସେ ଆଖି ଖୋଲି ତାଙ୍କ Chief of Staff Ismayଙ୍କୁ ଡାକି କହିଲେ, ଦେଖ ଭାରତକୁ ବିଭାଜିତ କରିବାକୁ ହେବ । ପଞ୍ଜାବ ଓ ବେଙ୍ଗଲକୁ ଭାଙ୍ଗି ପାକିସ୍ଥାନରେ ମିଶାଇବାକୁ ହେବ, ଏହା ଜିନା ଚାହାଁନ୍ତି । ପଞ୍ଜାବ ଓ ବେଙ୍ଗଲର କେଉଁ କେଉଁ ଅଂଚଳ ପାକିସ୍ଥାନକୁ ଯିବ, ସେ କଥା ଚିନ୍ତାକରି ତୁମେ ଏକ ମାନଚିତ୍ର ପ୍ରସ୍ତୁତ କର । ପଞ୍ଜାବ ହେଉଛି ଭାରତର ମଣିମୟ ମୁକୁଟ । ଫ୍ରାନ୍ସର ପ୍ରାୟ ଅଧା ହେବ । ଉତ୍ତର ପଶ୍ଚିମ ଦିଗରେ ସିନ୍ଧୁ ନଦୀ ଦିଲ୍ଲୀର ସହର ତଳି ଅଂଚଳ ପର୍ଯ୍ୟନ୍ତ ବହିଯାଉଛି । ସୂର୍ଯ୍ୟାଲୋକରେ ଝଲସି ଉଠୁଥିବା ନଦୀମାନଙ୍କର ଏହା ଅବବାହିକା

ଏବଂ ଚାରିଆଡେ ସୁବର୍ଣ୍ଣ ରଙ୍ଗର ବିସ୍ତୀର୍ଣ୍ଣ ଗହମକ୍ଷେତ ଆଉ ଦିଗନ୍ତ ବିସ୍ତାରୀ ଦିଗବଳୟ ଲମ୍ବି ଯାଇଛି ଅନେକ ଦୂର । ପାଞ୍ଚନଦୀକୁ ନେଇ ପଞ୍ଜାବର ନାମ କରଣ ହୋଇଛି । ପଞ୍ଚନଦୀର ସୁଦୀର୍ଘ ସମତଳ ଅବବାହିକା ଅତ୍ୟନ୍ତ ଉର୍ବର । ପଞ୍ଜାବୀମାନେ କଠିନ ପରିଶ୍ରମ କରି ପଞ୍ଜାବକୁ କରିଛନ୍ତି ସ୍ୱର୍ଗ, ସିନ୍ଧୁନଦୀ ପୃଥିବୀର ବିଶାଳ ନଦୀ ମାନଙ୍କ ମଧ୍ୟରେ ଅନ୍ୟତମ ଏବଂ ଏହି ନଦୀର ନାମାନୁସାରେ ଇଣ୍ଡିଆର ନାମ କରଣ ହୋଇଛି । ପାଞ୍ଚହଜାର ବର୍ଷ ଧରି ପଞ୍ଜାବୀମାନେ ଏକ ବୀର ଜାତି ଭାବରେ ପରିଚିତ । ହିନ୍ଦୁ ମାନଙ୍କର ପବିତ୍ର ଗ୍ରନ୍ଥ ଶ୍ରୀମଦ୍ ଭାଗବତ ଗୀତା । ଏହିଠାରେ ହିଁ ଭଗବାନ ଶ୍ରୀକୃଷ୍ଣ ଅର୍ଜୁନଙ୍କୁ କହିଥିଲେ ଯେ ଦ୍ୱାବା ଭକ୍ଷସେ ମହୀ, ସାରା ପୃଥିବୀରେ ଯେଉଁ ବେଦକୁ ଜ୍ଞାନର ଭଣ୍ଡାର ବୋଲି ସ୍ୱୀକାର କରାଯାଇଛି ତାହା ଏହିପରି ରଚନା କରାଯାଇଥିଲା । ବେଦର କେହି ରଚୟିତା ନାହାନ୍ତି, ସେଥିପାଇଁ ବେଦକୁ ଅପୁରୁଷେୟ କୁହାଯାଏ । ପର୍ଶିଆର ଭାଇସ୍ ରାୟ ଏବଂ cyrus, Macedonianର Alexander, the great ଏହି ସିନ୍ଧୁନଦୀ କୂଳରେ ଆକ୍ରମଣର ଶିବିର ସ୍ଥାପନ କରିଥିଲେ ଏବଂ ଇସ୍‌ଲାମ୍ ଖଲିଫାମାନେ ଏହିବାଟ ଦେଇ ଭାରତକୁ ଆଣିଥିଲେ ଏକେଶ୍ୱରବାଦ । ଶେଷରେ ବ୍ରିଟିଶ୍‌ମାନେ ଏହାକୁ ଅଧିକାର କରିଥିଲେ । ସୁତରାଂ ଏହି ବୀରଜାତିର ଇତିହାସ ଘଟଣା ବହୁଳ । ଏହାର ସହର ଓ ଗ୍ରାମ ମାନଙ୍କର ସଂଖ୍ୟା ୧୭୯୩୨ ଏବଂ ଏହାର ଅଧିବାସୀମାନଙ୍କ ମଧ୍ୟରୁ ୧୫ ମିଲିୟନ୍ ହିନ୍ଦୁ, ୧୬ ମିଲିୟନ୍ ମୁସଲମାନ ଓ ୫ ମିଲିୟନ୍ ଶିଖ୍ ଅଛନ୍ତି । ପଞ୍ଜାବ ଥିଲା ବହୁ ଆକ୍ରମଣକାରୀଙ୍କ ଯୁଦ୍ଧଭୂମି । ଧର୍ମ ଦୃଷ୍ଟିରୁ ପଞ୍ଜାବର ହିନ୍ଦୁ, ମୁସଲମାନ ଏବଂ ଶିଖ୍ ସଂପ୍ରଦାୟ ଭିନ୍ନ ଭିନ୍ନ ହେଲେ ବି ସମସ୍ତଙ୍କର ଭାଷା ଓ ପରମ୍ପରା ସମାନ । ସେମାନେ ସମସ୍ତେ ବୀରଜାତି ବୋଲି ଗର୍ବ କରନ୍ତି । ସେମାନଙ୍କର ସହଯୋଗ ମୂଳକ ଅର୍ଥନୈତିକ ଅବସ୍ଥା ସ୍ୱଚ୍ଛଳ । ବ୍ୟକ୍ତିଗତ ଜୀବନରେ ସେମାନଙ୍କର କଠିଣ ପରିଶ୍ରମ ଓ ବ୍ୟାପକ ଜଳସେଚନର ସୁବିଧା ଏବଂ ସ୍ୱତନ୍ତ୍ର ଶାରିରୀକ ଗଠନ ଅତ୍ୟନ୍ତ ସୁନ୍ଦର ସୁଠାମ ଓ ବଳିଷ୍ଠ । ଏହି କାରଣରୁ ପଞ୍ଜାବ ବିଭକ୍ତି କରଣକୁ

ସେମାନେ ପସନ୍ଦ କରନ୍ତି ନାହିଁ । ରେଳ ଓ ସଡକ ପଥର ବ୍ୟାପକ ପ୍ରସାର ପଞ୍ଜାବର ଉତ୍ପାଦିତ ଶସ୍ୟ ଓ ଅନ୍ୟାନ୍ୟ ସାମଗ୍ରୀକୁ ସହଜରେ ଭାରତରୁ ଅନ୍ୟତ୍ର ପଠାଇ ବେଶ୍ ଅର୍ଥ ଉପାର୍ଜନ ହୁଏ। ପୂର୍ବରୁ ପଶ୍ଚିମ ପର୍ଯ୍ୟନ୍ତ ସାରା ରାଜ୍ୟକୁ ସେମାନଙ୍କ କଠିନ ପରିଶ୍ରମ ଦ୍ୱାରା ମରୁଭୂମିକୁ କରିଛି ଅପୂର୍ବ ଶସ୍ୟଶ୍ୟାମଳ। ପଞ୍ଜାବକୁ ଦୁଇଭାଗ କରିବାକୁ ହେଲେ ଉତ୍ତରରୁ ଦକ୍ଷିଣ ପର୍ଯ୍ୟନ୍ତ ସୀମାନ୍ତ ଅଂଚଳକୁ ଖଣ୍ଡ ଖଣ୍ଡ କରିବାକୁ ହେବ। ସୀମାନ୍ତ ଅଂଚଳକୁ ଯେପରି ଭାବରେ ବିଭକ୍ତ କଲେ ବି, ମରୁଭୂମିକୁ ଶସ୍ୟ ଶ୍ୟାମଳା କରିଥିବାର ଦୁଇ ମିଲିୟନ୍ ଶୀଖ୍ ପାକିସ୍ଥାନକୁ ଚାଲିଯିବେ ଏବଂ ସେମାନଙ୍କ ଗର୍ବର ସମୁନ୍ନତ ଅଂଚଳ ବି କେତେକ ପବିତ୍ର ପୂଜାସ୍ଥଳୀ ସହ ପାକିସ୍ଥାନରେ ମିଶିଯିବ। Ismay ଙ୍କର ମାନଚିତ୍ର ଅନୁସାରେ ପଞ୍ଜାବକୁ ବିଭକ୍ତ କଲେ, ସିନ୍ଧୁନଦୀଠାରୁ ଦିଲ୍ଲୀର ସୀମାନ୍ତ ପର୍ଯ୍ୟନ୍ତ ୫୦୦ ମାଇଲ୍ ପରିବ୍ୟାପ୍ତ ଅଂଚଳର ସାଂସ୍କୃତିକ ସ୍ଥିତି ଗୁରୁତର ଭାବେ ନଷ୍ଟଭ୍ରଷ୍ଟ ହୋଇଯିବ।

ବେଙ୍ଗଲର ମଧ୍ୟ ସମଦଶା। ଗ୍ରେଟ୍‌ବ୍ରିଟେନ ଓ ଆୟାରଲ୍ୟାଣ୍ଡ ମିଳିତ ଜନସଂଖ୍ୟାଠାରୁ ବେଙ୍ଗଲର ଲୋକସଂଖ୍ୟା ବେଶି। ଏହାର ଜନସଂଖ୍ୟା ହେଲା ୩୫ ମିଲିୟନ୍ ମୁସିଲିମ୍ ଓ ୩୦ ମିଲିୟନ୍ ହିନ୍ଦୁ। ଏହା ହିମାଳୟର ପାଦଦେଶରେ ଥିବା ସୁନ୍ଦରବନଠାରୁ ଗଙ୍ଗା ଓ ବ୍ରହ୍ମପୁତ୍ର ନଦୀର ସମୁଦ୍ର ମୁହାଣ ପର୍ଯ୍ୟନ୍ତ ବିସ୍ତୃତ। ବିଭାଜନ ସତ୍ତ୍ୱେ, ଉଭୟ ପାଖରେ ରହିବେ ଏକା ଧର୍ମାବଲମ୍ବୀ ଲୋକେ। ହିନ୍ଦୁ ହୁଅନ୍ତୁ କି ମୁସଲମାନ, ସମାନ ଜାତିର ବଂଶଧର। ସେମାନଙ୍କ ଭାଷା ଓ ସଂସ୍କୃତି ଏକା। ସେମାନଙ୍କର ବସିବା ଠାଣି ଏକ ଏବଂ ଏକ ସ୍ୱତନ୍ତ୍ର ଶୈଳୀରେ ବେଙ୍ଗଲୀ ଭାଷା ଉଚ୍ଚାରଣ କରନ୍ତି । ୧୫ ଏପ୍ରିଲକୁ ସେମାନେ ନୂଆବର୍ଷ ମାନନ୍ତି ଏବଂ ବିଶ୍ୱକବି ରବିନ୍ଦ୍ରନାଥ ଟାଗୋରଙ୍କୁ ଏକାପରି ସମ୍ମାନ କରି ଗର୍ବ ଅନୁଭବ କରନ୍ତି। ଖ୍ରୀଷ୍ଟପୂର୍ବ ବେଙ୍ଗଲରେ ବୌଦ୍ଧ ସଭ୍ୟତାର ଅଭ୍ୟୁଦୟ ବେଳଠାରୁ, ସେମାନେ ଏକା ସଂସ୍କୃତିକୁ ମାନି ନେଇଛନ୍ତି। କିନ୍ତୁ ପ୍ରଥମ ଶତାବ୍ଦୀ ବେଳକୁ ଯେତେବେଳେ ସେମାନେ ହିନ୍ଦୁ ରାଜଂବଶ ଦ୍ୱାରା ଶୋଷିତ ହେଉଥିଲେ, ସେତେବେଳେ ମହମ୍ମଦଙ୍କର

ଯୋଦ୍ଧାମାନେ ସୀମାନ୍ତରେ ପହଁଚିଲା ବେଳଠାରୁ ସେମାନେ ଆଗ୍ରହ ସହିତ ମୁସଲିମ୍ ହୋଇଯାଇଥିଲେ । ସେହି ସମୟରୁ ସେମାନେ ଧର୍ମ ଭାବନାରେ ଦୁଇଭାଗ ହୋଇ ଯାଇଥିଲେ । ମୁସଲମାନ ଧର୍ମାବଲମ୍ବୀ ମାନେ ପୂର୍ବକୁ ଏବଂ ହିନ୍ଦୁମାନେ ପଶ୍ଚିମ ଦିଗକୁ ଯାଇ ବସବାସ କଲେ । ଏମାନଙ୍କର ଏହି ଭାଗ ଭାଗକୁ ଏକ ସୁଯୋଗ ଭାବି ଶାସନଗତ ସୁବିଧାପାଇଁ । ୧ ୯ ୦ ୫ରେ Lord Curzon ବେଙ୍ଗଲକୁ ଦୁଇ ଭାଗରେ ବିଭକ୍ତ କରିଦେଲେ । ମାତ୍ର ଛ' ମାସ ପରେ ବେଙ୍ଗଲ ଯେତେବେଳେ ଧର୍ମକୁ ନେଇ ପ୍ରଚଣ୍ଡ ରକ୍ତପାତ ହେଲା, ସେତେବେଳେ ବେଙ୍ଗଲୀମାନେ ଧର୍ମ ଅପେକ୍ଷା ଜାତିୟତାବାଦକୁ ବେଶି ପସନ୍ଦ କଲେ । କାଳକ୍ରମେ ବେଙ୍ଗଲର ପୂର୍ବକୁ ମୁସଲିମ୍‌ମାନେ ଝୋଟ ଚାଷକୁ ଏବଂ ହିନ୍ଦୁମାନେ ପଶ୍ଚିମ ଦିଗକୁ ଯାଇ ଧାନ ଚାଷକୁ ସେମାନଙ୍କର ପ୍ରଧାନ ପେଷା ଭାବରେ ଗ୍ରହଣ କରିନେଲେ । ସେଇ ଦିନଠାରୁ ମୁସଲମାନ ବହୁଳ ଅଂଚଳକୁ ଇଷ୍ଟବେଙ୍ଗଲ ଓ ହିନ୍ଦୁ ବହୁଳ ଅଂଚଳକୁ ଓ୍ୱେଷ୍ଟବେଙ୍ଗଲ କୁହାଯାଇଛି । ଓ୍ୱେଷ୍ଟବେଙ୍ଗଲର କୃଷି ପ୍ରଧାନ ଜୀବିକା ନୁହେଁ । ବ୍ରିଟିଶ୍ ସାମ୍ରାଜ୍ୟର ଦ୍ୱିତୟ ବୃହତ୍ତମ ନଗରୀ ହୋଇଥିବାରୁ ଏଠାରେ ବାଣିଜ୍ୟ ଓ ଶିଳ୍ପ ବ୍ୟାପକ ପ୍ରସାର ଲାଭ କରିଛି । ସୁତରାଂ ଶିଳ୍ପ ଓ ବାଣିଜ୍ୟ ଏହାର ପ୍ରଧାନ ଜୀବିକା ଏବଂ ଚୋରି, ହତ୍ୟା, ଲୁଣ୍ଠନ, ଭ୍ରଷ୍ଟାଚାର ପାଇଁ ଏହା ପୃଥିବୀ ପ୍ରସିଦ୍ଧ । ଏହାର ନଗରୀ କଲିକତା ହେଉଛି ଏସିଆର ପ୍ରଥମ ବନ୍ଦର ଏବଂ ଏହିଠାରେ ହିଁ ହୋଇଥିଲା ୧ ୯ ୪ ୬ ମସିହାର ବିଭତ୍ସ ହତ୍ୟାକାଣ୍ଡ । ପଶ୍ଚିମ ବେଙ୍ଗଲ ସବୁ ବିକାଶ ଘଟିଛି । ରାସ୍ତା, ରେଳପଥ କଞ୍ଚାମାଲ, ଶିଳ୍ପ, ଇତ୍ୟାଦି ସବୁକିଛି ହୋଇଛି । ପୂର୍ବ ଓ ପଶ୍ଚିମ ଦିଗରୁ ଯଦି ବେଙ୍ଗଲକୁ ବିଭାଜନ କରାଯାଏ, ତେବେ ପୂର୍ବବଙ୍ଗରେ ପୃଥିବୀର ସବୁଯାକ ଝୋଟ ମିଳିବି ଏବଂ ପଶ୍ଚିମବଙ୍ଗରେ ସବୁଯାକ ଶିଳ୍ପାନୁଷ୍ଠାନ ରହିଯିବ । ପୁଣି ପୂର୍ବବଙ୍ଗରେ କିଛି ଖାଦ୍ୟ ଶସ୍ୟ ଉତ୍ପାଦିତ ନ ହେଉଥିବାରୁ, ସେଠାକାର ମୁସଲିମ୍ ଲୋକେ ଖାଦ୍ୟ ପାଇଁ ପଶ୍ଚିମବଙ୍ଗ ଉପରେ ନିର୍ଭର କରିବାକୁ ବାଧହେବେ । ୧ ୯ ୪ ୭ ମସିହା ଏପ୍ରିଲ୍ ମାସରେ, ବଙ୍ଗଳାର ଶେଷ ବ୍ରିଟିଶ୍ ଗଭର୍ଣ୍ଣର Sir Frederic Burrows ଭବିଷ୍ୟବାଣୀ କରିଥିଲେ ।

ଦିନେ ନା ଦିନେ ପୂର୍ବବଙ୍ଗ ବାଙ୍ଗଲାଦେଶ ହେବ । ଜିନାଙ୍କ ଦାବୀ ଅନୁସାରେ ଯଦି ପାକିସ୍ଥାନ ଗଠନ କରାଯାଏ, ତେବେ ଭାରତର ଅଧେ ମୁସଲମାନ ପାକସ୍ଥାନ ବାହାରେ ରହିଯିବେ ଏବଂ ସେମାନେ ଚାରିଆଡ଼େ ଏପରି ବିକ୍ଷିପ୍ତ ହୋଇ ରହିଛନ୍ତି ଯେ, ସେମାନଙ୍କୁ ନେଇ ଏକ ସ୍ୱତନ୍ତ୍ର ମୁସଲିମ୍ ରାଷ୍ଟ୍ର ଗଠନ କରିବା ଅସମ୍ଭବ । ଯେଉଁ ମୁସଲମାନ ମାନେ ବାହାରେ ରହିଯିବେ, ସେମାନଙ୍କ ସଂଖ୍ୟା ୫୦ ମିଲିୟନ୍ ଏବଂ ସେମାନେ ମୁସଲିମ୍ ରାଷ୍ଟ୍ର ଇଣ୍ଡୋନେସିଆର ଜନସଂଖ୍ୟା ସହିତ ପ୍ରାୟ ସମାନ । ସେତେବେଳକୁ ଜିନା ଅସୁସ୍ଥ ଥିଲେ, ତାଙ୍କ ଫୁସ୍‌ଫୁସ୍‌କୁ ରକ୍ତସଂଚାଳନ ଠିକ୍ ଭାବରେ ହେଉ ନ ଥଲା । ସେତେବେଳେ ସେ ସିମଲାରେ ଥିଲେ ଏବଂ ତାଙ୍କର ଚିକିତ୍ସା ପାଇଁ ତାଙ୍କୁ ବମ୍ବେକୁ ନିଆଗଲା । ତାଙ୍କ ଭଉଣୀ ଫାତିମା ତାଙ୍କ ପାଖେ ପାଖେ ରହି ଦେଖାଶୁଣା କରୁଥିଲେ । ତାଙ୍କର ସ୍ୱାସ୍ଥ୍ୟାବସ୍ଥା ଗୁରୁତର ହେବାରୁ ଫାତିମା ବମ୍ବେର ଡାକ୍ତର ଜେ.ଏ.ଏଲ ପଟେଲଙ୍କୁ ଟେଲିଫୋନ୍ କରି ଜଣାଇଲେ ଏବଂ ତାଙ୍କରି ଚିକିତ୍ସାରେ ତାଙ୍କୁ ଏକ ଡାକ୍ତରଖାନାରେ ରଖାଗଲା । ଚିକିତ୍ସା ଚାଲିଲା ସବୁ ପରୀକ୍ଷା ନିରୀକ୍ଷା କରି ଡାକ୍ତର ଜାଣିପାରିଲେ ଯେ ତାଙ୍କର ଅବସ୍ଥା ଗୁରୁତର ଏବଂ ଯଦି ତାଙ୍କର କର୍ମଧାରାକୁ ଯଥେଷ୍ଟ କମେଇ ନ ଦିଅନ୍ତି, ଯଦି ସିଗାରେଟ୍ ଓ ମଦକୁ ସଂପୂର୍ଣ୍ଣ ଛାଡି ନ ଦିଅନ୍ତି ଏବଂ ଯଥେଷ୍ଟ ବିଶ୍ରାମ ନ ନିଅନ୍ତି, ତେବେ ବର୍ଷେ କିମ୍ବା ଦି' ବର୍ଷରୁ ଅଧିକ ବଂଚିବେ ନାହିଁ । ଖୁବ୍ ଯତ୍ନର ସହିତ ଚିକିତ୍ସା ଚାଲିଲା । ଜିନା ଟିକିଏ ସୁସ୍ଥ ହେଲେ, କାର୍ଯ୍ୟକ୍ଷମ ହେଲେ । କିନ୍ତୁ ପ୍ରତିଟି ମୂହୁର୍ତ୍ତକୁ ସେ ମୃତ୍ୟୁର ଶେଷ ମୂହୁର୍ତ୍ତ ବୋଲି ଭାବି ଅତ୍ୟନ୍ତ ଉଦବିଗ୍ନ ହୋଇ ପଡୁଥିଲେ । ସେ ଭାବୁଥିଲେ ଯେଉଁ ପାକିସ୍ଥାନର ଗଠନ ତାଙ୍କ ଜୀବନର ଚରମ ଅଭିଳାଷ, ତାହା ପୂରଣ ହେବା ପୂର୍ବରୁ ଯଦି ସେ ମରିଯାଆନ୍ତି, ତେବେ ତାଙ୍କର ହିନ୍ଦୁ ଶତ୍ରୁ ମାନେ କେବେହେଲେ ତାକୁ ପୂରଣ କରିବାକୁ ଦେବେ ନାହିଁ, ତାଙ୍କ ଜୀବନ ବୃଥା ହୋଇଯିବ, ଯେଉଁ ବିଶାଳ ମୁସଲିମ୍ ସମାଜ ତାଙ୍କୁ ବିଶ୍ୱାସ କରି ଭରସା ରଖିଥିଛନ୍ତି, ସେମାନେ ନିରାଶ ହୋଇଯିବେ, ସେ ଜାଣିପାରିଥିଲେ ଯେ ତାଙ୍କର ମୃତ୍ୟୁ ଆସନ୍ନ ପ୍ରାୟ । ତେଣୁ ମାଉଣ୍ଟ ବେଟେନ ଜିନାଙ୍କୁ ସବୁବେଳେ

କହୁଥିଲେ ଶିଘ୍ର ନିଷ୍ପତ୍ତି ନେବାକୁ। ସେ ତାଙ୍କ ଡାକ୍ତର ଭଉଣୀକୁ ତାଙ୍କ ଅବସ୍ଥା ସଂପୂର୍ଣ୍ଣ ଗୋପନ ରଖିବାକୁ କହୁଥିଲେ। ଏହାକୁ ଏତେ ଗୋପନ କରି ରଖାଯାଇଥିଲା ଯେ ପୃଥିବୀର ସବୁଠାରୁ ଶକ୍ତିଶାଳୀ ବ୍ରିଟିଶ୍ ସି.ଆଇ.ଓ ମଧ୍ୟ ଜାଣିପାରି ନ ଥିଲା। ଚିକିତ୍ସା ଦ୍ୱାରା ସେ ସିନା କାର୍ଯ୍ୟକ୍ଷମ ହେଲେ ମାତ୍ର ଡାକ୍ତରଙ୍କ ମତ ଥିଲା ଦୀପ ଲିଭିଯିବା ପୂର୍ବରୁ ଏହା ଥିଲା ଶେଷ ଶିଖା। ସେ ଅସାଧ୍ୟ ଯକ୍ଷ୍ମା ରୋଗରେ ପୀଡିତ ଥିଲେ ଏବଂ ମୃତ୍ୟୁ ତାଙ୍କର ଆସନ୍ନ ଥିଲା। ବିଧାତାର ଏ କି ବିଚିତ୍ର ବିଧାନ ! ମୃତ୍ୟୁ ତାଙ୍କର ଆସନ୍ନ ,ଏ କଥା ଜଣାପଡିଥିଲେ ଭାରତ ଇତିହାସର ଗତିପଥ ବଦଳି ଯାଇଥାନ୍ତା । କାରଣ ମହାତ୍ମାଗାନ୍ଧି, ନେହେରୁ, ପଟେଲ ଓ ମାଉଣ୍ଟବେଟେନ ବିଭାଜନକୁ ଟାଳି ଦେଇଥାନ୍ତେ ଏବଂ ଭାରତର ବିଭାଜନ ହୋଇ ନ ଥାନ୍ତା। ତାଙ୍କ ମୃତ୍ୟୁ ପରେ ଆଉ କେହି ବିଭାଜନ ପାଇଁ ଏତେ ଜିଦ୍ ଧରି ନ ଥାନ୍ତେ କି ତାଙ୍କ ପରି ଆଉ କେହି ମୁସଲମାନ ସଂପ୍ରଦାୟକୁ ଏତେ ଦୃଢ ନେତୃତ୍ୱ ଦେଇପାରି ନ ଥାନ୍ତେ। ଯକ୍ଷ୍ମା ଥିଲା ତାଙ୍କ ମୃତ୍ୟୁର କାରଣ ଏବଂ ସେତେବେଳକୁ ତାଙ୍କର ବୟସ ଥିଲା ସତୁରୀ। ଏହି ରୋଗରେ ଭାରତରେ ପ୍ରାୟ ବର୍ଷକୁ ଅଧ ମିଲିୟନ୍ ଲୋକ ଉପଯୁକ୍ତ ଯତ୍ନ ଓ ଚିକିତ୍ସା ଅଭାବରୁ ମୃତ୍ୟୁବରଣ କରନ୍ତି। ଜିନାଙ୍କୁ ତାଙ୍କ ଡାକ୍ତର ଯେତେ କହିଲେ ଯେ ଶ୍ୱାସ ପ୍ରଶ୍ୱାସ ପାଇଁ ତାଙ୍କ ଫୁସ ଫୁସ୍ ଆଉ କାମ କରୁନାହିଁ ଏବଂ ସେ ମୃତ୍ୟୁର ନିକଟତର ହୋଇଛନ୍ତି। ସେତେବେଳେ ଦୁଃଖର ସାମାନ୍ୟ ଛାଇ ବି ତାଙ୍କ ମୁହଁରେ ଦେଖାଗଲା ନାହିଁ ଏବଂ ଅତି ଆକୁଳରେ ସେ କହିଲେ ଅନ୍ତତଃ ପାକିସ୍ଥାନ ଗଠନ ହେବା ପର୍ଯ୍ୟନ୍ତ ବଞ୍ଚାଇ ରଖନ୍ତୁ। ତାଙ୍କ ସ୍ୱପ୍ନର ପାକିସ୍ଥାନକୁ ଦେଖିବା ପାଇଁ ତାଙ୍କ ମୁଖମଣ୍ଡଳରେ ସେଇ କଠୋର ଭାବ, ସେଇ ଦୃଢତା ଫୁଟି ଉଠୁଥିଲା। ଦୁଇବର୍ଷ କାଳ ସେ୍ ନିଜକୁ ବଞ୍ଚାଇ ରଖିଲେ କେବଳ ପାକିସ୍ଥାନକୁ ଦେଖିବାପାଇଁ।

ସେ ଦିନ ଭାରତ ବିଭାଜନ ପାଇଁ ନିଷ୍ପତ୍ତି ନେବାକୁ ମାଉଣ୍ଟବେଟେନ ଖୁବ୍ ବ୍ୟସ୍ତ ଥିଲେ। ସେ ତାଙ୍କର ମନ୍ତ୍ରଣା କକ୍ଷରେ ପହଁଞ୍ଚି ଦେଖିଲେ ଏଗାର ଜଣ ଲୋକ ଖୁବ୍ ଆଗ୍ରହରେ ତାଙ୍କୁ ଅପେକ୍ଷା କରି ବସିଛନ୍ତି। ସେମାନେ ଥିଲେ ସେଇ ୨ ୪ ଜଣ

ଇଂରେଜ ଲୋକଙ୍କ ଦାୟାଦ । ଯେଉଁମାନେ ଥିଲେ ଇଷ୍ଟ ଇଣ୍ଡିଆ କମ୍ପାନୀର ପ୍ରତିଷ୍ଠାତା । ୩୫୦ ବର୍ଷ ଧରି ସେମାନେ ସେଇ କମ୍ପାନୀଦ୍ୱାରା ଜଳ ପଥରେ ଭାରତ ସହିତ ବାଣିଜ୍ୟ କରି ବ୍ରିଟେନକୁ ଧନଶାଳୀ କରି ଆସିଥିଲେ । ସେମାନେ ଥିଲେ ଭାରତରେ ବ୍ରିଟିଶ୍ ସାମ୍ରାଜ୍ୟର ଏଗାର ଗୋଟି ରାଜ୍ୟର ଗଭର୍ଣ୍ଣର । ସେମାନଙ୍କର ଦକ୍ଷ ଶାସନ ଯୋଗୁ ବ୍ରିଟେନ ଗର୍ବ ଅନୁଭବ କରେ । ସେମାନଙ୍କ ମଧ୍ୟରେ ଦୁଇଜଣ ଥିଲେ ଭାରତୀୟ । ସେମାନେ ମଧ୍ୟ ଥିଲେ ବ୍ରିଟେନ ପ୍ରତି ଅତ୍ୟନ୍ତ ଅନୁଗତ ଏବଂ ତା ବଦଳରେ ସେମାନଙ୍କୁ ଦିଆଯାଇଥିଲା ରାଜକୀୟ ବିଳାସମୟ ବଙ୍ଗଳା ହାତୀ ଉପରେ ବସି ଭାରତୀୟ ଜଙ୍ଗଲରେ ଭ୍ରମଣ କରିବାର ସୁଯୋଗ ଏବଂ ରାଜ୍ୟସାରା ଗସ୍ତ କରିବାକୁ ସ୍ୱତନ୍ତ୍ର ବିଳାସମୟ ରେଳଗାଡି । ଏ ବୈଠକର ଉଦ୍ଦେଶ୍ୟ ଥିଲା କି ଉପାୟରେ ରକ୍ତପାତ ଓ ନରହତ୍ୟାକୁ ରୋକାଯାଇ ପାରିବ କିମ୍ୱା ତାର ବିଭୀଷିକାକୁ କମାଇ ଦିଆଯାଇପାରିବ । ଗଭର୍ଣ୍ଣର ମାନେ ଜଣକ ପରେ ଜଣେ ଆସିଲେ । ମାଉଣ୍ଟବେଟେନ ଜଣକ ପରେ ଜଣକୁ ଡାକି ପଚାରିଲେ ସେମାନଙ୍କ ରାଜ୍ୟର ଅବସ୍ଥା ସଂପର୍କରେ କହିବାକୁ । ସେମାନଙ୍କ ଭିତରୁ ଆଠ ଜଣ କହିଲେ ଅବସ୍ଥା ଅତ୍ୟନ୍ତ ବିପଜ୍ଜନକ । ସ୍ୱାଭାବିକ ନୁହେଁ କିମ୍ୱା ନିୟନ୍ତ୍ରଣାଧୀନ ନୁହେଁ । କିନ୍ତୁ ସବୁଠାରୁ ଉତ୍ତେଜନାପ୍ରବଣ ରାଜ୍ୟ ଯଥା, ପଞ୍ଜାବ, ବେଙ୍ଗଲ ଓ ଉତ୍ତରପୂର୍ବ ସୀମାନ୍ତ ରାଜ୍ୟର ଗଭର୍ଣ୍ଣର ମାନେ କହିଲେ, ଲୋକମାନଙ୍କୁ ଏକତ୍ରିତ ହେବାକୁ ଦିଆଯାଉନାହିଁ ଏବଂ ଶାନ୍ତିରକ୍ଷା କରିବାକୁ ପଦକ୍ଷେପ ନିଆଯାଉଛି । Sir claf caroe, cerborus ପ୍ରଥମେ କହିଲେ, ତାଙ୍କ ରାଜ୍ୟର ସୀମାନ୍ତ ବାଟଦେଇ ଗତ ତିନିଶହ ବର୍ଷ ଧରି ଆକ୍ରମଣକାରୀ ମାନେ ଭାରତକୁ ଆସୁଥିଲେ ବି ପ୍ରତ୍ୟେକ ରାତି ଅନିଦ୍ରା ରହି ପ୍ରତ୍ୟେକ ଘଟଣାର ଟିକିନିଖି ଖବର ରଖୁଛନ୍ତି । କିନ୍ତୁ ପଠାନମାନେ ଉପଦ୍ରବ କରୁଛନ୍ତି । ସେମାନେ ପ୍ରତି ସପ୍ତାହରେ ଓଟ ପିଠିରେ ଦଳ ଦଳ ହୋଇ କାବୁଲରୁ ଆସୁଛନ୍ତି ଏବଂ ରୁଷିଆରୁ ଚମଡା, ଫଳ, ପଶମ, ଘଡି ଏବଂ ଚିନି ଆଣି ତାଙ୍କ ରାଜଧାନୀ ପେଶୱାର ବଜାରରେ ବିକ୍ରି କରୁଛନ୍ତି ଏବଂ ମାରାତ୍ମକ ଅସ୍ତ୍ରଶସ୍ତ୍ର ଆଣୁଛନ୍ତି । ତାଙ୍କ

ରାଜ୍ୟ ଖଣ୍ଡ ଖଣ୍ଡ ହୋଇଯିବାର ଭୟ ଅଛି, ଆଫଗାନିସ୍ଥାନରୁ ଯେଉଁମାନେ ଆସୁଛନ୍ତି ସେମାନଙ୍କୁ ସିନ୍ଧୁ ଅଂଚଳର ବ୍ୟାଙ୍କ ଗୁଡ଼ିକ ସାହାଯ୍ୟ କରୁଛନ୍ତି । ଏହି ଅବସ୍ଥାକୁ ସଂପୂର୍ଣ୍ଣ ନିୟନ୍ତ୍ରଣ କରି ନ ପାରିଲେ ଆନ୍ତର୍ଜାତିକ ସମସ୍ୟା ଦେଖାଦେବ । ତେଣୁ ଭାରତର ବିଭାଜନ ଯଦି ନିଶ୍ଚିତ ତେବେ ଆଇନଶୃଙ୍ଖଳା ରକ୍ଷା କରିବାକୁ ଚାରି ଡିଭିଜନ୍ ସୈନ୍ୟ ଆବଶ୍ୟକ ଏବଂ ପଞ୍ଜାବ ଯଦି ବିଭାଜିତ ହେବ, ତେବେ ସେଠାରେ ପ୍ରଚଣ୍ଡ ହିଂସାକାଣ୍ଡ ଘଟିବ । ଏବେ ତ ପଞ୍ଜାବ ଅଶାନ୍ତ ରହିଛି । ତା ପରେ ବେଙ୍ଗଲର ଗଭର୍ଣ୍ଣର Sir frederick Burrnous ଅସୁସ୍ଥ ଥିବାରୁ ତାଙ୍କର Ismay ଙ୍କ ରିପୋର୍ଟ ପେଶ୍ କରାଗଲା ଏଥିରେ କୁହାଯାଇଥିଲା ଯେ ପଞ୍ଜାବ ଓ ଉତ୍ତରପୂର୍ବାଞ୍ଚଳର ଅନୁରୂପ ଅବସ୍ଥା ବଙ୍ଗରେ ଅଛି । ଏ ସବୁ ଶୁଣି ସାରିଲା ପରେ Ismay ଙ୍କ ଦ୍ୱାରା ପ୍ରସ୍ତୁତ ବିଭାଜନ ରିପୋର୍ଟରେ ଗୋଟିଏ ଲେଖାଏଁ କପି ସେମାନଙ୍କ ମଧ୍ୟରେ ବଣ୍ଟାଯାଇଥଲା । ତା ପରେ ସେଇ ଭୋଜିସଭା ମନ୍ତ୍ରଣା କକ୍ଷରେ ଗଭର୍ଣ୍ଣର ମାନଙ୍କୁ ଉଦ୍‌ବୋଧନ ଦେଇ କହିଲେ, ଆପଣମାନଙ୍କ ଭିତରୁ କେଉଁମାନେ ଭାରତରେ ରହିବେ, କେଉଁମାନେ ପାକିସ୍ଥାନରେ ରହିବେ ଓ କେଉଁମାନେ ସ୍ୱାଧୀନ ରହିବେ କୁହନ୍ତୁ । ବିଭାଜନ ପ୍ରସ୍ତାବ ପ୍ରତି କେହି କିଛି ମତ ଦେବାକୁ ଆଗ୍ରହ ପ୍ରକାଶ କଲେ ନାହିଁ କି ବିରୋଧ କଲେ ନାହିଁ କିମ୍ବା କିଛି ନୂଆ ପ୍ରସ୍ତାବ ଦେଲେ ନାହିଁ । କାରଣ ସେମାନେ ଭାବିଲେ ବିଭାଜନ ନିଶ୍ଚିତ । ଶେଷରେ ମାଉଣ୍ଟବେଟେନ ମଦ ଗ୍ଲାସ ଧରି କହିଲେ, ସମସ୍ତଙ୍କୁ ଧନ୍ୟବାଦ, ଭାଇସରାଏଙ୍କ ଭୋଜିସଭା ମନ୍ତ୍ରଣା କକ୍ଷରେ ଜଣେ ଭାଇସରାଏ ଗଭର୍ଣ୍ଣର ମାନଙ୍କୁ ଏକାଠି ଏପରି ଭେଟିବା, ଭାତରରେ ବ୍ରିଟିଶ୍ ସାମ୍ରାଜ୍ୟର ଇତିହାସରେ ସର୍ବଶେଷ ଘଟଣା ।

୧୯୪୭ ମସିହା ଏପ୍ରିଲ ମାସ ଶେଷ ଆଡକୁ ମାଉଣ୍ଟବେଟେନ ତାଙ୍କ ପ୍ଲେନରେ ବସି ୨୫୦୦୦ ଉଚ୍ଚ ନଙ୍ଗା ପାହାଡକୁ ଅତିକ୍ରମ କରି ୧୦୦ ମାଇଲ ଦୂର ଉତ୍ତରାଞ୍ଚଳକୁ ଯାତ୍ରା କଲେ । ପ୍ଲେନ ଭିତରୁ ମାଉଣ୍ଟବେଟେନ ଓ ତାଙ୍କ ସହଯାତ୍ରୀ

ମାନେ ଦେଖି ପାରୁଥିଲେ ବିଶାଳ ପର୍ବତ ମାଳାର ଧବଳ ଦୃଶ୍ୟ । ହିନ୍ଦୁକୁଶ ଅତିକ୍ରମ କରି ସେମାନେ ପହଁଚିଲେ ଉତ୍ତରପୂର୍ବ ସୀମାନ୍ତର ରାଜଧାନୀ ପେଶୱାରଠାରେ । ପହଁଚିବା ପୂର୍ବରୁ ସେମାନେ ଆକାଶ ମାର୍ଗରୁ ଦେଖିଲେ ପୋଲିସକୁ ଅମାନ୍ୟ କରି ଚାରିଦିଗରୁ ମାଡି ଆସୁଛନ୍ତି ସହସ୍ର ସହସ୍ର ଲୋକ ତାଙ୍କୁ ସମ୍ବର୍ଦ୍ଧନା ଦେବା ପାଇଁ । ଏମାନେ ଥିଲେ ପଞ୍ଜାବ ଓ ଉତ୍ତର ପଶ୍ଚିମର ଦୁଇ ଉତ୍ତେଜନାପୂର୍ଣ୍ଣ ରାଜ୍ୟ ପଞ୍ଜାବ ଓ ଦକ୍ଷିଣପୂର୍ବ ସୀମାନ୍ତ ରାଜ୍ୟର ଅଧିବାସୀମାନେ । ଟ୍ରକ୍, କାର୍, ପଦବ୍ରଜ ଇତ୍ୟାଦି ମାଧ୍ୟମରେ ସେମାନେ ଆସି ପହଁଚିଲେ ପେଶୱାର ଠାରେ ବିପୁଳ ସଂଖ୍ୟାରେ । ପୋଲିସ୍ ଚେଷ୍ଟା କରୁଥିଲା ସେମାନଙ୍କୁ ରେଲରୋଡର ଓ ପେଶୱାର ଦୁର୍ଗ ମଧ୍ୟରେ ଅଟକାଇବାକୁ । ଚେଷ୍ଟା କରି ବିଫଳ ହେଉଥିଲେ ଏବଂ ମାଉଣ୍ଟବେଟେନ ସହ ଆଲୋଚନାକୁ ବନ୍ଧୁକ ମୁନରେ ବିଫଳ କରିଦେବାକୁ ଧମକ ଦେଇ ଚିତ୍କାର କରୁଥିଲେ । ସେମାନେ କହୁଥିଲେ ଯେ ସେ ରାଜ୍ୟର ଶତକଡା ୯୩ ଭାଗ ହେଉଛନ୍ତି ମୁସଲମାନ, ମାତ୍ର ଶାସିତ ହେଉଛନ୍ତି କଂଗ୍ରେସ ଓ ସେମାନଙ୍କ ସହଯୋଗୀ ଦଳ ମାନଙ୍କ ଦ୍ୱାରା ଏହା ବେଶିଦିନ ରହିବାକୁ ଆଉ ଦିଆଯିବ ନାହିଁ । କଂଗ୍ରେସ ଦଳର ନେତା ହେଉଛନ୍ତି ଅବଦୁଲ୍ ଗଫୁର ଖାଁ । ସେ ମୁସଲମାନ ନୁହଁନ୍ତି କିନ୍ତୁ ଦାଢି ରଖିଥିବା ହେତୁ ସେ ଜଣେ ଧର୍ମାନ୍ଧ ପରି ଥିଲେ ମୁସସଲମାନ ବୋଲି କୁହାଯାଏ । ସେ ସାରା ଜୀବନ ଗାନ୍ଧିଙ୍କ ଅହିଂସା ଓ ପ୍ରେମର ପୂଜାରୀ । ତାଙ୍କରି ଅନ୍ୟାୟ ପାଇଁ ରକ୍ତପାତ ହେଉଛି । ସ୍ୱତନ୍ତ୍ର ଏକ ମୁସଲମାନ ରାଷ୍ଟ୍ର ଗଠନ ପାଇଁ ଜିନାଙ୍କ ଡାକରାକୁ ସେ ବିରୋଧ କରୁଛନ୍ତି । ସେଇଦିନରୁ ଜିନାଙ୍କ ଡାକରା ପ୍ରତି ମୁସଲମାନ ମାନେ ସମର୍ଥନ ଜଣାଇ ଗଫୁର ଓ ପେଶୱାରରେ ପ୍ରତିଷ୍ଠିତ ତାଙ୍କ ସରକାରକୁ ବିରୋଧ କରୁଛନ୍ତି । ଏହାର ପ୍ରମାଣ ପାଇଁ ଆଜି ସେମାନେ ମୁସ୍‌ଲିମ୍ ଲିଗ୍‌ର ଆହ୍ୱାନରେ ଏପରି ବିକ୍ଷୋଭ କରୁଛନ୍ତି ଏବଂ ମାଉଣ୍ଟବେଟେନ ତାଙ୍କ ପତ୍ନୀ ଇଡ଼ଉଇନ୍ ଓ ୧୭ବର୍ଷର ଝିଅ ପାମଲାଙ୍କୁ ସମ୍ବର୍ଦ୍ଧନା ଜଣାଇଛନ୍ତି । ଗଭର୍ଣ୍ଣର ସାର୍ ଓଲଫ୍ ଜର୍ଜ ମାଉଣ୍ଟବେଟେନଙ୍କୁ ତାଙ୍କ ପରିବାର ସହ ଗୋଟିଏ କାରରେ ବସାଇ ତାଙ୍କ କୋଠିକୁ ନେଇଗଲେ ।

ସେମାନେ ଅତ୍ୟନ୍ତ ଉତ୍ୟକ୍ତ ହୋଇ ଗର୍ଭଣ୍ଣର କୋଠି ଆଡକୁ ମାଡି ଯାଉ ଯାଉ ଗଭର୍ଣ୍ଣର କୋଠିକୁ ଉଡାଇ ଦେଇ ରକ୍ତାକ୍ତ ହିଂସାକାଣ୍ଡ କରିବେ ବୋଲି ଚିତ୍କାର କରୁଥିଲେ । ତା ହୋଇଥିଲେ ସୈନ୍ୟ ମାନଙ୍କ ଗୁଳିରେ ଅନେକ ଲୋକ ମରିଥାନ୍ତେ ଓ ରକ୍ତାକ୍ତ ସଂଘର୍ଷ ଭିତରେ ମାଉଣ୍ଟବେଟେନଙ୍କ ସମାଧାନର ଆଶା ପୂରଣ ହୋଇପାରିନଥାନ୍ତା । ଅବସ୍ଥା ଅତ୍ୟନ୍ତ ଉତ୍ତେଜନା ପୂର୍ଣ୍ଣ ଦେଖି ବିବ୍ରତ ହୋଇ ପଡିଥିବା ଗଭର୍ଣ୍ଣର ଭାବିଲେ ମାଉଣ୍ଟବେଟେନ ହୁଏତ ବୃଦ୍ଧ ଲୋକଙ୍କ ପାଖକୁ ଗଲେ ଅବସ୍ଥା ଶାନ୍ତ ପଡିଯିବ । ଏକଥା ଭାବି ମାଉଣ୍ଟବେଟେନକୁ ଗାଡିରୁ ଓହ୍ଲାଇ ଲୋକଙ୍କ ପାଖକୁ ଯିବା ପାଇଁ ପରାମର୍ଶ ଦେଲେ । ମାଉଣ୍ଟବେଟେନ କିଛି ସମୟ ଭାବିଲା ପରେ କହିଲେ, ଅଲ୍ ରାଇଟ୍, ଆଇ ୱିଇଲ ଟେକ୍ ଚେଞ୍ଜ ଆଣ୍ଡ ସି ଦେମ୍ । ପତ୍ନୀ ଇଡଉଇନ ତାଙ୍କ ସାଙ୍ଗରେ ଯିବାକୁ କହିଲେ । କିଛି ସମୟପରେ ଜିପ୍‌ଟିଏ ଆସି ସେମାନଙ୍କୁ ରେଲରୋଡ ପାଖରେ ଛାଡିଲା । ଆରପଟରେ ଲୋକମାନେ ପ୍ରଚଣ୍ଡ କ୍ରୋଦ୍ଧରେ ଚିତ୍କାର କରୁଥିଲେ । ସେମାନେ ଦେଖିଲେ ଲୋକଙ୍କ ଠାରୁ ମାତ୍ର ୧୫ଫୁଟ ଦୂରରେ ଅଛନ୍ତି । ଜନ ସମୁଦ୍ର ଭିତରେ ଦେଖାଯାଇଛି, ୩୦, ୪୦ ହଜାର ରାଇଫଲ । ସେମାନଙ୍କ ଚିତ୍କାରରେ ଫାଟି ପଡୁଛି ଆକାଶ ପାତାଳ । ସେମାନଙ୍କ ଭିଡ଼ ଓ ଦଳା ଚକଟାରେ ଆକାଶକୁ ଉଠୁଥିବା ଧୁଳି ପଟଳର ଆସ୍ତରଣ ସମସ୍ତଙ୍କୁ ବାଟବଣା କରି ଇତସ୍ତତ କରିଦେଇଛି ଘନ କୁହୁଡ଼ି ପରି । ଅବସ୍ଥା ଅତ୍ୟନ୍ତ ଉଦ୍‌ବେଗଜନକ । ଯେକୌଣସି ମୁହୂର୍ତ୍ତରେ ପ୍ରଚଣ୍ଡ ହିଂସାକାଣ୍ଡ ଘଟିପାରେ । ଅଶାନ୍ତ ଉଗ୍ର ଜନସମୁଦ୍ର ମଧ୍ୟରୁ କେହି ରକ୍ତମୁଖା ପାଷାଣ୍ଡ ହୁଏତ ଗୁଳି ବର୍ଷା କରିବ । କାର୍ ଭିତରେ ଥିବା ମାଉଣ୍ଟବେଟେନଙ୍କ ଓ ତାଙ୍କ ପରିବାରର ଚିହ୍ନବର୍ଣ୍ଣ ବି ରହିବ ନାହିଁ । ନିଶ୍ଚଳ ମାଉଣ୍ଟବେଟେନ କିଂ କର୍ତ୍ତବ୍ୟ ବିମୁଢ଼ । ବିକଳରେ ତାଙ୍କୁ ଜାବୁଡ଼ି ଧରିଛନ୍ତି, ଭୟରେ ନୁହେଁ କି ଆତ୍ମରକ୍ଷା ପାଇଁ ନୁହେଁ, ସ୍ୱାମୀଙ୍କୁ ଅକ୍ଷତ ରଖିବାକୁ, ପାମେଲାଙ୍କ ଦେହରେ ସତେ ଯେମିତି ପ୍ରାଣ ନୁହେଁ । ପ୍ରଚଣ୍ଡ ଝଡ଼ ତୋଫାନରେ ଲୋଟାକୋଟା ଅସହାୟ ପକ୍ଷୀ ଶାବକଟିଏ ପରି ଲୋଟି ପଡ଼ିଛନ୍ତି ମା ଉପରକୁ । ଜଳାଶୟ ଭିତରେ ବତକ

ମାନଙ୍କ ପରି ଟଳି ପଡ଼ିବେ ସେମାନେ ଅସହାୟ ହୋଇ। ମନ୍ତ୍ର ଶକ୍ତିର କାଉଁରି ସ୍ପର୍ଶରେ ଅଣାୟତ ହେଲା ପରି ହଠାତ ସମସ୍ତ ପରିବେଶ ଶାନ୍ତ ହୋଇଗଲା। ଗହଳ ଦାଢ଼ିରେ ଆବୃତ୍ତ ମୁଖମଣ୍ଡଳରୁ ବାରି ହେଉନାହିଁ ସେ କିଏ ? କାର୍ ପାଖରେ ଠିଆ ହୋଇ ସବୁଜ ବର୍ଣ୍ଣ ବସ୍ତ୍ର ପରିହିତ କେହି ଜଣେ ଶାନ୍ତି ଦୂତ ଆଶିର୍ବାଦ ମୁଦ୍ରାରେ ହାତ ଟେକିଛନ୍ତି ଗମ୍ଭୀର ଭାବରେ। ଶାନ୍ତିର ପ୍ରତୀକ ସବୁଜ ରଙ୍ଗ, ଇସଲାମର ଧାର୍ମିକ ସଂକେତ ଓଲଫ କେୟାରଙ୍କର ମନେ ହେଲା କେହି ଜଣେ ନୃସଂଶ ଗୁଳି ଫୁଟାଇବାକୁ ପ୍ରସ୍ତୁତ ହେଉଛନ୍ତି। ବର୍ମାର ମିଳିତ ସେନା ପରେ ସେନାର ମୁଖ୍ୟ ସେନାପତି ମାଉଣ୍ଟବେଟେନ ଆଜି ଅସହାୟ ଆହତ ବନ୍ଦୀଟିଏ ପରି ଜେଲର ଅନ୍ଧାର କୋଠରୀ ଭିତରେ ସତେଯେମିତି ବନ୍ଦୀ ହୋଇ ବସିଛନ୍ତି ଆତଙ୍କିତ ଭାବରେ ମୁକ୍ତିକୁ ପ୍ରତୀକ୍ଷା କରି। ସବୁଜ ରଙ୍ଗ,କେତେ ଶାନ୍ତିପ୍ରଦ ତା'ର ସବୁଜିମା ! ମକ୍କାକୁ ତୀର୍ଥ ଯାତ୍ରା କରୁଥିବା ସୁଦ୍ଧାତ୍ମାମାନଙ୍କର ପବିତ୍ର ସଂକେତ। ଇସଲାମର ଧର୍ମଧ୍ୱଜା, ଯାହାକୁ ସର୍ବାନ୍ତ କରଣରେ ସର୍ବଶ୍ରେଷ୍ଠ ମାନ୍ୟତା ଦିଏ ମୁସଲିମ ଜଗତ। ଇଡଉଇନ ସ୍ୱାମୀଙ୍କୁ ଜାବୁଡ଼ି ଧରିଥିଲେ। ମାଉଣ୍ଟବେଟେନ ସିଧା ଆଗକୁ ଚାହିଁଥିଲେ। ସେ ପତ୍ନୀଙ୍କୁ ହଲାଇ ଦେଇ କ୍ଷୀଣ କଣ୍ଠରେ କହିଲେ, ୱେଭ ଟୁ ଦେମ୍। ଇଡଉଇନ ତାଙ୍କର ସୁନ୍ଦର ସୁଠାମ ସୁନାର ଖଡ଼ିକା ପରି ହାତଟିକୁ ଆସ୍ତେ ଆସ୍ତେ ଲୀଳାୟିତ ମୁଦ୍ରାରେ ଉପରକୁ ଟେକିଲେ। ଏ କ'ଣ ? ହଠାତ୍ କିପରି ଏ ଜଳନ୍ତା ନିଆଁର ପ୍ରଜ୍ୱଳ ଅଗ୍ନିଶିକା ନିର୍ବାପିତ ହୋଇଗଲା କିପରି ? ସହସ୍ର କଣ୍ଠରୁ ମିଳିତ ଜୟଧ୍ୱନୀ ତାଙ୍କ ଉଦ୍ଦେଶ୍ୟରେଏପରି ଉଚ୍ଛୁଳି ଉଠିଲା କିପରି ? ଗୁଳି ଗୋଳା ବର୍ଷଣ କରିବାକୁ ହିଂସା ପ୍ରବଣ କୃଦ୍ଧ ଜନତା ଶାନ୍ତ ଶୀତଳ ତଟିନୀର ଉର୍ମିପରି ଚାହୁଁ ଚାହୁଁ ଏପରି ମିଳେଇଗଲା କିପରି ? ସେମାନଙ୍କ ଶାନ୍ତ କଣ୍ଠରୁ ଉଚ୍ଛୁଳି ଉଠିଲା, ମାଉଣ୍ଟବେଟେନ ଜିନ୍ଦାବାଦ, ମାଉଣ୍ଟବେଟେନ ଜିନ୍ଦାବାଦ, ମାଉଣ୍ଟବେଟେନ ଲଙ୍ଗ ଲଭ। ସେମାନେ ସବୁ ଥିଲେ ବୀର ଯୋଦ୍ଧା ପଠାନ ଜାତିର ଦାୟାଦ। ସେମାନେ ସୀମାନ୍ତ ଗାନ୍ଧି ଗଫୁରଙ୍କ ଦ୍ୱାରା ଶାସିତ ହେବାକୁ ଚାହାଁନ୍ତି ନାହିଁ। ସେମାନେ ଚାହାଁନ୍ତି ସ୍ୱତନ୍ତ୍ର ମୁସଲିମ ରାଜ୍ୟ। ସେଥିପାଇଁ ସେମାନେ ସମର୍ଥନ କରନ୍ତି ମୁସଲିମ୍ ଲିଗ୍ ଓ

ତା'ର ନେତା ଜିନ୍ନାଙ୍କୁ । ସେମାନେ ବିରୋଧ କରନ୍ତି ଗାନ୍ଧି, ନେହେରୁ, ପଟେଲ ଓ ତାଙ୍କର ଦାବୀ ଅଖଣ୍ଡ ଭାରତକୁ । ନେହେରୁ ଓ ପଟେଲ କିନ୍ତୁ ନଥିଲେ ଅଖଣ୍ଡ ଭାରତ ସପକ୍ଷରେ । ସେମାନେ ଥିଲେ ସ୍ୱାର୍ଥପର, କ୍ଷମତା ପାଇଁ ପାଗଳ । ନେହେରୁ ତ ଥିଲେ ନୀଳବର୍ଣ୍ଣ ଶୃଗାଳ ପରି ଚତୁର । ତାହା ନହୋଇଥିଲେ ଗାନ୍ଧି ଯେତେବେଳେ କହିଲେ ଭାରତକୁ ବିଭାଜନ କର ନାହିଁ ଓ କରିବ ତ ତାଙ୍କ ମୃତ ଶରୀର ଉପରେ କର, ସେତେବେଳେ ନେହେରୁ ତାଙ୍କୁ କରଛଡା ଦେଇ ଦୂରେଇ ରହିଲେ କାହିଁକି ? ପ୍ରକୃତରେ ଗାନ୍ଧିଙ୍କର ଏହି ଘୋଷଣା ଠାରୁ ଭାରତର ବିଭାଜନ ପର୍ଯ୍ୟନ୍ତ ତା'ର ଭୂମିକା ରହସ୍ୟଜନକ । ସେ ଥିଲେ ଅଖଣ୍ଡ ଭାରତର ବିରୋଧୀ । ବରଂ ମାଉଣ୍ଟ ବେଟେନ ନଥିଲେ ତାଙ୍କ ଠାରୁ ଶହସ୍ର ଗୁଣ ଅଧିକ ଅଖଣ୍ଡ ଭାରତ ପ୍ରତି ଆଗ୍ରହୀ । ଏଥିପ୍ରତି ଜିନ୍ନାଙ୍କୁ ଏକମତ କରାଇବା ପାଇଁ ସେ କମ୍ ଉଦ୍ୟମ କରିନାହାଁନ୍ତି । ସେଥିପାଇଁ ସେ ଭାରତ ଛାଡି ଲଣ୍ଡନକୁ ପଳାଇ ଯିବାକୁ ଧମକ ମଧ୍ୟ ଦେଉଥିଲେ । କିନ୍ତୁ ଜିନ୍ନାଙ୍କୁ ମନାଇବା ପାଇଁ ସେ ଥରେ ଚେଷ୍ଟା ମଧ୍ୟ କରିନାହାଁନ୍ତି । ମାଉଣ୍ଟବେଟେନ ନେହେରୁଙ୍କ ମନୋଭାବକୁ ଜାଣିଥିଲେ । ସେଥିପାଇଁ ଜିନ୍ନାଙ୍କ ସହିତ ବିଭାଜନ ପୂର୍ବରୁ ୬ଦିନ ଧରି ୧୦ଘଣ୍ଟା ଆଲୋଚନା କରିଥିଲେ, ନେହେରୁଙ୍କ ସାଙ୍ଗରେ ଥରେ ମାତ୍ର କରିନାହାଁନ୍ତି । ଅଥଚ ଆଜି ବି ଇତିହାସ ତାଙ୍କୁ ଜାତୀୟତାବାଦୀ ରାଷ୍ଟ୍ର ନେତାର ସମ୍ମାନ ଦେଇଛି । ଇତିହାସ ଏହି ତ୍ରୁଟି ସଂଶୋଧନ କରିବା ଉଚିତ । ୩୦ବର୍ଷ ଧରି ଗାନ୍ଧିଙ୍କର ପଟ୍ଟଶିଷ୍ୟ ଭାବରେ ଯେଉଁ ପରିଚୟ ଦେଇଛନ୍ତି, ତା ମୂଳରେ ଥିଲା କ୍ଷମତା ପ୍ରତି ତାଙ୍କର ପ୍ରଚଣ୍ଡ ଆସକ୍ତି । ସେ କେବେ ଭାରତୀୟ ମାନଙ୍କର ପ୍ରତିନିଧି ହୋଇନପାରନ୍ତି । ତାଙ୍କର ବିଳାସପୂର୍ଣ୍ଣ ଜୀବନ ଶୈଳୀ ଥିଲା ସମ୍ପୂର୍ଣ୍ଣ ଅଣଭାରତୀୟ । ସେ ଥିଲେ ଭୀରୁ ପଳାୟନପନ୍ଥୀ । ତାଙ୍କୁ ରାଷ୍ଟ୍ରୀୟ ସମ୍ମାନ ଦେବା ପାଇଁ ଭାରତବାସୀ ଲଜ୍ୟାବୋଧ କରିବା ଉଚିତ ।

ପଠାନ୍ ମାନଙ୍କର ସମ୍ମୁଖୀନ ହେବାର ୪୮ ଘଣ୍ଟା ପରେ ମାଉଣ୍ଟବେଟେନ ଓ ତାଙ୍କ ପରିବାର ପଞ୍ଜାବରେ ପହଞ୍ଚିଲେ । ରାଓ୍ୱଲପିଣ୍ଡି ଠାରୁ ୨୫ମାଇଲ ଦୂର ଗୋଟିଏ ଛୋଟିଆ ଗାଁକୁ ତାଙ୍କୁ ସାଙ୍ଗେ ସାଙ୍ଗେ ନେଇଗଲେ । ସାର୍ ଇଭାମ୍ ଜେରକିନ୍ସ ।

ଗାଁର ଲୋକସଂଖ୍ୟା ୩୫୦, ଧୂଳିମାଟିର ଆବର୍ଜନାମୟ ପରିବେଶ। ୧୪ଦିନ ପୂର୍ବରୁ ପଞ୍ଜାବର ଗଭର୍ଣ୍ଣର ତାଙ୍କୁ ଯେଉଁ ଉଦ୍‌ବେଗଜନକ ରିପୋର୍ଟ ଦେଇଥିଲେ, ତା'ର ସତ୍ୟାସତ୍ୟ ପରୀକ୍ଷା କରିବା ପାଇଁ ତାଙ୍କୁ ସୁଯୋଗ ମିଳିଲା। ସେ ଭାବିଲେ ଲୋକଙ୍କ ସାଙ୍ଗରେ ପ୍ରତ୍ୟେକ୍ଷ ଆଲୋଚନା କରି ଦେଶର ମୋଟାମୋଟି ଅବସ୍ଥା ସେ ଜାଣିପାରିବେ। ପ୍ରକୃତ ଅବସ୍ଥା ଜାଣିଲା ପରେ ଯେଉଁ ନୌବାହିନୀ କ୍ୟାପ୍‌ଟେନ୍ ଶତ୍ରୁ ଆକ୍ରମଣରେ ତାଙ୍କ ଜାହାଜରେ ମରିଥିବା ଅନେକ ଲୋକଙ୍କୁ ଦେଖି ସେ ବିଚଳିତ ହୋଇନଥିଲେ ଏବଂ ସେନାପତି ଅସଂଖ୍ୟ ଅସଭ୍ୟ ଲୋକଙ୍କୁ ବର୍ମା ଜଙ୍ଗଲ ଯୁଦ୍ଧରେ ପରିଚାଳନା କରିଥିଲେ। ସେ ବିଚଳିତ ହୋଇପଡିଲେ। ଯୁଗ ଯୁଗ ଧରି ଯେଉଁ ଗାଁଟାରେ ୨୦୦୦ ହିନ୍ଦୁ, ଶିଖ୍ ଏବଂ ୧୫୦୦ ମୁସଲିମ ମାନେ ଶାନ୍ତିରେ ବସବାସ କରିଆସୁଥିଲେ, ଆଜି ସେଠାରେ କେବଳ ଶିଖ୍ ମାନଙ୍କର ଭଙ୍ଗାରୁଜା ଗୁରୁଦ୍ୱାର ଛଡା ଆଉ କିଛି ନାହିଁ। ମାଉଣ୍ଟବେଟେନଙ୍କ ଭିଜିଟ୍‌ରେ ପୂର୍ବଦିନ ଏକ ବ୍ରିଟିଶ୍ ରେଜିମେଣ୍ଟ ସେ ଗାଁକୁ ପ୍ୟାଟ୍ରୋଲିଂରେ ଆସିଥିବା ବେଳେ ସେଠାକାର ଲୋକେ ପରସ୍ପର ପ୍ରତି ବିଶ୍ୱାସ ହେତୁ ମିଳିତ ଭାବେ ଶାନ୍ତିପୂର୍ଣ୍ଣ ପରିବେଶରେ ଥିଲେ। କିନ୍ତୁ ରାତି ପାହି ସକାଳ ହେଲା, ପରେ ସେ ଗାଁ ଶୂନ୍‌ସାନ୍ ହୋଇଯାଇଥିଲା। ଅସଂଖ୍ୟ କ୍ଷତବିକ୍ଷତ ମୃତ ଦେହ ପଡିଥିଲା ଏବଂ ଅନ୍ୟମାନେ ଭୟରେ ରାତାରାତି ଗାଁ ଛାଡି ପଳାଇ ଯାଇଥିଲେ। ଦଳେ ହେଟାବାଘ ପରି ଲୁଚି ଲୁଚି। ଜଣେ ମୁସଲମାନ ଆସି ପେଟ୍ରୋଲ ଢ଼ାଳି ଗାଁର ହିନ୍ଦୁ ଓ ଶିଖ୍ ମାନଙ୍କର ଘରଦ୍ୱାର ସବୁ ଜାଳି ଦେଇଥିଲେ। ମୂହୁର୍ତ୍ତକ ଭିତରେ ନିଆଁ ଜଳି ଉଠି ହିନ୍ଦୁ ଓ ଶିଖ୍ ମାନଙ୍କର ସବୁ ଘରଦ୍ୱାର ଜାଳିଦେଲା ଏବଂ ଦାବାଗ୍ନିପରି ନିଆଁ ବ୍ୟାପୀଯାଇ ମୁସଲିମ୍ ମାନଙ୍କର ମଧ୍ୟ ସମଦଶା ଘଟାଇ ଦେଲା। ଅନେକ ହିନ୍ଦୁ ମହିଳା ମାନଙ୍କୁ ଧର୍ଷଣ କରି ଇସଲାମ ଧର୍ମ ଗ୍ରହଣ କରିବାକୁ ବାଧ୍ୟ କରାଯାଇଥିଲା। ଯେଉଁମାନେ ଭୟରେ ପଳାଇ ଯାଇଥିଲେ ସେମାନଙ୍କୁ ଧରିଆଣି ଗୋଛାଗୋଛା କରି ବାନ୍ଧି ଜାଳି ଦେଇଥିଲେ। ଯେଉଁ କେତେକ ମହିଳା ସେମାନଙ୍କ କବଳରୁ ଖସିଗଲେ, ସେମାନେ ନିଜକୁ ଜଳନ୍ତା ଜୁଇରେ ଆହୂତି ଦେଇ ପରିବାର

ମାନଙ୍କ ସାଙ୍ଗରେ ଜଳିଗଲେ । କାହୁଟା ଗାଁର ଏହି ପ୍ରଚଣ୍ଡ ବିଭତ୍ସ ଦୃଶ୍ୟ ଦେଖିଲା ପରେ ସେ ଲଣ୍ଡନକୁ ଜଣାଇ ଦେଲେ । ଯେଉଁ ଦୃଶ୍ୟ ସେ ପେଶଓ୍ୱାରରେ ଦେଖିଲେ କାହୁଟା ଗାଁର ଦୃଶ୍ୟ ଥିଲା ତାହାଠାରୁ ସହସ୍ର ଗୁଣରେ ବର୍ବର ଓ ବିଭତ୍ସ । ଏଥିରୁ ସେ ଅନୁମାନ କରିନେଲେ ସାରା ଦେଶରେ ସାମ୍ପ୍ରଦାୟିକ ହିଂସାକାଣ୍ଡର ବିଭତ୍ସ ଦୃଶ୍ୟ । ସେ ବୁଝିଗଲେ ଭାରତକୁ ରକ୍ଷା କରିବାକୁ ହେଲେ ତତ୍‌କ୍ଷଣାତ ନିଷ୍ପତ୍ତି ନେବାକୁ ହେବ ଏବଂ ନିଷ୍ପତ୍ତି କେବଳ ବିଭାଜନ ଛଡା ଅନ୍ୟ କିଛି ନୁହେଁ । ତାହା ନହେଲେ ଭାରତ ଧ୍ୱଂସ ହୋଇଯିବ ଏବଂ ବ୍ରିଟିଶ୍ ସାମ୍ରାଜ୍ୟ ସାରା ପୃଥିବୀରେ କଳଙ୍କିତ ହୋଇଯିବ । ଦିଲ୍ଲୀର ଯେଉଁ ମେହେନ୍ତର ବସ୍ତିରେ ରହି ସାଥୀ ମାନଙ୍କୁ ଆହ୍ୱାନ ଦେଇଥିଲେ, ଭାରତକୁ ଅଖଣ୍ଡ ରଖିବା ପାଇଁ ଓ ଅସଫଳ ହୋଇଥିଲେ ଗାନ୍ଧି । ଗାନ୍ଧି ସେହି ବସ୍ତିକୁ ତାଙ୍କର ଶେଷ ତୀର୍ଥଯାତ୍ରା କଲେ ୧୯୪୭ ମସିହା ମେ’ ମାସ ପହିଲା ସନ୍ଧ୍ୟାରେ । ପୂର୍ବପରି ଚଟାଣ ଉପରେ ଚକା ପକାଇ ବସି, ଲଣ୍ଡା ମୁଣ୍ଡରେ ଓଦା ଗାମୁଛା ଖଣ୍ଡେ ପକାଇ ସେହିଠାରେ ଅତ୍ୟନ୍ତ ଦୁଃଖରେ ସେ ଶୁଣିଲେ କଂଗ୍ରେସ ଦଳର ମୁଖିଆ ମାନଙ୍କର ତର୍କ ସଭା । ସାରା ଜୀବନ ତାଙ୍କ ସାଙ୍ଗରେ ଯେଉଁମାନେ ତାଙ୍କର ସମସ୍ତ କାର୍ଯ୍ୟକ୍ରମରେ ସହଯୋଗ କରିଥିଲେ, ତାଙ୍କ ସମସ୍ତ ଜେଲ ଜୀବନ, ଅନଶନ, ହରତାଳ ଏବଂ ତାଙ୍କର ଅସହଯୋଗ ଆନ୍ଦୋଳନ । ସେମାନଙ୍କ ସାଙ୍ଗରେ ସମସ୍ତ ଆଲୋଚନା ସବୁ ପଛରେ ପଡି ରହିଲା । ସମସ୍ତେ ତାଙ୍କଠାରୁ ସମସ୍ତ ସମ୍ପର୍କ ଛିନ୍ନ କରିବାର ବେଳ ପାଖେଇ ଆସିଲା । ଅହିଂସା ଉପାୟରେ ସ୍ୱାଧୀନତା ଆଣିବାର ତାଙ୍କର ସମସ୍ତ ସଂଗ୍ରାମ ଚରମ ଦୁଃଖ ସହିତ ସଫଳ ହେଲେ ବି ସେସବୁ ହଜିଲା ଦିନର ଅସମାପ୍ତ କାହାଣୀ ହୋଇ ରହିଗଲା । ମାତ୍ର ତାଙ୍କ ସଂଗ୍ରାମର ଶେଷ ପରିଣତି ଆଜି ଏକ ବିୟୋଗାନ୍ତକ ନାଟକରେ ଦୁଃଖଦ ମୁହୂର୍ତ୍ତରେ ଶେଷ ହେବାକୁ ବସିଛି । ସାଥୀ ମାନଙ୍କର ଧୈର୍ଯ୍ୟ ଶେଷ ହୋଇଯାଇ ସେମାନେ ସମସ୍ତେ ଥକି ହୋଇପଡିଛନ୍ତି । ସେମାନେ ଆଜି ଭାରତ ବିରୋଧୀ ଏକ ନିଷ୍ପତ୍ତିକୁ ସ୍ୱ ଇଚ୍ଛାରେ ଗ୍ରହଣ କରିନେଇଛନ୍ତି । ଏହା ହେବାକୁ ସେମାନେ ଆଗରୁ ଚାହିଁଥିଲେ । କିନ୍ତୁ ବିଧିର ବିଧାନ କିଏ ଉପେକ୍ଷା

କରିଥାନ୍ତା । ଅନ୍ତିମ ପର୍ଯ୍ୟାୟ ପର୍ଯ୍ୟନ୍ତ ଅନିଚ୍ଛାକୃତ ଭାବରେ ସେମାନଙ୍କୁ ଅପେକ୍ଷା କରିବାକୁ ହେଲା । ଗାନ୍ଧି ଭାରତର ବିଭାଜନକୁ ଆଉ ବିରୋଧ କଲେ ନାହିଁ । ଭାରତ ପ୍ରତି କେଉଁ ଏକ ରହସ୍ୟ ଜନକ ଅଜଣା ଭକ୍ତିଭାବ ହେତୁ ଭାରତର ଆଭ୍ୟନ୍ତର ଗ୍ରାମ୍ୟ ମାନଙ୍କର ତାଙ୍କର ଦୀର୍ଘ ଦିନର ରହଣୀ ତାଙ୍କୁ ଭାରତର ଆତ୍ମା ସହିତ ନିବିଡ କରିଦେଇଥିଲା । ଏ ସମ୍ପର୍କ ଥିଲା ଆତ୍ମିକ, ଆଧ୍ୟାତ୍ମିକ ଓ ସାତ୍ତ୍ୱିକ । ସାତ୍ତ୍ୱିକ ଓ ରାଜସିକ ମାର୍ଗ ସଂପୂର୍ଣ୍ଣ ପୃଥକ । ଦୁଇ ମାର୍ଗ କେବେ ଏକତ୍ର ହୁଅନ୍ତି ନାହିଁ । ସେପରି ପରିଣତି ଆଶା କରିବା ବୃଥା । ତାଙ୍କ ପ୍ରତି ସେମାନଙ୍କର ଆନୁଗତ୍ୟ ଥିଲା ଲକ୍ଷ୍ୟସ୍ଥଳରେ ପହଞ୍ଚିବାର ଏକ କଳ୍ପିତ ମାର୍ଗ । ତାହା ସ୍ୱାର୍ଥ ଭିତ୍ତିକ । ନିଃସ୍ୱାର୍ଥ ସେବା ସବୁବେଳେ ସ୍ୱାର୍ଥ ରହିତ । ନିଃସ୍ୱାର୍ଥ ସେବା ତ ସ୍ୱର୍ଗୀୟ । ସେ ଶୁଣି ପାରୁଥିଲେ ବିୟୋଗାନ୍ତକ ନାଟକ ଶେଷ ସଂଳାପ । ଏପରି ମୁହୂର୍ତ୍ତ ଜୀବନରେ କେବେ ଆସିବ ବୋଲି ସେ ଭାବି ନଥିଲେ । ତାହା ହିଁ ତାଙ୍କର ଦୁଃଖ । ଆଜି ସେମାନେ ତାଙ୍କୁ ଏକା ଛାଡି ଦେଇ ନିଜ ନିଜ ବାଟରେ ଚାଲିଯିବେ, ଯାଆନ୍ତୁ ସେମାନେ । ସେମାନଙ୍କର ମଙ୍ଗଳ ହେଉ । ମାତୃଭୂମି ପ୍ରତି ମୋହ ସେମାନଙ୍କ ଥିଲା ଏକ ଛଳନା । ମାଉଣ୍ଟ ବେଟେନଙ୍କୁ ଧନ୍ୟବାଦ । ଆପ୍ରାଣ ଉଦ୍ୟମ ସତ୍ତ୍ୱେ ସେ ବିଭାଜନକୁ ରୋକିପାରିଲେ ନାହିଁ । ବିଭାଜନ ପାଇଁ ଏମାନଙ୍କର ଇଚ୍ଛା ନଥିଲେ ଜିନ୍ନାଙ୍କ ପାଖରେ ସେ ଆତ୍ମସମର୍ପଣ କରିନଥାନ୍ତେ । ଜୀବନ ବ୍ୟାପୀ ସାଧନାର ପ୍ରତିଟି ମୁହୂର୍ତ୍ତ ତାଙ୍କ ଆଖି ଆଗରେ ଭାସିଯାଉଥିଲା । ଗାନ୍ଧି ଆଉ କିଛି ଭାବି ପାରୁନଥିଲେ । ଆଖି ବୁଜି ସେ ଧ୍ୟାନରେ ବସିଲେ ବିଭାଜନ ପୂର୍ବରୁ ଭାରତ ମାତାଙ୍କର କରୁଣ ବିଳାପ ତାଙ୍କୁ କାତର କରିଦେଲା । ହାତ ଉଠାଇ ସେ ପ୍ରଣାମ କରି କହିଲେ, ମା' ମୋତେ କ୍ଷମା କର, ମୁଁ ପାରିଲି ନାହିଁ । ଗାନ୍ଧି ଆଖି ଫିଟାଇ ଦେଖିଲେ, ଆଉ ସେଠାରେ କେହି ନାହାଁନ୍ତି । ସେ ସନ୍ଧ୍ୟାଥିଲା ତାଙ୍କ ଜୀବନର ସବୁଠାରୁ ବେଶି ଅସହାୟତା ଛଡା ବିଭାଜନକୁ ବିରୋଧ କରିବା ପାଇଁ ଆଉ କିଛି ବିକଳ୍ପ ନଥିଲା । ପରେ ଜଣେ ବନ୍ଧୁଙ୍କ ପାଖରେ ଦୁଃଖବ୍ୟକ୍ତ କରି ସେ କହିଥିଲେ ବିଧିର ବିଧାନ ବଡ ବିଚିତ୍ର । କଂଗ୍ରେସ ମଧ୍ୟରେ ଯଦି ଏକତା ରହିଥାନ୍ତା, ମାଉଣ୍ଟ

ବେଟେନ କେବେ ହେଲେ ବିଭାଜନ କରିପାରି ନଥାନ୍ତେ କିମ୍ବା ଜିନା କେବେ ହେଲେ ପାକିସ୍ଥାନ ପାଇନଥାନ୍ତେ। କଂଗ୍ରେସର ଏକତା ଅକ୍ଷୂର୍ଣ୍ଣ ରହିବ, ଏହା ଥିଲା ଗାନ୍ଧିଙ୍କର ଦମ୍ଭ। ସେଇ ଦମ୍ଭରେ ସେ କହିଲେ Integrity, not, division. ଏ ଦମ୍ଭ ତାଙ୍କର ବୃଥା ହେଲା, କାରଣ କଂଗେସ ଦଳର ତୁଙ୍ଗ ନେତା ମାନଙ୍କୁ ନିଜର ପଟ୍ଟଶିଷ୍ୟ ଭାବି ସେମାନଙ୍କୁ ସେ ବିଶ୍ୱାସ କରିଥିଲେ। ସେମାନେ କିନ୍ତୁ ଥିଲେ ପୟମୁଖ ବିଷକୁମ୍ଭ। କରୁଣ ବିଳାପ ତାଙ୍କର ଶୂନ୍ୟରେ ମିଳେଇ ଗଲା। କେହି ତାଙ୍କ କଥା ଶୁଣିଲେ ନାହିଁ। ଏପରିକି ତାଙ୍କ ଦୁଇ ପଟ୍ଟଶିଷ୍ୟ ମଧ୍ୟ ମୁହଁ ମୋଡି ଦେଇ ଚାଲିଗଲେ। ହଁ, ଯାଆନ୍ତୁ ସେମାନେ। ଶାସନ କ୍ଷମତାର ସ୍ୱାଦ ଚାଖିବାର ଅନେକ ଦିନର ଆଶା ଏବେ ସେମାନଙ୍କର ପୂରଣ ହେବ। କିନ୍ତୁ କ'ଣ ହେବ ସେମାନଙ୍କର ଆଦର୍ଶ ? ସେବା ? ତ୍ୟାଗ ? କର୍ମପ୍ରବଣତା ? ସମୟ ଜ୍ଞାନ ? ଚରିତ୍ରବତ୍ତା ? ନା ଭୋଗ ବିଳାସ ? କ୍ଷମତାର ଚରିତ୍ର ତ ସବୁବେଳେ ସମାନ, ନ୍ୟାୟ ବିଚାର ନା ନିର୍ଦ୍ଦୋଶକୁ ଦଣ୍ଡ ? କ'ଣ ହେବ ଭାରତର ଭବିଷ୍ୟତ ସେମାନଙ୍କର ଶାସନରେ। ସାମ୍ୟବାଦ, ସମାଜବାଦ ନା, ପୁଞ୍ଜିବାଦ ? କେଉଁ ବାଦକୁ ସେମାନେ ଆଦରି ନେବେ ? କେଉଁ ବାଦର ଲକ୍ଷ୍ୟ ପୂରଣ କରିବ ସେମାନଙ୍କର ଶାସନ ? ସବୁବାଦର ପରୀକ୍ଷା ସରିଛି। ରାଜତନ୍ତ୍ର, ସ୍ୱୈରତନ୍ତ୍ର, ଏକଛତ୍ରବାଦ; ବାକି ଅଛି ଗଣତନ୍ତ୍ର। ଗଣତନ୍ତ୍ର ଶାସନର ସ୍ୱାଦ ଚାଖିବା ପାଇଁ ଏବେ ଲୋକ ବ୍ୟାକୁଳ । ଗଣତନ୍ତ୍ର ଶାସନ ଆଗରୁ ବି ଥିଲା, ଅନେକ ବାଦର ବିଫଳତା ପରେ ଏବେ ଲୋକେ ଚାହାନ୍ତି ଗଣତନ୍ତ୍ର। ଗଣତନ୍ତ୍ରରେ ପୁଞ୍ଜିବାଦ କିମ୍ବା ଏକଛତ୍ରବାଦ ବି ଦେଖାଯାଇପାରେ କାରଣ ସେ ଶାସନର କେନ୍ଦ୍ରବିନ୍ଦୁ ହୋଇ କ୍ଷମତାର ଅପପ୍ରୟୋଗ କଲେ, ତା'ରି ଚରିତ୍ର ପ୍ରତିଫଳିତ ହୁଏ ଶାସନରେ। ସେ ରାଜତନ୍ତ୍ର ହେଉ କି ଗଣତନ୍ତ୍ର। ତା ନହୋଇଥିଲେ ଗଣତନ୍ତ୍ର ଶାସନରେ ପୁଣି ବାପପୁଅ, ପୁଅ ପରେ ତା ପୁଅ କି ଝିଅ। ଏପରି ପାରିବାରିକ ଶାସନ ଆସନ୍ତା କୁଆଡୁ ? ଶିକ୍ଷା ଓ ଆର୍ଥିକ ସମ୍ବଳ ଥିଲେ, ଶାସନ କ୍ଷମତା ଓ ଅର୍ଥ ବଳରେ ଏପରି ପାରଂପରିକ ଶାସନ ସମ୍ଭବ ହୁଏ, ଗୋଟିଏ ପରିବାର ଭିତରେ

କ୍ଷମତା ବାନ୍ଧି ହୋଇ ରହେ। ଭାରତରେ ସତୁରୀ ଭାଗ ଲୋକେ ଦରିଦ୍ର ଓ ଅଶିକ୍ଷିତ। ତେଣୁ ଗଣତନ୍ତ୍ର ନୁହେଁ, ପାରିବାରିକ ତନ୍ତ୍ର ଚାଲେ, ଗଣତନ୍ତ୍ର ବିକଶିତ ହେବାକୁ ସମୟ ଲାଗିବ। ତେଣୁ ଶାସନ କ୍ଷମତାକୁ ଆଜି ଯେଉଁମାନେ ଆସିବେ, ଭାରତର ଆତ୍ମାକୁ ଯଦି ସେମାନେ ଚିହ୍ନିବେ ତେବେ ଗଣତନ୍ତ୍ର ସଫଳ ହେବ। ନହେଲେ ଯଦି କ୍ଷମତା, ପ୍ରତିପତ୍ତି ଓ ଅର୍ଥ ପ୍ରତି ଲୋଭ ଥିବ, ତେବେ ଗଣତନ୍ତ୍ର ବିଫଳ ହେବ।

ଭାରତର ବିଭାଜନ ନିଶ୍ଚିତ ହୋଇଯିବ। ନେହେରୁ ପଟେଲ ଓ ଜିନା ଜିଦ୍ ଧରି ବସିଲେ। ଗାନ୍ଧିକୁ ସମସ୍ତେ ଛାଡ଼ି ଚାଲି ଗଲେ। ଗାନ୍ଧିଙ୍କ ସାଙ୍ଗରେ ଥିଲେ ବୋଲି ସବୁ ପ୍ରତିଷ୍ଠା ଓ ଖ୍ୟାତି ସେମାନେ ଅର୍ଜନ କରିଥିଲେ। ସୂର୍ଯ୍ୟର ଆଲୋକରେ ଚନ୍ଦ୍ର ଆଲୋକିତ। ସେହି ପରି ସେମାନେ ପ୍ରତିଭାବାନ ପୁରୁଷ। ପରିତ୍ୟକ୍ତ ଗାନ୍ଧି ଏକୁଟିଆ ଆଉ କଣ କରିପାରିଥାନ୍ତେ, ଏସବୁ ଦେଖି ଗଭୀର ଦୁଃଖ ଓ ଅର୍ନ୍ତଦାହ ଭିତରେ ମାଉଣ୍ଟବେଟେନ ମର୍ମାହତ ହେଲେ।

ସିମଲା, ଭାଇସରାଏଙ୍କର ଶୈଳ ନିବାସ। ସେଠାରେ ଏୟାର କଣ୍ଡିସନର ଆବଶ୍ୟକତା ନଥାଏ। କେବଳ ଘରର ଖୋଲା ଝରକା ଯଥେଷ୍ଟ, ଘରକୁ ଥଣ୍ଡା ରଖିବା ପାଇଁ ହିମାଳୟ ପର୍ବତ ମାଳାର ୭୩୦ ଫୁଟ ଉଚ୍ଚରେ ଶୈଳ ନିବାସ। ତିବତ୍ ଓ ଚୀନ ଠାରୁ ପୃଥକ କରିଛି ସେ ପର୍ବତ ମାଳା। ଝରକା ଖୋଲିଲେ ଦିଶେ ତୁଷାର ମଣ୍ଡିତ ହିମାଳୟର ହିରାର ମୁକୁଟ। ଚାରିଆଡ଼େ ତୁଷାର ପାତର ମନୋରମ ଦୃଶ୍ୟ। ଭାରତର ଗରମ ସେଠାରେ ନାହିଁ। ବରଫାବୃତ ହିମାଳୟ ଏକ ଶୈଳ ନିବାସ ଅତ୍ୟନ୍ତ ସ୍ୱାସ୍ଥ୍ୟକର ଜଳ ବାୟୁରେ ପରିପୂର୍ଣ୍ଣ। ବର୍ଷର ପାଞ୍ଚ ମାସ ଏହିଠାରେ ରହି ଭାଇସରାଏ ଭାରତକୁ ଶାସନ କରନ୍ତି। ସେତେବେଳେ ଏହି ଗ୍ରୀଷ୍ମ ନିବାସ ସିମଲା ହୋଇ ଉଠେ କର୍ମଚଞ୍ଚଳ। ବଛା ବଛା ଆଇ.ସି.ଏସ୍ ଅଫିସର। ଅନ୍ୟ କର୍ମଚାରୀ, ବିକା କିଣାର ବିପୁଳ ବିପଣୀ ଓ ବ୍ୟବସାୟୀ ମାନଙ୍କ ଗହଳରେ ଚଳଚଞ୍ଚଳ ହୋଇ ଉଠେ ଶୈଳ ନିବାସ ସିମଲା। ବର୍ମାର ରେଡ ସି ଠାରୁ ସମଗ୍ର ଭାରତରେ ଗ୍ରୀଷ୍ମ କାଳୀନ ରାଜଧାନୀରେ ସ୍ୱାସ୍ଥ୍ୟ ପରିବର୍ତ୍ତନ କରିବାକୁ ଅସଂଖ୍ୟ କବି ଭାବୁକ,

ଶିଳ୍ପପତି ଓ ବିତ୍ତଶାଳୀ ଲୋକ ହଜାର ସଂଖ୍ୟାରେ ଆସିବା ହେତୁ ଖାଲି ପଡ଼ିଥିବା ସିମଲା ପାଲଟି ଯାଏ ବାଣିଜ୍ୟର ଏକ ପେଣ୍ଠସ୍ଥଳୀ ଓ ବ୍ରିଟିଶ୍ ଶାସନର କେନ୍ଦ୍ର ବିନ୍ଦୁ। ପ୍ରତିବର୍ଷ ଏପ୍ରିଲ୍ ମାସ ଅଧାରୁ ସିମଲା ବାସୀମାନେ ଜାଣନ୍ତି ଯେ ଭାରତରେ ଗ୍ରୀଷ୍ମଋତୁ ଆରମ୍ଭ ହେଲା। ସେତିକି ବେଳେ ଭାଇସ ରାଏ ତାଙ୍କର ନ୍ୟାରୋଗଜ ଟ୍ରେନରେ ବସି ସିମଲା ଯାତ୍ରା କରନ୍ତି ମହା ଆଡ଼ମ୍ବରରେ। ସେଇ ସିମଲାକୁ ଭାଇସ ରାଏ ବାହାରିଲେ ୧୯୪୭ ମେ ମାସ ଆରମ୍ଭରେ ଏବଂ ଯିବା ପୂର୍ବରୁ, ଭାରତକୁ କ୍ଷମତା ହସ୍ତାନ୍ତର କରିବା ପାଇଁ ସେଇ ଯୋଜନା ପ୍ରସ୍ତୁତ କରିଥିଲେ । ଅଟିଲ ସରକାରଙ୍କ ଅନୁମୋଦନ ପାଇଁ ତାକୁ ପଠାଇ ଦେଇଥିଲେ। ଯିବା ପୂର୍ବରୁ ଭାରତୀୟ ନେତା ମାନଙ୍କୁ କହିଥିଲେ ଯେ, ସେ ମେଁ ମାସ ୧୭ ତାରିଖରେ ଦିଲ୍ଲୀ ଫେରିବା ପରେ ସବୁ କଥା ଜଣାଇବେ। ତାଙ୍କ ଯୋଜନାରେ ସେ ଉଲ୍ଲେଖ କରିଥିଲେ ଯେ, ସରକାର ଯଦି ତାଙ୍କର ଯୋଜନାକୁ ଅନୁମୋଦନ କରନ୍ତି, ତେବେ ଭାରତୀୟ ନେତାମାନେ ମଧ୍ୟ ତାକୁ ଗ୍ରହଣ କରିବେ। ଏ ଯୋଜନାରେ ଭାରତର ବିଭାଜନ ପାଇଁ ସେ ପ୍ରସ୍ତାବ ଦେଇଥିଲେ ଏବଂ ଉଭୟ ସଂପ୍ରଦାୟର ନେତାମାନଙ୍କର ମନୋଭାବ ମଧ୍ୟ ସେଥିରେ ଉଲ୍ଲେଖ କରିଥିଲେ। ସିମଲାରେ ଥାଇ ସେ ତାଙ୍କ ଯୋଜନାରେ ସାମାନ୍ୟ କେତେକ ସଂଶୋଧନର ପ୍ରସ୍ତାବ ସରକାରଙ୍କ ଠାରୁ ପାଇଲେ। ତାଙ୍କର ଦୃଢ଼ ଆତ୍ମ ବିଶ୍ୱାସ ହେତୁ ସେ ଭାବୁଥିଲେ, ତାଙ୍କ ଯୋଜନାକୁ ସରକାର ଗ୍ରହଣ କରିନେବେ ଏବଂ ଭାରତକୁ ଦୁଇ ନୁହେଁ ତିନି ଭାଗରେ ବିଭକ୍ତ କରି କ୍ଷମତା ହସ୍ତାନ୍ତର କରିବାକୁ ହେବ। କାରଣ ସେ ବୁଝି ସାରିଥିଲେ ଯେ, ଭାରତକୁ ଦୁଇଭାଗରେ ବିଭାଜନ କଲେ ପୂର୍ବବଙ୍ଗ ସନ୍ତୁଷ୍ଟ ନହୋଇ ଏକ ସ୍ୱତନ୍ତ୍ର ରାଷ୍ଟ୍ର ପାଇଁ ଦାବୀ କରିବ ଏବଂ ତାହା ସଫଳ ନହେଲେ ଉତ୍ତେଜନା ପୂର୍ଣ୍ଣ ହତ୍ୟାକାଣ୍ଡର ଅବସାନ ହେବ ନାହିଁ। ତାଙ୍କ ଯୋଜନାରେ ସେ ଆଉ ଏକ ପ୍ରସ୍ତାବ ରଖି କହିଥିଲେ ଯେ, ଉଭୟ ସଂପ୍ରଦାୟର ବହୁମତ ମିଳିଲେ ଏବଂ ବେଙ୍ଗଲ କ୍ଷେତ୍ରରେ କଲିକତା ବନ୍ଦରକୁ ନେଇ ବଙ୍ଗର ବିଭାଜନ ଜଟିଳ ହୋଇଯିବ। ଦଶମାସ ପୂର୍ବରୁ ଏହି ପ୍ରସ୍ତାବ ବେଙ୍ଗଲ ନେତା

ସୟଦ ସୁରାବର୍ଦ୍ଧି ମାଉଣ୍ଟବେଟେନକୁ ଦେଇଥିଲେ। ଏ ହେଉଛନ୍ତି ସେଇ ସୟଦ ସୁରାବର୍ଦ୍ଧି ଯିଏ ଡାଇରେକ୍ଟ ଆକ୍ସନ ଡେ ଆହ୍ୱାନ ଦେଇ କଲିକତା ସହରକୁ ବିଭତ୍ସ ହତ୍ୟାକାଣ୍ଡ ଘଟାଇଥିଲେ। ସୁରାବର୍ଦ୍ଧିଙ୍କ ପ୍ରସ୍ତାବକୁ ଶୁଣିଲା ପରେ ମାଉଣ୍ଟବେଟେନ ଭାବିଲେ, ଏ ପ୍ରସ୍ତାବକୁ ସମ୍ଭବତଃ ଜିନା ବିରୋଧ କରିବେ ନାହିଁ। କିନ୍ତୁ ଏହାକୁ ସେ ନେହେରୁ ଓ ପଟେଲଙ୍କ ଠାରୁ ଗୋପନରେ ରଖିଥିଲେ। ମାତ୍ର ବେଙ୍ଗଲର ବିଭାଜନ ବେଳେ ଏହା ଏକ ସମସ୍ୟା ହୋଇ ଠିଆହେବ, ଏକଥା ସେ ଅନୁମାନ କରି ପାରିନଥିଲେ। ଠିକ୍ ଏତିକି ବେଳେ ତାଙ୍କର ମନେ ପଡ଼ିଲା ନେହେରୁଙ୍କ କଥା। ନେହେରୁ ସାଙ୍ଗରେ ତାଙ୍କର ବନ୍ଧୁତା ଥିଲା। ସେ ତାଙ୍କୁ  ନିମନ୍ତ୍ରଣ କଲେ କିଛିଦିନ ତାଙ୍କ ସାଙ୍ଗରେ ଛୁଟି କଟାଇବାକୁ। କାରଣ ତାଙ୍କର ସାହାଯ୍ୟ ନ ପାଇଲେ ସେ ଭାରତ ବ୍ରିଟେନ୍ ଓ ପୃଥିବୀରେ ରକ୍ତପାତର ଜଣେ ନାୟକ ବୋଲି ବିବେଚିତ ହେବାର ଭୟଥିଲା। ନେହେରୁଙ୍କ ସାଙ୍ଗରେ ତାଙ୍କ ପତ୍ନୀ ଇଡଉଇନଙ୍କର ବନ୍ଧୁତା ଥିଲା। ଅନେକ ସମୟରେ ମୋଗଲ ଗାର୍ଡେନରେ ଚା'ପିଇଲା ବେଳେ, ସୁଇମିଂ ପୁଲରେ ସ୍ନାନ କଲାବେଳେ, ନେହେରୁଙ୍କ ଉଦ୍ଦାମ ମନକୁ ସେ ସରସ କରୁଥିଲେ ଏବଂ ସ୍ୱାମୀଙ୍କୁ ସହାୟତା କରିବାରେ ସଫଳ ହେଉଥିଲେ। ଭବିଷ୍ୟତରେ ସେହି ଭାରତ ଓ ବ୍ରିଟେନ ମଧ୍ୟରେ ବନ୍ଧୁତାକୁ ସୁଦୃଢ଼ କରିପାରିବ। ତାଙ୍କ ପତ୍ନୀ ଇଡଉଇନଙ୍କ ସହିତ ନେହେରୁଙ୍କର ବନ୍ଧୁତା ଥିଲା ଖୁବ୍ ମଧୁର ଓ ଖାଲି ଭାରତ ନୁହେଁ, ସାରା ବିଶ୍ୱରେ ସେଥିଲେ ସତେଜ ଗୋଲାପ ପରି ଜଣେ ଲାବଣ୍ୟମୟୀ ସୁନ୍ଦରୀ ତରୁଣୀ। ଝଲସି ଉଠୁଥିବା ତାଙ୍କ ରୂପର କାନ୍ତି ପାଖରେ ବିପତ୍ନୀକ ନେହେରୁ ସମସ୍ତ କ୍ଲାନ୍ତି ଓ ଅବସାଦରୁ ମୁକ୍ତି ପାଉଥିଲେ। ମାଉଣ୍ଟବେଟେନ୍ ତାଙ୍କ ଯୋଜନା ବିଷୟରେ ଜଣାଇବା ପାଇଁ ଯେତେବେଳେ ତାଙ୍କର ସହଯୋଗୀ ମାନଙ୍କୁ ବୈଠକ କୋଠରୀକୁ ଡ଼ାକି କହିଲେ, ସେତେବେଳେ ସେମାନେ ବିବ୍ରତ ହୋଇଗଲେ। ସେମାନେ କହିଲେ, ଜିନାଙ୍କୁ ନଜଣାଇ ନେହେରୁଙ୍କୁ ଜଣାଇବା ବିଶ୍ୱାସଘାତକତା ହେବ । ପରେ ସେ ଯଦି ସେ ଏହା ଜାଣିବେ ତେବେ ତାଙ୍କ ସ୍ଥିତି ବିପନ୍ନ ହୋଇପଡ଼ିବ। ଅନେକ ସମୟ

ନିରବ ରହିଲା ପରେ କହିଲେ ଆଚ୍ଛା ହେଲା। ତାପର ଦିନ ନେହେରୁ ଓ କ୍ରିଷ୍ଣାମେନନ୍ ଆସି ସିମଲାରେ ପହଞ୍ଚିଲେ। ସନ୍ଧ୍ୟାରେ ମାଉଣ୍ଟବେଟେନ ଆରାମ କରୁଥିଲେ। ନେହେରୁ ଆସି ପାଖରେ ବସିଲେ। ଲଣ୍ଡନରୁ ସଂଶୋଧିତ ହୋଇ ଆସିଥିବା ତାଙ୍କ ଯୋଜନାର ଏକ କପି ଧରାଇ ଦେଇ ମାଉଣ୍ଟବେଟେନ କହିଲେ, ଦେଖ ଏହି ପ୍ଲାନଟିକୁ ତୁମ ବେଡ଼ରୁମକୁ ଯାଇ ଭଲ କରି ଦେଖି ନିଅ। ସେଇତକ ଧରି ନେହେରୁ ଚାଲିଗଲେ ଏବଂ ମାତ୍ର କେଇ ପୃଷ୍ଠା ପଢ଼ିଲା ପରେ ରାଗରେ ଜଳି ଚିତ୍କାର କରି ଉଠିଲେ, ହ୍ୱାଟ୍ ମ୍ୟାସେଜ ! ସେ ଦେଖିଲେ ଭାରତକୁ ଦୁଇ ଭାଗ ନୁହେଁ, ଅନେକ ଭାଗରେ ବିଭକ୍ତ କରି ଟୁକୁରା ଟୁକୁରା କରି ଦିଆଯାଇଛି। ବେଙ୍ଗଲର ଅବସ୍ଥା ଦେଖି ସେ ଭାବିଲେ ଏହା ଦ୍ୱାରା ପ୍ରଚଣ୍ଡ ରକ୍ତପାତ ହେବ। କଲିକତା ବନ୍ଦର ଓ ସବୁ ସୁତାକଳ ଓ ସବୁ କଳ କାରଖାନାକୁ କାଢ଼ିନେଇ ତାର ହୃତପିଣ୍ଡକୁ ଅଲଗା କରି ଦିଆଯାଇଥିବା ସେ ଦେଖିଲେ। ତାଙ୍କର ପ୍ରିୟ କାଶ୍ମିରକୁ ସ୍ୱାଧିନ କରାଯାଇ ଜଣେ ଅତ୍ୟାଚାରୀ ଶାସକ ହାତରେ ରଖାଯାଇଛି। ଇସଲାମବାଦକୁ ସ୍ୱତନ୍ତ୍ର ମୁସଲିମ୍ ରାଜ୍ୟ ଭାବେ ଚିହ୍ନଟ କରି ଭାରତର ପେଟକୁ କାଟିଦିଆ ଯାଇଛି ଏବଂ ଆହୁରି ଅନେକ ଦେଶୀୟ ରାଜ୍ୟମାନଙ୍କୁ ସେମାନଙ୍କ ଇଚ୍ଛା ଅନୁସାରେ କୁଆଡ଼େ ଯିବେ ସ୍ୱାଧୀନତା ଦିଆଯାଇଛି। ନେହେରୁ ଭାବିଲେ ଗତ ତିନିଶହ ବର୍ଷ ଧରି ବ୍ରିଟିଶ୍ରେ ଯେଉଁ Divided and Rule Policy ବଳରେ ସେମାନେ ଭାରତକୁ ଶାସନ କରି ଆସିଛନ୍ତି। ଗଲାବେଳେ ମଧ୍ୟ ସେଇ Policy adopt କରାଯାଇଛି। ସବୁ ରାଜ୍ୟକୁ ଦୁର୍ବଳ କରିଦେବା ପାଇଁ ରାଗରେ ଲାଲ ପଡିଗଲେ ନେହେରୁ। ରାଗ ତମ ତମ ହୋଇ ସେ ପଶିଗଲେ କ୍ରିଷ୍ଣା ମେନନଙ୍କ ବେଡ଼ ରୁମକୁ ଏବଂ ସେଇ ପ୍ଲାନର କପିଟିକୁ ଶେଯ ଉପରକୁ ଫିଙ୍ଗି ଦେଇ ଚିତ୍କାର କରି ଉଠିଲେ ସବୁ ସରିଗଲା। ତାପରଦିନ ସକାଳେ ମାଉଣ୍ଟବେଟେନ ଶୁଣିଲେ ନେହେରୁ ଭୟଙ୍କର କ୍ରୋଧରେ ଗର୍ଜନ କରୁଛନ୍ତି। ଅବଶ୍ୟ ସେ ସେଥିରେ ବିଭାଜନ ଚାହୁଁଥିଲେ। ଭାରତ ଓ ପାକିସ୍ଥାନ ନାମରେ ଦୁଇ ରାଷ୍ଟ୍ର ଗଠନ କରିବାକୁ ତାଙ୍କର ଇଚ୍ଛା ଥିଲା, ମାତ୍ର ଏପରି ଖଣ୍ଡ ଖଣ୍ଡ କରିଦେବାକୁ ନୁହେଁ।

ତାଙ୍କର ସମସ୍ତ କ୍ରୋଧ ଓ ଅସନ୍ତୋଷ ବ୍ୟକ୍ତ କରି ପରଦିନ ସକାଳେ ଏକ ଚିଠି ମାଉଣ୍ଟବେଟେନଙ୍କୁ ଲେଖିଲେ । ସେଥିରେ ଲେଖାଥିଲା "Let me go back" ମାଉଣ୍ଟବେଟେନ ସେ ଚିଠିକୁ ପାଇ ପ୍ରଚଣ୍ଡ ବୋମା ବିସ୍ଫୋରଣରେ ଗତ ଛ ସପ୍ତାହ ଧରି ବିଭାଜନର ଯେଉଁ ସୌଧ ସେ ଗଢ଼ିଥିଲେ ତାହା ମୁଠାଏ ତାସ୍ ପରି ଖଣ୍ଡ ଖଣ୍ଡ ହୋଇ ଭାଙ୍ଗିଗଲା ପରି ସେ ଅନୁଭବ କଲେ । ସେ ଭାବିଲେ, ବ୍ରିଟିଶ୍ ସରକାର ତାଙ୍କ ସାମର୍ଥ୍ୟ ଉପରେ ବିଶ୍ୱାସ କରି ଦିଲ୍ଲୀ ପଠାଇ ଥିଲେ କ୍ଷମତା ହସ୍ତାନ୍ତର କରିବାକୁ ତାହା ଯଦି ସେ କରି ନ ପାରିବେ, ତେବେ ନୌସେନାର କ୍ୟାପ୍ଟେନ ବୃଥା ହୋଇଯିବ ଏବଂ ସେ ସରକାରଙ୍କର ବିଶ୍ୱାସ ହରାଇବେ । ଏ ଅପମାନ ତାଙ୍କୁ ଜୀବନମୃତ କରିଦେବ । ପୁଣି ନେହେରୁ ପରି ବନ୍ଧୁଙ୍କୁ ସେ ହରାଇବେ । ଚିଠି ଖଣ୍ଡକ ପଢ଼ି ସାରି ମାଉଣ୍ଟବେଟେନ ଭାବିଲେ ଦଶଦିନ ଭିତରେ ସେ ଯେଉଁ ସମାଧାନ କରି ପାରିଛନ୍ତି ବୋଲି ସାରା ଦୁନିଆକୁ ଜଣାଇ ଦେଇଥିଲେ, ତାହା ତାଙ୍କର ଭୁଲ ଓ ସେ କିଛି ହେଲେ ସମାଧାନ କରି ପାରିନାହାଁନ୍ତି । ତାଙ୍କ ପ୍ଲାନର ଅର୍ଥକୁ ଆଜି କ୍ୟାବିନେଟ ବୈଠକରେ ବିଚାର କରାଯାଇଛି । ପ୍ରଧାନମନ୍ତ୍ରୀ ଅଟିଲଙ୍କୁ ସେ ଦମ୍ଭର ସହିତ କହିଥିଲେ ଯେ, ସେ କ୍ୟାବିନେଟ ବୈଠକରେ ତାର କୌଣସି ଅଂଶକୁ ଅନୁମୋଦନ ମିଳିବ ନାହିଁ ଏବଂ କଂଗ୍ରେସ ଦଳ ମଧ୍ୟ ଗ୍ରହଣ କରିବ ନାହିଁ । ମାତ୍ର ଏତେ ଶୀଘ୍ର ସେ ପରାଜୟକୁ ସହିଯିବା ବ୍ୟକ୍ତି ନଥିଲେ । ସୌଭାଗ୍ୟକୁ ନେହେରୁ ତାଙ୍କ ବନ୍ଧୁତାକୁ ଭୁଲି ନଥିଲେ । ତେଣୁ ସେ ଯାଇ ଆଉ ଗୋଟିଏ ରାତି ରହିବାକୁ ନେହେରୁଙ୍କୁ ଅନୁରୋଧ କରି ଆଉ ଥରେ ଗୋଟିଏ ପ୍ଲାନକୁ ସଂଶୋଧନ କଲେ । ନୂଆ ପ୍ଲାନରେ ଭାରତରେ ରାଜା ଦେଶୀୟ ରାଜ୍ୟ ମାନଙ୍କୁ ଗୋଟିଏ ମାତ୍ର ବାର୍ତ୍ତା ଦେଇ କହିଲେ, Inian on Possession ଅର୍ଥାତ୍ ଭାରତ କିମ୍ବା ପାକିସ୍ଥାନରେ ରିହବା ଛଡ଼ା ସେମାନଙ୍କ ପାଇଁ ଆଉ ବିକଳ୍ପ ନାହିଁ । ବେଙ୍ଗଲ ଏକ ସ୍ୱାଧିନ ରାଷ୍ଟ୍ର ହେଲେ ଭାରତକୁ ଦୁଇଟି ସ୍ୱାଧିନ ରାଷ୍ଟ୍ର ହୋଇ ରହିବାର ସ୍ୱପ୍ନ ଉଭେଇଯିବ । ମାଉଣ୍ଟବେଟେନ ଭାବିଲେ ଜିନାଙ୍କର ଭାରତକୁ ଦୁଇଟି ସ୍ୱାଧିନ ରାଷ୍ଟ୍ର କରିବାର

ଦାବୀ ବେଶିଦିନ ସଫଳ ହେବ ନାହିଁ। ଭାଇସରାଏ ଭାବରେ ତାଙ୍କର ଉତ୍ତରାଧିକାରୀଙ୍କୁ ସେ କହିଲେ ଅଳ୍ପଦିନ ଭିତରେ ପୂର୍ବବଙ୍ଗ ପାକିସ୍ଥାନଠାରୁ ଅଲଗା ହୋଇଯିବ। ବାସ୍ତବରେ ୧୯୭୧ ମସିହାରେ ବାଙ୍ଗଲାଦେଶ ଯୁଦ୍ଧରେ ପାକିସ୍ଥାନରୁ ଅଲଗା ହୋଇ ବଙ୍ଗଲାଦେଶ ଏକ ସ୍ୱାଧିନ ରାଷ୍ଟ୍ର ହୋଇଗଲା। ଏହାହିଁ ସ୍ୱାଧିନତାର ଭିତ୍ତିଭୂମି। କେତେବେଳେ ଏହା ସ୍ୱାଭିମାନ ଆଉ କେତେବେଳେ ଅହଂକାରୀ । ଯେଉଁଦେଶ ଏକ ନିର୍ଦ୍ଦିଷ୍ଟ ଭୌଗଳିକ ସୀମାରେଖାରେ ଆବଦ୍ଧ, ରାଷ୍ଟ୍ର ସହିତ ଓ ସଂସ୍କୃତିରେ ଭିନ୍ନ, ଅହଂକାର ହିଁ ସେଠାରେ ସ୍ୱାଧିନତାର ମୂଳଭିତ୍ତି ଏବଂ ତାର ଜନ୍ମଦାତା ଭାବ ପ୍ରବଣତା କିମ୍ବା ବ୍ୟକ୍ତି ପ୍ରତିଷ୍ଠାର ପିପାଶା, ଏପରି ଭିତ୍ତିଭୂମିରେ ଜନ୍ମ ସ୍ୱାଧିନତାର କିଛି ମୂଲ୍ୟ ନଥାଏ। ପାକିସ୍ଥାନ ଏବଂ ବାଙ୍ଗଲା ଦେଶ ଉଭୟେ ଭାରତରେ ହଜାର ହଜାର ବର୍ଷଧରି ଶାନ୍ତିରେ ଥିଲେ। ଦୁଃଖ ଓ ସୁଖକୁ ସମସ୍ତେ ସମାନ ଭାବେ ବାଣ୍ଟି ଉପଭୋଗ କରୁଥିଲେ। ସେମାନେ ମୂଳ ଭୂଖଣ୍ଡରୁ ଅଲଗା ହୋଇ ସ୍ୱାଧିନ ହୋଇଗଲେ ଯଥାକ୍ରମେ ୧୯୪୭ ଓ ୧୯୪୧ ମସିହାରେ। ଆଜି ସେମାନଙ୍କର ଅବସ୍ଥା କ'ଣ ? ପାକିସ୍ଥାନ ଘୁସୁରୁଛି, ବଙ୍ଗଲାଦେଶ ଭୀକାରୀ ହୋଇଛି, ଆଉ ଭାରତ ! ଭାରତ ଆଜି ପୃଥିବୀର ଅନ୍ୟତମ ବିକଶିତ, ପ୍ରାଚୂର୍ଯ୍ୟ ଓ ପ୍ରତିଷ୍ଠାର ରାଷ୍ଟ୍ରମାନଙ୍କ ସହ ପ୍ରତିଯୋଗୀତା କରୁଛି। ଏପରି ସ୍ୱାଧିନତା ମୂଲ୍ୟ କ'ଣ ?

ତାଙ୍କ ପ୍ଲାନର ସଂଶୋଧନ ପାଇଁ କର୍ମଚାରୀମାନଙ୍କ ଭିତରୁ ବରିଷ୍ଠ ଅଧିକାରୀ ମାନଙ୍କୁ ଡାକିଲେ। ତାଙ୍କ ବୈଠକ ରୁମରେ ମିଟିଂ କରିବାକୁ, ସେମାନଙ୍କ ଭିତରୁ କେହି ଆଇ.ସି.ଏସ୍ ନଥିଲେ କିମ୍ବା ଅକ୍ସଫର୍ଡ ବା କେମ୍ବ୍ରିଜ ବିଶ୍ୱବଦ୍ୟାଳୟର ଛାତ୍ର। କେବଳ ଭି.ପି ମେନନ ଥିଲେ, ଜଣେ ସେଲଫିସ୍ ମ୍ୟାନ । ତାଙ୍କ ପିତାଙ୍କର ବାରଜଣ ସନ୍ତାନ ମାନଙ୍କ ମଧ୍ୟରେ ସବୁଠାରୁ ବଡ଼। ସେ ତେର ବର୍ଷ ବୟସରୁ ସ୍କୁଲ ଛାଡ଼ି ଶ୍ରମିକ ସଂଗଠନରେ ଓ କୋଇଲା ଖଣିରେ, ଦକ୍ଷିଣ ଭାରତ ରେଳ ବିଭାଗ ଏବଂ ସ୍କୁଲ ଶିକ୍ଷକ ଭାବରେ କାମ କରିଥିଲେ। ତାପରେ ସେ ଟାଇପ ଶିଖିଲେ ଏବଂ ଶେଷରେ ଭାରତୀୟ ପ୍ରଶାସନରେ ଜଣେ କିରାଣୀ ଭାବରେ ସିମଲାରେ ୧୯୨୯

ମସିହାରେ କାମ କଲେ । ଏହି ସମୟରେ ତାଙ୍କର ପ୍ରଭୁତ ଉନ୍ନତି ହେଲା ଏବଂ ସେ ଭାଇସରାଏଙ୍କ ଦାୟିତ୍ୱରେ ୧୯୪୭ରେ ଏକ ବରିଷ୍ଠ ପଦବୀରେ ଯୋଗଦେଲେ ଏବଂ ଅଳ୍ପଦିନ ପରେ ସେ ଭାଇସରାଏଙ୍କର ବିଶ୍ୱାସଭାଜନ ହେବା ସଙ୍ଗେ ସଙ୍ଗେ ସେ ତାଙ୍କର ଖୁବ୍ ପ୍ରିୟ ହୋଇ ଉଠିଥିଲେ । ଦିନେ ମାଉଣ୍ଟବେଟେନ ତାଙ୍କୁ ପ୍ଳାନର ସଂଶୋଧନ କରି ଭାରତକୁ ସ୍ୱାଧିନତା ପ୍ରଦାନ କରିବାକୁ କହିଲେ । ଏହି ସଂଶୋଧିତ ପ୍ଳାନରେ ବ୍ୟବସ୍ଥା ଥିଲା ଯେ, ଏହାକୁ ଭାରତ ଗ୍ରହଣ ନକଲେ ପ୍ରାଦେଶିକ ବିଧାନସଭାରେ ଭୋଟ ମାଧମରେ ନିଷ୍ପତ୍ତି କରାଯିବ । ସେ ମାଉଣ୍ଟବେଟେନଙ୍କ ଇଛା ଅନୁସାରେ ମଧ୍ୟାହ୍ନ ଭୋଜନ ଓ ରାତ୍ରିଭୋଜନ ମଧରେ ପ୍ଳାନଟିକୁ ସଂଶୋଧନ କରିଦେଲେ । ଏଥିପାଇଁ ତାଙ୍କୁ ଲାଗିଥିଲା ମାତ୍ର ଛ' ଘଣ୍ଟା ସମୟ ।

ସ୍ୱାଧିନତା ପୂର୍ବରୁ ଭାରତରେ ଥିଲେ ୫୬୫ ଜଣ ମହାରାଜା, ନବାବ, ରାଜା ଏବଂ ଶାସକ । ଏମାନଙ୍କ୍ ଅଧୀନରେ ଥିଲା ଭାରତର ଏକ ତୃତୀୟାଂଶ ଭୂଖଣ୍ଡ ଓ ଏକ ଚତୁର୍ଥାଂଶ ଲୋକ ସଂଖ୍ୟା । ଏମାନେ ଥିଲେ ସ୍ୱାଧିନ ଓ ସାର୍ବଭୌମ କ୍ଷମତାର ଅଧିକାରୀ । ଏମାନଙ୍କର ଥିଲା ଏକ Chamber of Indian Princeciouss ଏବଂ ଏହାର ଚାନ୍‌ସେଲର ଥିଲେ ପାତିଆଲାର ମହାରାଜା ଯାଦବୀନ୍ଦ୍ର ସିଂହ । ତାଙ୍କର ଏକ ବଳିଷ୍ଠ ସୁନ୍ଦର ସ୍ୱାସ୍ଥ୍ୟ ଓ ଉଚ୍ଚତା ଥିଲା ଛ'ଫୁଟ ଚାରି ଇଞ୍ଚ ।ଶାସନ ଦୃଷ୍ଟିରୁ ସେତେବେଳେ ଭାରତକୁ ଦୁଇଟି ଭାରତ ବୋଲି କୁହାଯାଇପାରେ । ଗୋଟିଏ କେନ୍ଦ୍ର ଶାସିତ ଓ ଅନ୍ୟଟି ୫୬୫ ଜଣ ରାଜା ମହାରାଜା ଶାସିତ ଭାରତ । ରାଜା ମହାରାଜ ମାନଙ୍କ ଭିତରୁ ଯେଉଁମାନେ ବ୍ରିଟିଶ୍ ସମ୍ରାଟଙ୍କର ଆନୁଗତ୍ୟ ସ୍ୱୀକାର କରି ତାଙ୍କର ସାର୍ବଭୌମ କ୍ଷମତା ଅଧୀନରେ ରହି ତାଙ୍କର ପ୍ରତିନିଧି ଭାଇସରାଏଙ୍କ ନିର୍ଦ୍ଦେଶରେ ପରିଚାଳିତ ହେବାକୁ ରାଜି ହେଲେ । ସେମାନଙ୍କୁ ତାଙ୍କ ସିଂହାସନରେ ବସି ରାଜ୍ୟ ଶାସନ କରିବାକୁ ସ୍ୱୀକୃତି ମିଳିଲା । ଏହି ସର୍ତ୍ତମାନିବାକୁ ସେମାନେ ଚୁକ୍ତି ପତ୍ର ସ୍ୱାକ୍ଷାର କଲେ ଏବଂ ବୈଦେଶିକ ବ୍ୟାପାର ଓ ସାମରିକ କ୍ଷମତା ବି ବ୍ରିଟିଶ୍ ସମ୍ରାଟଙ୍କ ପ୍ରତିନିଧି ଭାଇସରାଏ ହାତରେ ରହିଲା । କେବଳ

ହାଇଦ୍ରାବାଦ ଓ କାଶ୍ମିର ମହାରାଜାଙ୍କ ଶାସିତ ରାଜ୍ୟ ପଶ୍ଚିମ ୟୁରୋପ ରାଜ୍ୟ ମାନଙ୍କ ପରି ନାମକୁ ମାତ୍ର ସ୍ୱାଧିନ ରହିଲେ, ବମ୍ବେ ନିକଟ କାଥିଆୱାଡ଼ ଭଳି ଅନ୍ୟ କ୍ଷୁଦ୍ର ରାଜ୍ୟ ଗୁଡ଼ିକ ବ୍ରିଟିଶ୍ ସରକାରଙ୍କର କରଦ ରାଜ୍ୟ ହୋଇ ରହିବାର କ୍ଷମତା ପାଇଲେ। ସେହିପରି ଚାରିଶହରୁ ଉର୍ଦ୍ଧ୍ୱ ରାଜ୍ୟ, ଯେଉଁ ମାନଙ୍କର ରାଜ୍ୟର କ୍ଷେତ୍ରଫଳ କୋଡ଼ିଏ ବର୍ଗମାଇଲ ଠାରୁ ଆହୁରି କମ୍ ସେମାନେ ମଧ୍ୟ କରଦ ରାଜ୍ୟ ହୋଇ ରହିଲେ। ସେମାନଙ୍କ ମଧ୍ୟରୁ ଅନେକ ରାଜା ସେମାନଙ୍କ ପ୍ରଜାମାନଙ୍କୁ ବ୍ରିଟିଶ୍ ଶାସନ ଠାରୁ ଉତ୍ତମ ଶାସନ ଦେଉଥିଲେ। ଆଉ କେତେକ ଛୋଟିଆ ଛୋଟିଆ ରାଜାମାନେ ପ୍ରଜାମାନଙ୍କୁ ଶୋଷଣ କରି ଭୋଗ ବିଳାସରେ ଜୀବନ କାଟୁଥିଲେ ଏବଂ ସେମାନେ ଥିଲେ ଅତ୍ୟାଚାରୀ, ସେମାନଙ୍କର ରାଜନୈତିକ ସ୍ଥିତାବସ୍ଥା ଯାହାହେଉ ପଛେ, ୧୯୪୭ ବେଳକୁ ସେମାନଙ୍କର ବ୍ୟୟବହୁଳ ଜୀବନ ଏକ ଗୁରୁତର ସମସ୍ୟା ହୋଇଠିଆ ହେଲା। ସେମାନଙ୍କ ବିଳାସମୟ ଜୀବନରେ ହାରାହାରି ଉପଭୋଗ କରୁଥିଲେ ୧୨ ପ୍ରକାର ଉପାଧି, ୫.୮ ପତ୍ନୀ, ୧୨.୬ ସନ୍ତାନ ମଣ୍ଡିତ, ୯.୨ ହାତୀ, ୨.୮ ବ୍ୟକ୍ତିଗତ ରେଳଲାଇନ, ଏବଂ ୨୨.୯ ବାଘ ଶୀକାର। ସେମାନଙ୍କର ଏହି ବିଚିତ୍ର ଆଚରଣକୁ ନିୟନ୍ତ୍ରଣ ନକଲେ, ଭାରତ ସ୍ୱାଧିନ ହେବାର କିଛି ଅର୍ଥ ନାହିଁ। ସେମାନଙ୍କ ଶାସନ କ୍ଷମତାକୁ ଉଚ୍ଛେଦ କରିବା ଆବଶ୍ୟକ। ସେମାନଙ୍କର ରାଜ୍ୟ ଗୁଡ଼ିକୁ ଭାରତ ସହିତ ଏକତ୍ର କରି ଏକ ଶାସନାଧିନ କରିବାକୁ ହେବ। କାଶ୍ମିର, ପାତିଆଲା ଓ ହାଇଦ୍ରାବାଦ ଭଳି ଅନେକ ରାଜ୍ୟ ଏ ଯୋଜନାକୁ ଗ୍ରହଣ କରିବା ପାଇଁ ଘୋର ପ୍ରତିବାଦ କରିବେ। ବିଶେଷ କରି ପାତିଆଲାର ମହାରାଜା ଓ ତାଙ୍କ ପରି ଅନ୍ୟମାନଙ୍କୁ ଏକମତ କରାଇବା ଏକ କଠିନ ବ୍ୟାପାର। ପାତିଆଲା ଯାଦବୀନ୍ଦ୍ର ସିଂ ଭାରତର ସବୁ ରାଜ୍ୟଠାରୁ ଧନୀ ଏବଂ ତାଙ୍କର ସୈନ୍ୟ ବାହିନୀର ଆକାର ପଦାତିକ ବାହିନୀର ଏକ ଡ଼ିଭିଜନ ସାଙ୍ଗରେ ସମାନ। ସେପରି ରାଜା ମହାରାଜା ମାନଙ୍କୁ ହୁଏତ ଶାନ୍ତିପୂର୍ଣ୍ଣ ଉପାୟରେ ଭାରତ ସହିତ ମିଶିବାକୁ ରାଜି କରାଇବା କଷ୍ଟକର ହୋଇପାରେ। କାରଣ ସେଥିଲେ ନେହେରୁ ଓ କଂଗ୍ରେସର

ସମାଜବାଦୀ ଚିନ୍ତାଧାରାର ବିରୋଧି। ଏକଥା ଭାଇସରାଏ ଜାଣିନଥିଲେ ଯେ, ଲଣ୍ଡନରେ ଜଣେ ଇଂରେଜ, ଯିଏ ଅନେକ ଦିନ ଧରି ଭାରତର ଦେଶୀୟ ରାଜାମାନଙ୍କ ଅଧୀନରେ ଚାକିରୀ କରୁଥିଲେ, ସେ ରାଜାମାନଙ୍କର ସୁରକ୍ଷା ପାଇଁ ଏକ ଯୋଜନା କରୁଥିଲେ କିନ୍ତୁ ଯାଦବୀନ୍ଦ୍ର ଏହା ଜାଣିଥିଲେ। ପଞ୍ଜାବ ଠାରୁ ୬୦୦୦ ମାଇଲ ଦୂରରେ ସେ ବ୍ୟକ୍ତି ଜଣକ ପ୍ରାଣମୂର୍ଚ୍ଛା ଉଦ୍ୟମ କରୁଥିଲେ ଯାଦବୀନ୍ଦ୍ର ଓ ତାଙ୍କର ଅନ୍ୟ ରାଜାମାନଙ୍କୁ ମାଉଣ୍ଟ ବେଟେନଙ୍କ ଯୋଜନାରୁ ରକ୍ଷା କରିବା ପାଇଁ। ସେ ବ୍ୟକ୍ତି ଜଣକ ଥିଲେ ସାର୍ କମାଣ୍ଡ କନଫିଲ୍ଡ । ସେ ଭାବୁଥିଲେ ଯାହା କିଛି ଭାରତ ପାଇଁ ଭଲ, ତାହା ଦେଶୀୟ ରାଜା ମାନଙ୍କ ପାଇଁ ଭଲ, କିନ୍ତୁ ନେହେରୁ ଓ ତାଙ୍କ କଂଗ୍ରେସ୍ ସେମାନଙ୍କ ଶତ୍ରୁ। ୧୯୪୭ ମେ ମାସ ବେଳକୁ କନଫିଲ୍ଡ ଥିଲେ ମାଉଣ୍ଟବେଟେନଙ୍କର ପଲିଟିକାଲ ସେକ୍ରେଟାରୀ। ରାଜାମାନେ ଯେପରି ବ୍ରିଟିଶ୍ ସମ୍ରାଟଙ୍କର ଆନୁଗତ୍ୟ ସ୍ୱୀକାର କରନ୍ତି ତାହା ଦେଖିବା ପାଇଁ ତାଙ୍କୁ କ୍ଷମତା ଦିଆଯାଇଥିଲା। ଦିଲ୍ଲୀରେ ପହଞ୍ଚିବାଠାରୁ କଂଗ୍ରେସ ଓ ମୁସଲିମ୍ ଲିଗ୍ ମଧ୍ୟରେ ଥିବା ବିବାଦକୁ ସମାଧାନ କରିବା ପାଇଁ ମାଉଣ୍ଟବେଟେନ ଏତେ ବ୍ୟସ୍ତ ଥିଲେ ଯେ କନଫିଲ୍ଡ ଏବଂ ରାଜାମାନଙ୍କର ସମସ୍ୟା ବୁଝିବା ପାଇଁ ତାଙ୍କର ବେଳ ନଥିଲା। ଏହି ସମୟରେ ସେ ଲଣ୍ଡନ ଯାଇଥିଲେ ରାଜାମାନଙ୍କର ସ୍ୱାର୍ଥ ସୁରକ୍ଷା କରିବାକୁ। କାରଣ ମାଉଣ୍ଟବେଟେନ ସେମାନଙ୍କ ସ୍ୱାର୍ଥରକ୍ଷା କରିପାରିବେ ନାହିଁ ବୋଲି ତାଙ୍କର ଧାରଣା ଥିଲା। ଠିକ୍ ଏତିକି ବେଳେ ଭାରତ ସ୍ୱାଧିନ ହୋଇଗଲା ଏବଂ ରାଜାମାନେ ବ୍ରିଟିଶ୍ ସମ୍ରାଟଙ୍କ ପାଖରେ ସେମାନଙ୍କ ରାଜ୍ୟ ସବୁ ସମର୍ପଣ କରିଦେଲେ। କେଉଁ ରାଜାମାନେ ପାକିସ୍ଥାନକୁ ଯିବେ ଏବଂ କେଉଁମାନେ ଭାରତରେ ରହିବେ, ସେହି ବିଷୟରେ କନଫିଲ୍ଡ ସରକାରଙ୍କ ସହ ଆଲୋଚନା କରୁଥିଲେ। ଦିଲ୍ଲୀ ଠାରେ ଅବସ୍ଥାପିତ ସେକ୍ରେଟାରୀ ଅଫ ଷ୍ଟେଟ୍ସ ଅଫିସ ସହିତ କନଫିଲ୍ଡଙ୍କ ଯୋଗାଯୋଗ ଥିଲା। ସେହି ସୁଯୋଗରେ ସେଠାରେ ରାଜାମାନଙ୍କ ସହିତ ଯାହାସବୁ ଆଲୋଚନା ହେଉଥିଲା। ସେ ସବୁ କନଫିଲ୍ଡ ଜାଣିପାରୁଥିଲେ। ଏହା ଦ୍ୱାରା ରାଜା ମାନଙ୍କର

ସପକ୍ଷରେ ସେ ଯେଉଁ ସବୁ ଯୁକ୍ତି ବାଢୁଥିଲେ ତାହାଥିଲା ଯୁକ୍ତିଯୁକ୍ତ । ରେଡ଼ିଫ କ୍ଲିଫିଙ୍ଗ ଏକଦା ଭାବୁଥିଲେ ଯେ ବିଧାତାଙ୍କ ସୃଷ୍ଟିରେ ରାଜାମାନେ ଭୋଗ ବିଳାସରେ ରହିବା ତାଙ୍କର ଅଧିକାର । ସେମାନଙ୍କର ହୀରା,ନୀଳା, ମୋତି, ମାଣିକର ଇତ୍ୟାଦି ବହୁମୂଲ୍ୟ ଐଶ୍ୱର୍ଯ୍ୟ । ଭଗବାନଙ୍କର ସେମାନଙ୍କୁ ଦାନ । ରାଜା, ତାଙ୍କର ରାଜନଅର, ହାତୀ, ଘୋଡ଼ା ଓ ବାଘ ଧନସଂପତ୍ତି ସବୁ ଲୋକଙ୍କ ପାଇଁ ଦର୍ଶନୀୟ । ସେମାନେ ସବୁ ଏକ ସ୍ୱତନ୍ତ୍ରଜାତିର ଦେବତୁଲ୍ୟ ମଣିଷ । ସେମାନେ ସବୁ କିମ୍ବଦନ୍ତୀ ପୁରୁଷ, କିନ୍ତୁ ଆଜି ସେ ପରଂପରା ଲୋପପାଇବାକୁ ବସିଛି । ସେମାନଙ୍କ ଗୁଣ, ଅବିଗୁଣ, ବଦଖର୍ଚ୍ଚ, ଅସଂଖ୍ୟ ନାରୀ ବା ରାଣୀ, ବିଳାସ ବ୍ୟସନ ଇତ୍ୟାଦିକୁ ନେଇ ବହୁ ଲୋଭନୀୟ କାହାଣୀରେ ଇତିହାସ ପରିପୂର୍ଣ୍ଣ । ସେମାନେ ସବୁ ଉଚ୍ଛେଦ ହୋଇଗଲେ, ଦେଶ କାଙ୍ଗାଳ ହୋଇଯିବ । ସେମାନଙ୍କୁ ନେଇ ଗଢ଼ି ଉଠିଥିବା କାହାଣୀ ମାନ ପ୍ରଜାମାନଙ୍କ ପ୍ରଶସ୍ତିର ପରିଚୟ । ସେମାନଙ୍କର ଧନରତ୍ନ, ବିଳାସମୟ ପ୍ରାଚୂର୍ଯ୍ୟ, ରାଜବାଟି, ଶିକାର ସୌକ, ଯାନବାହାନ, ଖେଳକୁଦ, ଅନ୍ତପୁର, ଅସଂଖ୍ୟ ଦାସଦାସୀ ଇତ୍ୟାଦି ଅନୁସାରେ ରାଜା, ମହାରାଜା, ନବାବ ଇତ୍ୟାଦି ପଦବୀରେ ସେମାନେ ପରିଚିତ । କିନ୍ତୁ ସେମାନଙ୍କର ସବୁଠାରୁ ବଡ଼ ପରିଚୟ ହେଲା, ସୁନା ରୂପା ହାତୀ, ବାଘ, ହୀରା, ନୀଳା ମଣି ମାଣିକ୍ୟ ଇତ୍ୟାଦି । ବରୋଦାର ରାଜା ସୁନା ଓ ମୂଲ୍ୟବାନ ପଥରକୁ ପୂଜା କରୁଥିଲେ । ତାଙ୍କ ଦରାବାରର ସିଂହାସନ ଥିଲା ସୁନା ନିର୍ମିତ ଏବଂ ସୁନାର ସୂକ୍ଷ୍ମ କାରୁକାର୍ଯ୍ୟରେ ସୁଶୋଭିତ । ସୁନାର ଏହି ସୂକ୍ଷ୍ମ କାରୁକାର୍ଯ୍ୟ କରିବା ପାଇଁ ତାଙ୍କ ରାଜ୍ୟର ଗୋଟିଏ ମାତ୍ର ପରିବାରକୁ କ୍ଷମତା ଦିଆଯାଇଥିଲା । ସେ ପରିବାରରେ ଲୋକେ ସେମାନଙ୍କ ନଖକୁ ଅସ୍ୱାଭାବିକ ଭାବେ ବଢ଼ାଇ ଲମ୍ବା କରନ୍ତି ଓ ପରେ ତାକୁ ପାନିଆର ଦାନ୍ତ ପରି କାଟି ଦିଅନ୍ତି । ଏହାଦ୍ୱାରା ନିଖୁଣ ଭାବରେ ସୁନାର ସୂକ୍ଷ୍ମ କାର୍ଯ୍ୟ କରିବାକୁ ସୁବିଧା ହୁଏ । ଦକ୍ଷିଣ ଭାରତରେ ତାରକା ବୋଲି ପରିଚିତ ବିଶ୍ୱପ୍ରସିଦ୍ଧ ସବୁଠାରୁ ବଡ଼ ହୀରା ଏବଂ ନେପୋଲିଅନ୍ ତୃତୀୟ ଦେଇଥିବା ହୀରା ଏବଂ ମୋତି ଓ ବୈଦୁର୍ଯ୍ୟରେ ନିର୍ମିତ ଅତି ମୂଲ୍ୟବାନ ହାର ତାଙ୍କ

ରତ୍ନ ଭଣ୍ଡାରରେ ଥିଲା । ମହାରାଜା ଭରତପୁରଙ୍କ ରତ୍ନ ଭଣ୍ଡାର ଥିଲା ତା ଠାରୁ ଆହୁରି ମୂଲ୍ୟବାନ । ତହିଁରେ ଅର୍ନ୍ତଭୂକ୍ତ ଥିଲା ବର୍ଷ ବର୍ଷ ଧରି ସଂଗ୍ରହ କରାଯାଇଥିବା ଅସୁମାରୀ ବିଶାଳକାୟ ହାତୀଦାନ୍ତମାନ । ଗ୍ରୀକ୍ ପୁରାଣର ବର୍ଣ୍ଣିତ ବିଶାଳକାୟ ପକ୍ଷୀର ଆଖିପରି ଝଲସି ଉଠୁଥିବା ତିନି ହଜାର ହୀରା ଓ ମୋତିରେ ନିର୍ମିତ ଆଭୂଷଣ ଶୋଭାପାଉଥିଲା କପୁରତାଲା ମହାରାଜାଙ୍କ ମୁକୁଟରେ । ଜୟପୁର ମହାରାଜାଙ୍କର ରତ୍ନଭଣ୍ଡାର ରାଜସ୍ଥାନ ପର୍ବତ ପାଖରେ ପୋତା ହୋଇ ରହିଥିଲା ଏବଂ ଏହାକୁ ପୁରୁଷ ପୁରୁଷ ଧରି ପ୍ରଚଣ୍ଡ ରାଜପୁତ ଯୋଦ୍ଧାମାନଙ୍କ ଦ୍ୱାରା ସୁରକ୍ଷିତ ହୋଇ ରହିଥିଲା । ଏଥିରୁ ନିଜ ପସନ୍ଦ ମୁତାବକ ଗୋଟିଏ ହୀରା ନେଇ ତାଙ୍କ ଶାସନର ସଙ୍କେତ ସ୍ୱରୂପ ରଖିବାକୁ ପ୍ରତ୍ୟେକ ମହାରାଜାଙ୍କ ଜୀବନ କାଳ ମଧ୍ୟରେ ଥରେ ଅନୁମତି ମିଳୁଥିଲା । ତାଙ୍କ ରତ୍ନ ଭଣ୍ଡାରରେ ଆଉ ଏକ ବିଶେଷ ଆକର୍ଷଣର ଆଭୂଷଣ ଥିଲା, ଯାହା ପାରା ଆଖି ପରି ବହୁ ବଡ଼ ମଣିର ତିନିଧାର ହାର ଥିଲା ଏବଂ ତାହାର କେନ୍ଦ୍ରରେ ଥିଲା ଉଜ୍ଜ୍ୱଳ ଏକ ହୀରା । ପଟିଆଲା ମହାରାଜାଙ୍କର ଗୋଟିଏ ମୋତି ହାରର ମୂଲ୍ୟ ଥିଲା ଏକ ମିଲିଅନ୍ ଡ଼ଲାର । ସବୁଠାରୁ କୌତୁହଳ ବିଷୟ ହେଲା ଯେ ତାଙ୍କର ଥିଲା ହୀରାର ଏକ ମୁକୁଟ ଯେଉଁଥିରେ ଖଚିତ ହୋଇଥିଲା ଏକ ହଜାର ଏକ ନୀଳକାନ୍ତ ଧବଳର ଉଜ୍ଜ୍ୱଳ ହୀରା । ଶତାବ୍ଦିର ଶେଷପର୍ଯ୍ୟନ୍ତ ପଟିଆଲା ମହାରାଜାଙ୍କର ପରଂପରା ଥିଲା କେବଳ ସେଇ ମୁକୁଟ ପିନ୍ଧି ସଂପୂର୍ଣ୍ଣ ଉଲଗ୍ନ ଭାବରେ ଲିଙ୍ଗଟିକୁ ଉର୍ଦ୍ଧ୍ୱମୁଖି କରି ବର୍ଷକୁ ଥରେ ଆସି ପ୍ରଜାଙ୍କୁ ଦର୍ଶନ ଦେବା । ଏହା ପବିତ୍ର ଶିବଲିଙ୍ଗ ଦର୍ଶନ ବୋଲି କୁହାଯାଉଥିଲା । ଏହି ଅବସ୍ଥାରେ ମହାରାଜା ଯେତେବେଳେ ଦରବାର କକ୍ଷରେ ବିଚରଣ କରୁଥିଲେ, ତାଙ୍କୁ ଦର୍ଶନ କରିବା ଥିଲା ପରମ ସୌଭାଗ୍ୟର କଥା ଏବଂ ଏହାକୁ ଦର୍ଶନ କଲାବେଳେ ଉପସ୍ଥିତ ପ୍ରଜାକୂଳଙ୍କର ଆନନ୍ଦ ଉଲ୍ଲାସର ଜୟ ଜୟ ଧ୍ୱନୀରେ ରାଜ୍ୟରୁ ସମସ୍ତ ଅଶୁଭ ଗ୍ରହମାନେ ଛାଡ଼ି ପଳାନ୍ତି ବୋଲି ଏକ ବିଶ୍ୱାସଥିଲା । ଚୀନର ଜଣେ ସାଧୁ ପୂର୍ବତନ ମହିସୂର ରାଜାଙ୍କୁ କହିଥିଲେ ହୀରାକୁ ଗୁଣ୍ଡ କରି ରଖିଲେ ତାଙ୍କର ରତ୍ନ ଭଣ୍ଡାର ଧନରତ୍ନରେ ଉଛୁଳି ପଡ଼ିବ । ଏହା ଶୁଣି ରାଜା ହଜାର

ହଜାର ମୂଲ୍ୟବାନ ରତ୍ନ ପଥରକୁ ଗୁଣ୍ଡ କରାଇଲେ। ଏହା ମଧ୍ୟ ଏକ ପରଂପରା ଥିଲା ଯେ ହାତୀ ପଛରେ ନୃତ୍ୟ କରି ରାଜ୍ୟ ସାରା ଯୁବତୀ କନ୍ୟାମାନେ ପରିକ୍ରମା କଲେ ଆଶ୍ଚର୍ଯ୍ୟଜନକ ଶୁଭଫଳ ପ୍ରାପ୍ତ ହୁଏ। ବରୋଦା ରାଜାଙ୍କର ଏହାବି ଏକ ପରଂପରା ଥିଲାଯେ, ଅସଂଖ୍ୟ ଲୋକଙ୍କର ଭିଡ଼ ଭିତରେ ହାତୀ ଉପରେ ବସି ଯେତେବେଳେ ନଗର ଭ୍ରମଣ କରିବେ ସେତେବେଳେ ତାଙ୍କ ମଣିମୁକ୍ତାରେ ସୁସଜ୍ଜିତ ହାତୀମାନେ ଆଗେ ଆଗେ ପରସ୍ପର ସହିତ ଯୁଦ୍ଧ କରିବେ। ତାଙ୍କର ସମସ୍ତ ଆଭୂଷଣ ଥିଲା ସୁବର୍ଣ୍ଣ ନିର୍ମିତ। ହାତୀ ଉପରେ ବସି ଯାତ୍ରା କଲାବେଳେ ହାତୀ ଉପରେ ସଜ୍ଜିତ ହୋଇଥିବା ବହୁମୂଲ୍ୟ ଶେଯ ଉପରେ ସେ ବସନ୍ତି ଓ ତାଙ୍କର ପୃଷ୍ଠ ଦେଶକୁ ଢ଼ାଙ୍କିଥିବା ବହୁ ମୂଲ୍ୟର ପରଦା ଉପରେ ୨୫୦୦୦ ପାଉଣ୍ଡ ମୂଲ୍ୟର ଦଶଗୋଟି ସୁବର୍ଣ୍ଣ ହାର ଝୁଲୁଥାଏ। ଏଦୃଶ୍ୟ ଥିଲା ତାଙ୍କ ବିଜୟର ପ୍ରତୀକ। ବଂଶ ପରଂପରା କ୍ରମେ ହାତୀ ଥିଲା ତାଙ୍କର ଏକ ସ୍ୱର୍ଗିୟ ଯାନ ଏବଂ ତାଙ୍କ ହାତରେ ଥିବା ଧନୁଶର ରାମାୟଣ ବର୍ଣ୍ଣିତ ରାମଙ୍କ ହାତରୁ ଜନ୍ମ ବୋଲି ଲୋକମୁଖରେ ପ୍ରଚଳିତ ଥିଲା। ପ୍ରତିବର୍ଷ ଦଶହରାରେ ସେ ଯେଉଁ ଅସଂଖ୍ୟ ହାତୀମାନଙ୍କର ପଟୁଆର ବାହାର କରନ୍ତି, ତାହାଥିଲା ତାଙ୍କ ଶକ୍ତିର ପ୍ରଦର୍ଶନ। ଏକ ହଜାର ହାତୀ ସହରର ମୁଖ୍ୟ ରାସ୍ତାରେ ପଟୁଆର କରି ଶୋଭାଯାତ୍ରା କରନ୍ତି। ସେମାନଙ୍କ ମୁଣ୍ଡ ଓ ଦେହର ଆଉ କେତେକ ଯାଗରେ ସ୍ୱର୍ଣ୍ଣ ଓ ମଣିମୁକ୍ତାରେ ସଜ୍ଜିତ ହୋଇଥାଏ। ସେମାନଙ୍କ ଭିତରୁ ବେଶି ଶକ୍ତିଶାଳୀ ହାତୀ ମହାରାଜାଙ୍କ ସିଂହାସନକୁ ବହନ କରିବାର ଗୌରବ ଅର୍ଜନ କରେ। ସେ ସିଂହାସନକୁ ସୁଶୋଭିତ ଛତ୍ରଦ୍ୱାରା ଆବୃତ କରାଯାଇଥାଏ। ତାହାହିଁ ମହାରାଜାଙ୍କର ଶକ୍ତି ପ୍ରଦର୍ଶନ। ସେ ହାତୀ ପଛେ ପଛେ ଆଉ ଦୁଇଟି ହାତୀ ମୂଲ୍ୟବାନ ଆଭୂଷଣରେ ସୁଶୋଭିତ ହୋଇ ହାଉଦାକୁ ଧରି ଆସିବା ବେଳେ ଠୁଳିଭୂତ ଲୋକଙ୍କ ମଧ୍ୟରେ ସଂଭ୍ରମ ଓ ସମ୍ମାନର ସଂକେତ ସ୍ୱରୂପ ସଂପୂର୍ଣ୍ଣ ନିରବତା ପାଳନ କରାଯାଏ। ଏହି ଖାଲି ହାଉଦା ସବୁ ମହାରାଜାଙ୍କ ପୂର୍ବ ପୁରୁଷମାନଙ୍କର ଆତ୍ମାଥାଏ ବୋଲି ବିଶ୍ୱାସ କରାଯାଏ, ବରୋଦାରେ ରାଜଶକ୍ତିର ପ୍ରତୀକ ସ୍ୱରୂପ ହାତୀ ମାନଙ୍କର ଲଢ଼େଇ ହୁଏ। ସେମାନଙ୍କର

ଏପରି ଲଢ଼େଇ ଅତି ଭୟଙ୍କର ହୋଇଥାଏ । ଦୁଇଟି ମତ୍ତହସ୍ତି ପରସ୍ପରକୁ ଭୟଙ୍କର ଭାବରେ ଆକ୍ରମଣ କରନ୍ତି । ସେମାନଙ୍କ ପାଦର ଗୁରୁଭାରରେ ମେଦିନୀ କମ୍ପିଉଠେ ଏବଂ ଏହି ଲଢ଼େଇ ସେ ପର୍ଯ୍ୟନ୍ତ ଚାଲେ ଯେ ପର୍ଯ୍ୟନ୍ତ ଦୁଇ ହାତୀ ମଧ୍ୟରୁ ଗୋଟିଏ ମୃତ୍ୟୁ ବରଣ ନକରିଛି । ଢେଙ୍କାନାଳ ମହାରାଜା ମଧ୍ୟ ପ୍ରତିବର୍ଷ ହଜାର ହଜାର ଅତିଥିଙ୍କୁ ଏହିପରି ଏକ ଭୟଙ୍କର ହାତୀ ଲଢ଼େଇର ଦୃଶ୍ୟର ଉପଭୋଗ କରନ୍ତି । ଗୋଆଲିଅର ମହାରାଜା ପ୍ରତି ଶତାବ୍ଦିର ଆରମ୍ଭରେ ଲଣ୍ଡନର ବକିଂମ୍ହାମ ରାଜବାଟୀ ଠାରୁ ଅଧିକ ଆକର୍ଷଣୀୟ ଗହଣାରେ ସଜାନ୍ତି । ଆକର୍ଷଣର ସାମଗ୍ରୀମାନ ଏତେ ଓଜନ ହୁଏ ଯେ ଥରେ ଜଣେ ତାଙ୍କର ମନ୍ତ୍ରୀ କହିଲେ ଏ ଗୁରୁଭାର ରାଜବାଟୀର ଛାତ ସମ୍ଭାଳି ପାରିବ ନାହିଁ । ୧୮୯୨ ରେ ପାତିଆଲ ମହାରାଜା ଫରାସୀ ନିର୍ମିତ ମଟରକାର ଆଣି ତାଙ୍କ ଗ୍ୟାରଜ୍‌ରେ ଶୋଭା ବର୍ଦ୍ଧନ କରିଥିଲେ । ହାଇଦ୍ରାବାଦ ନିଜାମଙ୍କ ଗ୍ୟାରେଜରେ ଏତେ ମଟରକାର ଥିଲା ଯେ, ସେଥି ମଧ୍ୟରୁ ଅସଂଖ୍ୟ ଗାଡ଼ିକୁ ଆଦୌ ବ୍ୟବହାର କରାଯାଇ ନଥିଲା । ଭରତପୁର ଓ ଅଲୋୱାର ବହୁରାଜ୍ୟର ରାଜା ମହାରାଜା ମାନେ କେବଳ ନିଜର ସଉକ ମେଣ୍ଟାଇବା ପାଇଁ ବିଦେଶର ନୂଆ ନୂଆ ପ୍ରକାର ମଟର ଗାଡ଼ି ସେମାନଙ୍କର ଗ୍ୟାରେଜ୍‌ରେ ରଖୁଥିଲେ ଓ ସେସବୁ କେବଳ ଗ୍ୟାରେଜରେ ଶୋଭାପାଉଥିଲା । ମାଉଣ୍ଟବେଟେନ ତାଙ୍କ ଡ଼ାଇରୀରେ ଲେଖିଛନ୍ତି, ଦିନେ ଭରତପୁର ରାଜା ୱ୍ଲାସ୍‌ର ଯୁବରାଜ ଓ ତାଙ୍କର ଏଡ଼ିସି ମାଉଣ୍ଟବେଟେନଙ୍କୁ ନେଇ ସମୁଦ୍ରର ବୋଟ ପରି ଅଙ୍କା ବଙ୍କା କରି ପାଗଳ ପରି ଖାଲଢ଼ିପ କିଛି ନମାନି ଏପରି ତାଙ୍କର ମଟର ଗାଡ଼ିକୁ ଚଳାଇଲେ ଯେ ସମସ୍ତେ ଡ଼ରିଗଲେ । ସବୁଠାରୁ ବିଚିତ୍ର ଦାମୀ ମଟର ଗାଡ଼ିଥିଲା ଅଲୱାର ମହାରାଜାଙ୍କର । ସେ ଗାଡ଼ି ଥିଲା ଲାନ୍‌ସର ଷ୍ଟାଇଲର ଓ ତାହା ସୁନାରେ ଛାଉଣୀ ହୋଇଥିଲା ଏବଂ ତାହା ଷ୍ଟାଲିନ୍‌ୱାଲରେ ତିଆରି ହୋଇଥିଲା ହାତୀଦାନ୍ତରେ । ଗୋୱାଲିଅର ମହାରାଜାଙ୍କର ଥିଲା ଗୋଟିଏ ବିଦ୍ୟୁତ ଚାଳିତ ଟ୍ରେନ୍ ଯାହାର ରେଳପଥ ଥିଲା ୨୫୦ ଫୁଟ ଲମ୍ବ ରୂପାରେ ତିଆରି । ଏହାକୁ ତାଙ୍କ ଭୋଜି ଭବନର ମଝିରେ ରଖାଯାଇଥିଲା ।

ଭୋଜିବେଳେ ସେଥିରେ ମହାରାଜା ସମସ୍ତଙ୍କର ଅଗ୍ରପୂଜ୍ୟ ଭାବରେ ବସୁଥିଲେ । ଏହି ଟ୍ରେନ ସାହାଯ୍ୟରେ ରାଜାମାନଙ୍କୁ ଖାଦ୍ୟ ପରିବେଷଣ କରାଯାଇଥିଲା । ଏସବୁ ଥିଲା ତାଙ୍କ ବିଳାସ ଓ ପ୍ରାଚୁର୍ଯ୍ୟର ପ୍ରତିକ । ଦିନେ ଭାଇସରାଏଙ୍କ ସମ୍ମାନାର୍ଥେ ଭୋଜି ସଭାରେ ବିଦ୍ୟୁତ ବିଭ୍ରାଟ ହେତୁ ସେ ଟ୍ରେନଟି ଜଳି ଜଳି ଏ ମୁଣ୍ଡରୁ ସେ ମୁଣ୍ଡ ପର୍ଯ୍ୟନ୍ତ ଚାଲିଗଲା ଏବଂ ସମସ୍ତେ ଛାନିଆ ହୋଇଗଲେ । ମହୀଶୂର ରାଜାଙ୍କର ସିଂହାସନ ଏକ ଟନ ସୁନାରେ ତିଆରି ହୋଇଥିଲା ଏବଂ ସିଂହାସନରେ ପହଞ୍ଚିବା ପାଇଁ ନଗୋଟି ସୁନାର ପାହାଚ ଥିଲା ଯାହାକୁ ଭଗବାନ ବିଷ୍ଣୁଙ୍କର ନଟପାହାଚ ସହିତ ସମାନ ବୋଲି କୁହାଯାଉଥିଲା । ଓଡ଼ିଶାର ରତ୍ନସିଂହାସନ ରାଣୀ ଭିକ୍ଟୋରିଆଙ୍କ ବିବାହ ଶଯ୍ୟା ପରି ଥିଲା । ଏହାର ନିର୍ମାଣ କୌଶଳ ଥିଲା ଅତ୍ୟନ୍ତ ଚମତ୍କାର ଓ ଏଥିରେ ବହୁମୂଲ୍ୟ ମଣି ମାଣିକର ଖଞ୍ଜା ଯାଇଥିଲା । ଐଶ୍ୱର୍ଯ୍ୟମୟ ଏହି ଶଯ୍ୟା ଅପୂର୍ବ ଉଜ୍ଜ୍ୱଳତାରେ ଝଲମଲ କରୁଥିଲା । ରାମପୁର ମହାରାଜାଙ୍କର ସିଂହାସନ ଜଣେ ବିଶପଙ୍କ ସିଂହାସନ ପରି ଏକ ବିଶାଳ ଭବନର ମଧ୍ୟଭାଗରେ ସୁସଜ୍ଜିତ ହୋଇ ଅପୂର୍ବ ତେଜରେ ଝଲସି ଉଠୁଥିଲା ଏବଂ ଶୁକ୍ଳ ବର୍ଣ୍ଣ ମ୍ୟାଟ୍ ତିଆରି ଏକ ସୁନ୍ଦର ରମଣୀର ସଂପୂର୍ଣ୍ଣ ଉଲଗ୍ନ ବିଶାଳ ମୂର୍ତ୍ତିଟିଏ ଶୋଭାପାଉଥିଲା । ତାଙ୍କ ଅନ୍ତପୁରରେ ଅସଂଖ୍ୟ ହିନ୍ଦୁ ଓ ମୁସଲମାନ ଲାସ୍ୟମୟୀ ରମଣୀମାନଙ୍କ ଗହଳରେ ଫାଟି ପଡୁଥିଲା । ଭାରତରେ କୋଡ଼ିଏ ହଜାର ବାଘ ମାନଙ୍କ ମଧ୍ୟରୁ ଅନେକ ବାଘମାନଙ୍କୁ ତାଙ୍କ ସଂରକ୍ଷିତ ଜଙ୍ଗଲରେ ରଖାଯାଇଥିଲା । ରାଜା ସେ ଜଙ୍ଗଲରେ ବେଟେବେଳେ ତାଙ୍କ ବନ୍ଧୁକ ଦ୍ୱାରା ବାଘ ଶୀକାର କରୁଥିଲେ । ଭରତପୁର ରାଜାଙ୍କୁ ୩୫ ବର୍ଷ ବୟସ ହେଲା ବେଳକୁ ସେ ଯେତେ ବାଘଶୀକାର କରିଥିଲେ ସେ ସବୁର ଚମଡ଼ାକୁ ଏକତ୍ର ସିଲେଇ କରି ତାଙ୍କ ରାଜବାଟୀର କାନ୍ଥ ସବୁ ଏ ମୁଣ୍ଡରୁ ସେ ମୁଣ୍ଡ ପର୍ଯ୍ୟନ୍ତ କାରପେଟ୍ ପରି ଛାଉଣୀ କରାଯାଇଥିଲା । ବତକ ଶିକାର କରିବାରେ ତାଙ୍କର ନାଁ ଥିଲା । ଭାଇସରାଏ ସମ୍ମାନର୍ଥେ ଥରେ ସେ ତିନିଘଣ୍ଟା ସମୟ ମଧ୍ୟରେ ୪୪୮୨ ଗୋଟି ପକ୍ଷୀ ଶୀକାର କରିଥିଲେ ।

ଗୋୟାଲିଆର ମହାରାଜା ତାଙ୍କ ଜୀବନ କାଳ ମଧ୍ୟରେ ୧୪୦୦ ବାଘ ଶୀକାର କରିଥିଲେ ଏବଂ ଗାଇଡ ଟୁ ଟାଇଗର ସୁଟିଂ ବୋଲି ଏକ ଅନନ୍ୟ ପୁସ୍ତକ ରଚନା କରିଥିଲେ । ପଟିଆଲାର ମହାରାଜା ଭୂପିନ୍ଦ୍ର ସିଂ । ପ୍ରଥମ ଓ ଦ୍ୱିତୀୟ ବିଶ୍ୱଯୁଦ୍ଧ ମଧ୍ୟରେ ତାଙ୍କୁ ଭାରତର ମହାରାଜା ଭାବରେ ମାନ୍ୟତା ମିଳିଥିଲା ଏବଂ ତାଙ୍କର ଉଚ୍ଚତା ଥିଲା ୬ଫୁଟ ୪ଇଞ୍ଚ, ଓଜନ ଥିଲା ୩୦୦ ପାଉଣ୍ଡ । ତାଙ୍କର ସୁନ୍ଦର ଓଠ, କଳା ଘୁଙ୍ଗୁର କାନ ପର୍ଯ୍ୟନ୍ତ ଲମ୍ବିଥିବା ନିଶ, ଉଦ୍ଧତ ଆଖି ଏବଂ ବିଂଶ ଶତାବ୍ଦିର ଠିକ୍ ଜଣେ ବିଳାସୀ ବୀର ଯୋଦ୍ଧା ମୋଗଲ ସମ୍ରାଟ୍ ପରି ଆଚରଣ ପାଇଁ ତାଙ୍କର ଏକ ସ୍ୱତନ୍ତ୍ର ପରିଚୟ ଥିଲା । ତାଙ୍କର ଖାଇବା ମଧ୍ୟ ସେହିପରି ପ୍ରଚୂର ଥିଲା । ସେ ଦିନକୁ କୋଡିଏ ପାଉଣ୍ଡ ଖାଦ୍ୟ ଖାଉଥିଲେ ଏବଂ ଚା'ପାନ ବେଳେ ଦୁଇଟା କୁକୁଡା ରୋଷ୍ଟ ଜଳଖିଆ କରୁଥିଲେ । ପୋଲ ପ୍ରତି ତାଙ୍କର ଏତେ ସଉକ ଥିଲା ଯେ ତାଙ୍କ ଘୋଡାଶାଳରେ ୫୦୦ ପୃଥିବୀର ବଛା ବଛା ସୁନ୍ଦର ପୋଲ ଘୋଡା ଥିଲେ । ପୋଲ ପରି ସୁନ୍ଦର ତରୁଣୀ ଉପଭୋଗ ମଧ୍ୟ ଥିଲା ତାଙ୍କର ଅନ୍ୟ ଏକ ସଉକ । ଦେଶୀ ବିଦେଶୀ ଭିନ୍ନ ଭିନ୍ନ ଆକୃତିର ସୁନ୍ଦର ତରୁଣୀ ମାନଙ୍କର ସଂଖ୍ୟା ଥିଲା ୩୫୦ । ପଞ୍ଜାବର ପ୍ରଚଣ୍ଡ ଗ୍ରୀଷ୍ମ ଦିନରେ ଅନ୍ତପୁରର ରମଣୀ ମାନେ ସନ୍ଧ୍ୟା ବେଳେ ତାଙ୍କ ସୁଇମିଂ ପୁଲ ପାଖରେ ରୁଣ୍ଡ ହୁଅନ୍ତି ଏବଂ ରାଜା ଅତି ହାଲ୍‌କା ଭାବରେ ପୁଲ୍‌ରେ ଭାସୁଥିବା ବେଳେ ଥରକୁ ଥର କୂଳକୁ ଆସି ଇଚ୍ଛା ମୁତାବକ ସୁନ୍ଦରୀ ତରୁଣୀ ମାନଙ୍କ ସ୍ତନ ଚୁମ୍ବନ କରି ଦାମୀ ହୁସ୍କି ଢ଼ୋକେ ଢ଼ୋକେ ପିଅନ୍ତି । ତାଙ୍କ ଶୟନ କକ୍ଷର କାନ୍ଥ ଓ ଛାତରେ ବିଭିନ୍ନ ଢ଼ଙ୍ଗରେ ରତିକ୍ରୀଡାର ସୁନ୍ଦର ସୁନ୍ଦର ଦୃଶ୍ୟମାନ ଅଙ୍କା ଯାଇଥିଲା । ସେସବୁ ଦୃଶ୍ୟକୁ ଦେଖି ଦେଖି ମହାରାଜା ତାଙ୍କ ପସନ୍ଦ ଅନୁସାରେ ଭିନ୍ନ ଭିନ୍ନ ଢ଼ଙ୍ଗରେ ଉପଭୋଗ କରନ୍ତି । ତାଙ୍କର କାମଶକ୍ତି ଥିଲା ପ୍ରଚଣ୍ଡ ଓ ସେ ଯେତେ ଉପଭୋଗ କଲେ ମଧ୍ୟ ତାଙ୍କର କାମ ପିପାଶା ମେଣ୍ଟୁ ନଥିଲା । ସାର୍ ଭୂପିନ୍ଦର ଏକ ଦୃଶ୍ୟାବଳି ଦେଖାଇବା ପାଇଁ ଯେତେବେଳେ ତାଙ୍କ ଅନ୍ତପୁରର ଦ୍ୱାର ଖୋଲି ଦିଅନ୍ତି, ସେତେବେଳେ ପ୍ରସାଧାନ କାରିଣୀ ଏବଂ ଐଶ୍ୱର୍ଯ୍ୟମୟୀ ତରୁଣୀ

କେଶ ବିନ୍ୟାସ କାରିଣୀ ଏବଂ ଅଙ୍ଗବସ୍ତ୍ର ଆଭରଣ କାରିଣୀ ସମସ୍ତେ ବାହାରି ଆସନ୍ତି। ସେ କକ୍ଷରେ ଥାଆନ୍ତି ଦଳେ ଫ୍ରେଞ୍ଚ, ବ୍ରିଟିଶ୍, ଭାରତୀୟ ଏବଂ ଆଉ ଅନେକ ଭଳି ଭଳି ଲଣ୍ଡନ ମାଗାଜିନରେ ଚିତ୍ରିତ ସୁନ୍ଦର ତରୁଣୀ ଏବଂ ନାନା ପ୍ରକାର ସୁଗନ୍ଧ ତୈଳ, ପ୍ରସାଧନ ସାମଗ୍ରୀ ଲୋଶନ ଇତ୍ୟାଦି। ଶେଷରେ ଅସାଧ୍ୟ ରୋଗରେ ପୀଡିତ ହୋଇ ସମସ୍ତ ଚିକିତ୍ସା ସତ୍ତ୍ୱେ ପ୍ରାଣତ୍ୟାଗ କଲେ। ଜଣେ ଅତ୍ୟନ୍ତ ପ୍ରଭାବଶାଳୀ ମହାରାଜା ହେଲେ ମଧ୍ୟ ଅଜସ୍ର ଅର୍ଥ ବ୍ୟୟ କଲେ ମଧ୍ୟ କୌଣସି ପ୍ରକାର ଚିକିତ୍ସା ତାଙ୍କୁ ବଞ୍ଚାଇ ପାରିଲା ନାହିଁ। ରାଜା ମହାରାଜା ମାନେ ନିଜକୁ ଅନେକ ପ୍ରକାର ଦେବାଦେବୀଙ୍କ ଠାରୁ ଉତ୍ପନ୍ନ ବୋଲି କହି ପ୍ରଜାମାନଙ୍କ ଦ୍ୱାରା ପୂଜିତ ହୁଅନ୍ତି। ମହୀଶୂରର ମହାରାଜା ନିଜକୁ ଚନ୍ଦ୍ରବଂଶୀ ବୋଲି କହନ୍ତି ତାଙ୍କ ପ୍ରଜାମାନଙ୍କର ବିଶ୍ୱାସ ଯେ ସେ ବର୍ଷକୁ ଥରେ ଜୀବନ୍ତ ଦେବତା ହୋଇଯାନ୍ତି। ବର୍ଷରେ ୯ ଦିନ ଧରି ଦାଢ଼ି, ନିଶ, ଚୁଟି ନକାଟି କିମ୍ବା ଧୁଆଧୁଇ ନହୋଇ ହିମାଳୟର ଗୁମ୍ଫା ଭିତରେ ରହି ତପସ୍ୟା କରି ଗୋଟିଏ ସଂପୂର୍ଣ୍ଣ ଅନ୍ଧକାର କୋଠରୀରେ ଲୁଚି ରୁହନ୍ତି। ସେ ସମୟରେ ତାଙ୍କୁ ଦେଖିବାର ବା ଛୁଇଁବାର ସୁଯୋଗ କାହାରିକୁ ଦିଆଯାଏ ନାହିଁ, କାରଣ ସେତେବେଳେ ତାଙ୍କ ଠାରେ ଦେବତା ବାସ କରିଥାନ୍ତି ବୋଲି କୁହାଯାଏ। ୯ ଦିନ ପରେ ସେ ବାହାରନ୍ତି ଏବଂ ଓଟ ଉପରେ ବସି ମହା ସମାରୋହରେ ନଗର ପରିକ୍ରମା କରନ୍ତି। ଆଗେ ଆଗେ ବ୍ରାହ୍ମଣ ମନ୍ତ୍ର ଉଚାରଣ କରି ଚାଲିଥାନ୍ତି। ତାପରେ ସ୍ନାନ ସାରି ସେ ଭୋଜନ କରନ୍ତି। ପରେ ଏକ କଳା ଘୋଡାରେ ବସି ପ୍ରଜାମାନେ ହର୍ଷ ଉଲ୍ଲାସର କୋଳାହଳ ଭିତରେ ଯାତ୍ରା କରନ୍ତି। ଉଦୟପୁର ମହାରାଜା ନିଜକୁ ସୂର୍ଯ୍ୟବଂଶୀ ବୋଲି ପରିଚୟ ଦିଅନ୍ତି। ତାଙ୍କର ସିଂହାସନ ଭାରତର ପ୍ରାଚୀନତମ ଏବଂ ତାଙ୍କ ବଂଶ ୨୦୦୦ ବର୍ଷ ଧରି ଶାସନ କରୁଛନ୍ତି ବୋଲି ପ୍ରବାଦ ଅଛି। ତାଙ୍କ ବଂଶର ରାଜା ମାନେ ବର୍ଷକୁ ଥରେ ଜୀବନ୍ତ ଦେବତା ହୋଇଯାନ୍ତି ବୋଲି କୁହାଯାଏ ଏବଂ ସେହି ସମୟରେ ସେ କୁମ୍ଭୀରଥିବା ହ୍ରଦରେ ସ୍ନାନ କରନ୍ତି ଆଉ ଥରେ ରାଜ୍ୟାଭିଷେକର ପ୍ରତୀକ ସ୍ୱରୂପ। ତାପରେ ତାଙ୍କ ସାମନ୍ତ ମାନେ ବିନୟର ସହ

ତାଙ୍କୁ ଦର୍ଶନ କରନ୍ତି। ବ୍ରିଟିଶ୍ ଅନୁଗତ ରାଜା ମାନଙ୍କୁ ସେମାନଙ୍କ ଆନୁଗତ୍ୟ ପାଇଁ ବିଭିନ୍ନ ପ୍ରକାର ଉପାଧିରେ ଭୂଷିତ କରାଯାଏ ଏବଂ ସେମାନେ ବ୍ରିଟେନ ସମ୍ରାଟଙ୍କ ଅନୁଗତ ସେବକ ଭାବରେ ସମ୍ମାନିତ ହୁଅନ୍ତି। ଏଥିପାଇଁ ରାଜାମାନଙ୍କ ମଧ୍ୟରେ ପ୍ରତିଯୋଗିତା ହୁଏ। କେଉଁ ରାଜା କେତେ ଅନୁଗତ ତାର ପ୍ରମାଣ ସ୍ୱରୂପ ସେମାନଙ୍କୁ ଗନ୍ ସାଲୁଟ୍ ଦିଆଯାଏ। ଏହି ପ୍ରତିଯୋଗିତାରେ ସର୍ବଶ୍ରେଷ୍ଠ ବୋଲି ସମ୍ମାନିତ ହେଉଥିଲେ ପାଞ୍ଚଗୋଟି ରାଜ୍ୟ – ହାଇଦ୍ରାବାଦ, ଗୋଆଲିୟର, କାଶ୍ମୀର, ମହିଶୂର ଏବଂ ବରୋଦା। ଏମାନଙ୍କୁ ଏକୋଇଶି ତୋପ ସଲାମୀ ଦେଇ ସମ୍ମାନିତ କରାଯାଏ। ଅନ୍ୟ ମାନଙ୍କୁ ୧୯, ୧୭, ୧୫, ୧୩, ୧୧ ଏବଂ ୯ ଗନ୍ ସାଲ୍ୟୁଟ୍ ମିଳେ ଏବଂ ଅବଶିଷ୍ଟ ରାଜା ମାନଙ୍କୁ ଅବଜ୍ଞା କରି କୌଣସି ଗନ୍ ସାଲ୍ୟୁଟ୍ ଦିଆଯାଏ ନାହିଁ। ଆନୁଗତ୍ୟର ମାତ୍ରା ଅନୁସାରେ ସେମାନଙ୍କୁ ଅଧିକ କିମ୍ବା କମ୍ ସାଲ୍ୟୁଟ୍ ମିଳିବ ତାହା ବିଚାର କରିବାର କ୍ଷମତା ଭାଇସରାଏଙ୍କର ଥିଲା। ତେଣୁ ଇଂରେଜମାନଙ୍କର ପ୍ରିୟପାତ୍ର ହେବା ପାଇଁ ବ୍ୟାକୁଳ ଥିଲେ। ତା ନକଲେ ସେମାନଙ୍କୁ ରାଜ୍ୟ ହରାଇବାକୁ ପଡିବ, ଏଇ ଭୟ ସେମାନଙ୍କୁ ଦୁର୍ବଳ କରିଥିଲା। ସ୍ୱାର୍ଥତ୍ୟାଗ, ସ୍ୱାଭିମାନ, ଦେଶଭକ୍ତି କ୍ଷମତା ପାଇଁ ଏସବୁ ସେମାନଙ୍କ ପାଖରେ ଥିଲା ତୁଚ୍ଛ। ନିଜର ସୁରକ୍ଷା ପାଇଁ ଦେଶୀୟ ରାଜାମାନେ ଶତଧା ବିଭକ୍ତ ହୋଇ ରହିଥିଲେ। ଖାଲି ବ୍ରିଟିଶ୍ ନୁହେଁ, ହଜାର ହଜାର ବର୍ଷ ଧରି ବିଦେଶୀ ଶକ୍ତି ମାନଙ୍କ ଠାରୁ ପରାସ୍ତ ହୋଇ ଜାତୀୟତାବୋଧ ସେମାନେ ହରାଇ ବସିଥିଲେ। ତଥାପି ସଂଘବଦ୍ଧ ହୋଇ ରହିବାକୁ ସେମାନଙ୍କ ଭିତରେ ଚେତା ପଶିନଥିଲା। ସଂଘମ ଶରଣମ୍ ଗଚ୍ଛାମି – ବୁଦ୍ଧଙ୍କର ଏହି ଦର୍ଶନରେ ସେମାନେ ଉଦ୍‌ବୁଦ୍ଧ ନଥିଲେ। ସଂଘବଦ୍ଧତା ହିଁ ବିଦେଶୀ ଶକ୍ତିକୁ ପରାସ୍ତ କରିବାର ଏକମାତ୍ର ଉପାୟ। ବିଧିର ଏହା ଏକ ବିଡ଼ମ୍ବନା ଯେ ଯୁଗ ଯୁଗ ଧରି ବାରମ୍ବାର ପରାସ୍ତ ହେଲେ ବି ଏକତା ରକ୍ଷା କରିବାକୁ ସେମାନେ ସଚେତନ ହୋଇପାରିଲେ ନାହିଁ। ଏହାଠାରୁ ଅଧିକ ଦୁର୍ଭାଗ୍ୟର କଥା ଆଉ କ'ଣ ହୋଇପାରେ ? କୌଣସି ଶାସନ ପଦ୍ଧତି ଚିରସ୍ଥାୟୀ ନୁହେଁ। କାରଣ ମଣିଷର ମନ କୌଣସି ଏକ

ନିର୍ଦ୍ଦିଷ୍ଟ ବ୍ୟବସ୍ଥାକୁ ସବୁଦିନ ପାଇଁ ଗ୍ରହଣ କରେନା । କାଲି ଗଣତାନ୍ତ୍ରିକ ବିଚାରବୋଧ ପରିବର୍ତ୍ତେ ରାଜତନ୍ତ୍ର ଆସି ପାରେ କିମ୍ବା ଅନ୍ୟ କୌଣସି ଶାସନତନ୍ତ୍ର ପ୍ରତି ଲୋକେ ଆକୃଷ୍ଟ ହୋଇପାରନ୍ତି । ସେତେବେଳେ ଏକତା ନଥିଲେ ପରାଜୟ ସୁନିଶ୍ଚିତ । ଏଥିପାଇଁ ହୁଏତ ବହୁବର୍ଷ ଲାଗିପାରେ । ମାତ୍ର ଶାସନତନ୍ତ୍ରର ପରିବର୍ତ୍ତନ ଅବସମ୍ଭାବି । ଜୁନାଗଡ ରାଜାଙ୍କର କୁକୁର ସଉକ ଥିଲା ଅନନ୍ୟ । ଏଥିପାଇଁ ବମ୍ବେର ଉତ୍ତରରେ ଥିବା ଏହି ରାଜ୍ୟର ଏକ ସ୍ୱତନ୍ତ୍ର ପରିଚୟ ଥିଲା । ତାଙ୍କର ଥିଲେ ଅନେକ କୁକୁର ଏବଂ ସେମାନଙ୍କ ପାଇଁ ରାଜା କରିଥିଲେ ପୃଥକ ପୃଥକ ସ୍ୱତନ୍ତ୍ର ଘର । ପ୍ରତ୍ୟେକ କୁକୁର ପାଇଁ ଯୋଗାଇ ଦିଆଯାଇଥିଲା ଟେଲିଫୋନ, ବିଦ୍ୟୁତ ଶକ୍ତି ଏବଂ ଘରୋଇ ଚାକର, ଯାହା ତାଙ୍କ ରାଜ୍ୟର ପ୍ରଜାମାନଙ୍କ ପାଇଁ ଦୁର୍ଲଭ । ସେମାନଙ୍କ ପାଇଁଥିଲା ସାଜସଜାର ପରିପୂର୍ଣ୍ଣ କବର ସ୍ଥାନ ଏବଂ କୌଣସି ଏକ କୁକୁରର ମୃତ୍ୟୁ ହେଲେ ମହା ସମାରୋହରେ ତାକୁ କବର ସ୍ଥାନକୁ ନିଆଯାଉଥିଲା । ତାଙ୍କର ବବି ନାମକ ଗୋଟିଏ କୁକୁର ଏବଂ ରୋଶନା ନାମକ ଏକ କୁକୁରୀର ବିବାହ ଉତ୍ସବରେ ସେ ସବୁ ରାଜାଙ୍କୁ, ନାମୀଦାମୀ ଲୋକଙ୍କୁ ଏବଂ ଉଚ୍ଚ ପଦ ପଦବୀରେ ଅବସ୍ଥାନ ସମସ୍ତଙ୍କୁ ନିମନ୍ତ୍ରଣ କରିଥିଲେ ଯୋଗଦେବା ପାଇଁ । ଭାଇସ୍ ରାଏ ଯୋଗଦେବାକୁ ମନା କରିଦେଲେ । ତଥାପି ଏକଲକ୍ଷ ପଚାଶ ହଜାର ଲୋକ ଏହି ଭୋଜି ସଭାରେ ଯୋଗ ଦେଇଥିଲେ ଏବଂ ବରଯାତ୍ରୀ ମାନଙ୍କୁ ଅଙ୍ଗରକ୍ଷୀ ମାନ୍ୟଗନ୍ୟ ବ୍ୟକ୍ତିମାନେ ପାଛୋଟି ନେଇଥିଲେ । ବରଯାତ୍ରୀଙ୍କୁ ମହାରାଜା ଅତି ଉଚ୍ଚକୋଟିର ଭୋଜି ଦ୍ୱାରା ଆପ୍ୟାୟିତ କରିଥିଲେ ଏବଂ ବରଯାତ୍ରୀମାନେ ସୁନ୍ଦର ଭାବରେ ସଜ୍ଜିତ କୁକୁରୀ ମଧୁଶଯ୍ୟା ଘରକୁ ଯାଇଥିଲେ । ଏହି ଭୋଜିରେ ରାଜା ବ୍ୟୟ କରିଥିଲେ ୬୦,୦୦ ପାଉଣ୍ଡ । ଯାହାକି ତାଙ୍କ ରାଜ୍ୟର ୧୨୦୦୦ ପ୍ରଜା ମାନଙ୍କର ସର୍ବ ନିମ୍ନ ଆବଶ୍ୟକତା ବର୍ଷକ ପାଇଁ ପୂରଣ କରି ପାରିଥାଆନ୍ତା । ତାଙ୍କର ରାଜବାଟୀର ନିର୍ମାଣ କୌଶଳ ଏପରି ଥିଲା ଯେ ତାହା ତାଜମହଲ ଠାରୁ କୌଣସି ଗୁଣରେ କମ୍ ନଥିଲା । ମହୀଶୂରର ରାଜପ୍ରାସାଦରେ ଥିଲା ମଣି ମାଣିକ୍ୟରେ ଖଞ୍ଜାଯାଇଥିବା ୬୦୦ଟି ରୁମ୍ ଏବଂ ତାହା

ଥିଲା ଭାଇସ୍‌ରାଏଙ୍କ ବାସଭବନ ଠାରୁ ବଡ । ସେଥିରୁ କୋଡିଏଟି କୋଠରୀ ସ୍ୱତନ୍ତ୍ର ଭାବେ ରଖାଯାଇଥିଲା ରାଜାଙ୍କର ସଉକ ଓ କୃତିତ୍ୱର ତିନି ପୁରୁଷ ସଂଗ୍ରାହାଳୟ ଭାବରେ। ଏସବୁ ଥିଲା ରାଜା ଶୀକାର କରିଥିବା ବାଘ, ହାତୀ, ଗୟଳ ଏବଂ ବାରହା। ଏହାର ଛାତ ଓ କାନ୍ଥରେ ଅସଂଖ୍ୟ ଇଲେକ୍ଟ୍ରି ବଲବ ଖଞ୍ଜା ଯାଇ ଉଜ୍ଜ୍ୱଳ କରି ରଖାଯାଇଥିଲା। ଏଥିରେ ଥିଲା ୯ଶହ ତେପନ ଦ୍ୱାର ଓ ଝରକା। ଏହା ଚଟାଣକୁ ଧଳାମାର୍ବଲ ପଥର ଦ୍ୱାରା ନିର୍ମାଣ କରାଯାଇ ଥିଲା ଯେ, ଏହା ଏକ ସମୁଦ୍ରର ଭ୍ରମ ସୃଷ୍ଟି କରୁଥିଲା।

ଆଉ କେତେକ ରାଜା ମହାରାଜା ଉତ୍ତମ ଶାସନ କରୁଥିଲେ । ପ୍ରଜାମାନଙ୍କ ମଙ୍ଗଳ ପାଇଁ ବିଭିନ୍ନ ଜନହିତକର କାର୍ଯ୍ୟ କରୁଥିଲେ । ସେମାନଙ୍କ ମହତ କାର୍ଯ୍ୟ ପାଇଁ ସେମାନଙ୍କୁ ଯଥେଷ୍ଟ ପୁରସ୍କାର ମଧ ବ୍ରିଟିଶ୍ ସରକାର ଦେଉଥିଲେ, ଯେଉଁ ଶିକ୍ଷିତ ଶାସକ ଥିଲେ ଅଥବା ଇଂରେଜ ପାଠୁଆ ଥିଲେ ସେଠାରେ ସେମାନଙ୍କ ପ୍ରଜାଙ୍କ ପାଇଁ ସ୍ୱତନ୍ତ୍ର ସୁବିଧାମାନ ଥିଲା ଓ ସେମାନେ ଉପକୃତ ହେଉଥିଲେ। ବରୋଦାରେ ବହୁପତ୍ନୀ ଗ୍ରହଣ କରିବା ନିଷିଦ୍ଧ ଥିଲା ଏବଂ ମହାତ୍ମାଗାନ୍ଧିଙ୍କ ପରି ନହେଲେ ବି ଅସ୍ପୃଶ୍ୟତାକୁ ଆଇନ ବିରୋଧି ବୋଲି ଘୋଷଣା କରାଯାଇଥିଲା। ଯେଉଁ ନେତାମାନେ ଶିକ୍ଷାର ପ୍ରସାର ପାଇଁ ଆନ୍ଦୋଳନ କରୁଥିଲେ ଅସ୍ପୃଶ୍ୟତା ବିରୋଧରେ ଆନ୍ଦୋଳନ କରୁଥିଲେ ସେମାନଙ୍କୁ ପୁରସ୍କୃତ କରାଯାଉଥିଲା । ସେଠାକାର ରାଜା ଲୋକଙ୍କୁ ମାଗଣାରେ ଶିକ୍ଷାଦାନ କରିବାକୁ ଅର୍ଥବ୍ୟୟ କରୁଥିଲେ। ଡ଼କ୍ଟର ଆମ୍ବେଦକରଙ୍କ ଆମେରିକାର କଲମ୍ବିଆ ୟୁନିଭରସିଟିକୁ ପଠାଇ ଉଚ୍ଚ ଶିକ୍ଷିତ କରାଯାଇଥିଲା । ବିକାନିର ରାଜା କୃତ୍ରିମ ହ୍ରଦ ଓ ଉପବନମାନ କରାଇଥିଲେ ତାଙ୍କ ପ୍ରଜାଙ୍କ ମନୋରଞ୍ଜନ କରିବାକୁ। ଭୋପାଳର ରାଜା ମହିଳା ମାନଙ୍କୁ ପୁରୁଷ ମାନଙ୍କ ସହିତ ସମାନ ବିଚାର କରିବାକୁ ଘୋଷଣା କରିଥିଲେ । ମହୀଶୂର ମହାରାଜା ଏସିଆ ପ୍ରସିଦ୍ଧ ଅନେକ ଗୁଡ଼ିଏ ଉଦ୍ୟାନ ଓ ଶିଳ୍ପ ପ୍ରତିଷ୍ଠା କରିଥିଲେ । ଇତିହାସ ପ୍ରସିଦ୍ଧ ତାଙ୍କ ବଂଶର ଜଣେ ଜ୍ୟୋତିଷ ଇଡୁଇନଙ୍କର ପ୍ରିନ୍‌ସିପାଲ ଅଫ ଗଭର୍ଣ୍ଣନେସ୍‌କୁ ସଂସ୍କୃତରେ

ଅନୁବାଦ କରିଥିଲେ । ଜୟପୁର ତାଙ୍କ ରାଜଧାନୀରେ ପ୍ରତିଷ୍ଠା କରିଥିଲେ ପୃଥିବୀ ପ୍ରସିଦ୍ଧ ଗ୍ରହନକ୍ଷତ୍ର ଅନୁସନ୍ଧାନ କେନ୍ଦ୍ର । ଦ୍ୱିତୀୟ ବିଶ୍ୱଯୁଦ୍ଧ ପରେ ଭାରତରେ ନୂଆ ପ୍ରକାରର ରାଜାମାନେ ସିଂହାସନ ଆରୋହଣ କଲେ, ସେମାନେ ତାଙ୍କ ପୂର୍ବଜ ମାନଙ୍କ ଠାରୁ ବିଚାର ରୁଚିରେ ଭିନ୍ନ ଥିଲେ । କେବଳ ଭୋଗବିଳାସରେ ନମାତି ପ୍ରଜାମାନଙ୍କର ମଙ୍ଗଳ ପାଇଁ ଜନହୀତକର କାମରେ ମନ ଦେଲେ । ଏବଂ ବିଭିନ୍ନ ପ୍ରକାର ସଂସ୍କାର ମୂଳକ ପଦକ୍ଷେପ ନେଲେ । ପାତିଆଲା ମହାରାଜ ଭୂପିନ୍ଦର ସିଂହଙ୍କ ପୁତ୍ର ନାତି ତାଙ୍କ ପିତାଙ୍କର ବହୁ ନାରୀ ରଖିବାର ପରଂପରାକୁ ଭାଙ୍ଗିଦେଇଥିଲେ । ଗୋୟାଲିୟର ମହାରାଜା ଜଣେ ସାଧାରଣ ପରିବାର କନ୍ୟାକୁ ବିବାହ କରିଥିଲେ । ସେ ତାଙ୍କ ପିତାଙ୍କର ବିଶାଳ ରାଜବାଟି ଅଛି ଅନ୍ୟ ଏକ ସାଧାରଣ ଘରେ ରହିବାକୁ ପସନ୍ଦ କରିଥିଲେ । ଭାରତର ରାଜାମାନେ ଭୋଗ ବିଳାସ ଛାଡ଼ି ସାଧାରଣ ଲୋକଙ୍କ ସହିତ କ୍ରମେ କ୍ରମେ ମିଶିବାକୁ ଆରମ୍ଭକଲେ । ହାଇଦ୍ରାବାଦର ନିଜାମଙ୍କର ଏତେ ହୀରା, ନୀଳା, ମଣି, ମାଣିକ୍ୟ ଓ ସୁନା ଥିଲା ଯେ ସବୁ ରଖିବା ପାଇଁ ଯଥେଷ୍ଟ ଜାଗା ଅଭାବ ହେବାରୁ ରାଜବାଟିର ଏଣେତେଣେ କୁଢ଼ କୁଢ଼ ହୋଇ ପଡ଼ିଥିଲା ଏବଂ ପ୍ରତିବର୍ଷ ଅସଂଖ୍ୟ ମୂଷା ସେ ସବୁକୁ ନଷ୍ଟ କରୁଥିଲେ । ତାଙ୍କ ସୈନ୍ୟ ବାହିନୀ ଥିଲା ବିଶାଳ ଏବଂ ତାଙ୍କର ଥିଲା ନିଜସ୍ୱ ଉଡ଼ାଜାହାଜ ଓ ସମୁଦ୍ର ବନ୍ଦର । ୧୯୪୮ ମସିହାରେ ବ୍ରିଟିଶ୍ ଭାରତ ଛାଡୁଛନ୍ତି ବୋଲି ଯେତେବେଳେ ସାର୍ କମାଣ୍ଡ କନଫିଲ୍ଡଙ୍କ ଠାରୁ ଶୁଣିଲେ ସେତେବେଳେ ନିଜାମ ତାଙ୍କ ଚେୟାର ଉପରେ ବସି ଚିତ୍କାର କଲେ ମୁଁ ସ୍ୱାଧୀନ, ମୁଁ ସ୍ୱାଧୀନ । କାଶ୍ମୀର ରାଜା ନରସିଂହ ଥିଲେ ଜଣେ ଅତ୍ୟନ୍ତ ଦୁର୍ବଳ ଓ ବିକ୍ଷିପ୍ତ ଚିନ୍ତାଧାରାର ବ୍ୟକ୍ତି । ଜବାହର ଲାଲ ନେହେରୁ ଯେତେବେଳେ ନିଜ ଜନ୍ମ ସ୍ଥାନ କାଶ୍ମୀର ଗସ୍ତରେ ଗଲେ, ସେ ତାଙ୍କୁ ବନ୍ଦୀ କରି ବନ୍ଦୀଶାଳାରେ ରଖିଥିଲେ । ସେ କୌଣସି ଜନହିତକର କାମରେ ମନ ନଦେଇ ତାଙ୍କର ଗ୍ରୀଷ୍ମନିବାସ, ଶୀତ ନିବାସରେ ସମୟ କାଟି ବିଶାଳ ଶୋଭାମୟ ଫୁଲର ବଗିଚା ତିଆରି କରିବାରେ ମାତି ରହିଲେ । ଭାରତ ସହିତ ଦେଶୀୟ ରାଜା ମାନଙ୍କର ମିଶ୍ରଣ କଥା ଯେତେବେଳେ

ଉଠିଲା ସେତେବେଳେ ସେ ନିଜର ସୈନ୍ୟବାହିନୀ ବଳରେ ବୃଥା ଅହଂକାର କରି କହିଲେ ଯେ ସେ ସ୍ୱାଧୀନ ରହିବେ । ଏ ଅହଂକାର ତାଙ୍କର ରହିଲା ନାହିଁ । ସେଥିରେ ଜଣେ ହିନ୍ଦୁ ରାଜା, ମାତ୍ର କାଶ୍ମୀର ଏକ ମୁସଲମାନ ରାଜ୍ୟ ହୋଇଥିବାରୁ, ସେମାନେ କାଶ୍ମୀର ଅଧିକାର କରିବାକୁ ଧମକ ଦେଲେ । ହରିସିଂହ ଉପାୟ ନପାଇ ନେହେରୁଙ୍କ ଶରଣ ପଶିଲେ । ନେହେରୁ ଭାରତୀୟ ସେନାକୁ କାଶ୍ମୀର ରକ୍ଷା ପାଇଁ ଆଦେଶ ଦେଲେ । ମାତ୍ର ଭାରତୀୟ ଫୌଜ କାଶ୍ମୀର ଦଖଲ କରିବାର ଠିକ୍ ଅବ୍ୟବହିତ ପୂର୍ବରୁ ରୁଷିଆକୁ ଉଦ୍ଧାର କରିବା ପାଇଁ ଭାରତର ଗୃହମନ୍ତ୍ରୀ ମୁକ୍ତି ମହମ୍ମଦ ନେହେରୁଙ୍କୁ ପ୍ରବର୍ତ୍ତାଇ ଭାରତୀୟ ଫୌଜକୁ ଫେରାଇ ଆଣିଲେ । ତା ହୋଇନଥିଲେ ଭାରତୀୟ ସେନା କାଶ୍ମୀରକୁ ଦଖଲ କରିଥାଆନ୍ତେ ଏବଂ ଆଜି ପର୍ଯ୍ୟନ୍ତ କାଶ୍ମୀର ଏକ ବିବାଦୀୟ ରାଜ୍ୟ ହୋଇ ରହିନଥାନ୍ତା ।

ସଂଶୋଧିତ ପ୍ଲାନ ଧରି ମାଉଣ୍ଟବେଟେନ ଲଣ୍ଡନ ଯାତ୍ରା କଲେ । ପ୍ଲାନଟିକୁ ଅଟିଲଙ୍କ ଅନୁମୋଦନ ପାଇଁ ଯିବା ପୂର୍ବରୁ ନେହେରୁଙ୍କ ଠାରୁ ଚିଠି ପାଇଲେ ଯେ, କଂଗ୍ରେସ ଏହାକୁ ଗ୍ରହଣ କରିବ । ଛ'ମାସ ପୂର୍ବରୁ ଯେଉଁ ଅଟ୍ଟାଳିକାରେ ତାଙ୍କୁ ଭାରତର କ୍ଷମତା ହସ୍ତାନ୍ତର ପାଇଁ ଗୁରୁଦାୟିତ୍ୱ ଦିଆଯାଇଥିଲା ସେଇ ପ୍ରସ୍ତାବକୁ ମାଉଣ୍ଟବେଟେନ ଉକ୍ତ ପ୍ଲାନଟି ଧରି ଚାଲିଲେ । ଏହାଥିଲା ଭିପି ମେନନଙ୍କ ଦ୍ୱାରା ସଂଶୋଧିତ ପ୍ଲାନ । ମାଉଣ୍ଟବେଟେନଙ୍କୁ ସେଠାରେ ଅପେକ୍ଷା କରିଥିଲେ । ଅଟିଲ, ସାର୍ ଷ୍ଟେଫିଡ୍ କ୍ରିପ୍ସ ଓ ଆଉକେତେଜଣ ଯେଉଁମାନେ ଭାରତର ସମସ୍ୟା ସହିତ ସମ୍ପୃକ୍ତ ଥିଲେ । ମାଉଣ୍ଟ ବେଟେନ ତାଙ୍କ ପ୍ଲାନଟିକୁ ଅଟିଲଙ୍କୁ ବଢ଼ାଇ ଦେଇ କହିଲେ, ବର୍ତ୍ତମାନ ସେ ତାଙ୍କର ସଂଶୋଧିତ ପ୍ଲାନଟିକୁ ସମସ୍ତଙ୍କ ଗ୍ରହଣ ଯୋଗ୍ୟ କରିଛନ୍ତି । କଂଗ୍ରେସର ମଧ୍ୟ ସମର୍ଥନ ରହିଛି । ଏହାର ବ୍ୟବସ୍ଥା ଅନୁସାରେ ଭାରତ ଓ ପାକିସ୍ଥାନ ଦୁଇଟି ଯାକ ସ୍ୱାଧୀନ ସ୍ୱାଧୀନ ରାଷ୍ଟ୍ର କମନ୍‌ୱେଲଥ୍ ସହିତ ବନ୍ଧୁ ରାଷ୍ଟ୍ର ହୋଇ ରହିବେ । ପାକିସ୍ଥାନ କମନ ୱେଲଥ୍ ସହିତ ରହିବାକୁ ପ୍ରଥମରୁ ଜିନା ରାଜିଥିଲେ । କିନ୍ତୁ କଂଗ୍ରେସର ଘୋର ବିରୋଧ ଥିଲା କିନ୍ତୁ ସେ ମଧ୍ୟ ବର୍ତ୍ତମାନ ରାଜି ।

ମାଉଣ୍ଟବେଟେନ ସିମଲାରେ ଥିବାବେଳେ ସର୍ଦ୍ଦାର ବଲ୍ଲଭ ଭାଇ ପଟେଲ ତାଙ୍କୁ କହିଥିଲେ ଯେ, ବ୍ରିଟିଶ୍ କମନୱେଥ୍‌ରେ ରହି କାନାଡା ଯେପରି ସ୍ୱାଧୀନ ହୋଇଛି, ଭାରତ ଓ ପାକିସ୍ଥାନ ମଧ୍ୟ ସେହିପରି କମନୱେଲଥରେ ରହି ସ୍ୱାଧୀନ ହୋଇ ପାରିବେ। କଂଗ୍ରେସର ସମ୍ମତି ପାଇଁ ତାଙ୍କର ଏହି ଉପଦେଶକୁ ପ୍ଲାନରେ ଗ୍ରହଣ କରଯାଇଛି। ପ୍ଲାନର ଏହି ପ୍ରସ୍ତାବ ଗ୍ରହଣ କରିନେଲେ ଶୀଘ୍ର କ୍ଷମତା ହସ୍ତାନ୍ତର କରିହେବ। ଏଥିରେ ଯଦି ବିଳମ୍ବ ହୁଏ, ତେବେ କ୍ଷମତା ହସ୍ତାନ୍ତର କରିବା ପୂର୍ବରୁ ଭାରତରେ ଭୟଙ୍କର ହିଂସାକାଣ୍ଡ ଘଟିବ ଏବଂ ସରକାର ନିନ୍ଦିତ ହେବେ। ତାଛଡା ଶୀଘ୍ର କ୍ଷମତା ହସ୍ତାନ୍ତର ହେଲେ ସରକାର ପାର୍ଲିଆମେଣ୍ଟରେ ଆବଶ୍ୟକ ବିଧି ବିଧାନ ଯଥା ସମୟରେ ପ୍ରଣୟନ କରିପାରିବେ। ଅଟଲି ଏହି ପ୍ଲାନକୁ ତୁରନ୍ତ ଗ୍ରହଣ କରିଲେ। ଏହାଦ୍ୱାରା ବ୍ରିଟିଶ୍ ସରକାର ଅନାବଶ୍ୟକ ନିନ୍ଦାରୁ ରକ୍ଷା ପାଇଯିବେ। ଯେଉଁ ସମସ୍ୟା ସରକାର ପାଇଁ ଅତ୍ୟନ୍ତ ଉଦବେଗଜନକ ଥିଲା, ତାହା ତତ୍‌କ୍ଷାଣାତ ସମାଧାନ ହୋଇଗଲା। ସମସ୍ତେ ଖୁସି ହୋଇଗଲେ। ଆଲୋଚନା ସରିଲା। ସମସ୍ତେ ଉଠି ଚାଲିଗଲେ। ଇସ୍‌ମେ ମାଉଣ୍ଟବେଟେନଙ୍କୁ କହିଲେ ଏହାଠାରୁ ଭଲ କିଛି ପ୍ରସ୍ତାବ ହୋଇ ପାରେନା। ମାଉଣ୍ଟ ବେଟେନ ଭାବୁଥିଲେ ଯେଉଁ ଚର୍ଚ୍ଚିଲଙ୍କ ଆଦେଶରେ ଦିନେ ସେ ଜଣେ ନୌବାହିନୀର କ୍ୟାପ୍‌ଟେନ ଭାବରେ ପରିଚାଳିତ ହେଉଥିଲେ ଆଜି ସେଇ ଚର୍ଚ୍ଚିଲଙ୍କ ଇଛା ବିରୁଦ୍ଧରେ ତାଙ୍କର ପ୍ରିୟ ଭାରତକୁ ବ୍ରିଟିଶ୍ ଛାଡି ଯାଉଛନ୍ତି। ଏହା ଚର୍ଚ୍ଚିଲଙ୍କୁ ଦାରୁଣ ଆଘାତ ଦେଉଥିବ। ବିରୋଧୀ ଦଳର ନେତା ଚର୍ଚ୍ଚିଲଙ୍କ ସମ୍ମତି ପାଇଁ ଅଟିଲ ଯେତେବେଳେ ମାଉଣ୍ଟବେଟେନଙ୍କୁ ପଠାଇଲେ, ମାଉଣ୍ଟବେଟେନ ସେତେବେଳେ ଭାବିଲେ, ଭାରତକୁ ସ୍ୱାଧୀନତା ଦେବା ପାଇଁ ଯେଉଁ ଚର୍ଚ୍ଚିଲ ଗତ ଦୁଇବର୍ଷ ଧରି 'ନୋ' କହି ଆସିଥିଲେ, ସେଇ ଚର୍ଚ୍ଚିଲ ଆଜି ବି 'ନୋ' କହିପାରନ୍ତି ଏବଂ ବିରୋଧୀ ଦଳର ନେତା ଭାବରେ ତାଙ୍କର କ୍ଷମତା ବଳରେ ପୁରା ଦୁଇବର୍ଷ ପାଇଁ କ୍ଷମତା ହସ୍ତାନ୍ତରକୁ ଅଟକାଇ ଦେଇପାରନ୍ତି। ତାହେଲେ ଯେଉଁ ଭାରତ ପ୍ରଚଣ୍ଡ ହିଂସାକାଣ୍ଡ କରିବାକୁ ରାଗରେ ଜଳୁଛି, ସେ

ଆଉ ସମ୍ଭାଳି ପାରିବ ନାହିଁ ଏବଂ ତାହା ବ୍ରିଟିଶ୍ ସରକାରଙ୍କୁ ସାରା ପୃଥିବୀରେ ନିନ୍ଦିତ କରିଦେବ। ମାଉଣ୍ଟବେଟେନଙ୍କ ପାଖରେ ପହଞ୍ଚିଲା ବେଳକୁ ସେ ଖଣ୍ଡେ ସିଗାରେଟ୍‌କୁ ଓଠରେ ଚାପି ଧରି ଶେଯରେ ଶୋଇଥିଲେ। ମାଉଣ୍ଟ ବେଟେନଙ୍କୁ ଦେଖି ସେ ପଚାରିଲେ, ସେ ତାଙ୍କ କାମରେ କେତେଦୂର ସଫଳ ହୋଇଛନ୍ତି। ମାଉଣ୍ଟବେଟେନ କହିଲେ ସବୁକାମ ସରିଛି, କେବଳ ଆପଣଙ୍କ ଅନୁମୋଦନ ମିଳିଲେ କ୍ଷମତା ହସ୍ତାନ୍ତର ହେବ। ଚର୍ଚ୍ଚିଲ ପଚାରିଲେ ହ୍ୱାଟ ଏବାଉଟ୍ ଦି ଓପିନିଅନ ଅଫ ଇଣ୍ଡିଆନ ଲିଡ଼ରର୍ସ ? ମାଉଣ୍ଟବେଟେନ କହିଲେ କେବଳ ଗାନ୍ଧିଙ୍କୁ ଛାଡି ନେହେରୁ, ପଟେଲ ଓ ଜିନା ସମସ୍ତେ ରାଜି। ଗାନ୍ଧି ହେଉଛନ୍ତି ତାଙ୍କର ଶତ୍ରୁ। ତା ନାଁ'ଟା ଶୁଣୁ ଶୁଣୁ ଚର୍ଚ୍ଚିଲ କହିଲେ ରୋବିଶ୍।

ଭାରତରେ ବ୍ରିଟିଶ୍ ସାମ୍ରାଜ୍ୟବାଦର ଅବସାନ ଘଟିଲା। ସାର୍ କମାଣ୍ଡ କନଫିଲ୍ଡ ଆଦେଶରେ ବ୍ରିଟିଶ୍ ଅମଲାତନ୍ତ୍ରୀ ମାନେ ସାରା ଭାରତରେ ଦେଶୀୟ ରାଜାମାନଙ୍କ ଶାସନର ସବୁ କାଗଜପତ୍ର ୧୯୪୭ ମେଁ ମାସରେ ନିଆଁ ଲଗାଇ ପୋଡିଦେଲେ। ସେମାନଙ୍କ ଅତ୍ୟାଚାର, ଶୋଷଣ ଓ ବିଳାସମୟ ଜୀବନର ସବୁ ନଥିପତ୍ର ପୋଡି ଦିଆଗଲା। ସାମାନ୍ୟ କିଛି ରହିଗଲା ସତ ମାତ୍ର ଯେଉଁସବୁ ନଥିପତ୍ର ପୋଡି ଦିଆଗଲା ସେସବୁ ରହିଥିଲେ ଭାରତର ଇତିହାସ ଆହୁରି ନିନ୍ଦନୀୟ ହୋଇଥାନ୍ତା। ଏଥି ସହିତ ବ୍ରିଟିଶ୍ ଅଫିସରମାନଙ୍କ ବ୍ୟକ୍ତିଗତ ଜୀବନର ଯାହା ସବୁ କଳଙ୍କର କଥା, ତାହା ମଧ୍ୟ ପୋଡି ପାଉଁଶ ହୋଇଗଲା। ତା ନହୋଇଥିଲେ ଭାରତର ବ୍ରିଟିଶ୍ ଇତିହାସ ଆହୁରି ରୋମାଞ୍ଚକର ହୋଇଥାନ୍ତା। ନେହେରୁ ପ୍ରତିବାଦ କଲେ। କାରଣ ଏଥିରେ ବି ଥିଲା ବ୍ରିଟିଶ୍ ବିରୁଦ୍ଧରେ ଭାରତୀୟ ମାନଙ୍କର ଜାତୀୟ ଆନ୍ଦୋଳନର ନଥିପତ୍ର। ସେତେବେଳକୁ ଖୁବ ବିଳମ୍ବ ହୋଇଯାଇଥିଲା। ପାତିଆଲା, ହାଇଦ୍ରାବାଦ, ଇନ୍ଦୋର, ମହିଶୂର, ବରୋଦା, ପୋରବନ୍ଦର, ହିମାଳୟ ପ୍ରଦେଶର ଚିତ୍ରାଲ, କୋଚିନ୍ ଇତ୍ୟାଦି ସାରା ଭାରତର ସବୁଆଡେ ବ୍ରିଟିଶ୍ କର୍ମଚାରୀମାନେ, ସବୁ ଅଫିସର ଯାହାକିଛି ପାଇଲେ ସବୁ ପୋଡିଦେଲେ। ତା ସହିତ ଦେଶୀୟ ରାଜା

ମାନଙ୍କର ପୁରୁଷ ପୁରୁଷ ଧରି ସଞ୍ଚିତ ହୋଇଥିବା ହଜାର ହଜାର ପାଉଣ୍ଡ ଓଜନର ସୁନା ମଧ୍ୟ ପୋଡି ପାଉଁଶ ହୋଇଗଲା। ହାଇଦ୍ରାବାଦର ନିଜାମ ଫଟୋ ଚିତ୍ର ଓ ବିବରଣୀ ସହ ଫଟୋଗ୍ରାଫ୍ ସାଇତି ରଖିବା ପାଇଁ ପସନ୍ଦ କରନ୍ତି। ଏପରି ଅସଂଖ୍ୟ ଫଟୋକୁ ସେ ତାଙ୍କ ରାଜବାଟୀର ଅତିଥିଭବନର କାନ୍ଥରେ ଓ ଛାତରେ ଲୁଚାଇ ରଖିଥିଲେ ଏବଂ ସେଥି ସହିତ ସ୍ୱଂୟଚାଳିତ କ୍ୟାମେରାମାନ ମଧ୍ୟ ଗୁପ୍ତଭାବରେ ରଖାଯାଇଥିଲା। ଅତିଥି ମାନେ ତା ଭିତରେ ଯାହା ସବୁ କରୁଥିଲେ ସେ ସବୁର ଫଟୋ ଚିତ୍ର ଉତ୍ତୋଳିତ ହୋଇ ଯାଇଥିଲା। ତାଙ୍କର ଏସବୁ ସଂଗ୍ରହ ଭାରତରେ ସବୁଠାରୁ ଅଧିକ ଥିଲା। ତାଙ୍କ ପୁତ୍ର ଓ ଆତ୍ମୀୟମାନେ ସେଠାରେ ଯୌନକ୍ରିୟା କରୁଥିଲେ। ସେ ସବୁର ଫଟୋଚିତ୍ର ଉତ୍ତୋଳିତ ହୋଇଥିଲା। ଏସବୁ ଚିତ୍ରରୁ ଭବିଷ୍ୟତ ନିଜାମ ମାନଙ୍କର ଚରିତ୍ର ଜଣାପଡୁଥିଲା। ସେ ସବୁ ପୋଡି ପାଉଁଶ ହୋଇଗଲା ଏବଂ ତାର କୌଣସି ଚିହ୍ନ ବର୍ଣ୍ଣ ନମିଳିବାରୁ ଚାଳିଶ ବର୍ଷ ଧରି ଆଠ ଲକ୍ଷ ଲୋକ ସଂଖ୍ୟା ବିଶିଷ୍ଟ ଛୋଟିଆ ରାଜ୍ୟଟିର ସଂପୂର୍ଣ୍ଣ ବିବରଣୀ ମିଳିପାରିଲା ନାହିଁ। ସେ ନିଜକୁ ପ୍ରଭୁ ରାମଙ୍କର ଅବତାର ବୋଲି ଭାବୁଥିଲେ। କାଳେ କାହାକୁ ସ୍ପର୍ଶକରି ଦେଲେ ଅପବିତ୍ର ହୋଇଯିବ। ସେଇ ଭୟରେ ନିଜକୁ କଳା ସିଲକ୍ ଆବୃତ କରି ରଖୁଥିଲେ। ନିଜ ଅଙ୍ଗୁଳି ଗୁଡିକୁ ମଧ୍ୟ ସିଲକ୍ ଗ୍ଲୋବରେ ଆବୃତ୍ତ କରି ରଖୁଥିଲେ। ଏପରିକି ଇଂଲଣ୍ଡର ରାଜାଙ୍କ ସହିତ ହାତ ମିଳାଇବାକୁ କୁଣ୍ଠା କରୁଥିଲେ ଏବଂ ରାମଙ୍କ ପରି ଦିଶିବା ପାଇଁ ରାମଙ୍କ ପରି ମୁକୁଟ ପିନ୍ଧୁଥିଲେ। ଏପରି ସବୁ ବିଚିତ୍ର ଆଚରଣରେ ପରିପୂର୍ଣ୍ଣ ଦେଶୀୟ ରାଜା ମାନଙ୍କର ଶାସନ।

୧୯୪୭ ମସିହା ଜୁନ୍ ୨ ତାରିଖ ଦିନ ଭାରତର ୪୦କୋଟି ଲୋକଙ୍କର ପ୍ରତିନିଧିମାନେ ଜଣକ ପରେ ଜଣେ ଆସି ଭାଇସ୍‌ରାଏଙ୍କ ବୈଠକ ରୁମ୍‌ରେ ପହଞ୍ଚିଥିଲେ। ମହାତ୍ମା ଗାନ୍ଧିଙ୍କ ଭାଷାରେ ଏହି ଚାଳିଶ ମଣିଷ ଥିଲେ ଅତ୍ୟନ୍ତ ଦୁର୍ଦ୍ଦଶାଗ୍ରସ୍ତ। କଂଗ୍ରେସ ଦଳର ପ୍ରତିନିଧି ଭାବେ ନେହେରୁ, ପଟେଲ ଏବଂ କଂଗ୍ରେସ ଦଳର ସଭାପତି ଆଚାର୍ଯ୍ୟ କୃପାଳିନୀ ମୁସଲିମ୍ ଲିଗ୍ ପକ୍ଷରୁ ଜିନା, ଲିଆକତଅଲ୍ଲୀ ଖାଁ ଓ

ରାବନିସ୍ତାର । ଶିଖ୍ ମାନଙ୍କ ପକ୍ଷରୁ ବଲଦେବ ସିଂ ମଧ୍ୟ ଉପସ୍ଥିତ ଥିଲେ । ଶିଖ୍‌ମାନେ ଅଧିକ କ୍ଷତିଗ୍ରସ୍ତ ହେବାର ସମ୍ଭାବନା ଥିଲା । କାନ୍ଥ ପାଖକୁ ବସିଥିଲେ ମାଉଣ୍ଟ ବେଟେନଙ୍କର ଦୁଇ ମୁଖ୍ୟ ପରାମର୍ଶଦାତା, ଇସ୍‌ମେ ଏବଂ ସାର୍ ଫ୍ରିଜ୍ ମିଭିଲି । ଟେବୁଲର ମଝିରେ ବସିଥିଲେ ଭାଇସ୍‌ରାଏ । ଭବିଷ୍ୟତ ଇତିହାସ ପାଇଁ ଜଣେ ଫଟୋଗ୍ରାଫର ବ୍ୟସ୍ତ ଭାବରେ ସମସ୍ତଙ୍କର ମିଳିତ ଫଟୋଗ୍ରାଫ୍ ଉଠାଇ ନେଲେ । ମିଟିଂ ହଲଟି ସଂପୂର୍ଣ୍ଣ ନୀରବ ହୋଇଗଲା । ଜଣେ ସେକ୍ରେଟାରୀ ପ୍ଲାନର କପି ଆଣି ପ୍ରତ୍ୟେକ ସଭ୍ୟଙ୍କ ଆଗରେ ରଖିଲେ । ମାଉଣ୍ଟ ବେଟେନଙ୍କର କୂଟନୀତିର ପରୀକ୍ଷା ପାଇଁ ଏହି ଗୋଲଟେବୁଲ ବୈଠକ ଥିଲା ଏକ ସୁଯୋଗ । ସେ କେବଳ ଏକା କହିବେ ବୋଲି ସ୍ଥିର କରିଥିଲେ କାରଣ ସମସ୍ତଙ୍କୁ କହିବାର ସୁଯୋଗ ଦେଲେ ପାଟିତୁଣ୍ଡ ଭିତରେ ନିଷ୍ପତ୍ତି ନେବା କଷ୍ଟକର । ପ୍ରଥମେ ଜିନାଙ୍କୁ ପଚାରିଲେ କ୍ୟାବିନେଟ ମିଶନର ଆଭିମୁଖ୍ୟକୁ ସେ ମାନିବେ ନା ନାହିଁ । ଜିନା ଉତ୍ତର ଦେଲେ, ନାଁ । ମାଉଣ୍ଟବେଟେନ ପ୍ଲାନର ବିଷୟ ବସ୍ତୁକୁ ସଂକ୍ଷେପ କରି କହିଲେ ପ୍ଲାନକୁ ଗ୍ରହଣ କରିବା ପାଇଁ ସମସ୍ତଙ୍କର ସହମତି ନମିଳିଲେ କଲିକତାରେ ଶିଖ୍ ମାନଙ୍କର ଅବସ୍ଥା ଶୋଚନୀୟ ହୋଇପଡିବ । ସେ କହିଲେ ଆପଣଙ୍କର ନୀତିଧର୍ମ ବିରୁଦ୍ଧରେ ଯିବା ପାଇଁ ମୁଁ କହୁନାହିଁ । ମୁଁ କେବଳ ଏତିକି ଜାଣିବାକୁ ଚାହେଁ ଯେ, କୌଣସି ହିଂସାକାଣ୍ଡକୁ ପ୍ରଶୟ ନଦେଇ ଏ ପ୍ଲାନକୁ କାର୍ଯ୍ୟକାରୀ କରିବା ପାଇଁ ଆପଣମାନଙ୍କର ଶାନ୍ତିପ୍ରିୟ ସହଯୋଗ ମିଳିବ ତ ? କାଲି ସକାଳେ ଆମେ ପୁଣି ଭେଟିବା, ସେତେବେଳେ ଆପଣମାନଙ୍କ ଠାରୁ ଶୁଣିବାକୁ ଚାହେଁ ସବୁ ସମସ୍ୟାର ସମାଧାନ ପାଇଁ ପ୍ଲାନ ଅନୁସାରେ କାର୍ଯ୍ୟ କରିବେ । ଏ ପ୍ଲାନକୁ ଆପଣମାନେ ଯଦି ଗ୍ରହଣ କରନ୍ତି, ତେବେ ସେ, ନେହେରୁ, ଜିନା ଏବଂ ବଲଦେବ ସିଂ ମିଳିତ ଭାବେ ଅଲଇଣ୍ଡିଆ ରେଡିଓରେ କାଲି ଘୋଷଣା କରିଦେବା ଏବଂ ତା ପରଦିନ ଅଟିଲ ଲଣ୍ଡନରୁ ତାଙ୍କର ଅନୁମୋଦନ ଘୋଷଣା କରିବେ । ଏତକ କହିସାରି ମାଉଣ୍ଟବେଟେନ ଉଠି ଚାଲିଗଲେ ପରେ ତାଙ୍କ ମନରେ ଏକ ଭୟ ପଶିଲା ଯେ, ଗାନ୍ଧି ଏହାକୁ ବିରୋଧ କରିପାରନ୍ତି । ସେ ଭାବିଲେ

ତିନିଦଳର, ବିଶେଷ କରି ନେହେରୁ ଓ ପଟେଲ ଯେତେବେଳେ ସମର୍ଥନ କରୁଛନ୍ତି। ଗାନ୍ଧି କ'ଣ କରିପାରିବେ ? ସେ ଯାହା ବା କରିବେ ଜଣେ ବୀର ଯୋଦ୍ଧା ଭାବରେ ସେ ତା'ର ସମ୍ମୁଖୀନ ହେବେ ଏବଂ କଂଗ୍ରେସ ଦଳର ମୁଖ୍ୟ ନେତାମାନେ ତାଙ୍କ ସହିତ ଅସହଯୋଗ କରୁଥିବାରୁ ଗାନ୍ଧି କିଛି କରିପାରିବେ ନାହିଁ। ଝଡ଼ ବର୍ଷାରେ କୋତରା ହୋଇ ଯାଇଥିବା ନିରୀହ ପକ୍ଷୀଟିଏ ପରି ସେ ଯାକିଯୁକି ହୋଇ ରହିବା ଛଡା ଆଉ କିଛି କରିବେ ନାହିଁ। ଅହିଂସା ପ୍ରତି ତାଙ୍କର ଜୀବନ ବ୍ୟାପୀ ଯେଉଁ ବିଶ୍ୱାସ ଥିଲା ତାହା ଭାଙ୍ଗି ଚୁରମାର ହୋଇଯିବ। ଜିନା ହେଉଛନ୍ତି ସେପରି ବ୍ୟକ୍ତି ଯିଏ ଗାନ୍ଧିଙ୍କର ଭାରତକୁ ଅଖଣ୍ଡ କରି ରଖିବାର ଆଶାକୁ ଭାଙ୍ଗି ଦେଲେ ଏବଂ ଗାନ୍ଧି ହେଉଛନ୍ତି ସେଇ ବ୍ୟକ୍ତି ଯିଏ ଭାରତର ବିଭାଜନକୁ ରୋକି ପାରିବେ ନାହିଁ। ମାତ୍ର ଇତିହାସରେ ଯୀଶୁ ଚକ୍ରାନ୍ତକାରୀଙ୍କ ପାଖରେ ପ୍ରାଣବଳୀ ଦେଲେ ବି ତାଙ୍କର ପ୍ରେମ ଯେପରି ଅମର ହୋଇ ରହିଗଲା। ସେହିପରି ଗାନ୍ଧିଜୀଙ୍କ ଅହିଂସା, ସ୍ୱାର୍ଥପର ମଣିଷଙ୍କ ଚକ୍ରାନ୍ତରେ ପରାସ୍ତ ହେଲେ ମଧ୍ୟ ବିଶ୍ୱ ଇତିହାସରେ ଅମର ହୋଇ ରହିଯିବ। ଦେବତ୍ୱରଗାରିମା ଏହିପରି ସବୁବେଳେ ଅମ୍ଳାନ। ସେ ଭାବିଲେ ତାଙ୍କର ବୁଦ୍ଧିମତ୍ତା ସଫଳ ହୋଇଛି। କଂଗ୍ରେସ ଦଳର ମୁଖ୍ୟ ନେତା ମାନଙ୍କ ସାଙ୍ଗରେ ସେ ଯେଉଁ ବନ୍ଧୁତା ରଖିଥିଲେ, ତା'ର ଉଦ୍ଦେଶ୍ୟ ଥିଲା ଆବଶ୍ୟକ ବେଳେ ସେ ତାର ଫାଇଦା ନେବେ। ଏବେ ସେ ଉଦ୍ଦେଶ୍ୟ ତାଙ୍କର ସଫଳ ହୋଇଛି। କାରଣ ଯେଉଁ ନେତାମାନେ ଗାନ୍ଧିଙ୍କ ପ୍ରତି ଅଖଣ୍ଡ ବିଶ୍ୱାସ ରଖି ତାଙ୍କ ପ୍ରତି ଅନୁଗତ ଥିଲେ ସେମାନେ ବର୍ତ୍ତମାନ ଗାନ୍ଧୀଙ୍କ ବିରୋଧରେ ଯିବା ପାଇଁ ତାଙ୍କୁ ପ୍ରେରଣା ଦେଉଛନ୍ତି। ଆଉ ଭୟ କ'ଣ ? ପୁଣି ସେ ଭାବିଲେ, ନେହେରୁ ଓ ପଟେଲଙ୍କ ଠାରୁ କଂଗ୍ରେସ ଦଳରେ ତାଙ୍କର ପ୍ରଭାବ ଅଧିକ। ସେ ଯଦି କଂଗ୍ରେସ ଦଳର ଚାରିଅଣା ସଭ୍ୟମାନଙ୍କୁ ନିଜେ ପ୍ରତ୍ୟେକ୍ଷ ଭାବରେ ତାଙ୍କ ପ୍ଲାନକୁ ବିରୋଧ କରିବା ପାଇଁ ଡାକରା ଦିଅନ୍ତି, ତେବେ ଭାରତରେ ଏକ ଭୟାବହ ପରିସ୍ଥିତି ସୃଷ୍ଟି କରିବ। କାରଣ ତାଙ୍କର ଆଧ୍ୟାତ୍ମିକ ଶକ୍ତିର ବ୍ୟକ୍ତିତ୍ୱ ସମସ୍ତଙ୍କ ଠାରୁ ଅଧିକ। ଦିଲ୍ଲୀରୁ ଫେରିବା ଦିନ ସେ ତାଙ୍କର ପ୍ରାର୍ଥନା ସଭାରେ କହିଥିଲେ Twieenot Sopport ତାଙ୍କର ସମସ୍ତ ଚେତନା

କେନ୍ଦ୍ରୀଭୂତ ହୋଇଗଲା ଗୋଟିଏ ମାତ୍ର ବିନ୍ଦୁରେ । ଭାରତର ବିଭାଜନ ଅସମ୍ଭବ । ମାତ୍ର ପର ମୁହୂର୍ତ୍ତରେ ସେ ଭାବିଲେ କଂଗ୍ରେସ ଦଳର ମୁଖ୍ୟ ନେତାମାନେ କ୍ଷମତା ଲାଳସାରେ ସମସ୍ତ ନୀତି ଆଦର୍ଶକୁ ଭୁଲି ଯିବାକୁ ବସିଛନ୍ତି । ଏପରି ଅବସ୍ଥାରେ କଂଗ୍ରେସ ଦଳ କ'ଣ ତାଙ୍କ ଡାକ ଶୁଣିବ ? ନେହେରୁ ଓ ପଟେଲ ତାଙ୍କ ଠାରୁ କରଛଡା ଦେବା ପରେ, ଦଳ ଭିତରେ ବ୍ୟକ୍ତି ପ୍ରାଧାନ୍ୟ ବିସ୍ତାର ଲାଭ କରିଛି । ଦଳ ଖଣ୍ଡ ଖଣ୍ଡ ହୋଇ ନେତାମାନଙ୍କ ପାଖରେ ଆଉଜି ପଡିଚି । ଏପରି ଅବସ୍ଥାରେ କଂଗ୍ରେସ ତାଙ୍କ ଡାକ ଶୁଣିବ ? କଂଗ୍ରେସ ଦଳ ତାଙ୍କ ଡାକ ଶୁଣିବା ନାହିଁ, ଏପରି ଅବିଶ୍ୱାସର ଭାବ ପ୍ରଥମ ଥର ପାଇଁ ତାଙ୍କ ମନକୁ ଆସିବା ମାତ୍ରେ ଘୋର ଦୁଃଖର ତରଙ୍ଗଟିଏ ସର୍ବାଙ୍ଗରେ ଖେଳିଗଲା । ଅନ୍ୟପକ୍ଷରେ ଗାନ୍ଧିଙ୍କ ପ୍ରାର୍ଥନା ସଭାରେ ଘୋଷଣା ପରେ ସମସ୍ତଙ୍କର ଧ୍ୟାନ ଗୋଟିଏ ମାତ୍ର ବିନ୍ଦୁରେ ଠୁଳ ହୋଇଯାଇଛି । ଗାନ୍ଧିଙ୍କ ଘୋଷଣାର ସମ୍ମୁଖୀନ ହେବା କିପରି ? ଦେଶର ବିଭାଜନ ପାଇଁ ରାଜି ନହୋଇ ସେ ଯଦି କଂଗ୍ରେସ ଦଳକୁ ଯୁଦ୍ଧ ଦେହି ଆହ୍ୱାନ ଦେବେ, ତେବେ ସମସ୍ୟା ଅଣାୟତ ହୋଇପଡିବ । ଭୟଙ୍କର ହିଂସାକାଣ୍ଡ ଘଟି ରାସ୍ତାଘାଟରେ କୁଡ଼ କୁଡ଼ ମୃତ ଦେହ ବିଛି ହୋଇପଡିବ । ସମସ୍ୟାକୁ ନିୟନ୍ତ୍ରଣ କରି ନପାରି ବ୍ରିଟିଶ୍ ସରକାର ସାରା ବିଶ୍ୱରେ କଳଙ୍କିତ ହୋଇଯିବ । ଜିନା ବି କମ୍ ଜିଦଖୋର ନୁହଁନ୍ତି । ମୁସଲିମ୍ ଲିଗ୍‌ରେ ତାଙ୍କର କେହି ବନ୍ଧୁ ନାହାଁନ୍ତି । ସମସ୍ତେ ଅନୁଗତ, ସେ ଏକଛତ୍ରବାଦୀ ନେତା । ତାଙ୍କ ଆହ୍ୱାନରେ ସାରା ମୁସଲମାନ ସଂପ୍ରଦାୟ ଜୀବନ୍ତ ଆଗ୍ନେୟଗିରିର ଗଳିତ ଲାଭା ଉଦ୍‌ଗିରଣ ହେଲା ପରି ସାରା ମୁସଲମାନ ସଂପ୍ରଦାୟ ପ୍ରଚଣ୍ଡ ହିଂସାକାଣ୍ଡରେ ମାତିଯିବ ।

ସେଦିନ ସକାଳେ ଦିଲ୍ଲୀ ରାଜପଥରେ ବିଚରଣ କରୁଥିଲା ବେଳେ ଜଣେ ଶିଷ୍ୟ ତାଙ୍କୁ କହିଲେ ଭାରତ ବିଭାଜନ ହେବ । ଗାନ୍ଧି ଦୀର୍ଘ ନିଶ୍ୱାସ ମାରି କହିଲେ ଓଃ ଗଡ୍ ! ତାଙ୍କ କଣ୍ଠର ସ୍ୱର ଶୁଭୁଥିଲା ଅତ୍ୟନ୍ତ ଯନ୍ତ୍ରଣା ଦାୟକ । ଓଃ କି ବେଦନାଭରା ତାଙ୍କର ସେ କ୍ଷୀଣ କଣ୍ଠସ୍ୱର । ଯନ୍ତ୍ରଣାଭରା ଦୀର୍ଘ ନିଶ୍ୱାସଟି ମାରି ପୁଣି ସେ କ୍ଷୀଣ କଣ୍ଠରେ କହିଲେ ରକ୍ଷାକର ପ୍ରଭୁ ।

ଉତ୍କଣ୍ଠାର ସହ ସମସ୍ତେ ଗାନ୍ଧିଙ୍କୁ ଅପେକ୍ଷା କରୁଥିଲେ । ମିଟିଂକୁ ଆସିବା ତାଙ୍କର ଅତ୍ୟନ୍ତ ଆବଶ୍ୟକ । ଆଜି ଜୁନ ୨ ତାରିଖ । ଗତ ମିଟିଂକୁ ଆସିବା ପାଇଁ ସେ ମନା କରିଥିଲେ । କିନ୍ତୁ ଆଜି ଏ ମିଟିଂ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । କାରଣ ଭାରତବର୍ଷର ଇତିହାସରେ ଆଜି ସବୁଠାରୁ ବଡ ନିଷ୍ପତ୍ତି ନେବାର ଅଛି । ନିର୍ଦ୍ଦିଷ୍ଟ ସମୟ ଠାରୁ ୯୦ ମିନିଟ୍ ବିଳମ୍ବ ହେଲାଣି, କିନ୍ତୁ ମିଟିଂ ଏପର୍ଯ୍ୟନ୍ତ ଆରମ୍ଭ ହୋଇନାହିଁ । କାରଣ ଗାନ୍ଧି ଆସି ନାହାଁନ୍ତି । ସମୟାନୁବର୍ତ୍ତିତାରେ ସେ ଅତ୍ୟନ୍ତ ନିଷ୍ଠାବାନ । ତେବେ ଆଜି ତାଙ୍କର ଏତେ ବିଳମ୍ବ କାହିଁକି ? ମାଉଣ୍ଟବେଟେନ ଆଉ କିଛି ଭାବିପାରୁନଥିଲେ । ବାରମ୍ବାର ହାତଘଣ୍ଟାକୁ ଚାହିଁ ଅସ୍ୱସ୍ତି ଅନୁଭବ କରୁଥିଲେ । ସମୟଗଡି ଚାଲିଥିଲା । ସମସ୍ତେ କେବଳ ପରସ୍ପରକୁ ଚାହିଁ ନୀରବ ରହୁଥିଲେ । ତାଙ୍କର ପ୍ରତିକ୍ରିୟା ସାରା ଭାରତର ପ୍ରତିକ୍ରିୟାର ଅନ୍ତସ୍ୱର । ତେଣୁ ତାଙ୍କର ପ୍ରତିକ୍ରିୟା ନଜାଣି ନିଷ୍ପତ୍ତି ନେବା ଠିକ୍ ନୁହେଁ । ଏକଥା ଭାବୁଥିଲେ ମାଉଣ୍ଟବେଟେନ । ମାତ୍ର ନେହେରୁ ଭାବୁଥିଲେ, କୌଣସି ନିଷ୍ପତ୍ତି ନେବାକୁ ହେଲେ ମନର ଦୃଢ଼ତା ଏକାନ୍ତ ଆବଶ୍ୟକ । ଭାବାବେଗ ହେଲେ ମଣିଷ ନିର୍ଭୁଲ ଓ ସାହାସିକ ନିଷ୍ପତ୍ତି ନେବା ସମ୍ଭବ ନୁହେଁ, ଦେଶ ଚଳାଇବା କ୍ଷେତ୍ରରେ ଶାସକ କଠୋର ନହେଲେ ଅନେକ ଲୋକ ଅନେକ ପ୍ରକାର ଅନୁଚିତ୍ ସୁଯୋଗ ନେବେ । ଶାସନ ହୁଗୁଳା ହୋଇଯିବ । ଶାସନ କ୍ଷେତ୍ରରେ ଭାବପ୍ରବଣତାର କୌଣସି ସ୍ଥାନ ନାହିଁ । ଦେଶ ବିଭାଜନ ପରେ ସେ ହେବେ ଭାରତର ପ୍ରଧାନମନ୍ତ୍ରୀ, ଏହା ନିଶ୍ଚିତ । ଦେଶ ବିଭାଜନ ନହେଲେ ସେ ପ୍ରଧାନମନ୍ତ୍ରୀ ହେବେ କିପରି ? ଗାନ୍ଧିଙ୍କର କୌଣସି କ୍ଷମତା ପ୍ରତି ଆସକ୍ତି ନାହିଁ । ଜିନା ହେବେ ପାକିସ୍ଥାନର ସର୍ବଶକ୍ତିମାନ ଶାସକ । ତେବେ ତାଙ୍କର କ'ଣ ହେବ । ଗାନ୍ଧି କେବେହେଲେ ଦେଶର ବିଭାଜନ ଚାହିଁବେ ନାହିଁ । କିନ୍ତୁ ଦେଶ ବିଭାଜନ ଅବଶ୍ୟ ହେବ । କାରଣ ବିଭାଜନ ପାଇଁ ଜିନା ହିଁ ମାଉଣ୍ଟବେଟେନଙ୍କର ପ୍ରଧାନ ଅସ୍ତ୍ର । ଗାନ୍ଧିଜୀ ବିରୋଧ କଲେ ବି ଜିନା କିନ୍ତୁ ବିଭାଜନ କରାଇଦେବେ । ଆଉ ଏହା ହିଁ ଚାହାଁନ୍ତି ମାଉଣ୍ଟବେଟେନ । ଯେଉଁ କଂଗ୍ରେସ ଦଳ ପ୍ରତ୍ୟେକ ବ୍ୟକ୍ତି ଗାନ୍ଧିଙ୍କୁ ଦର୍ଶନ କରି ନିଜକୁ ଧନ୍ୟ ମନେ କରୁଥିଲେ,

ଯେମାନେ ଆଜି ତାଙ୍କ ଡାକୁ ଶୁଣିବେ ନାହିଁ ବୋଲି ତାଙ୍କ ମନରେ ସନ୍ଦେହ ଜନ୍ମିଛି। କେତେ ବେଦନା ଭରା ଯେ କରୁଣ ଦୃଶ୍ୟ। ଏତେ ପ୍ରୀତକ୍ଷାର ଅନ୍ତ ନାହିଁ। ବେଳକୁ ବେଳ ମାଉଣ୍ଟବେଟେନଙ୍କ ଉତ୍କଣ୍ଠା ବଢୁଛି। ଜିନା ତାଙ୍କ ଜିଦ୍‌ରେ ଅଟଳ, ତାଙ୍କର ଯଂରକାର ସ୍ୱାଧୀନ ମୁସଲମାନ ରାଷ୍ଟ୍ର ପାକିସ୍ଥାନ। ଦେଶ ବିଭାଜନ ନିଶ୍ଚିତ। ନେହେରୁ ନିଜକୁ ଆହୁରି କଠୋର କରୁଥିଲେ, ଗାନ୍ଧିଙ୍କର ଦେଖା ନାହିଁ। ଭାଇସ୍‌ରାଏଙ୍କ ବୈଠକ କକ୍ଷରେ ସମସ୍ତେ ଉପସ୍ଥିତ, ଗାନ୍ଧିଙ୍କୁ ସମସ୍ତଙ୍କର ଅପେକ୍ଷା। ନେହେରୁ, ପଟେଲ, ବଳଦେବ ସିଂ, ଜିନା, ମାଉଣ୍ଟବେଟନ ଏବଂ ତାଙ୍କର ଦୁଇଜଣ ପରାମର୍ଶଦାତା। ଚର୍ଚ୍ଚିଲଙ୍କ ଦୃଷ୍ଟିରେ ଗାନ୍ଧିଜୀଙ୍କ ବ୍ୟକ୍ତି ଚରିତ୍ର ଏୟା। ଗାନ୍ଧି ନଆସିଲେ ବି ଜିନା ମିଟିଂ ସ୍ଥଗିତ ରହିବାକୁ ଦେବେ ନାହିଁ। ଆଜି ଏଇ ସାତଜଣ ହିଁ ଭାରତର ଭବିଷ୍ୟତ ନିର୍ଦ୍ଧାରଣ କରିବେ। ଜିନାଙ୍କ ମୁଖମଣ୍ଡଳରେ ଦୃଢ଼ ପ୍ରତିଜ୍ଞାର କଠୋର ଭାବ ବାରିହୋଇ ପଡୁଛି। ସ୍ୱାଧୀନ ରାଷ୍ଟ୍ର ପାକିସ୍ଥାନ ସୃଷ୍ଟି ହେବ। ଜିନା ହେବେ ତାର ସର୍ବମୟ କର୍ତ୍ତା। ଭାରତର ହିନ୍ଦୁ ବହୁଳ ଅଞ୍ଚଳକୁ ନେଇ ଭାରତ ସ୍ୱାଧୀନ ହେବ। ସେ ହିଁ ହେବେ ଭାରତର ସର୍ବ ପ୍ରଧାନ ନେତା। ମାଉଣ୍ଟବେଟେନ ଓ ଲେଡି ମାଉଣ୍ଟବେଟେନ ତାଙ୍କର ବନ୍ଧୁ। ଅନେକ କୋମଳ ସନ୍ଧ୍ୟାରେ ମୋଗଲ ଗାର୍ଡେନରେ ବସି ଚା ପାନ କଲାବେଳେ ଅନେକ ସରସ ମୁହୂର୍ତ୍ତ ଗୁଡିକ ତାଙ୍କ ଦେହ ଓ ମନକୁ ରୋମାଞ୍ଚିତ କରିଦେଲା। ବିପତ୍ନୀଙ୍କ ନେହେରୁଙ୍କ ଭିତରେ ଛପି ରହିଥିବା ପୁରୁଷ ସିଂହ ଗର୍ଜନ କରିଉଠେ ଇନ୍ଦିରାଙ୍କ ପ୍ରତି ପିତୃ ସ୍ନେହରେ ଆଉ ଇଡୁଉଇନଙ୍କ ପ୍ରତି ମଧୁର ଆଳାପରେ। ତାଙ୍କ ସାଙ୍ଗରେ ଅନେକ ମଧୁର ମୁହୂର୍ତ୍ତର ସ୍ମୃତି ତାଙ୍କୁ ବିବଶ କରିଦେଲା। ମୁହୁର୍ତ୍ତକ ଭିତରେ ପ୍ରକୃତିସ୍ଥ ହୋଇ ସେ ନିଜକୁ ଆହୁରି କଠୋର କରିନେଲେ। ଗାନ୍ଧିଙ୍କର କରୁଣ କ୍ଷୀଣ ସ୍ୱର ତାଙ୍କୁ ବାରମ୍ବାର ଶୁଣାଯାଉଥିଲା। ମାତ୍ର ତାଙ୍କୁ ସେ ଅନାବଶ୍ୟକ ଭାବି ଏଡାଇ ଯାଉଥିଲେ। ମାଉଣ୍ଟ ବେଟେନଙ୍କ କାନ୍ଥଘଣ୍ଟାରେ ଠିକ୍ ୧୨.୩୦ମି. ବାଜିଲା। ଗାନ୍ଧି ଭାଇସରାଏଙ୍କ ବୈଠକ କୋଠରୀରେ ପ୍ରବେଶ କଲେ। ମାଉଣ୍ଟବେଟେନ ଦୁଆର ପାଖକୁ ଉଠିଯାଇ ତାଙ୍କୁ ହସି ହସି ସ୍ୱାଗତ କଲେ। ଗାନ୍ଧିଙ୍କର ପ୍ରତିକ୍ରିୟା

ଜାଣିବାକୁ ସମସ୍ତଙ୍କ ମନରେ ଉତ୍କଣ୍ଠା । ମାଉଣ୍ଟବେଟେନ ତାଙ୍କ ପ୍ଲାନକୁ ଏକ୍ସପ୍ଲାନ୍ କରୁ । ଗାନ୍ଧି ଗୋଟିଏ ଆରାମ ଚେୟାରରେ ବସି ତାଙ୍କ ମସିଆ ପୁରୁଣା ବ୍ୟାଗରୁ ଗୋଟିଏ ପୁରୁଣା ଲଫାଫା ଓ ଦୁଇ ଇଞ୍ଚିର ପେନ୍‌ସିଲଟିଏ ବାହାର କରି ସେଇ ପୁରୁଣା ଲଫାପା ଉପରେ ଲେଖିଲେ I do not Support ଏତକ ଲେଖିଦେଇ ସେ କକ୍ଷତ୍ୟାଗ କଲେ । ସେ ପୁରୁଣା ଲଫାପାଟିକୁ ଯତ୍ନର ସହିତ ଭବିଷ୍ୟତ ବଂଶଧରଙ୍କ ପାଇଁ ମାଉଣ୍ଟବେଟେନ ସାଇତି ରଖିଲେ । ଗାନ୍ଧିଙ୍କ ଯିବା ବାଟକୁ ଚାହିଁ ରହି ମାଉଣ୍ଟବେଟେନଙ୍କ ପାଟିରୁ ଆପେ ଆପେ ବାହାରି ଆସିଲା He is great ଗାନ୍ଧି ଚାଲିଗଲା ପରେ ଭାଇସ ରାଏଙ୍କ ବିଶାଳ ପ୍ରାସାଦର ଲମ୍ବା ବାରଣ୍ଡା ସବୁ ଅନ୍ଧାର ହୋଇଗଲା । ଚାରିଆଡେ ଶୂନଶାନ ନିରବ ନିଶ୍ଚଳ । ବେଳେ ବେଳେ କେବଳ ଜଣେ ସୁରକ୍ଷା କର୍ମୀଙ୍କର ଯୋତାଶବ୍ଦ ଶୁଭୁଥିଲା । ମାତ୍ର ତାଙ୍କ ବୈଠକ କୋଠରୀ ଆଲୋକ ଜଳୁଥିଲା । ମନେ ହେଉଥିଲା ସତେ ଯେମିତ ଓଲ୍ଡ Soul ସେ ବାଟ ଦେଖାଇ ନେଉଛି । କାରଣ ସେଇ ମୁହୂର୍ତ୍ତରେ ଗାନ୍ଧିଜୀଙ୍କ ମନରେ ସଂଶୟ ତାଙ୍କୁ ଆନ୍ଦୋଳିତ କରୁଥିଲା । ସେ ଭାବୁଥିଲେ ଯେଉଁମାନେ ଦେଶର ବିଭାଜନ ଚାହାଁନ୍ତି ସେମାନେ କ'ଣ ଠିକ୍ କରୁଛନ୍ତି ? ମାତ୍ର ତାଙ୍କର ଅନାଗ୍ରହ ତାଙ୍କୁ ଅନୁମୋଦନ କରିପାରି ନଥିଲା । ଏଣେ ବୈଠକ କକ୍ଷରେ ସମସ୍ତେ ନୀରବ । ନେହେରୁ, ପଟେଲ ଓ ବଳଦେବ ସିଂ ପ୍ଲାନକୁ ସମର୍ଥନ ଜଣାଇ ସାରିଥିଲେ । ଯେଉଁ ଜିନା ବିଭାଜନ ପାଇଁ ଦାବୀ କରି ସ୍ୱାଧୀନ ମୁସଲିମ୍ ରାଷ୍ଟ୍ର ଗଠନ କରିବାକୁ ଜିଦ୍ ଧରି ବସିଥିଲେ, ସେ ମଧ୍ୟ ନୀରବ । ମନେ ହେଉଥିଲା ସତେ ଯେମିତି ସେ ଗାନ୍ଧିଙ୍କ ପରି ସେଦିନ ମୌନବ୍ରତ ପାଳନ କରୁଛନ୍ତି । ଯେତେ ପଚାରିଲେ ବି ସେ ନୀରବ । ଶେଷରେ ଯେତେବେଳେ ମାଉଣ୍ଟ ବେଟେନ ମିଟିଂକୁ ଘୁଞ୍ଚାଇ ଦେବାକୁ ସେ ଚାହାନ୍ତି କି, ସେତେବେଳେ ମଧ୍ୟ ସେ ନୀରବ । ମାଉଣ୍ଟ ବେଟେନ ପଚାରିଲେ ହ୍ୱାଟ ଇଜି ଇୟୋର ପ୍ରୋବ୍ଲେମ୍ ? ୟୁ ହାଭ୍ ଗେଟ ଇୟୋର ପାକିସ୍ଥାନ ଇୟୋର ଡିମାଣ୍ଡ । ଜିନା, ଯିଏ ଦିନକ ପାଇଁ ଲିଗ୍ ସହିତ ପରାମର୍ଶ କରନ୍ତି ନାହିଁ, ଯିଏ ଜଣେ

ଏକଛତ୍ରବାଦୀ ନେତା ଓ ସଂପୂର୍ଣ୍ଣ ମୁସଲିମ୍ ସଂପ୍ରଦାୟ ତାଙ୍କର ଅନୁଗତ, ସିଏ ଆଜି ସମ୍ମତି ପ୍ରଦାନ ନକରି ନୀରବ ରହିଛନ୍ତି। ଅବଶ୍ୟ ଜିନା କେତେବେଳେ କଥାରେ ହଁ କରନ୍ତି ନାହିଁ। ମାଉଣ୍ଟବେଟେନ କହିଲେ do you agree ଜିନା ତଥାପି ନୀରବ। ମାଉଣ୍ଟବେଟେନ କହିଲେ What is your Problem ଶେଷରେ ଜିନା ଅନିଛା ସତ୍ୱେ ବାଧ ହୋଇ ସମ୍ମତିର ଲକ୍ଷଣ ଦେଖାଇ ନୀରବ ରହି ଚାଲିଗଲେ। ମାଉଣ୍ଟବେଟେନ ଭାବିଲେ ତାଙ୍କ ପ୍ଲାନ ଅନୁସାରେ ଭାତରର ୪ ୫କୋଟି ଲୋକଙ୍କର ଦେଶକୁ ବିଭାଜନ କରିବା ଏବେ ସହଜ। ବୈଠକରେ ବସିଥିବା ସାତଜଣଙ୍କ ମଧ୍ୟରୁ କେହି କିଛି ମନ୍ତବ୍ୟ ଦେବା ଆଗରୁ ମାଉଣ୍ଟବେଟେନ ଘୋଷଣା କରିଦେଲେ ଯେ ଏହି ଯୋଜନା ଅନୁସାରେ ବର୍ତ୍ତମାନ ଭାତର ବିଭାଜନ ହେବ। କିନ୍ତୁ ଯେଉଁ ଜଟିଳ ସମସ୍ୟାର ବର୍ତ୍ତମାନ ସମ୍ମୁଖୀନ ହେବାକୁ ପଡିବ ତା ହେଲା ବ୍ୟାଙ୍କରେ ଥିବା ଟଙ୍କା, ପୋଷ୍ଟ ଅଫିସ ମାନଙ୍କରେ ଥିବା ଷ୍ଟାଫ, ଲାଇବ୍ରେରୀରେ ଥିବା ବହିପତ୍ର, ଋଣ ଏବଂ ସଂପତ୍ତି। ପୃଥିବୀର ତୃତୀୟ ବୃହତ୍ତମ ରେଲପଥ, ବନ୍ଦୀଶାଳା ଓ ବନ୍ଦୀ, ଗବେଷଣା କେନ୍ଦ୍ର, ହସ୍ପିଟାଲ, ୟୁନିଭରସିଟି, ଅନୁଷ୍ଠାନ ଓ ଅନ୍ୟାନ୍ୟ ଜିନିଷପତ୍ର ସବୁ ଭାଗ ଭାଗ କରିବାକୁ ହେବ। ମାତ୍ର ଏଥିପାଇଁ ସମୟ ଅଭାବ। ତେଣୁ ଏକାମ ଖୁବ ଶୀଘ୍ର ସାରିବାକୁ ହେବ। ସଭାରେ ସମସ୍ତେ ନୀରବରେ ବସିଥିଲେ। କାହାର କିଛି ପ୍ରତିକ୍ରିୟା ନଥିଲା। ଗାନ୍ଧିଜୀ ଏ ଖବର ଶୁଣିଲେ ତାଙ୍କର ସାନ୍ଧ୍ୟ ଭ୍ରମଣ ପରେ। ଜଣେ ନାରୀ ଶିଷ୍ୟା ତାଙ୍କ ପାଦକୁ ଖଣ୍ଡେ ପଥରରେ ଘଷୁଥିଲେ। ଆଉ ଜଣେ ଧଇଁସଇଁ ହୋଇ ଭିତରକୁ ପଶି ଆସି ମିଟିଂର ନିଷ୍ପତ୍ତି ଶୁଣାଇଲେ। ଗାନ୍ଧି ଦୀର୍ଘ ନିଃଶ୍ୱାସଟିଏ ମାରି କହିଲେ ଓଃ ଗଡ୍! ସେ ଅନୁଭବ କଲେ ସତେ ଯେମିତି ତାଙ୍କ ହୃତ୍ପିଣ୍ଡକୁ ଟୁକୁରା ଟୁକୁରା କରି କାଟିବାର ଅସହ୍ୟ ଯନ୍ତଣା। ମାତ୍ର ନିରୁପାୟ ଏବଂ ଅସହାୟ। ସପକ୍ଷରେ ବା ବିପକ୍ଷରେ ଯାହା ବି କହିବେ, ସାଙ୍ଗେ ସାଙ୍ଗେ ସାରା ଦେଶରେ ଘୃଣା ଅବିଶ୍ୱାସ, ରକ୍ତପାତ ଓ ହତ୍ୟାକାଣ୍ଡ ବିଭତ୍ସ ଆରମ୍ଭ ହୋଇଯିବ।

ଏଣେ କଂଗ୍ରେସ ଦଳ ତାଙ୍କ ନିୟନ୍ତ୍ରଣରେ ନାହିଁ। ଯେଉଁ ଅହିଂସାକୁ ଜୀବନ ବ୍ୟାପୀ ସେ ପୂଜା କରି ଆସିଛନ୍ତି। ତାହା ଏବେ ବିପନ୍ନ । ଥରେ ଘୃଣା ଓ ଅବିଶ୍ୱାସରୁ ହତ୍ୟାକାଣ୍ଡ ଆରମ୍ଭ ହୋଇଗଲେ ତାକୁ ସହିବା ଅସମ୍ଭବ। ଶାନ୍ତି ଓ ସହଯୋଗପୂର୍ଣ୍ଣ ବାତାବରଣରେ ସନ୍ଧ୍ୟା ପର୍ଯ୍ୟନ୍ତ ଚଳି ଆସିଥିବା କଲିକତାର ଲୋକେ ରାତି ପାହିଲା ବେଳକୁ ସଇତାନ ପାଲଟି ଯାଇଥିଲେ। କୁଢ଼ କୁଢ଼ ମୃତ ଦେହ ବିଞ୍ଚିହୋଇ ପଡ଼ିଥିଲା ରାସ୍ତା ଘାଟରେ। ରକ୍ତର ସୁଅରେ ଭାସି ଭାସି ଆକୁଳ ଚିତ୍କାର କରୁଥିଲେ କେତେ ଶିଶୁ, ଅସହାୟ ବୃଦ୍ଧ ଓ ପିତା ପୁତ୍ର, ସ୍ୱାମୀହରା ରମଣୀ ମାନେ। ସାଂପ୍ରଦାୟିକ ଦଙ୍ଗାରେ କିଛି କୂଳ କିନରା ନଥାଏ। କ'ଣ ସେ କହିବେ ? କାହାକୁ ସେ କି ସାନ୍ତ୍ୱନା ଦେବେ ? କିଏ ଶୁଣିବ ତାଙ୍କ କଥା ? ପାଖରେ ଥିବା ଗୀତାର ଆଶ୍ରୟ ନେଇ ଅଧ୍ୟାୟେ ପଢ଼ିଲେ। ନଚୈନଂ ଛେଦନ୍ତି ଶସ୍ତ୍ରାଣୀ, ନୈନଂ ଦହତି ପାବକଃ ନଚ କ୍ଲେଦୟନ୍ତି ନ ଶୋଷୟତି ମାରୁତଃ। ଆତ୍ମାର ମୃତ୍ୟୁ ନାହିଁ, ସେ ଅମର, ଅଜର ତାହା ଅବିନାଶୀ ସାଶ୍ୱତ। ମହାଭାରତ ଯୁଦ୍ଧର ବିଭିଷିକା ଦେଖି ଭଗବାନ ଅର୍ଜୁନଙ୍କୁ ଏଇ କଥା କହି କର୍ତ୍ତବ୍ୟ ପଥରେ ଅଟଳ ରହିବାକୁ ପରାମର୍ଶ ଦେଇଥିଲେ। ଆଜି ସେଇ ଅବସ୍ଥା ଘଟିବାକୁ ଯାଉଛି। ବ୍ରିଟିଶ୍ ଡିଭାଇଡ୍ ଆଣ୍ଡ ରୁଲ୍ ଉପାୟରେ ଶାସନ କରିଥିଲେ, ଆଜି ଛାଡିଗଲା ବେଳେ ସେଇ କୌଶଳ ଦ୍ୱାରା ଦେଶକୁ ଭାଗ ଭାଗ କରିଦେଲେ। ସମ୍ଭବତଃ ଏହା ବିଧିର ବିଧାନକୁ ଆନ କରିବ କିଏ ? ସ୍ୱାଧିନତା ହୁଏତ ଅନାହାର ଅଭାବ ଅନାଟନକୁ ଦୂର କରିପାରେ, ମାତ୍ର ମା'ର ହୃତପିଣ୍ଡରେ ଛୁରୀ ଭୂଷି ଦେଲେ କେଉଁ ନିର୍ଦ୍ଦୟ ସନ୍ତାନ ତାକୁ ସହିପାରିବ ! ସେ ଆଉକିଛି ଭାବି ପାରୁନଥିଲେ। ଶୁଷ୍କ କୋଟରାଗତ ଆଖି ଦି'ଟାରୁ ଖାଲି ଟିପୁଡି ହୋଇ ଅଶ୍ରୁ ବୋହି ପଡୁଥିଲା।

ଦେଶର ସଂପତ୍ତି ଭାଗ ଭାଗ କରିବା ଏକ ଦୂରୁହ କାର୍ଯ୍ୟ। କେମିତି ସେ ସବୁ ଭାଗ ଭାଗ କରିବ ? ଲୋକସଂଖ୍ୟା ତୁଳନାରେ ନା ଦୁଇଜଣ ପାଇଁ ଦୁଇ ଭାଗ କରି, ନା ଯେଉଁଠି ଯାହା କିଛି ଅଛି ତାକୁ ସେ ଦେଶର ? ଏତ ପ୍ରଚଣ୍ଡ ଦଙ୍ଗାକୁ ଡ଼ାକି ଆଣିବ। ହତ୍ୟା, ଲୁଣ୍ଠନ, ଅଗ୍ନିଦାହ ସାରା ଦେଶକୁ ବ୍ୟାପୀଯିବ। ଯୁଦ୍ଧ ଠାରୁ ଏ

ହତ୍ୟାକାଣ୍ଡ ହେବ ଆହୁରି ବିଭତ୍ସ, ଆହୁରି କରୁଣ। ଯୁଦ୍ଧରେ ସିନା ଯୋଦ୍ଧାମାନେ ମରନ୍ତି, ଏ ହତ୍ୟାକାଣ୍ଡରେ କେହିବି ବର୍ତ୍ତି ପାରିବେ ନାହିଁ। ସାଂପ୍ରଦାୟିକ ଦଙ୍ଗା ହୁଏ ଧର୍ମକୁ କେନ୍ଦ୍ର କରି। ଆମେ ହିନ୍ଦୁ, ସେମାନେ ମୁସଲମାନ, ଆମେ ମୁସଲମାନ ସେମାନେ ଖ୍ରୀଷ୍ଟିୟାନ; ଏଇ ଭାବନାକୁ ଲୋକେ ଧର୍ମ କହନ୍ତି। ଧର୍ମପ୍ରତି ଭକ୍ତିଭାବ ହେତୁ ସଂପ୍ରଦାୟ ସଂପ୍ରଦାୟ ଭିତରେ ଦଙ୍ଗା ହୁଏ। କିନ୍ତୁ ଏହା କ'ଣ ଧର୍ମ ? କୌଣସି ଧର୍ମରେ ଅନ୍ୟ ଧର୍ମାବଲମ୍ବୀଙ୍କ ପ୍ରତି ଅସୂୟା କର, ଘୃଣାକର କିମ୍ବା ହିଂସା କର, ଏକଥା କୌଣସି ଧର୍ମରେ କୁହାଯାଇ ନାହିଁ। ପ୍ରତ୍ୟେକ ଧର୍ମାବଲମ୍ବୀଙ୍କ ପ୍ରତି ସହନଶୀଳ ହୁଅ, ଏହା ପ୍ରତ୍ୟେକ ଧର୍ମର ଆଦର୍ଶ। କିନ୍ତୁ ଲୋକେ ଯାହାକୁ ଧର୍ମ କହନ୍ତି, ତାହା ଧର୍ମ ନୁହେଁ, ଧର୍ମାନ୍ଧତା । ଧର୍ମାନ୍ଧତା ଘୃଣାରୁ ଜନ୍ମ, ପ୍ରତ୍ୟେକ ଧର୍ମ ଘୃଣାକୁ ବିରୋଧ କରେ। ଧର୍ମ କହିଲେ ଏକ ଅନୁଶାସନ। ଯେଉଁ ଅନୁଶାସନକୁ ପାଳନ କଲେ ମଣିଷ ସୁଖୀ ହୁଏ। ଅନୁଶାସନ ଏକ ଶୃଙ୍ଖଳା। ଶୃଙ୍ଖଳିତ ମଣିଷ ବା ସଂପ୍ରଦାୟ ସୁଖରେ ଜୀବନ କାଟେ। ସବୁ ଯୁଗରେ ଧର୍ମବତାର ବା ସଂସ୍କାରକମାନେ ଆସି ଧର୍ମାନ୍ଧତା ଏକ କୁସଂସ୍କାର ବୋଲି ମଣିଷକୁ ଚେତାଇ ଦିଅନ୍ତି। କିନ୍ତୁ କାହାରି ଚେତା ପଶୁନାହିଁ। ଧର୍ମାନ୍ଧତାକୁ ଧର୍ମ ବୋଲି କହି ହଜାର ହଜାର ବର୍ଷ ଧରି ସଂପ୍ରଦାୟ ସଂପ୍ରଦାୟ ଭିତରେ ହିଂସାକାଣ୍ଡ ଘଟି ଚାଲିଛି। କେତେ ଯେ ଧନଜୀବନ ନଷ୍ଟ ହେଉଛି ତା'ର କଳନା ନାହିଁ। ଦେଶ ବିଭାଜନ ପରେ ଯେଉଁ ସଂପ୍ରଦାୟିକ ହିଂସାକାଣ୍ଡ ଘଟିବ, ତାହା ଏହିପରି ଏକ ଧର୍ମନ୍ଧତା ଛଡ଼ା ଆଉ କିଛି ନୁହେଁ। ତଥାପି ଧର୍ମାନ୍ଧତାକୁ ଧର୍ମକହି ସଂପ୍ରଦାୟ ସଂପ୍ରଦାୟ ଭିତରେ ଅସୂୟା, ଅସହିଷ୍ଣୁତା ଲାଗିରହିଛି। ଅସୂୟା, ଅସହିଷ୍ଣୁତା କିନ୍ତୁ ସୁଖ ନୁହେଁ, ଦୁଃଖର କାରଣ। ଦୁର୍ଭାଗ୍ୟ ଯେ ମଣିଷ ବୁଝେ ନାହିଁ। ଦେଶର ବିଭାଜନ ହୋଇଗଲା ୧୯୪୭ ମସିହା ଜୁନ୍ ୭ତାରିଖ ସନ୍ଧ୍ୟାରେ। ତିନି ସଂପ୍ରଦାୟର ଚାରି ମୁଖ୍ୟନେତା ଘୋଷଣା କରିଦେଲେ ଯେ, ସେମାନେ ଏ ବିଭାଜନକୁ ଗ୍ରହଣ କରି ଦେଇଛନ୍ତି। ପ୍ରଥମେ ନିଜର ଦାୟିତ୍ୱ ଦୃଷ୍ଟିରୁ ମାଉଣ୍ଟବେଟେନ ଏକଥା ଘୋଷଣା କଲେ। ତାଙ୍କ କଣ୍ଠର ସ୍ୱର ଥିଲା କ୍ଷୀଣ ଓ ବିଶାଦମୟ। ତାପରେ ଦିନ

କହିଲେ ନେହେରୁ। ତାଙ୍କ କଣ୍ଠରେ ଥିଲା ଦୁଃଖର ସ୍ୱର। ସେ କହିଲେ, unfortunate ତାଙ୍କ ଭାଷାକୁ ମୁସଲାମ୍ ସଂପ୍ରଦାୟ ବୁଝିବାକୁ ଅକ୍ଷମ ଥିଲେ ଯଦିଓ ତାଙ୍କ ନିଜ ମାତୃଭାଷା ଉର୍ଦ୍ଦୁ। ତାଙ୍କର ଜଣେ ଅନୁବାଦକ ଉର୍ଦ୍ଦୁରେ କହିଲେ ଯେ ଭାରତର ମୁସଲମାନ ସଂପ୍ରଦାୟ ପାକିସ୍ଥାନ ନାମରେ ଏକ ସ୍ୱାଧିନରାଷ୍ଟ୍ର ପାଇଛନ୍ତି। ଜିନା କେବଳ ପାକିସ୍ଥାନ ଜିନ୍ଦାବାଦ କହି ତାଙ୍କର ଇଂରାଜୀ ବକ୍ତବ୍ୟକୁ ଶେଷ କରିଥିଲେ। ସେ ନିଜେ ଜଣେ ମୁସଲମାନ, ମୁସଲମାନଙ୍କ ପାଇଁ ସେ ଗଠନ କଲେ ପାକିସ୍ଥାନ, ଅଥଚ କହିପାରୁ ନଥିଲେ ମୁସଲମାନ ଭାଷା ଉର୍ଦ୍ଦୁ କିମ୍ବା ଦେଖିନଥିଲେ ପାକିସ୍ଥାନ ସ୍ୱାଧିନ ହେବା ପୂର୍ବରୁ। ଯାକୁ ଦୁର୍ଭାଗ୍ୟ ନା ଆଉ କ'ଣ କୁହାଯିବ ? ଗାନ୍ଧିଜୀ ଦୁଃଖରେ ମ୍ରିୟମାଣ ହୋଇ ପଡ଼ିଲେ। ତାଙ୍କ କଣ୍ଠ ରୁଦ୍ଧ ହୋଇଗଲା । ଭଗ୍ନ ଡ଼େଣା ବୃଦ୍ଧ ପକ୍ଷୀଟିଏ ପରି ଆରାମ ଚେୟାରର କେଉଁ ଏକ କୋଣରେ ସେ ଯେମିତି ଲୋଟି ପଡ଼ିଛନ୍ତି ଅସହାୟ ଭାବରେ। ଅହିଂସାର ବାର୍ତ୍ତାବହଙ୍କ କଣ୍ଠରେ ମିଳେଇ ଯାଇଛି ଅହିଂସାର ବାର୍ତ୍ତା। ଜୁନ ୪ ତାରିଖ ମାଉଣ୍ଟବେଟେନ ଖବର ପାଇଲେ ସେ ଗାନ୍ଧି କଂଗ୍ରେସ ଦଳ ଛାଡୁଛନ୍ତି। ଏକଥା ଶୁଣିଲା ମାତ୍ରେ ତାଙ୍କର ସାକ୍ଷାତ୍ ପାଇଁ ଜଣେ ରାଜଦୂତଙ୍କୁ ପଠାଇଲେ। ଗାନ୍ଧିଙ୍କ ସନ୍ଧ୍ୟା ପ୍ରାର୍ଥନା ସଭାର ସମୟ ଥିଲା ସନ୍ଧ୍ୟା ସାତଟା । ସେ ମାଉଣ୍ଟବେଟେନଙ୍କୁ ସାକ୍ଷାତ୍ କଲେ ସନ୍ଧ୍ୟା ଛଟାରେ, ପ୍ରାର୍ଥନା ସଭାରେ ବିଭାଜନ ନିଷ୍ପତ୍ତିକୁ ନିନ୍ଦା କରିବା ସହିତ କଂଗ୍ରେସ ଦଳ ଛାଡ଼ିବା କଥା ଘୋଷଣା କରିବାକୁ ସେ ସ୍ଥିର କରିଥିଲେ। ତାଙ୍କୁ ଦେଖିବା ମାତ୍ରେ ମାଉଣ୍ଟବେଟେନ କହିଲେ Disastrous ଗାନ୍ଧି ଆରାମ ଚେୟାରର କେଉଁ କୋଣରେ ହଜିଗଲା ପରି କ୍ଷୀଣ କଣ୍ଠରେ କହିଲେ, Oh' god save India ଗାନ୍ଧିଙ୍କର ଆତ୍ମଶକ୍ତି ଥିଲା ଅନନ୍ତ। ଏକଥା ଲକ୍ଷ୍ୟ କରି ମାଉଣ୍ଟବେଟେନ କହିଲେ, ମୁଁ ଅତ୍ୟନ୍ତ ଦୁଃଖିତ ଯେ, ଯେଉଁ ଅଖଣ୍ଡ ଭାରତରେ ସେ କାମ କରି ସେ ଗୌରାବନ୍ୱିତ ଅନୁଭବ କରୁଥିଲେ, ସେ ଭାରତ ଆଜି ତାଙ୍କରି ପ୍ଲାନ ଦ୍ୱାରା ଧ୍ୱସଂ ହୋଇଗଲା। ଦୁଇ ସଂପ୍ରଦାୟ ମଧ୍ୟରେ ହେବାକୁ ଥିବା ଭୟଙ୍କର ହିଂସାକାଣ୍ଡରୁ ଭାରତକୁ ରକ୍ଷା କରିବା ପାଇଁ ଅଟିଲ ସରକାର

କ୍ଷମତା ହସ୍ତାନ୍ତର କରିବାକୁ ତାଙ୍କୁ ଦାୟିତ୍ୱ ଦେଇଥିଲେ । ଜିନାଙ୍କର ପାକିସ୍ଥାନ ଗଠନ କରିବାକୁ ଏକା ଜିଦ୍ ଦେଶରେ ପ୍ରଚଣ୍ଡ ହିଂସାକାଣ୍ଡକୁ ଆସନ୍ନ କରିଦେଲା । ନେହେରୁ ମଧ୍ୟ ବିଭାଜନ ପ୍ଲାନକୁ ସମର୍ଥନ କଲେ । ତାଙ୍କର ଆଉ ଉପାୟ ନଥିଲା ବିଭାଜନ ସପକ୍ଷରେ ସେ ନଥିଲେ । ଶେଷରେ ସେ ବାଧ୍ୟ ହୋଇଗଲେ । ଆପଣ ମୋତେ କ୍ଷମା କରନ୍ତୁ । ଗାନ୍ଧିଙ୍କୁ ନୀରବ ଦେଖି ସେ ଭାବିଲେ, ଗାନ୍ଧି ଯଦି ତାଙ୍କ ପ୍ଲାନକୁ ନିନ୍ଦା କରି ବିବୃତ୍ତି ଦିଅନ୍ତି, ତେବେ ସବୁକିଛି ବିପଦପୂର୍ଣ୍ଣ ହୋଇଯିବ । କାରଣ ତା ହେଲେ ନେହେରୁ, ପଟେଲ ଓ ଅନ୍ୟ ନେତାମାନେ ଖୋଲାଖୋଲି ଭାବରେ ଗାନ୍ଧିଙ୍କ ବିରୁଦ୍ଧରେ ଯିବାପାଇଁ ବାଧ୍ୟ ହେବେ କିମ୍ବା ତା ବଦଳରେ ପ୍ଲାନକୁ ବିରୋଧ କରିବେ । ସେ ଦେଖିଲେ ଖବର କାଗଜରେ ଏହା ମାଉଣ୍ଟବେଟେନ ପ୍ଲାନ ବୋଲି କୁହାଯାଇଛି । ହୁଏତ ସେ ପ୍ରତିକ୍ରିୟା ପ୍ରକାଶ କରି କହିଲେ, ଏହାକୁ ସେମାନେ ଗାନ୍ଧି ପ୍ଲାନ ବୋଲି କହିବା ଉଚିତ୍ ଥିଲା । କାରଣ ଗାନ୍ଧି ହିଁ ତାଙ୍କୁ ସେ ପ୍ଲାନର ମୁଖ୍ୟ ଦିଗ ପ୍ରତି ସତର୍କ କରିଥିଲେ । ଏକଥା ଶୁଣି ଗାନ୍ଧି ବିବ୍ରତ ହୋଇ ତାଙ୍କୁ ଚାହିଁଲେ । ମାଉଣ୍ଟବେଟେନ ପୁଣି କହିଲେ, ହଁ, ଗାନ୍ଧି ହିଁ କହିଥିଲେ ଯେ କିଏ ପାକିସ୍ଥାନକୁ ଯିବେ ଓ କିଏ ଭାରତରେ ରହିବେ । ସେ କଥା ଲୋକଙ୍କର ପସନ୍ଦ ମୁତାବକ ହେବା ଆବଶ୍ୟକ ଏବଂ ତାହା ପ୍ରତ୍ୟେକ ରାଜ୍ୟର ବିଧାନ ପରିଷଦ ଦ୍ୱାରା ସ୍ଥିର ହେବ । ଗାନ୍ଧି ପୁଣି କହିଥିଲେ ଯେତେଶିଘ୍ର ସମ୍ଭବ ବ୍ରିଟିଶ୍ ଭାରତ ଛାଡ଼ି ଚାଲିଯିବା ଦରକାର । ଏ ପ୍ଲାନର ବ୍ୟବସ୍ଥା ଅନୁସାରେ ଡୋମିନେସନ ଷ୍ଟେଟସ୍ ତାହାହିଁ ପୁରଣ କରିବାକୁ ଯାଉଛି । ଯଦି ଅଖଣ୍ଡ ଭାରତ ସପକ୍ଷରେ ବିଧାନ ପରିଜନ ମାନେ ମତ ଦିଅନ୍ତି, ତେବେ ଗାନ୍ଧିଙ୍କର ଇଚ୍ଛା ପୁରଣ ହେବ ଆଉ ଯଦି ସେମାନେ ବିଭାଜନ ଚାହାନ୍ତି, ତେବେ ସେମାନଙ୍କୁ ବଳ ପ୍ରୟୋଗ କରି ବାଧ୍ୟ କରାଯାଇ ପାରିବ ନାହିଁ । ତଥାପି ଗାନ୍ଧିଜୀ ଭାରତ ବିଭାଜନକୁ ବିରୋଧ କରି ବସିଲେ । ଏପରିକି ଦେଶରେ ହିଂସାକାଣ୍ଡ କିମ୍ବା ଅରାଜକତା ବ୍ୟାପିଲେ ବି ! ମାଉଣ୍ଟବେଟେନ କଥା ଶେଷ କରିବା ପୂର୍ବରୁ ଗାନ୍ଧି ଯିବାକୁ ଚାହିଁଲେ । କାରଣ ତାଙ୍କୁ ନିର୍ଦ୍ଦିଷ୍ଟ ସମୟରେ ସନ୍ଧ୍ୟା ପ୍ରାର୍ଥନାରେ

ଯୋଗଦେବାକୁ ପଡ଼ିବ। ନିୟମାନୁବର୍ତ୍ତିତା ଜୀବନ ବ୍ୟାପୀ ତାଙ୍କର ଏକ ପୂଜା। ଘଣ୍ଟାଏ ଭିତରେ ଯାଇ ଗାନ୍ଧି ପ୍ରାର୍ଥନାସଭାରେ ଚକା ପକାଇ ଅସ୍ପୃଶ୍ୟମାନଙ୍କ ମେଳରେ ବସି ତାଙ୍କର ନିଷ୍ପତ୍ତି ଶୁଣାଇଲେ। ପ୍ରାର୍ଥନା ସଭାର ଅଧିକାଂଶ ଲୋକ ପ୍ରାର୍ଥନା ପାଇଁ ଆସିନଥିଲେ। ଆସିଥିଲେ ଅହିଂସାର ଅବତାରଙ୍କ ଠାରୁ ଶୁଣିବା, ଅସ୍ତ୍ରଶସ୍ତ୍ରରେ ସଜ୍ଜିତ ରହିବାକୁ ମାଉଣ୍ଟବେଟେନଙ୍କ ପ୍ଲାନକୁ ବିରୋଧ କରିବା ପାଇଁ। କାରଣ ଅନେକ ସମୟରେ ସେ କହୁଥିଲେ, ତାଙ୍କ ପ୍ରାଣ ବିନିମୟରେ ସେ ବିଭାଜନକୁ ବିରୋଧ କରିବେ, କିନ୍ତୁ ପ୍ରାର୍ଥନା ସଭାରେ ସେ କହିଲେ ବିଭାଜନ ପାଇଁ ମାଉଣ୍ଟବେଟେନଙ୍କୁ ଦାୟୀ କରିବା ଅପେକ୍ଷା ଭାରତର ନେତା ସେମାନଙ୍କ ଆତ୍ମାକୁ ପଚାରନ୍ତୁ ଏଥିପାଇଁ କିଏ ଦାୟୀ। ତାଙ୍କର ଏପରି ମନ୍ତବ୍ୟ ମାଉଣ୍ଟବେଟେନଙ୍କ ପାଇଁ ଥିଲା ସବୁଠାରୁ ବଡ଼ ବିଜୟ। ଲୋକେ ଭାବିଲେ ସମ୍ଭବତଃ ମାଉଣ୍ଟବେଟେନ ତାଙ୍କୁ କାବୁ କରି ନେଇଛନ୍ତି। ସବୁଠାରୁ ତାଙ୍କର ବଡ଼ଦୋଷ ହେଲା ନୀରବତା। ସେମାନେ ଭାବିଲେ ଯେଉଁ ଗାନ୍ଧି ବାରମ୍ବାର କହୁଥିଲେ ପ୍ରାଣ ବିନିମୟରେ ଭାରତରେ ବିଭାଜନକୁ ବିରୋଧ କରିବେ ସେ ପୁଣି ଏପରି ନୀରବ କାହିଁକି ? ମାଉଣ୍ଟବେଟେନ କିନ୍ତୁ ଅତ୍ୟନ୍ତ ଦାୟିତ୍ୱପୂର୍ଣ୍ଣ ଭାବରେ ନିର୍ଭିକ ରହି କହିଲେ, ଯାହା କିଛି ଘଟିଛି, ସେ ସଂପର୍କରେ ନୀରପେକ୍ଷ ମତ ଦେଇପାରିବେ । ପୃଥିବୀର ଯେଉଁ ଦେଶମାନେ ଭାରତର ସମସ୍ୟା ସହିତ ଜଡ଼ିତ ନୁହଁନ୍ତି, ତାଙ୍କ ଠାରୁ ଏପରି କଥା ଶୁଣି ତାଙ୍କର ସମାଲୋଚକ ମାନେ ମଧ୍ୟ ସ୍ତବ୍ଧ ହୋଇଗଲେ। ସେମାନେ ଭାବିଲେ ଯେ ଭାରତରେ ବିଭାଜନ ପାଇଁ ଭାଇସରାଏ ଦାୟୀ ନୁହଁନ୍ତି। ଦାୟୀ ହେଉଛନ୍ତି ଭାରତର ନେତାମାନେ ଏବଂ ଗାନ୍ଧି ମଧ୍ୟ ଏ ଅଭିଯୋଗରୁ ସଂପୂର୍ଣ୍ଣ ମୁକ୍ତ ନୁହଁନ୍ତି। ଋଷିଆ, ଚୀନ, ଇୟୁରୋପ, ଆମେରିକା ଏବଂ ଭାରତର ଜଣାଶୁଣା ସମ୍ବାଦପତ୍ର ଗୁଡ଼ିକର ପ୍ରତିନିଧିମାନେ, ତିନିଶହରୁ ଉର୍ଦ୍ଧ୍ୱ ପତ୍ରକାରମାନେ ଏହି ସାମ୍ବାଦିକ ସମ୍ମିଳନୀରେ ଯୋଗ ଦେଇଥିଲେ। ସେମାନଙ୍କୁ ସମ୍ବୋଧନ କରିଥିଲେ ଭାଇସରାଏ ଏବଂ ଭାଇସରାଏଙ୍କ ସାମ୍ବାଦିକ ସମ୍ମିଳନୀର ଏହା ଥିଲା ପ୍ରଥମ ଓ ଶେଷ। ମାଉଣ୍ଟବେଟେନ କହିଲେ, ଗତ ଦୁଇ ମାସର ଅକ୍ଲାନ୍ତ

ପରିଶ୍ରମ ଦ୍ୱାରା, ସେ ସମସ୍ତ ଭାରତୀୟ ନେତା ମାନଙ୍କୁ ତାଙ୍କ ପ୍ଲାନ ସହିତ ଏକମତ କରାଇ ପାରିଛନ୍ତି। ଭାରତର ବିଭାଜନ ପାଇଁ ସମସ୍ତଙ୍କ ଗ୍ରହଣଯୋଗ୍ୟ ମୂଳଭିତ୍ତି ପ୍ରସ୍ତୁତ କରିପାରିଛନ୍ତି ଓ ଅଟଳି ସରକାରଙ୍କର ଅନୁମୋଦନ ଲାଭ କରିବା ସହିତ ବିଲାତ ପାର୍ଲିଆମେଣ୍ଟରେ କୁହାଯାଇଥିବାର ଚର୍ଚ୍ଚିଲଙ୍କୁ ପ୍ଲାନ ସହିତ ଏକମତ କରାଇ ପାରିଛନ୍ତି। ଏହା ଏକ ଅସମ୍ଭବ କଥା ହେଲେ ମଧ୍ୟ ତାକୁ ସେ ସମ୍ଭବ କରିପାରିଛନ୍ତି। ବିପୁଳ କରତାଳି ଦ୍ୱାରା ତାଙ୍କ ବକ୍ତବ୍ୟକୁ ସମର୍ଥନ ମିଳିଥିଲା। ଏହାପରେ ସନ୍ଦେହ ମୋଚନ ପାଇଁ ପ୍ରଶ୍ନ ପଚାରିବାକୁ ସେ ଆହ୍ୱାନ ଦେଇଥିଲେ। ଜଣେ ପ୍ରଶ୍ନ କଲେ, ଯଦି ବିଭାଜନକୁ ଗ୍ରହଣ କରିବା ପାଇଁ ସମସ୍ତେ ରାଜି, ତେବେ କେଉଁ ତାରିଖରେ କ୍ଷମତା ହସ୍ତାନ୍ତର ହେବ ? ମାଉଣ୍ଟବେଟେନ ହତବଡ଼େଇ ଗଲେ। କାରଣ କୌଣସି ନିର୍ଦ୍ଦିଷ୍ଟ ତାରିଖ ସେ ଭାବିନଥିଲେ। କିଛି ସମୟ ଭାବିଲା ପରେ ତାଙ୍କର ମନେ ପଡ଼ିଲା। ବର୍ମା ଜଙ୍ଗଲରେ ଜାପାନର ନିସର୍ତ୍ତ ଆତ୍ମ ସମର୍ପଣର ଦିନ। ସେ ଦିନ ଥିଲା ତାଙ୍କ ବିଜୟର ଦିନ। ସେହି ଦିନ ସେ ଦ୍ୱିତୀୟ ଯୁଦ୍ଧରେ ପାଇଥିଲେ ବୀରର ସମ୍ମାନ। ସେ ଦିନ ଥିଲା ତାଙ୍କ ଜୀବନ ଇତିହାସରେ ଚରମ ଦିନ। ସେ କହିଲେ, ୧୫ ଅଗଷ୍ଟ ୧୯୪୭। ସେଇଦିନ ସେ କ୍ଷମତା ହସ୍ତାନ୍ତର କରିବେ। ସତେ ଯେମିତି ଏକ ଶକ୍ତିଶାଳୀ ବୋମାର ବିସ୍ଫୋରଣ ହେଲା, ସମସ୍ତେ ସ୍ତବ୍ଧ ହୋଇଗଲେ। ମାଉଣ୍ଟବେଟେନଙ୍କର ଅନ୍ତରଙ୍ଗ ବନ୍ଧୁ, ବ୍ରିଟିଶ୍ ପାର୍ଲିଆମେଣ୍ଟ, ବକିମହାମ ପ୍ୟାଲେସ, କୌଣସି ଭାରତୀୟ ନେତା କିମ୍ବା ପୃଥିବୀର କେହି ରାଜନୀତି ବିଶାରଦ, କେହି ହେଲେ ଅନୁମାନ କରିନଥିଲେ ଭାରତର ସ୍ୱାଧନତା ଦିବସକୁ। ମାଉଣ୍ଟବେଟନ ଆଗରୁ ଭାବିନଥିଲେ କି ସ୍ଥିର କରି ନଥିଲେ। ପ୍ରଶ୍ନକର୍ତ୍ତାଙ୍କୁ ଉତ୍ତର ଦେଉ ଦେଉ ଜାପାନର ଆତ୍ମସମର୍ପଣ ଦିନ ମନେ ପଡ଼ିବାରୁ ହଠାତ୍ ସେ କହିଦେଲେ ୧୯୪୭ ମସିହା ଅଗଷ୍ଟ ପନ୍ଦର ତାରିଖରେ କ୍ଷମତା ହସ୍ତାନ୍ତର କରିବେ ଓ ଭାରତ ସ୍ୱାଧିନ ହେବ। ଭାରତର କୌଣସି ଦଳର ପ୍ରତିନିଧି କିମ୍ବା ଜ୍ୟୋତିଶଶାସ୍ତ୍ରବିତ୍ ମାନଙ୍କ ସହ କି ବିଲାତର ଅଟଳି ସରକାରଙ୍କ ସହିତ ସେ ପରାମର୍ଶ କରି ନଥିଲେ। ଭାରତ ସ୍ୱାଧିନ

ହେବାକୁ ନେଇ ସାରା ବିଶ୍ୱରେ ଚହଳ ପଡ଼ିଗଲା । ନିଜ ସଫଳତାରେ ମାଉଣ୍ଟବେଟେନ ଖୁସିରେ ଅଧୀର ହୋଇପଡ଼ିଲେ । ଯାହା ଦିନେ ଅସମ୍ଭବ ବୋଲି କୁହାଯାଉଥିଲା । ତାହା ଆଜି ସଫଳ ହୋଇଛି । ଭାବି ସେ ନିଜର କୃତିତ୍ୱକୁ ଧନ୍ୟବାଦ ଦେଲେ । ତାଙ୍କର ମନେ ପଡ଼ିଲା ଗାନ୍ଧିଙ୍କ କଥା । ସେ ଥରେ କହିଥିଲେ ଗାନ୍ଧି ଦିନେ ଯୀଶୁ ଓ ବୁଦ୍ଧଙ୍କ ପରି ପୂଜା ପାଇବେ । ଭାରତ ବିଭାଜନକୁ ସେ ବିରୋଧ କରୁଥିଲେ, ତାଙ୍କର କିନ୍ତୁ ପରାଜୟ ହେଲା ଏହା କ'ଣ ସତରେ ପରାଜୟ ? ସେ ଭାବିଲେ ନା, ଦ୍ୱିତୀୟ ବିଶ୍ୱଯୁଦ୍ଧ ପରେ ଗଣତାନ୍ତ୍ରିକ ଚେତନା ସାରା ବିଶ୍ୱରେ ବ୍ୟାପୀ ଯିବାରୁ ବହୁଦେଶ ସ୍ୱାଧିନ ହେଲେ, ଭାରତ ବି ହେଲା, କିନ୍ତୁ ଅହିଂସା, ସତ୍ୟ ଓ ଆଧ୍ୟାତ୍ମିକତା ତାଙ୍କୁ ସାରା କାଳ ପାଇଁ ମୁକୁଟ ବିହୀନ ସମ୍ରାଟ କରିରଖିବ । ତେଣୁ ତାଙ୍କର ପରାଜୟ ନାହିଁ । ବରଂ ସ୍ୱାଧିନତା ପାଇଁ ଲଢ଼େଇ କରି ସେ ଜିତିଥିଲେ । ଅହିଂସା ଯୁଦ୍ଧ କରି ସାର୍ବଭୌମ ବ୍ରିଟିଶ୍ ସାମ୍ରାଜ୍ୟକୁ ସେ ଭାଙ୍ଗିଦେଲେ, ତାଙ୍କର ପୁଣି ପରାଜୟ କ'ଣ ? କିନ୍ତୁ ମୃତ୍ୟୁ ତାଙ୍କର ବିଷାଦମୟ ହେବ । କାରଣ ଯେଉଁ କଂଗ୍ରେସ ଦଳକୁ ସେ ଗଢ଼ିଥିଲେ ଦୁର୍ବାର ଶକ୍ତି ଭାବରେ, ସେ ଆଉ ତାଙ୍କ ନିୟନ୍ତ୍ରଣରେ ରହିଲା ନାହିଁ । ମୁଖ୍ୟ ନେତାମାନଙ୍କ ଭିତରେ ପ୍ରତିଯୋଗିତା ହେତୁ ବିଭାଜନକୁ ବିରୋଧ କରିବା ପାଇଁ ସେ କଂଗ୍ରେସ ଦଳକୁ ଡ଼ାକରା ଦେଇପାରିଲେ ନାହିଁ । ତ୍ୟାଗ ଆଉ ଆତ୍ମବଳୀଦାନର କେବେ କ'ଣ ପରାଜୟ ହୁଏ ? ମୁକୁଟ ବିହୀନ ସମ୍ରାଟ୍ ଭାବରେ ସେ ଅମର ହୋଇରହିବେ, ଏହା ତାଙ୍କର ପରାଜୟ ନୁହେଁ, ବରଂ ମହାଭାରତ ଯୁଦ୍ଧରେ ନିଜ ଜ୍ଞାତି କୁଟୁମ୍ବ ଭିତରେ ହତ୍ୟାକାଣ୍ଡର ବିଭତ୍ସ ଦୃଶ୍ୟ ଦେଖିବା ପୂର୍ବରୁ ଭୀଷ୍ମଙ୍କ ପରି ଏହା ତାଙ୍କର ଅସ୍ତ୍ରତ୍ୟାଗ ଓ ଶରଶଯ୍ୟା । ସେ ପୁଣି ଭାବିଲେ ଯେ ସେ କାହାରି ସହିତ ବିଚାର ବିମର୍ଷ ନକରି ସ୍ୱାଧିନତା ଦିବସ ଘୋଷଣା କରିଦେବା । ଏପରି ଏକ ଗୁରୁତର ନିଷ୍ପତ୍ତି ନେବା ବେଳେ ଲକ୍ଷ ଲକ୍ଷ ହିନ୍ଦୁ ମାନଙ୍କର ପରମ୍ପରାକୁ ମଧ୍ୟ ସେ ବିଚାରକୁ ନେଇ ନାହାଁନ୍ତି । ଭାରତ ମୁଖ୍ୟତଃ ଏକ ହିନ୍ଦୁ ରାଷ୍ଟ୍ର । କୌଣସି ହିନ୍ଦୁ କେବେ ଘରତୋଳିବା, ଯାତ୍ରା କରିବା, ଚୁକ୍ତିପତ୍ର ସ୍ୱାକ୍ଷର କରିବା, ଶୀକାର ପାଇଁ ଯିବା, ନୂଆ ଘରେ ପ୍ରବେଶ କରିବା, ମୂଲ୍ୟବାନ ରତ୍ନ କିଣିବା, ବିବାହ କରିବା ଏବଂ

ଏପରିକି ଅନ୍ତେଷ୍ଟିକ୍ରିୟା କରିବା ବେଳେ ଜ୍ୟୋତିଷ ମାନଙ୍କର ପରାମର୍ଶ ନିଆଯାଏ। ସେ ତା ବି କରିନାହାଁନ୍ତି। ଏହାଦ୍ୱାରା କୋଟି କୋଟି ଲୋକଙ୍କର ମନରେ ଆଘାତ ଦେଇଛି। ଇଂରେଜ ସରକାରଙ୍କ ପ୍ରତି ଭାରତ ଲୋକେ ଯେପରି ଆନୁଗତ୍ୟ ଦେଖାଇ ଆସିଛନ୍ତି ତାହାର ତୁଳନା ସାରା ବିଶ୍ୱରେ ନାହିଁ। ଏପରି ଅବସ୍ଥାରେ କାହାରି ସହିତ କିଛି ବିଚାର ବିମର୍ଷ ନକରି କ୍ଷମତା ହସ୍ତାନ୍ତର କରିବାକୁ ଦିନ ଧାର୍ଯ୍ୟ କରିବା ଏକ ଅକ୍ଷମଣୀୟ ଅପରାଧ। ତେବେ ଆଉ ଉପାୟ କ'ଣ ? ରାତି ପାହିଲା ବେଳକୁ ଏକଥା ସାରା ବିଶ୍ୱରେ ପ୍ରଚାରିତ ହୋଇଯିବ। ସେ ତାଙ୍କର ଦିନଧାର୍ଯ୍ୟ ସଂଶୋଧନ କରିବା ବା ବଦଳାଇ ଦେବା ଇଂରେଜ ଜାତିର ନୀତି ବିରୁଦ୍ଧ। ଘୋଷଣା ଅନୁସାରେ ହିଁ ତାଙ୍କୁ ସବୁକାମ ସାରିବାକୁ ହେବ। କିନ୍ତୁ ଜ୍ୟୋତିଷମାନେ ଗଣା ପୋଛା ଆରମ୍ଭ କରିଦେଲେ। ଜ୍ୟୋତିଷ ବିଦ୍ୟାରେ ବାରମାସର ଗଣନା ସବୁ ଦେଖିବାକୁ ଲାଗିଲେ। ବନାରସ ଭଳି ପବିତ୍ର ସହର ମାନଙ୍କରେ ଜ୍ୟୋତିଷ ମାନଙ୍କର ଗହଳି ଲାଗିଲା। କଲିକତାର ସ୍ୱାମୀ ମଦନାନନ୍ଦ ଗଣନଶାସ୍ତ୍ରରୁ ଜାଣି ପାରିଲେ ଯେ, ୨୭ଗୋଟି ନକ୍ଷତ୍ରର ପ୍ରଭାବ ଯୋଗୁ ପୃଥିବୀ ନାନା ପ୍ରକାର ବିତପାତ୍ ଆଡ଼କୁ ଯାଉଛି। ବନ୍ୟା, ମରୁଡ଼ି, ମହାମାରି ଘୋଟିଯିବ। ସୂର୍ଯ୍ୟ, ଚନ୍ଦ୍ର ଏବଂ ଗ୍ରହ ନକ୍ଷତ୍ରମାନଙ୍କର ପ୍ରଭାବ ପୃଥିବୀକୁ ଧ୍ୱଂସ ଆଡ଼କୁ ନେଇଯିବ। ଅଗଷ୍ଟ ପନ୍ଦର ତାରିଖ ଦେଶପାଇଁ ଅଶୁଭ। ସାଂପ୍ରଦାୟିକ ଦଙ୍ଗା ଲାଗିରହିବ। ଆସାମର ଜଣେ ତାନ୍ତ୍ରିକ ଜ୍ୟୋତିଷ ମାଉଣ୍ଟବେଟେନଙ୍କୁ ଲେଖି ଜଣାଇଲେ, "ଗ୍ରହ ନକ୍ଷତ୍ରମାନଙ୍କର ଅଶୁଭ ଦୃଷ୍ଟି ଭାରତ ଉପରେ ଅଛି।"

## ମହାବିପତ୍ତି

ଏପରି ଏକ ମହାବିପତ୍ତି ମାନବ ଇତିହାସରେ ଆଗରୁ କେବେ ଘଟି ନଥିଲା ଯାହା ଏବେ ଘଟିବାକୁ ଯାଉଛି। ଭାରତର ୪୦୦ ମିଲିୟନ ଲୋକ ଗୋଟିଏ ପରିବାର ହୋଇ ଯୁଗଯୁଗ ଧରି ଚଳି ଆସିଛନ୍ତି। ଯାହାସବୁ ସେମାନଙ୍କର ଅଛି, ସେସବୁ ସେମାନଙ୍କର ମିଳିତ ଅର୍ଜନ। ପୃଥିବୀର ଏକ ଭୂଖଣ୍ଡରେ ସେମାନେ ହଜାର

ହଜାର ବର୍ଷଧରି ଚଳିଆସିଛନ୍ତି । ତାଙ୍କର ଘରଦ୍ୱାର, ଜମିବାଡ଼ି ଟଙ୍କା ପଇସା, ଏସବୁ ଭାଗ ଭାଗ ହେବ । କେମିତି ଏସବୁ ଭାଗ ହେବ । ଭାଇ ଭାଗ ବେଳେ ଅଶାନ୍ତି ଉପୁଜେ, ଗଣ୍ଡଗୋଳ ମାରପିଟ ହୁଏ, ବେଳେବେଳେ ବିବାଦ ତୁଟାଇବାକୁ କୋର୍ଟରେ କେଶ ହୁଏ । ବିପଦ ନ ତୁଟିଲା ପର୍ଯ୍ୟନ୍ତ ଅଶାନ୍ତି ଲାଗିରହିଥାଏ । ଭାରତ ପାକିସ୍ଥାନ ମଧ୍ୟରେ ସଂପତ୍ତି ଭାଗକୁ ନେଇ ନିଶ୍ଚୟ ଗଣ୍ଡଗୋଳ ହେବ । ଏ ଗଣ୍ଡଗୋଳ ସାଂପ୍ରଦାୟିକ ହିଂସାକାଣ୍ଡର ରୂପ ନେଇପାରେ । ତାହା ପୁଣି ସାରା ଦେଶକୁ ବ୍ୟାପି ଯାଇପାରେ । ଆଶା ଓ ଆଶଙ୍କା ଭିତରେ ସାରା ଦେଶ ଉତ୍ତେଜନାପ୍ରବଣ । ଅଗଷ୍ଟ ପନ୍ଦର ତାରିଖ ହେବାକୁ ଆଉ ୭୩ ଦିନ ବାକି ଅଛି । ପାଉଁଶ ତଳର ନିଆଁପରି ଦିକ୍ ଦିକ୍ କରୁଛି ଉଗ୍ର ହିଂସାକାଣ୍ଡର ଅଗ୍ନି । ମାଉଣ୍ଟବେଟେନ ଅସ୍ଥିର ଅନୁଭବ କଲେ । ସେ ଭାବିଲେ, କ୍ଷମତା ହସ୍ତାନ୍ତର ପୂର୍ବରୁ ଯେପରି ସାଂପ୍ରଦାୟିକ ହିଂସାକାଣ୍ଡ ନଘଟେ ସେଥିପାଇଁ ସବୁ ସ୍ତରରେ ଯତ୍ନର ସହିତ ସତର୍କ ଦୃଷ୍ଟି ରଖିବାକୁ ହେବ । ଏଥିପାଇଁ ସାରା ଦେଶର ପୁଲିସି ଅଧିକାରୀ ମାନଙ୍କ ଉପରେ ମାଉଣ୍ଟବେଟେନ ତାଙ୍କର ନିର୍ଦ୍ଦେଶନାମା ଜାରି କରିଦେଲେ । ମନେ ହେଲା ସତେ ଯେମିତି ସାରାଦେଶ ଏକ ଜୀବନ୍ତ ଆଗ୍ନେୟ ଗିରି ଉପରେ ବସିଛି । କେତେବେଳେ ଯେ ତାର ଗଳିତ ଲାଭାର ଉଦ୍‌ଗୀରଣ ଦେଶଟାକୁ ଛାରଖାର କରିଦେବ, କହି ହେଉନାହିଁ କି କଳନା କରିହେଉ ନାହିଁ । ଉଭୟ ସଂପ୍ରଦାୟ ଭିତରେ ଆଶ୍ୱସ୍ତି ଆଣିବା ପାଇଁ ଜଣେ ହିନ୍ଦୁ ଓ ଜଣେ ମୁସଲମାନଙ୍କୁ ଦାୟିତ୍ୱ ଦିଆଗଲା । ସଂପତ୍ତିର ତାଲିକା ପ୍ରସ୍ତୁତ କରିବା ପାଇଁ ହିନ୍ଦୁଜଣଙ୍କର ନାମ ହେଲା ଏନ୍.ଏସ୍ ପାଟିଲ୍ ଏବଂ ମୁସଲମାନ୍ ଜଣଙ୍କ ନାମ ହେଲା ଚୌଦିନ ମହମ୍ମଦ ଅଲ୍ଲୀ । ସେ ଦୁଇଜଣ ଥିଲେ ସମାନ ସୁବିଧା ପାଉଥିବା ସରକାରୀ କର୍ମଚାରୀ । ଜୁନ ଠାରୁ ଅଗଷ୍ଟ ମାସ ମଧ୍ୟରେ ଦେଶର ସମସ୍ତ ସରକାରୀ ସଂପତ୍ତିର ତାଲିକା ସେମାନେ ପ୍ରସ୍ତୁତ କଲେ । ସେ ସବୁ ତାଲିକାକୁ ପରୀକ୍ଷା କରିବା ପାଇଁ କେତୋଟି କମିଟି ଓ ସବ୍ କମିଟି ଗଠନ କରାଗଲା ଏବ ଫାଇନାଲ କମିଟିର ଚେୟାରମ୍ୟାନ ରହିଲେ ନିଜେ ମାଉଣ୍ଟବେଟେନ । କଂଗ୍ରେସର ଦାବୀ ଅନୁସାରେ ଦେଶର ନାମ ରହିଲା (ଭାରତ)

ଏବଂ ଯେଉଁମାନେ ଭାରତ ଠାରୁ ଅଲଗା ହୋଇଗଲେ, ସେମାନଙ୍କ ଦେଶର ନାମ ହେଲା ପାକିସ୍ଥାନ । ତାପରେ ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ଅର୍ଥରାଶୀ କଥା ବିଚାରକୁ ଆସିଲା । ଯୁଦ୍ଧ ବେଳେ ଯେଉଁ ଖର୍ଚ୍ଚ ହୋଇଥିଲା ସେ ସବୁ ବିଚାରକୁ ଆସିଲା । ସେ କାର୍ଯ୍ୟକୁ ସରକାରଙ୍କ ଉପରେ ଦେୟ ଥିଲା ୫ ବିଲିୟନ ଡଲାର, ତା ସାଙ୍ଗକୁ ଷ୍ଟେଟ୍ ବ୍ୟାଙ୍କରେ ଥିବା ଟଙ୍କା, ସୁନା ମୋହର, ସୁନା ଖଣ୍ଡ, ନଗଦ ଟଙ୍କା ଏବଂ ଷ୍ଟେଟ୍ କମିଶନରଙ୍କ ପାଖରେ ଥିବା ପୋଷ୍ଟାଲ ଷ୍ଟାମ୍ପ ଏବଂ ନାଗାମାନଙ୍କର ମୁଣ୍ଡକାଟ ବାବଦରେ ଦେୟ ଇତ୍ୟାଦି ସବୁ ଭାଗ କରିବାର ତାଲିକା ପ୍ରସ୍ତୁତ ହେଲା । ଏସବୁ ଭାଗ କରିବାର ବିବାଦ ହେତୁ, ସର୍ଦ୍ଦାର ବଲ୍ଲଭ ଭାଇ ପଟେଲଙ୍କର ସାହାଯ୍ୟ ନେବାପାଇଁ ତାଙ୍କ ପାଖରେ ପହଞ୍ଚିଲେ । ସେଠାରେ ନିଷ୍ପତ୍ତି ହେଲା ଯେ ବ୍ୟାଙ୍କରେ ଥବା ଟଙ୍କାରୁ ପାକିସ୍ଥାନ ୧୭.୫% ପାଇବ ଏବଂ ଭାରତର ଜାତୀୟ ଋଣର ୧୭.୫% ସୁଝିବ ଏବଂ ଭାରତର ଚଳନ୍ତି ସଂପତ୍ତିର ଶତକଡ଼ା ୮୦% ଭାରତ ଓ ୨୦% ପାକିସ୍ଥାନ ପାଇବ । ତେଣୁ ସାରା ଭାରତରେ ସମସ୍ତ ସରକାରୀ ଅଫିସର ଚେୟାର ଟେବୁଲ, ଟାଇପ ରାଇଟର ଇତ୍ୟାଦି ସବୁ ସରଞ୍ଜାମ ଗଣାହେଲା । ଭାରତ ଓ ପାକିସ୍ଥାନ ସେଥିରେ କେତେ ପାଇବେ ସ୍ଥିର ହୋଇଥିଲା । ତଥାପି ଛୋଟ ଛୋଟ ଜିନିଷପତ୍ରକୁ ନେଇ ଉଭୟ ମଧ୍ୟରେ ଘୋର ବିବାଦ ଏବଂ ଏପରିକି ମାରପିଟି ହେଲା, ପୁଣି ଅନେକ ଦିନ ପର୍ଯ୍ୟନ୍ତ, ସମୁଦ୍ରରେ ମରିଯାଉଥିବା ନାବିକ ମାନଙ୍କ୍ ବିଧବା ପତ୍ନୀମାନଙ୍କୁ ଭାରତ ନା ପାକିସ୍ଥାନ, କିଏ ପେନ୍‌ସନ୍ ଦେବ, ସେଥିନେଇ ବିବାଦ ଓ ଯୁକ୍ତିତର୍କ ଲାଗି ରହିଲା ହିନ୍ଦୁ ବିଧବା ମାନେ ଯେଉଁଠିବା ଥାଆନ୍ତୁ ସେମାନଙ୍କୁ ପାକିସ୍ଥାନ ପେନ୍‌ସନ୍ ଦେବା ପାଇଁ ସ୍ଥିର ହେଲା । ୧୮୦୭୭ ମାଇଲ ସଡ଼କପଥରୁ ୪୯୨୩ମାଇଲ ଏବଂ ୨୬୪୨୩ ମାଇଲ ରେଳପଥରୁ ୭୧୩୨ ମାଇଲ ପାକିସ୍ଥାନ ପାଇବ । ରାଜପଥ ଓ ରେଳ ବିଭାଗର ଯନ୍ତ୍ରପାତି ରେଳ ୱାଗନର ଇତ୍ୟାଦିର ୮୦/୨୦ % ଭାରତ ଓ ପାକିସ୍ଥାନ ପାଇବେ । ସବୁଠାରୁ ବେଶି ଯୁକ୍ତିତର୍କ ହେଲା । ଲାଇବ୍ରେରୀରେ ଥବା ବହିର ଭାଗ ବଣ୍ଟାରାକୁ ନେଇ । ସମାନ ସମାନ କରି ବାଣ୍ଟି

ଦିଆଗଲା ଏବଂ ଯାହାର ମାତ୍ର ଗୋଟିଏ କପି ଥିଲା ତାକୁ କିଏ ସେ ପାଇବ ସେ କ୍ଷମତା ଲିବରେସନକୁ ଦିଆଗଲା । ଇଣ୍ଟେଲିଜେନସ୍ ବ୍ୟୁରୋର ଅଫିସର ମାନେ ଭାଗ ଭାଗ ହେବାକୁ ମନା କରିଦେଲେ । ସେମାନେ କହିଲେ ଯେ, ସେମାନେ ଗୋଟାଏ କିମ୍ବା ଟେବୁଲ ନୁହନ୍ତି ଯେ ସେମାନଙ୍କୁ ଭାଗ କରିଦିଆଯିବ । ତାଛଡ଼ା ଭାଗ କରିଦେଲେ ବ୍ୟୁରୋର ଦକ୍ଷତା ରହିବ ନାହିଁ । ଭାରତର ନୋଟ୍‌କୁ (ଟଙ୍କା) ପାକିସ୍ତାନ ଗ୍ରହଣ କଲେ ନାହିଁ । ଟଙ୍କା ଛାପିବା ପାଇଁ ସେମାନଙ୍କ ପାଖରେ ପ୍ରେସ୍ ନଥିଲା । ତେଣୁ ଯେଉଁ ନୋଟ୍‌କୁ ସେମାନେ ପାଇଲେ ତାପରେ 'ପାକିସ୍ତାନ' ବୋଲି ରବର ଷ୍ଟାମ୍ପ ମୋହର ମାରି ତାକୁ ଚଳାଇଲେ । ଯେଉଁ ପୂର୍ବ ବଙ୍ଗ ପାକିସ୍ତାନକୁ ଯିବାର ଥିଲା ତାର ୭୦,୦୦୦ ଟନ୍ ଚାଉଳ ଓ ୩୦,୦୦୦ ଗହମ ଅଭାବ ଥିଲା । ୧୯୪୭ ମସିହାରେ ସିନ୍ଧୁ ପ୍ରଦେଶ ଯେଉଁ ୧୧୦୦୦ ଟନ୍ ଚାଉଳ ଦିଲ୍ଲୀକୁ ପଠାଇଥିଲେ ତାକୁ ଫେରି ପାଇବାକୁ ମୁସଲିମ୍ ମାନେ ଦାବୀ କରି ତାକୁ ସେମାନେ ଫେରିପାଇଲେ ନାହିଁ । ଜଣେ ମୋଗଲ ସମ୍ରାଟଙ୍କ ଦ୍ୱାରା ତାଜମହଲ ନିର୍ମାଣ ହୋଇଥିବାରୁ, ସିନ୍ଧୁନଦୀ ମୁସଲିମ୍ ଅଞ୍ଚଳ ଦେଇ ପ୍ରବାହିତ ହେଉଥିବାରୁ, ତାକୁ ପାକିସ୍ତାନକୁ ଦେବା ପାଇଁ ମୁସଲିମ ମାନେ ଦାବୀ କଲେ । କିନ୍ତୁ ୨୫୦୦ ବର୍ଷ ପୂର୍ବେ ସେଇ ନଦୀ କୂଳରେ ପବିତ୍ର ବେଦ ରଚନା ହୋଇଥିବାରୁ ହିନ୍ଦୁ ସନ୍ୟାସୀମାନେ ଆପତ୍ତି ଉଠାଇଲେ । ଭାଇସରାଏଙ୍କର ସୁବର୍ଣ୍ଣ ସଜ୍ଜିତ ଟ୍ରେନ୍ ଭାରତକୁ ଦିଆଗଲା ଏବଂ ଚିଫ୍ ଅଫ୍ ଆର୍ମି ଅଫ୍ ଇଣ୍ଡିଆ ପଞ୍ଜାବର ଗଭର୍ଣ୍ଣରଙ୍କ ପ୍ରାଇଭେଟ୍ କାର ଗୁଡ଼ିକୁ ପାକିସ୍ତାନକୁ ଗଲା । ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ହେଲା ଯେତେବେଳେ ଭାଇସରାଏଙ୍କ ପ୍ରାସାଦର ସଂପତ୍ତି ଭାଗ କରାଗଲା । ପ୍ରଶ୍ନଥିଲା କିଏ କ'ଣ ପାଇବେ । ବାରଟି ଘୋଡ଼ା ଟାଣିବା ରାଜକୀୟ ଗାଡ଼ି, ତାର ସୁନା ଛାଉଣୀର ଗଦି ଓ ଉଜ୍ଜ୍ୱଳ ରତ୍ନମାନ ଯାହା ସବୁଥିଲା ଶାସନର ସଂକେତ । ସେଥି ମଧ୍ୟରୁ ଛଟି ସୁନା ଛାଉଣି ଓ ଛଟି ରୂପା ଛାଉଣୀ । ପ୍ରତ୍ୟେକ ଭାଇସରାଏ, ପ୍ରତ୍ୟେକ ରାଜା ମହାରାଜା ଯେତେବେଳେ ଅତିଥି ଭାବରେ ସେଠାରେ ରହନ୍ତି, ସେଥିମଧ୍ୟରୁ ଗୋଟିଏ ତାଙ୍କ ସେବାରେ ନିୟୋଜିତ ହୁଏ । ସ୍ଥିର ହେଲା ଯେ ସେ ମଧ୍ୟରୁ ଗୋଟିଏ ପାଇବ ଭାରତ

ଓ ଆରଟି ପାଇବ ପାକିସ୍ଥାନ । ମାଉଣ୍ଟବେଟେନ ସମ୍ମତି ଜଣାଇ ନୂଆ କରି ପାକିସ୍ଥାନର ଭାବାବେଗକୁ ସମ୍ମାନ ଦେଇ ନେତାମାନଙ୍କ ଉପସ୍ଥିତିରେ ଗୋଟିଏ ମୁଦ୍ରାର ଟସଲ ଦ୍ୱାରା ସ୍ଥିର ହେଲା ଯେ ସୁନା ଛାଉଣୀ ଗୁଡ଼ିକ ଭାରତ ଓ ରୂପା ଗାଡ଼ି ଗୁଡ଼ିକୁ ପାକିସ୍ଥାନ ପାଇବ । ସେ ସବୁର ଗଣନା ସରିଥିଲା ଓ ପୋଷାକ ଇତ୍ୟାଦି ଭାଗ ହୋଇଗଲା । ଶେଷକୁ ଆଉ ଗୋଟିଏ ଜିନିଷ ରହିଗଲା, ତାହେଲା ଭାଇସରାଏଙ୍କର ପୋଷ୍ଟ ହର୍ଣ୍ଣ । ତାକୁ ଯଦି ଭାଙ୍ଗିଦିଆଯାଏ ତେବେ ବାଜିବ ନାହିଁ, ତେଣୁ ଭାଇସରାଏ କହିଲେ, ତାକୁ ନଭାଙ୍ଗି ସେ ନିଜ ପାଖରେ ରଖିବେ । ଏହା କହି ସେ ତାକୁ ନେଇଗଲେ । ତାପରେ ବହିପତ୍ର ଚେୟାର ଟେବୁଲ ଓ ଉପର ଠାରୁ ତଳ ପର୍ଯ୍ୟନ୍ତ ସବୁ କର୍ମଚାରୀଙ୍କ ଇଛା ମୁତାବକ ଦୁଇଦେଶ ମଧ୍ୟରେ ବାଣ୍ଟି ଦିଆଗଲା । ଏହାପରେ ସବୁଠାରୁ ଦୁଃଖପୂର୍ଣ୍ଣ କଥା ହେଲା ୧.୨ ମିଲିୟନ ହିନ୍ଦୁ, ମୁସଲିମ୍, ଶୀଖ୍ ଏବଂ ଇଂରେଜ ମାନଙ୍କୁ ନେଇ ଗଠିତ ହୋଇଥିବା ସୈନ୍ୟ ବାହିନୀର ଭାଗ ବଣ୍ଟରା । ଏବାବଦରେ ମାଉଣ୍ଟବେଟେନ ଜିନାଙ୍କୁ କହିଗଲେ, ବିଭାଜନ ବେଳେ ଯେଉଁ ଆଇନ ଶୃଙ୍ଖଳା ସମସ୍ୟା ସୃଷ୍ଟି ହେବ, ତାଙ୍କୁ ସମ୍ଭାଳିବା ପାଇଁ ସୈନ୍ୟବାହିନୀକୁ ନଭାଙ୍ଗି, ପୁରାପୁରି ବ୍ରିଟିଶ୍ ସୁପ୍ରିମ୍ କମାଣ୍ଡର ଅଧୀନରେ ବର୍ଷକ ପାଇଁ ରଖାଯାଉ । ଜିନା ମନା କରିଦେଲେ, କହିଲେ ସୈନ୍ୟ ବାହିନୀରେ ଏକ ଭାଗ ମୁସଲିମ୍ ଓ ଦୁଇଭାଗ ହିନ୍ଦୁ ଏବଂ ଶୀଖ୍ ଅଛନ୍ତି । ତେଣୁ ଅଗଷ୍ଟ ପନ୍ଦର ପରେ ସୀମାନ୍ତ ଅଞ୍ଚଳରେ ଯେଉଁ ହିଂସାକାଣ୍ଡ ଘଟିବ ତାକୁ ସମ୍ଭାଳିବା ପାଇଁ ସୈନ୍ୟ ବାହିନୀକୁ ଭାଗ କରି ଦିଆଯାଉ, କାରଣ ଯେକୌଣସି ଦେଶର ସାର୍ବଭୌମ ଅଖଣ୍ଡତାକୁ କେବଳ ସୈନ୍ୟବାହିନୀ ରକ୍ଷା କରିପାରିବ ।

ଭାରତର ବିଭାଜନ ହୋଇଗଲା କିନ୍ତୁ ରାଜା ମହାରାଜା ମାନେ ନିଜର ସ୍ୱତନ୍ତ୍ର ପରିଚୟ ଅକ୍ଷୁର୍ଣ୍ଣ ରଖିବା ପାଇଁ ଭାରତ କିମ୍ବା ପାକିସ୍ଥାନରେ ନରହି ଏକ ସ୍ୱତନ୍ତ୍ର ରାଷ୍ଟ୍ର ଗଠନ କରିବାକୁ ଦାବୀ କଲେ । କାରଣ ସେମାନେ ତାଙ୍କର ସ୍ୱତନ୍ତ୍ର ରାଜ୍ୟ, କ୍ଷମତା ଓ ରାଜକୀୟ ପରଂପରାକୁ ଅକ୍ଷୁର୍ଣ୍ଣ କରି ରଖିବାକୁ ଚାହାନ୍ତି । ସେମାନଙ୍କର ଚାନ୍ସେଲ୍‌ର ହେଉଛନ୍ତି ପାଟିଆଲାର ମହାରାଜ ଯବେନ୍ଦ୍ର ସିଂ ।

କେତେକ ରାଜା ମହାରାଜାଙ୍କର ଉଡ଼ାଜାହାଜ, ସୈନ୍ୟ ବାହିନୀ। ସେମାନେ ଚାହିଁଲେ ନିଜ ଅଧିନରେ ରଖିବାକୁ ଏବଂ ଏପରିକି ଉଡ଼ାଜାହାଜ ସେବାକୁ ଅଚଳ କରିଦେବେ। ଭାରତର ରାଜନୀତିଜ୍ଞ ମାନେ ଯଦି ଭାରତକୁ ଭାଗ ଭାଗ କରିପାରନ୍ତି। ତେବେ ରାଜା ମହାରାଜାମାନେ ଭାରତକୁ ବି ଧ୍ୱଂସ କରିପାରନ୍ତି। ୫୬୫ ରାଜା ମହାରାଜା ମାନେ ପାଟିଆଲାର ଚାମ୍ବର ଅଫ୍ ପ୍ରିନସେସ୍‌ରେ ଏକତ୍ର ହୋଇ ମାଉଣ୍ଟବେଟେନଙ୍କୁ ଜଣାଇ ଦେଲେ ଯେ, ଯୁଗ ଯୁଗ ଧରି ଶାସନ କରି ଆସୁଥିବା ରାଜା ମହାରାଜା ମାନଙ୍କର ଯଦି କ୍ଷମତା ଉଚ୍ଛେଦ ହୁଏ, ତେବେ ସେମାନେ ଭାରତକୁ ଧ୍ୱଂସ କରିଦେବେ। ସେମାନଙ୍କ ଦାବୀକୁ ଶୁଣାଗଲେ, ଭାରତ ବହୁ ଖଣ୍ଡରେ ବିଭକ୍ତ ହୋଇଯିବ ଏବଂ ସେମାନଙ୍କର ପରସ୍ପର ଶତୃତା ଚୀନକୁ ସୁହାଇବ। ସାର୍ କମାଣ୍ଡ କନଫିଲ୍ଡ଼ ଗୋପନରେ ଲଣ୍ଡନକୁ ଯାଇ ଏସବୁ ବିଲାତ ସରକାରକୁ ଜଣାଇଦେଇ କହିଲେ ଯେ, ରାଜା ମହାରାଜାମାନେ ବ୍ରିଟିଶ୍ ସମ୍ରାଟଙ୍କ ନିକଟରେ ଯେଉଁ କ୍ଷମତା ସମର୍ପଣ କରିଥିଲେ। ତାକୁ ସେମାନଙ୍କୁ ଫେରାଇ ଦେବାକୁ ସେମାନେ ଦାବୀ କରୁଛନ୍ତି। ଏକଥା ତାଙ୍କୁ କେହି କହି ନଥିଲେ ବୋଲି ମାଉଣ୍ଟବେଟେନ ତାଙ୍କର ଏକ ରିପୋର୍ଟରେ ବିଲାତ ସରକାରଙ୍କୁ ଜଣାଇ ଦେଇଥିଲେ। କିନ୍ତୁ ଏକଥା ସତଯେ, ତାଙ୍କ ଛଡ଼ା ଆଉ କେହି ରାଜାମାନଙ୍କୁ ଶାନ୍ତ କରିପାରିବ ନାହିଁ। କାରଣ ରାଜାମାନଙ୍କ ଭିତରେ ଅନେକ ତାଙ୍କର ବନ୍ଧୁ ଥିଲେ। ଯେତେ ହେଲେବି ସେଥିଲେ ସେମାନଙ୍କ ଭଳି ରାଜବଂଶଜ। ସେମାନଙ୍କ ସାଙ୍ଗରେ ସେ ଖେଳିଛନ୍ତି, ବହୁମୂଲ୍ୟ ମଦ୍ୟପାନ କରିଛନ୍ତି, ତାଙ୍କ ରଙ୍ଗଶାଳାରେ ଏବଂ ସେମାନଙ୍କ ସାଙ୍ଗରେ ହାତୀ ଉପରେ ବସି ଘଞ୍ଚ ଅରଣ୍ୟରେ ବାଘ ଶୀକାର କରିଛନ୍ତି । ସାଙ୍ଗରେ ଯେଉଁ ଝିଅକୁ ନେଇ ଚାଲିଛନ୍ତି ଓ ପରେ ତାଙ୍କୁ ବିବାହ କରିଛନ୍ତି। ଏତେ ଘନିଷ୍ଠ ସଂପର୍କ ଥିବା ରାଜା ମାନଙ୍କୁ ତାଙ୍କ ଛଡ଼ା ଆଉ କିଏ ଅଧିକ ବୁଝାଇ ପାରିବ ? ସବୁ ରାଜା ମହାରାଜା ମାନେ ମାଉଣ୍ଟବେଟେନଙ୍କ ପ୍ରତି ଏପରି ବିଶ୍ୱାସ ହେତୁ ସେମାନେ ତାଙ୍କ ଉପରେ ଭରସା କରିଥିଲେ। କିନ୍ତୁ ମାଉଣ୍ଟବେଟେନ ତାଙ୍କୁ ଯେତେ ବି କହିଲେ ସେମାନେ ତାଙ୍କର ଦାବୀ ଫେରାଇ

ନେଇ ପାରିଲେ ନାହିଁ, ସେତେବେଳେ ସେମାନେ ନିରୁପାୟ ହୋଇଗଲେ। ମାଉଣ୍ଟବେଟେନ ସେମାନଙ୍କୁ ବୁଝାସୁଝା କରି ଅଗଷ୍ଟ ପନ୍ଦର ପୂର୍ବରୁ କିଏ ଭାରତ ଓ କିଏ ପାକିସ୍ଥାନରେ ରହିବେ ସ୍ଥିର କରନ୍ତୁ ବୋଲି କହିଲେ। ଏହା ପରେ ସେ ଏକଥା ସେ ବଲ୍ଲଭଭାଇ ପଟେଲକୁ କହିଲେ, ପଟେଲ ଥିଲେ ଦେଶୀ ରାଜା ମାନଙ୍କ କଥା ବୁଝିବା ଦାୟିତ୍ୱରେ। ସେ କହିଲେ ରାଜା ମହାରାଜମାନେ ସେମାନଙ୍କର ଉପାଧି, ରାଜପ୍ରସାଦ, ହାତପାଣ୍ଠି, ଆରେଷ୍ଟ ମୁକ୍ତି ଇତ୍ୟାଦି ରଖିବାକୁ ଚାହାଁନ୍ତି, ତେବେ ସେମାନଙ୍କୁ ଆକ୍ଟ ଅଫ୍ ଆକସନ୍‌ରେ ସ୍ୱାକ୍ଷର କରିବାକୁ ପଡ଼ିବ। ଫଳରେ ସ୍ୱାଧିନ ରହିବାକୁ ସେମାନଙ୍କର ଦାବୀ ଶେଷ ହୋଇଯିବ ଓ ସେମାନେ ଭାରତୀୟ ଚେନ୍‌ରେ ରହିବାକୁ ବାଧ୍ୟ ହେବେ। ପଟେଲ କିନ୍ତୁ ଜାଣିଥିଲେ ରାଜା ମହାରାଜା ମାନଙ୍କର ସମସ୍ୟାକୁ ସମାଧାନ କରିବା ପାଇଁ ମାଉଣ୍ଟବେଟେନଙ୍କ ଠାରୁ କଂଗ୍ରେସ ଦଳରେ ଆଉ କେହି ପ୍ରଭାବଶାଳୀ ବ୍ୟକ୍ତି ନାହାନ୍ତି। ସେ ମାଉଣ୍ଟବେଟେନଙ୍କୁ କହିଲେ ସେ ଦାୟିତ୍ୱ ମୋର, ଭାଇସ୍‌ରାଏ ପଚାରିଲେଏ କାର୍ଯ୍ୟ କେତେ କଷ୍ଟ ଆପଣ ଜାଣନ୍ତି।ପଟେଲ କହିଲେ ଆପଣ ବ୍ୟସ୍ତ ହୁଅନ୍ତୁ ନାହିଁ। ମାଉଣ୍ଟବେଟେନ କହିଲେ All Right. କିଛି ସମୟ ପର୍ଯ୍ୟନ୍ତ ଭାଇସରାଏ ଓ ଭାରତର ଭବିଷ୍ୟତ ସ୍ୱରାଷ୍ଟ୍ରମନ୍ତ୍ରୀଙ୍କ ମଧ୍ୟରେ ବଳ କଷାକଷି ହେଲା। ସେ ସବୁ ରାଜ୍ୟମାନଙ୍କ ପାଇଁ ଯାହାର ଲୋକ ସଂଖ୍ୟାଥିଲା ଏସିଆ ଜନସଂଖ୍ୟାର ଦୁଇ ତୃତୀୟାଂଶ। ଶେଷରେ ଛ'ଟି ରାଜ୍ୟ ପାଇଁ ସ୍ଥିର ହେଲା। ଏ ନିଷ୍ପତ୍ତି ମାଉଣ୍ଟବେଟେନ କାମକୁ ସାମାନ୍ୟ ଲାଘବ କରିଦେଲା। ମାଉଣ୍ଟବେଟେନଙ୍କୁ ଆହୁରି ଅନ୍ତତଃ ୫୫୦ (ରାଜ୍ୟ) ଅଗଷ୍ଟ ମାସ ୧୫ ମଧ୍ୟରେ ତୋଳିବାକୁ ହେବ। ନେହେରୁ ଯେଉଁ ସଂଖ୍ୟାରେ ଚାହୁଁଥିଲେ ତାହା ଜଣେ ଭାରତୀୟ ହାସଲ କରିବା ଜଣେ ଇଂରେଜଙ୍କ ପକ୍ଷରେ ସହଜ ନୁହେଁ। ଉପନିବେଶବାଦ ଇତିହାସରେ ଏହା ହାସଲ କରିବା ଥିଲା ଅତ୍ୟନ୍ତ କଷ୍ଟକର। ଯେଉଁ ଗାନ୍ଧି ପାଇଁ ଅନେକ ଭାରତୀୟ ଆଗ୍ରହୀ, ତାକୁ ନେହୁରୁଙ୍କ ହାତରେ ଟେକି ଦେବା ମାଉଣ୍ଟବେଟେନଙ୍କ ସପକ୍ଷରେ ଥିଲା ଏକ ପ୍ରକାର ଅସମ୍ଭବ। ପାକିସ୍ଥାନର ପ୍ରଧାନ ଶାସକ ହେବା ପାଇଁ ଜିନାଙ୍କ

ଇଚ୍ଛା ନେହେରୁଙ୍କୁ ସଂକ୍ରମିତ କରିଥିଲା ସ୍ୱାଧିନ ଭାରତର ପ୍ରଥମ ପ୍ରଧାନମନ୍ତ୍ରୀ ହେବାକୁ । ଅଗଷ୍ଟ ପନ୍ଦର ପରେ ଆଉ କିଛି ଦିନ ମାଉଣ୍ଟବେଟେନ ରହି ବିଭାଜନକୁ ସଂପୂର୍ଣ୍ଣ ଶେଷ କରିବା ପାଇଁ ପ୍ରସ୍ତାବ ଦେଲେ । ଏହା ଏକ ଅତ୍ୟନ୍ତ କଷ୍ଟକର ଭାବି ଭାଇସରାଏ ଓ ତାଙ୍କ ପତ୍ନୀ ଗ୍ରହଣ କରିପାରିଲେ ନାହିଁ । ଚାରିମାସ ଭାରତରେ ରହଣୀ କାଳ ମଧ୍ୟରେ ମାଉଣ୍ଟବେଟେନ ଅପୂର୍ବ ସଫଳତା ହାସଲ କରି ନିଜକୁ ଗୌରବଜ୍ଜ୍ୱଳ କରିଛନ୍ତି । ସେ ଯଦି ଅଧିକ କାଳ ଭାରତରେ ରହିବେ ତେବେ ତାଙ୍କର କୃତିତ୍ୱ ମଳିନ ହୋଇଯିବ ବୋଲି ତାଙ୍କର ଆଶଙ୍କା ହେଲା ଏବଂ ସେ ଯଦି ଭାରତରେ ରହି ସଫଳ ଭାବେ କାମ କରିବେ, ତେବେ ଜିନାଙ୍କୁ ସେହିପରି ଏକ ସୁଯୋଗ ଦେବା ଆବଶ୍ୟକ । ଜିନାଙ୍କର ବହୁ ଆଗ୍ରହ ଥିଲା ପାକିସ୍ଥାନର ଗଭର୍ଣ୍ଣର ଜେନେରାଲ ହେବାକୁ । ମାଉଣ୍ଟବେଟେନ ତାଙ୍କୁ କହିଲେ ବିଲାତର ସାମ୍ବିଧାନିକ ବ୍ୟବସ୍ଥାକୁ ସ୍ୱାଧୀନ ଭାରତ ଗ୍ରହଣ କରିଛି । ତେଣୁ ପ୍ରକୃତ କ୍ଷମତା ଠୁଳ ହୋଇ ରହିଛି ପ୍ରଧାନମନ୍ତ୍ରୀଙ୍କ ହାତରେ, ଗଭର୍ଣ୍ଣର ଜେନେରାଲ ନାମକୁ ମାତ୍ର କ୍ଷମତାର ଅଧିକାରୀ । ସେ କେବଳ କ୍ଷମତାର ଏକ ପ୍ରତିଛବି । ଜିନା କହିଲେ ବିପଦରେ ବିଲାତର ସମ୍ବିଧାନକୁ ଆମେ ମାନିବୁ କାହିଁକି । ଜିନା ପାକସ୍ଥାନ ଶାସନର ମୁଖ୍ୟପଦ ଗ୍ରହଣ କରିବା ପୂର୍ବରୁ ଅହିଂସାର ଅବତାର ଗାନ୍ଧିଙ୍କର ଆଶୀର୍ବାଦ ଚାହିଁଲେ । ଗାନ୍ଧି କିନ୍ତୁ ଜଣେ ସ୍ୱଚ୍ଛ ଚରିତ୍ର ଅସ୍ପୃଶ୍ୟ ବାଳିକାକୁ ସ୍ୱାଧିନ ଭାରତର ଶାସନ ମୁଖ୍ୟ କରିବାକୁ ପ୍ରସ୍ତାବ ଦେଇଥିଲେ । ଦିନେ ଜୁଲାଇ ମାସ ଅପରାହ୍ନରେ ଗାନ୍ଧି ମାଉଣ୍ଟବେଟେନଙ୍କ ଅଫିସକୁ ଯାଇ ତାଙ୍କୁ ସ୍ୱାଧିନ ଭାରତର ପ୍ରଥମ ଗଭର୍ଣ୍ଣର ଜେନେରାଲ କରିବାକୁ ପ୍ରସ୍ତାବ ଦେଲେ । ମାଉଣ୍ଟବେଟେନ ଏକଥା ଶୁଣିଲା ମାତ୍ରେ ତାଙ୍କ ଆଖି କୃତଜ୍ଞତାରେ ଛଳ ଛଳ ହୋଇଗଲା । ସେ ଭାବିଲେ ଯେଉଁ ଗାନ୍ଧିଙ୍କୁ ବ୍ରିଟିଶ୍ ଅପମାନ ଦେଇଛି, ଅତ୍ୟାଚାର କରିଛି, ସେଇ ଗାନ୍ଧି ଗଭର୍ଣ୍ଣର ଜେନେରାଲ କରିବାକୁ ଚାହାନ୍ତି, କେତେ ମହାନ୍ ସେ, କେତେ ନିଷ୍କଳଙ୍କ ତାଙ୍କ ଆତ୍ମା ! ସେ ଭାବିଲେ ଗାନ୍ଧିଙ୍କର ଏଇ ପ୍ରସ୍ତାବ କେବଳ ତାଙ୍କୁ ଧନ୍ୟ କରିବ ନାହିଁ । ବ୍ରିଟିଶ୍ ଜାତିକୁ ମଧ୍ୟ କୃତାର୍ଥ କରିବ । ଏଥିପାଇଁ

ସେ ଗାନ୍ଧିଙ୍କୁ କୃତଜ୍ଞତା ଜଣାଇଲେ। ଗାନ୍ଧି ମଧ ଅଳ୍ପ ଟିକିଏ ହସି ତାଙ୍କୁ କିଛି କ୍ଷଣ ଚାହିଁ କହିଲେ, ଭାଇସରାଏଙ୍କର ଏ ବିଶାଳ ପ୍ୟାଲେସ୍‌କୁ ଗୋଟିଏ ହସ୍‌ପିଟାଲ କରାଯିବ। ତୁମେ ପ୍ରତିଦିନ ପାଇଖାନା ସଫା କରିବ। କାରଣ ଦେଶର ସର୍ବୋଚ୍ଚ ଶାସନକର୍ତ୍ତାଙ୍କୁ ଜଣେ ସମାଜବାଦର ଭୂମିକା ନିର୍ବାହ କରିବାକୁ ହେବ। ସ୍ୱାଧିନ ଭାରତର ପ୍ରତ୍ୟେକ ନେତାଙ୍କୁ ସମାଜବାଦୀ ହେବାକୁ ହେବ ଏବଂ ଦେଶର ସର୍ବୋଚ୍ଚ ଶାସନକର୍ତ୍ତା ଏହାର ଶୁଭାରମ୍ଭ କରିବେ। ମାଉଣ୍ଟବେଟେନ ଭାବିଲେ ଏ କି ବିଚିତ୍ର କଥା। ମୋତେ ମୋ ପାଇଖାନା ସଫା କରିବାକୁ କାହିଁକି କହୁଛନ୍ତି ? ଅଟିଲ୍, ସମ୍ରାଟ୍ ଏବଂ ଜିନା ଏହାକୁ ପସନ୍ଦ କଲେ ନାହିଁ। ସେମାନେ ଭାବିଲେ ଯେଉଁ ଗାନ୍ଧି ଜୀବନସାରା ନିଜ ପାଇଖାନା ନିଜେ ସଫା କରୁଛନ୍ତି, ସେ ଅନ୍ୟମାନଙ୍କୁ ସେହିପରି କହିବା ଠିକ୍ ନୁହେଁ। ଯିଏ ସାରାଜୀବନ ନିଜକୁ ସମାଜବାଦୀ ଚିନ୍ତାଧାରାରେ ପରିଚାଳିତ କରିଆସିଛନ୍ତି। ସେ ଅନ୍ୟମାନଙ୍କୁ ସେପରି କରିବା ପାଇଁ କହିବା ସ୍ୱାଭାବିକ। କାରଣ ତାଙ୍କର ଚେତନା ତା ଦ୍ୱାରା ନିୟନ୍ତ୍ରିତ। ତେଣୁ ଭାରତର ମୁଖ୍ୟ ଶାସକ ଯିଏ ପୃଥିବୀର ଏକ ଶ୍ରେଷ୍ଠାଂଶ ମାନବ ଜାତିକୁ ଶାସନ କରିବେ, ତାଙ୍କୁ ନିଜ ପାଇଖାନା ନିଜେ ସଫା କରିବାକୁ କହିବା ସ୍ୱାଭାବିକ। ସେମାନେ ବୁଝିବାକୁ ଅକ୍ଷମ ଯେ, ନିଜ ପାଇଖାନା ନିଜେ ସଫା କରିବା କେବେ ହୀନକାର୍ଯ୍ୟ ହୋଇନପାରେ, ବରଂ ସାମ୍ରାଜ୍ୟବାଦ ବିରୁଦ୍ଧରେ ଏକ ଶକ୍ତ ଆଘାତ। ଏହା କାହାରିକୁ ଅପମାନ ଦେବା ପାଇଁ ଉଦ୍ଦିଷ୍ଟ ନୁହେଁ। ସାମନ୍ତବାଦ ବିରୁଦ୍ଧରେ ଏକ ବିପ୍ଳବ ଭାଇସ୍ ରାଏଙ୍କ ଉଜ୍ଜ୍ୱଳ ଶୁକ୍ଳବର୍ଣ୍ଣ ପ୍ରସାଦକୁ ଦେଖି ଗାନ୍ଧି ବିସ୍ମିତ ହୋଇଗଲେ। ତାଙ୍କୁ ନିଜ ଲ' ଚାନ୍‌ସେଲର ତୁଚ୍ଛ ଲାଗିଲା। ଲଣ୍ଡନରୁ ଆସି ଭାଇସରାଏଙ୍କ ଅଫିସ୍ ଦେଖି ତାଙ୍କର ମନେ ହେଲା ସେ ଯେମିତି ଏକ ସ୍ୱର୍ଗଭୂବନରେ ପହଞ୍ଚିଛନ୍ତି। ମାଉଣ୍ଟବେଟେନ ତାଙ୍କୁ ବୁଝାଇ ଦେଇ କହିଲେ ଯେ, ରାଜ୍ୟ ମାନଙ୍କର ନିର୍ଦ୍ଧାରଣ କାର୍ଯ୍ୟରେ ପ୍ରତ୍ୟେକ ରାଜ୍ୟ ପାଇଁ ତାଙ୍କୁ ୪ଜଣ ସାହାଯ୍ୟ କରିବେ ଏବଂ ସେମାନଙ୍କର ମିଳିତ ସୁପାରିଶ ଭାଇସ୍ ରାଏଙ୍କୁ ପ୍ରଦାନ କରାଯିବ। ଯେଉଁ ଜର୍ଜ ମାନେ ତାଙ୍କୁ ସାହାଯ୍ୟ କରିବାକୁ ନିଯୁକ୍ତ

ହେବେ, ସେମାନେ ନିଜ ନିଜ ଭାଗରେ ଥିବା ରାଜ୍ୟ ମାନଙ୍କ ସ୍ୱାର୍ଥକୁ ସୁରକ୍ଷା କରିବେ ସେ ରାଜ୍ୟର ଓକିଲ ଭାବରେ। ମୁସଲିମ୍ ବହୁଳ ଜନସଂଖ୍ୟାକୁ ବିଚାରକୁ ନେଇ ସୀମାରେଖା ଟଣାଯିବ। ତାଦ୍ୱାରା ଉଭୟ ପକ୍ଷକୁ ନ୍ୟାୟ ମିଳିବ ଏବଂ ନେହେରୁ ଜିନ୍ନାଙ୍କ ମଧ୍ୟରେ ଚାଲିଥିବା ବିବାଦର ସମାଧାନ ହୋଇଯିବ ଏବଂ ଇଣ୍ଡିଆ ଓ ପାକିସ୍ଥାନ ମଧ୍ୟରେ ଭବିଷ୍ୟତ ସମ୍ପର୍କ ବନ୍ଧୁତ୍ୱପୂର୍ଣ୍ଣ ହେବ। ଏକଥା ଜାଣିଲା ପରେ ପାକିସ୍ଥାନକୁ କ୍ଷମତା ପ୍ରଦାନ କରି ସୀମା ନିର୍ଦ୍ଧାରଣ କାମରେ ଗୋଟିଏ ରାଷ୍ଟ୍ର ବା ରାଜ୍ୟ ଗଠନ କରିବା କ୍ଷେତ୍ରରେ ସାଧାରଣ କଥାକୁ ଉପେକ୍ଷା କରି କହିଲେ । ରେଡ଼ିଲାଇଫ୍ ବିଲାତରେ ପହଞ୍ଚିବା ପୂର୍ବରୁ ଭାବିଥିଲେ ଯେ, ତାଙ୍କୁ ଏ କାମ କରିବା ପାଇଁ ସବୁ ପ୍ରକାରର ସୁବିଧା ଓ ସହଯୋଗ ମିଳିବ। କିନ୍ତୁ ମାଉଣ୍ଟ ବେଟେନ ଆସନ୍ତା ୧୫ ତାରିଖ ମଧ୍ୟରେ ଅର୍ଥାତ୍ ଏକ ସପ୍ତାହ ମଧ୍ୟରେ ଏକାକୀ ସାରିବାକୁ କହୁଛନ୍ତି। କାରଣ ବିଳମ୍ବ ହେଲେ, ଯେଉଁ ସମସ୍ୟା ଦ୍ୱାରା ରାଜ୍ୟମାନଙ୍କୁ ପୃଥକ କରିବା କଥା ତାହା ସମ୍ଭବ ହେବ ନାହିଁ। ରେଡ଼ିଲାଇଫ୍ ସତର୍କ କରିଦେଇ ମାଉଣ୍ଟ ବେଟେନଙ୍କୁ କହିଲେ ଏପରି ତରତର ହେଲେ, ଭୁଲ୍ ଭଟକା ହୋଇଯାଇପାରେ। ମାଉଣ୍ଟବେଟେନ ସମୟ ନାହିଁ ବୋଲି କହି ଅଗଷ୍ଟ ୧୫ ମଧ୍ୟରେ କାର୍ଯ୍ୟ ଶେଷ କରିବାକୁ କହିବାରୁ ରେଡ଼ିଲାଇଫ୍ ସେଥିପ୍ରତି ନଜର ନଦେଇ ନିଜ ମନ ମୁତାବକ ନିଷ୍ପତ୍ତି ନେବା ପାଇଁ ନେହେରୁ ଓ ଜିନାଙ୍କ ସହ ଆଲୋଚନା କରିବାକୁ ଉଚିତ୍ ମନେକଲେ। ସେମାନଙ୍କୁ ସେ ପଚାରିଲେ ଅଗଷ୍ଟ ପୂର୍ବରୁ ଏହା ସାରିବା କ'ଣ ଜରୁରୀ ? ସେମାନେ ହଁ କହିବାରୁ ରେଡ଼ିଲାଇଫ୍ କହିଲେ ଏହାଦ୍ୱାରା ବେଙ୍ଗଲରେ ଓ ପଞ୍ଜାବର ସୀମା ନିର୍ଦ୍ଧାରଣ କ୍ଷେତ୍ରରେ ତାଙ୍କୁ ଜଣେ ହତ୍ୟାକାରୀର ଟାଙ୍ଗିଆ ହେବାକୁ ପଡ଼ିବ।

୧୯୪୭ ମସିହା ଜୁଲାଇ ମାସରେ ମାଉଣ୍ଟ ବେଟେନଙ୍କ ଅଫିସ୍ ଠାରୁ ମାତ୍ର ୨୪ ମାଇଲ ଦୂର ଭାରତରେ ଶସ୍ୟ ଭଣ୍ଡାର କୁହାଯାଉଥିବା ପଞ୍ଜାବର ସୀମା ନିର୍ଦ୍ଧାରଣ କାର୍ଯ୍ୟ ରେଡ଼ିଲାଇଫ୍ ହାତକୁ ନେଲେ। ସୁନାର ଗାଲିଚା ପରି ଲମ୍ବିଯାଇଥିବା ଗହମ କ୍ଷେତର ଅପୂର୍ବ ଦୃଶ୍ୟ ଦେଖି, ତାକୁ କାଟି ଭାଗ ଭାଗ କରିବା ପାଇଁ ତାଙ୍କ ମନ ବଳିଲା

ନାହିଁ। ବିଶାଳ ବିସ୍ତୀର୍ଣ୍ଣ ଗହମ କ୍ଷେତ ସାଙ୍ଗକୁ ସୁଦୀର୍ଘ ଆଖୁ ଫସଲର ଉର୍ବର ମୃତ୍ତିକା ଭାରତର ପଞ୍ଜାବକୁ କରିଛି ସବୁଠାରୁ ଧନୀ। ରେଡିଲାଇଫ୍ ଦେଖିଲେ ଚାରିଆଡ ସୁନ୍ଦର ସୁଠାମ ହଜାର ହଜାର ଗାଈ, ମଇଁଷି, ଛେଳି, ମେଣ୍ଢା ଓ କୁକୁର ସେମାନଙ୍କ ମଳମୂତ୍ରରେ କର୍ଦ୍ଦମାକ୍ତ। ରାସ୍ତାଘାଟ ଆଉ ପାହାଡ ଉଚାର ଅମଳ ଶସ୍ୟଗଦା, ସମଗ୍ର ପଞ୍ଜାବକୁ ଲକ୍ଷ୍ମୀପୁର ପରି ଧନରତ୍ନରେ ଭରି ଦେଇଛି। ସବୁଆଡେ ଆନନ୍ଦ ବିଭୋର, ବାଳିକା ବାଳକ ମାନଙ୍କ ଖେଳକୁଦର ଆସର, ହଜାର ହଜାର ମହିଳା ମାନଙ୍କର କଠିନ ପରିଶ୍ରମ ସତ୍ତ୍ୱେ କ୍ଳାନ୍ତୀହୀନ ଦୃଶ୍ୟ ତାଙ୍କୁ ବିମୋହିତ କଲା। ଇଂରେଜ ଶିକ୍ଷାର ପ୍ରଚଳନ ହେତୁ ନୂଆ ଯୁବସମାଜ ମୁଣ୍ଡ ଟେକି ଉଠୁଛି। ହିନ୍ଦୁ, ମୁସଲମାନ, ଖ୍ରୀଷ୍ଟିୟାନ, ପାର୍ସି ମାନଙ୍କର ଏକତ୍ର ଶାନ୍ତିପୂର୍ଣ୍ଣ ସହାବସ୍ଥାନ ପଞ୍ଜାବକୁ କରିଛି ସୁଖମୟ ବିଳାସର ଦେଶ। ପଞ୍ଜାବର ଲାହୋର ସହର ଶାନ୍ତିପୂର୍ଣ୍ଣ ନଗରୀ ଭାବେ ପରିଚିତ। ଏହାର ଲୋକସଂଖ୍ୟା ଭିତରେ ୫ଲକ୍ଷ ହିନ୍ଦୁ, ୧ ଲକ୍ଷ ଶିଖ୍, ୬ଲକ୍ଷ ମୁସଲମାନ। କାଳ କାଳ ଧରି ସୁଖଶାନ୍ତିରେ ଏକତ୍ର ବସବାସ କରି ଆସିଛନ୍ତି। ମାତ୍ର ମେଳା ମହୋତ୍ସବ ପର୍ବପର୍ବାଣିରେ ସମସ୍ତେ ଏକତ୍ର ଭୋଜିଭାତ, ନାଚଗୀତ ଓ ଖେଳକୁଦରେ ମାତି ଯାଆନ୍ତି। ଜାତି, ଧର୍ମ, ବର୍ଣ୍ଣ ନିର୍ବିଶେଷରେ ଘନିଷ୍ଠ ସଖା ଓ ସହୋଦର ପରି। କାଳ କାଳର ଏ ଶାନ୍ତିପୂର୍ଣ୍ଣ ସହାବସ୍ଥାନ ଉପରେ ହଠାତ କାଳ ବୈଶାଖୀ ମାଡି ଆସିଲା। ୧୯୪୭ ମସିହା ଜୁଲାଇ ମାସରେ ଯେତେବେଳେ ହିନ୍ଦୁ ଆକ୍ରମଣରେ ପ୍ରାଣ ହରାଇଥିବା ଅଭିଯୋଗ କରି, ମିଛରେ ଜଣେ ମୁସଲିମ୍ ଗାଁ ଗାଁ ବୁଲି ଚିତ୍କାର କଲେ, ହଠାତ ପ୍ରଚଣ୍ଡ ହତ୍ୟାକାଣ୍ଡ ଘଟିଲା। ମାର୍ଚ୍ଚ ମାସରେ ଯେଉଁଥିରେ ୩ହଜାରରୁ ଉର୍ଦ୍ଧ୍ୱ ବିଶେଷ କରି ଶୀଖ୍ ସମ୍ପ୍ରଦାୟର ଲୋକେ ନିହତ ହେଲେ। ବିବର୍ତ୍ତନ ପ୍ରକ୍ରିୟାରେ ସେ ଜଡ ପ୍ରକୃତିର, ସେ ଚେତନା ଜଗତରେ ନୂଆ ନୂଆ ରୂପରେ ପ୍ରକାଶିତ ହୁଅନ୍ତି ବୋଲି ସର୍ବବାଦ ସମ୍ମତ। ତେଣୁ ଏହି ମହା ମାନବ ତାଙ୍କ ଅବତାରବାଦର ଏକ ନୂତନ ସଂସ୍କରଣ।



# ଏକାଦଶ ଅବତାର

ଯେଉଁ ଅଲୌକିକ ଓ ଅଦ୍ଭୁତ ଦିବ୍ୟଶକ୍ତି ଦୁଷ୍ଟ ଶକ୍ତିକୁ ପରାସ୍ତ କରି ସଂସାରରେ ଶାନ୍ତି ପ୍ରତିଷ୍ଠା କରି ଯାଇଛନ୍ତି ସେମାନଙ୍କୁ ଭଗବାନଙ୍କର ଅବତାର ଭାବରେ ବିଶ୍ୱମାନବ ଗ୍ରହଣ କରିଛି । ବିଂଶ ଶତାବ୍ଦିରେ ସେହିପରି ଯେଉଁ ଶକ୍ତି ରାଜତନ୍ତ୍ରର ବିଲୋପ କରି ସାରା ବିଶ୍ୱରେ ଗଣତନ୍ତ୍ର ପ୍ରତିଷ୍ଠା କରିଗଲେ, ସେ ମହା ମାନବଙ୍କୁ ଭଗବାନଙ୍କର ଏକାଦଶ ଅବତାର ଭାବେ ଗ୍ରହଣ କରିବା ଯଥାର୍ଥ । ଏ ଅବତାରଙ୍କର ବୈଶିଷ୍ଟ୍ୟ ହେଲା ହିଂସା ବଦଳରେ ଭଗବାନଙ୍କର ପ୍ରେମମୟ ଦିବ୍ୟଶକ୍ତି ଅହିଂସାର ପ୍ରୟୋଗ । ଚେତନାର ଜାଗରଣ ହେତୁ ମଣିଷ କ୍ରମେ ତାର ଜନ୍ମଗତ ହିଂସା ଛାଡ଼ି ଅହିଂସାକୁ ଆଦର କରିବାର ନୂତନ ଯୁଗର ଅଭ୍ୟୁଦୟ ଘଟିଛି ଏବଂ  ଏହି କାରଣରୁ ସାରା ବିଶ୍ୱରେ ଏବେ ହିଂସା ବଦଳରେ ଅହିଂସାର ଜୟଗାନ ଶୁଭୁଛି । ପ୍ରେମମୟ ଭଗବାନ ତ ସମସ୍ତ ସୃଷ୍ଟିର କାରଣ । ତାଙ୍କ ସୃଷ୍ଟି ଓ ସର୍ଜନାର ଅନ୍ତ ନାହିଁ କି ଦୁଷ୍ଟର ଦଳନ ପାଇଁ ନୂଆ ନୂଆ ଅବତାର ଗ୍ରହଣ କରିବାର ପ୍ରକ୍ରିୟା ଶେଷ ହୋଇ ନାହିଁ । ଏହି କାରଣରୁ ଭଗବାନ ଯୁଗେ ଯୁଗେ ଭିନ୍ନ ଭିନ୍ନ ରୂପ ଧରି ମର୍ତ୍ତ୍ୟରେ ଅବତୀର୍ଣ୍ଣ ହୋଇଛନ୍ତି । ଏଠାରେ ଯେଉଁ ମହାମାନବ କଥା କୁହାଯାଇଛି, ସେ ଭଗବାନଙ୍କର ଏକ ନୂତନ ଅବତାର । ଅଲୌକିକ ପ୍ରତିଭା ବଳରେ ସେ ସାରା ବିଶ୍ୱରେ ଏକ ନୂତନ ଚେତନାର ଅଭ୍ୟୁଦୟ ଘଟାଇ ସାରା ବିଶ୍ୱକୁ ସ୍ତବ୍ଧ ଚକିତ କରିଛନ୍ତି ଏବଂ ତାଙ୍କର ସବୁ ଅବତାର ପରି ଅସାଧ୍ୟ ସାଧନ କରି ଐଶ୍ୟଶକ୍ତିର ପ୍ରମାଣ ଦେଇଛନ୍ତି । ବରାହ, ନୃସିଂହ, ରାମ, କୃଷ୍ଣଙ୍କ ପରି ଶାନ୍ତି ସ୍ଥାପନ ପାଇଁ ହିଂସା ଆଚରଣ ନକରି ବୁଦ୍ଧ ଓ ଯିଶୁଙ୍କ ପରି ସେ ପ୍ରେମ ଓ ଅହିଂସା ଉପାୟରେ ଏକ ଦୁର୍ବାର ଶକ୍ତିକୁ ପରାସ୍ତ କରି ବିଶ୍ୱରେ ଶାନ୍ତି ସ୍ଥାପନ କରିବାର ଏକ ଅଦ୍ଭୁତ ଦୃଷ୍ଟାନ୍ତ ସୃଷ୍ଟି କରିଛନ୍ତି । ସେ ହେଉଛନ୍ତି ଯୀଶୁଙ୍କର ପ୍ରେମ ଓ ବୁଦ୍ଧଙ୍କର ଅହିଂସାତତ୍ତ୍ୱରଏକସମନ୍ୱିତ ବିଗ୍ରହ । ଯେଉଁଶାନ୍ତି ଭଗବାନଙ୍କର ଏକ ଆଭୂଷଣ, ତାହା ସ୍ୱଷ୍ଟ ପ୍ରତିଫଳିତ ହୋଇଛି ଏହି ମହାମାନବଙ୍କ କର୍ମଯୋଗର ଅଭ୍ୟାସରେ । ମାନବ ଇତିହାସରେ ଏହାର ପଟାନ୍ତର ନାହିଁ । ତେଣୁ ସେ ଭଗବାନଙ୍କର

ଏକାଦଶ ଅବତାର ବୋଲି ଗ୍ରହଣ କରିନେବା ଅଧିକ ଯୁକ୍ତିଯୁକ୍ତ । କର୍ମଯୋଗରେ ଭଗବାନଙ୍କର ଅସ୍ତିତ୍ୱ ମାନବ ଚେତନାର ଉର୍ଦ୍ଧ୍ୱରେ । ତେଣୁ ସେ ବିସ୍ମୟ । ତାଙ୍କ କୃତିତ୍ୱରେ ବିସ୍ମୟାଭୂତ । ଏ ଜଗତ ତାଙ୍କୁ ଭଗବାନଙ୍କର ଏକାଦଶ ଅବାତାର ଭାବେ ଗ୍ରହଣ କରିନେବା ଉଚିତ୍ । ପ୍ରେମ ଓ ଅହିଂସାର ସମନ୍ୱୟ ତ ଆତ୍ମାର ଅନନ୍ତ ଶକ୍ତିର ପ୍ରତିଛବି । ଏହା ଅଜର, ଅମର ଓ ଅବିନାଶୀ । କାରଣ ଏହାକୁ ଅସ୍ତ୍ର ଛେଦନ କରି ପାରେ ନାହିଁ, ପବନ ଶୁଷ୍କ କରିପାରେ ନାହିଁ କି ଅଗ୍ନି ଦହନ କରିପାରେ ନାହିଁ । ଏହି ଦିବ୍ୟଶକ୍ତି ଯାହାଙ୍କଠାରେ ପ୍ରତିଫଳିତ ସେ ଭଗବାନଙ୍କର ଅବତାର ନୁହଁନ୍ତି ତ ଆଉ କ'ଣ ? ପୁଣି ଭଗବାନଙ୍କର ପ୍ରତ୍ୟେକଟି ଅବତାର ତାଙ୍କର ଉଦ୍ଦିଷ୍ଟ ମହତ କର୍ମ ସଂପାଦନ ପରେ ଦେହତ୍ୟାଗ କରନ୍ତି ଶାରିରୀକ ଯନ୍ତ୍ରଣା ଭିତରେ । କାରଣ ଏହାହିଁ ମହାମାନବ ଆତ୍ମବଳୀଦାନର ମାହାତ୍ମ୍ୟ । ଆମେ ଏଠାରେ ଯାହାଙ୍କୁ ଭଗବାନଙ୍କର ଏକାଦଶ ଅବତାର ବୋଲି ଅବତାରଣା କରୁଛୁ ତାଙ୍କର ଆତ୍ମବଳୀଦାନ ଠିକ୍ ସେହିପରି । ଅନ୍ଧ କବି ଭୀମ ଭୋଇଙ୍କ ଭାଷାରେ, "ମୋ ଜୀବନ ପଛେ ନର୍କେ ପଡ଼ିଥାଉ ଜଗତ ଉଦ୍ଧାର ହେଉ," ଏହାହିଁ ମହାତ୍ମା ମାନଙ୍କର ଜୀବନଦର୍ଶନ । ଶୁଭ କର୍ମଯୋଗ ଓ ଭକ୍ତିଯୋଗର ସମନ୍ୱିତ ଫଳହେଲା ମହାମାନବତ୍ୱ ପ୍ରାପ୍ତି । ଏହା ଅଲୌକିକ ହୋଇଥିବାରୁ ଏହାକୁ ଭଗବାନଙ୍କର ଅବତାର ବୋଲି କୁହାଯାଏ । ଠିକ୍ ସେହିପରି ତାଙ୍କର ଜୀବନ ବିସ୍ମୟ ଓ ଦିବ୍ୟତାରେ ପରିପୂର୍ଣ୍ଣ ଏବଂ ତାହା ପୁଣି ଜଗତର କଲ୍ୟାଣ ପାଇଁ ଅଭିପ୍ରେତ । ସେ ଆବିଷ୍କାର କରିଥିବା ଶାନ୍ତିତତ୍ତ୍ୱରେ ପ୍ରଭାବିତ ବିଶ୍ୱ ବର୍ତ୍ତମାନ ଯେଉଁ ଶାନ୍ତି ଆନ୍ଦୋଳନ କରୁଛି, ତାହା ମଣିଷ ମନରେ କ୍ରମବିକାଶ ବୋଲି ବୁଝିବାକୁ ହେବ । ଏହି ଆନ୍ଦୋଳନ ସଫଳ ହେଲେ ତା ହେବ ମଣିଷ ମନର କ୍ରମ ବିକାଶ ପଥରେ ଏକ ନୂତନ ପର୍ଯ୍ୟାୟ ଏବଂ ପୃଥିବୀ ହେବ ଶାନ୍ତିମୟ । ଫଳରେ ମଣିଷ ସମାଜ ଏକ ନୂତନ ସଭ୍ୟତାରେ ପାଦଦେବ । ଏକଥା, ସମସ୍ତେ ଜାଣନ୍ତି ଯେ, କ୍ରମବିକାଶ ପ୍ରକ୍ରିୟାରେ ମଣିଷ ଅନେକ ସୋପାନ ଅତିକ୍ରମ କରି ଚାଲିଛି । ଏହି ପ୍ରକ୍ରିୟାରେ କେବଳ ଶାରିରୀକ ନୁହେଁ, ତାର ମାନସିକ ଓ ବୌଦ୍ଧିକ ବିକାଶ ମଧ୍ୟ

ଅର୍ନ୍ତଭୂକ୍ତ। ଯେହେତୁ ଏହି କ୍ରମବିକାଶର ଆରମ୍ଭ ଅଛି, ତାର ଶେଷ ମଧ୍ୟ ଅଛି। କାରଣ ଏହା ଜାଗତିକ। ଏହି ପ୍ରକ୍ରିୟା କେବେ ଏବଂ କେଉଁ ପର୍ଯ୍ୟାୟରେ ଶେଷ ହେବ ତାହା କେହି କହିପାରିବେ ନାହିଁ। ଏହି ପ୍ରକ୍ରିୟା ପୂର୍ଣ୍ଣତାପ୍ରାପ୍ତ ହେଲେ ହୁଏ ତ ତାହା ଶେଷ ହେବ ଏବଂ କ୍ରମବିକାଶର ଶେଷରେ ମଣିଷ ହିଂସା ଛାଡ଼ି ଅହିଂସା ପରାୟଣ ହେବା ସଙ୍ଗେ ସଙ୍ଗେ ଦେବତ୍ୱ ପ୍ରାପ୍ତ ହେବ। ଯାହାଙ୍କ କଥା ଆମେ ଏଠାରେ କହିବାକୁ ଯାଉଛୁ, ତାଙ୍କର କ୍ରମବିକାଶ ହେତୁ ମହାମାନବ ସ୍ତରକୁ ଉନ୍ନିତ ହୋଇଛନ୍ତି। କୁହାଯାଏ, ମଣିଷର କ୍ରମବିକାଶର ପୂର୍ବ ସୋପାନ ଥିଲା ମାଙ୍କଡ଼। କ୍ରମ ବିକାଶ ହେତୁ ମାଙ୍କଡ଼ରୁ ମଣିଷ ହେଲେ ମଧ୍ୟ ଏପର୍ଯ୍ୟନ୍ତ ମାଙ୍କଡ଼ ବି ଅଛନ୍ତି, ସେହିପରି ମଣିଷରୁ ମହାମାନବ ହେଲେ ମଧ୍ୟ ଏପର୍ଯ୍ୟନ୍ତ ସାଧାରଣ ମଣିଷ ବି ଅଛନ୍ତି। ଏ ବିଚାରକୁ ସମସ୍ତେ ଗ୍ରହଣ କରିବେ ବୋଲି ଆଶା କରାଯାଏ। ଆଧ୍ୟାତ୍ମିକ ବଳରେ ଜଡବାଦର ସ୍ଥିତି ପ୍ରଭାବ ଶୂନ୍ୟ ହେଲେ ବି ଜଡପିଣ୍ଡରେ ଆଧ୍ୟାତ୍ମିକତାର ପ୍ରତିଫଳନ ଐଶୀ ଶକ୍ତିର ସଂକେତ ଦିଏ। ମହାମାନବତ୍ୱ ପାପ୍ତି ଏହି ପ୍ରକିୟାର ପରିଣତି। କାରଣ ଭଗବାନଙ୍କର ଅସ୍ତିତ୍ୱ ଏକ କାଳ୍ପନିକ ଦର୍ଶନ ତତ୍ତ୍ୱ ହୋଇଥିବା ବେଳେ ମାନବ ଜୀବନର ସଂଘର୍ଷମୟ କାହାଣୀ ଓ ତାର ଦିବ୍ୟ ପରିଣତି ଏକ ବାସ୍ତବ ଅନୁଭବ ହୋଇଥାଏ। ତେଣୁ ଧୂଳି ମାଟିର ମଣିଷ ପକ୍ଷରେ ଦେବତ୍ୱ ପ୍ରାପ୍ତି , ଅଲୌକିକ ନ ହେଲେ ମଧ୍ୟ ତାହା ଲୌକିକତାର ଉର୍ଦ୍ଧ୍ୱରେ। କାରଣ ତାହା ବାସ୍ତବ। ବାସ୍ତବରେ ଦେବତ୍ୱର ଅନୁଭବ, କାଳ୍ପନିକ ଦିବ୍ୟସତ୍ତା ଠାରୁ ଆହୁରି ଉର୍ଦ୍ଧ୍ୱରେ ବୋଲି ଭାବିବା ଅଧିକ ଯୁକ୍ତିଯୁକ୍ତ ଏବଂ ବିଚାରର ଏହି ପୃଷ୍ଠ ଭୂମିରେ ମହାମାନବ ହିଁ ବାସ୍ତବରେ ପୂଜାର୍ଚ୍ଚନାର ପାତ୍ର। ଆରାଧ୍ୟ ଓ ଦେବତୁଲ୍ୟ ଭଗବାନ ବୋଲି ଯେଉଁମାନଙ୍କୁ ମାନ୍ୟତା ମିଳିଛି ସେମାନେ ସମସ୍ତେ ଭକ୍ତିଯୋଗର କର୍ମସନ୍ନ୍ୟାସୀ। ତେଣୁ ବାସ୍ତବ ଜଗତରେ ଯେଉଁମାନେ ସଂଘର୍ଷମୟ ଜୀବନର ବିଭିନ୍ନ ପର୍ଯ୍ୟାୟ ଅତିକ୍ରମ କରି ଭକ୍ତି ଓ କର୍ମଯୋଗର ସନ୍ନ୍ୟାସୀ ଭାବରେ ମହାମାନବ ହୋଇଛନ୍ତି ସେମାନେ ବାସ୍ତବରେ ଭଗବାନଙ୍କର ଅବତାର। ଭଗବାନଙ୍କ ଅନ୍ୟନାମ ପତିତପାବନ। ପତିତ ମାନଙ୍କୁ

ଉଦ୍ଧାର କରିବା କାରଣରୁ ତାଙ୍କୁ ଏପରି କୁହାଯାଏ। କୋଟି କୋଟି ଦଳିତ, ନିଷ୍ପେଷିତ ଅସ୍ପୃଶ୍ୟ ମାନଙ୍କୁ ଅନ୍ଧକାରର କାରାକକ୍ଷ ମଧ୍ୟରୁ ଯେଉଁ ମହାମାନବ ଉଦ୍ଧାର କରିଗଲେ, ସେତ ପତିତପାବନ, ତେଣୁ ଭଗବାନ ସଦୃଶ। ଅନ୍ୟାୟ ଅତ୍ୟାଚାରରୁ ପିଡ଼ୀତ ମାନଙ୍କୁ ଉଦ୍ଧାର କରିବା ପାଇଁ ଭଗବାନ ଯୁଗେ ଯୁଗେ ଅବତାରୀ ପୁରୁଷଙ୍କ ଅବତାର ଭାବରେ ମର୍ତ୍ତ୍ୟରେ ଅବତିର୍ନ୍ନ ହୋଇ ଲୀଳା ରଚନା କରନ୍ତି। ଯେଉଁ ମହାମାନବଙ୍କ କଥା ଏଠାରେ ଅବତାରଣା କରାଯାଇଛି ସେ ଠିକ୍ ସେହିପରି ମର୍ତ୍ତ୍ୟରେ ଅବତୀର୍ଣ୍ଣ ହୋଇ ଅଲୌକିକ ଲୀଳା ରଚନା କରିଯାଇଛନ୍ତି। ତେଣୁ ସେ ଭଗବାନଙ୍କର ଏକ ଅବତାର। ଯୁଗଯୁଗ ଧରି ପରଦା ପ୍ରଥାର ଅନ୍ଧକାର ମଧରେ ଯେଉଁ ନାରୀଜାତି ମୁକ୍ତି-ଆଲୋକର ସନ୍ଧାନ କରୁଥିଲେ, ନାରୀ ଶିକ୍ଷାର ପ୍ରସାର ଘଟାଇ ଓ ବ୍ୟାଧି ପ୍ରପୀଡ଼ିତ ଦୁର୍ଗତ ମାନଙ୍କୁ ସେବା ପ୍ରଲେପ ଦେଇ ଆସ୍ୱସ୍ତ କରିଛନ୍ତି, ସେମାନଙ୍କର ସେ ମୁକ୍ତିଦାତା ହୋଇଛନ୍ତି। ଯୀଶୁଙ୍କର ପ୍ରେମ ଓ ବୁଦ୍ଧଙ୍କର ଅହିଂସା ଅସ୍ତ୍ରକୁ ଧାରଣ କରି କୋଟି କୋଟି ନରନାରୀଙ୍କ ମନରେ ସେ ବଞ୍ଚିବାର ଆଶା ସଂଚାର କରିଛନ୍ତି। ତେଣୁ ସେ ଭଗବାନଙ୍କର ଅବତାର। ଆଲ୍ଲାଙ୍କର ସମସ୍ତେ ପୁତ୍ର କନ୍ୟା କହି ଯେଉଁ ମହମ୍ମଦ ବିଶ୍ୱରେ ଶାନ୍ତିବାର୍ତ୍ତା ପ୍ରଚାର କରି ଅମର ହୋଇଛନ୍ତି। ଏ ମହାମାନବ ସେହିପରି ସାରା ବିଶ୍ୱକୁ ଶାନ୍ତିମନ୍ତ୍ର ପ୍ରଦାନ କରି ଅତିମାନବ ଭାବରେ ଗୃହୀତ ହୋଇଛନ୍ତି। ଭଗବାନ ଶ୍ରୀକୃଷ୍ଣ ଯୁବତୀ ଗୋପୀମାନଙ୍କ ସହିତ ଅପ୍ରାକୃତ ପ୍ରେମ କରି ଅପୁରୁଷେୟ ପ୍ରେମମୟ ହୋଇଛନ୍ତି, ଏ ମହାମାନବ ସେହିପରି ମନୁଭଳି ଯୁବତୀଙ୍କ ସହିତ ଅପ୍ରାକୃତ ପ୍ରେମକରି ଯୋଗେଶ୍ୱର ଶିବଙ୍କ ପରି ଅଟଳ ସଂଯମର ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଛନ୍ତି। ଯେଉଁଦିନ ପୃଥିବୀର କୌଣସି ଏକ ଭୂଖଣ୍ଡରେ ମଣିଷ ମଣିଷ ମଧରେ ଭେଦଭାବ ଦୂର କରିବାକୁ ଅଖଣ୍ଡ ଶକ୍ତିଶାଳୀ ରାଜତନ୍ତ୍ର ବିରୁଦ୍ଧରେ ଯୁଦ୍ଧଂ ଦେହି ଆହ୍ୱାନ କରି ଏ ମହାମାନବ ଦିନେ ଶାନ୍ତି ଆନ୍ଦୋଳନ କରି ନୃସଂଶ ବ୍ରିଟିଶ୍ ଫୌଜ ଦ୍ୱାରା ଶାରିରୀକ ନିର୍ଯ୍ୟାତନା ପାଉଥିଲେ, ସେଦିନ ବହୁ ଶାନ୍ତି ଆନ୍ଦୋଳନକାରୀ ବ୍ରିଟିଶ୍ ଫୌଜ ଗୁଳି ଚୋଟରେ ପ୍ରାଣ ହରାଇଲା ପରେ ସେ ଅଟଳ ମହାମେରୁ ପରି

ନିର୍ଭୟରେ ଠିଆ ହୋଇ କହିଥିଲେ କେତେ ମଣଷ ତୁମେ ମାରିବ ? ଯେତେ ମାରିବ ସେତେ ପୁଣି ଆସି ପ୍ରତିବାଦ ଆନ୍ଦୋଳନରେ ଯୋଗଦେବେ । ପ୍ରକୃତରେ ଦଳେ ମରିବା ପରେ ଆଉ ଦଳେ ଆଗେଇ ଆସି ଗୁଳିଚୋଟ ଖାଇବାକୁ ଠିଆ ହୋଇ ଯାଉଥିଲେ । କେତେ ମାରିବେ ସେମାନେ, ଶେଷରେ ସେମାନେ ଲହୁ ଲୁହାଣ ହୋଇ ବୀରଦର୍ପରେ ଠିଆ ହୋଇଥିବେ, ଯୋଦ୍ଧାକୁ ପଚାରିଲେ, କ'ଣ ଚାହଁ ତୁମେ । ଉତ୍ତର ନିର୍ଭିକଚିତ୍ତ ଯୋଦ୍ଧା ଉତ୍ତର ଦେଲେ, ମଣିଷ ମଣିଷ ଭିତରେ ଭେଦଭାବର ଅନ୍ତ । ତାହାହେଲେ ତୁମକୁ ମରିବାକୁ ହେବ । ଯୋଦ୍ଧା ଜଣକ ଶାନ୍ତ କଣ୍ଠରେ କହିଲେ, ତା ତୁମେ କରିପାର କିନ୍ତୁ ମୋର ଦର୍ଶନକୁ ନୁହେଁ । ଫୌଜ ଫେରିଗଲେ ବିଜୟ ଗର୍ବରେ । ଅହଂକାରର ବିଜୟ ଗର୍ବ ଏହିପରି ତେବେ ଏ ଯୋଦ୍ଧାଙ୍କର ବୀରତ୍ୱ କ'ଣ ଅଲୌକିକ ନୁହେଁ ? ସେ କ'ଣ ଭଗବାନଙ୍କ ଅବତାର ପରି ନିର୍ଭୟଚିତ୍ତ ନୁହଁନ୍ତି ? ବୀରଯୋଦ୍ଧା ଏ ମହାନମାନବ ଏତେ ଶକ୍ତି ପାଇଲେ କିପରି । ଭଗବାନଙ୍କର ଅବତାର ନହୋଇ ଏତେ ଶୃଙ୍ଖଳ ଓ ସଂଯମ ଦ୍ୱାରା ଏତେ ଦିବ୍ୟଶକ୍ତି ଧାରଣ କରିବା କ'ଣ ଜଣେ ସାଧାରଣ ମନୁଷ୍ୟ ପକ୍ଷରେ ସମ୍ଭବ ? ସେ ଅସାଧାରଣ ଓ ଐଶୀଶକ୍ତି ସଂପନ୍ନ ମହାମାନବ ବା ଅବତାର । ପୃଥିବୀର ସବୁଠାରୁ ଶକ୍ତିଶାଳୀ ରାଜତନ୍ତ୍ର ବିରୁଦ୍ଧରେ ଯୁଦ୍ଧ ଘୋଷଣା କରି ହିଂସାର ଦାବାନଳକୁ ଯିଏ ଅହିଂସାର ଗଙ୍ଗା ଜଳ ଢାଳି ନିର୍ବାପିତ କରିଦେଲେ ତାଙ୍କୁ ଭଗବାନଙ୍କର ଅବତାର ବୋଲି କ'ଣ ଅସ୍ୱୀକାର କରିହେବ ? ହିଂସା ପଶୁଶକ୍ତିର ଅଂହକାର, ଅହିଂସାର ଦିବ୍ୟଶକ୍ତିର ମୂଳାଧାର, ଏ ସତ୍ୟକୁ କ'ଣ ଅସ୍ୱୀକାର କରିହେବ ? ଅହିଂସା କ'ଣ ଦେବତ୍ୱର ଭୂଷଣ ନୁହେଁ ? ଅବତାର ତତ୍ତ୍ୱକୁ କେବେ କେବେ କେହି ଅନର୍ଥ କରି ନୀଳାଚଳ ନିବାସୀ ଜଗନ୍ନାଥଙ୍କୁ ଭଗବାନଙ୍କର ଏକ ଅବତାର ବୋଲି କହନ୍ତି । ଏହା ଆମ ସଂସ୍କୃତି ବିରୋଧୀ । କାରଣ ଆମ ପୁରାଣଶାସ୍ତ୍ରରେ ଯୁଗ ଯୁଗ ଧରି ଶ୍ରୀ ଜଗନ୍ନାଥଙ୍କୁ ସ୍ୱୟଂ ଭଗବାନଙ୍କର ଦାରୁବ୍ରହ୍ମ ବୋଲି କୁହାଯାଇଛି ଏବଂ ଭଗବାନ ବୋଲି ପୂଜାର୍ଚ୍ଚନା କରାଯାଇଛି । ଏପରିକି ଶ୍ରୀକୃଷ୍ଣଙ୍କୁ ଅବତାର ଓ ଜଗନ୍ନାଥଙ୍କୁ ଅବତାରୀ ବୋଲି କହି, 'ଜଗନ୍ନାଥ

ଯେ ଷୋଳ କଳା, ତହୁଁ କଳାଏ ନନ୍ଦବଳା' ବୋଲି କୁହାଯାଇଛି । ଶାସ୍ତ୍ରାନୁମୋଦିତ ଏହି ବିଚାରକୁ ଅବଜ୍ଞା କରି ଶ୍ରୀଜଗନ୍ନାଥଙ୍କୁ ଭଗବାନଙ୍କର ଅବତାର କହିବା ଧୃଷ୍ଟତା ମାତ୍ର । କିନ୍ତୁ ଆମେ ଏଠାରେ ଯେଉଁ ମହମାନବଙ୍କ କଥା କହୁଛୁ, ତାଙ୍କଠାରେ ଭଗବାନଙ୍କର ଜଣେ ଅବତାରଙ୍କର ସମସ୍ତ ଅଲୌକିକ ଗୁଣ ପ୍ରକଟିତ । ତେଣୁ ତାଙ୍କୁ ଅବତାର କହିବା ସଂପୂର୍ଣ୍ଣ ନିରାପଦ । ସାରା ହିନ୍ଦୁ ଜଗତର ବିଶ୍ୱାସ ଯେ, ଏକ ନିର୍ଦ୍ଦିଷ୍ଟ ମହତ କାର୍ଯ୍ୟ ସଂପାଦନ ପାଇଁ ଭଗବାନ ଯୁଗେ ଯୁଗେ ଅବତାର ଗ୍ରହଣ କରନ୍ତି । ବିଶେଷ କରି ଦୃଷ୍ଟ ଦଳନ ଓ ସନ୍ଥପାଳନ ଏହାର ମୁଖ୍ୟ ଉଦ୍ଦେଶ୍ୟ । ଏହି କାର୍ଯ୍ୟ ସଂପାଦନ କରିବାକୁ ମଣିଷ ଅସମର୍ଥ ହେବାରୁ ଭଗବାନ ଅବତାର ଗ୍ରହଣ କରି ତାଙ୍କର ଅଲୌକିକ ଶକ୍ତି ବଳରେ ଏହା ସଂପାଦନ କରିଥାନ୍ତି । ଏପରି ଅଦ୍ଭୁତ ଓ ଅଲୌକିକ କାର୍ଯ୍ୟଦେଖି ମଣିଷ ତାଙ୍କୁ ଭଗବାନଙ୍କର ଅବତାର ବୋଲି ଗ୍ରହଣ କରିନିଏ । ଆସୁରିକ ଶକ୍ତିରେ ଆକ୍ରାନ୍ତ ସାରାଜଗତ ଯେତେବେଳେ ତ୍ରାହି ତ୍ରାହି ବୋଲି ଆକୁଳ ଚିତ୍କାର କରୁଥିଲା । ସେତେବେଳେ ଯେଉଁ ଶକ୍ତି ଏହାକୁ ଉଦ୍ଧାର କରିଗଲେ, ସେ ଭଗବାନଙ୍କର ଏକ ଅବତାର ଭାବରେ ଗୃହିତ ହେବା ସ୍ୱାଭାବିକ୍ । ଆତ୍ମା ସକଳ ଶକ୍ତିର ଅନନ୍ତ ଭଣ୍ଡାର ହୋଇଥିବାରୁ ପାର୍ଥିବ ଜଗତରେ ଅଲୌକିକ କାର୍ଯ୍ୟ ସଂପାଦନା କରି ସାରା ଜଗତକୁ ବିସ୍ମୟାଭିଭୂତ କରେ । ତେଣୁ ଯେଉଁ ବ୍ୟକ୍ତି ଅନାସକ୍ତ ରହି ଏହି ଆତ୍ମାଠାରେ ଅବିଚଳ ଧ୍ୟାନମଗ୍ନ ସେ ଅଲୌକିକ ଦିବ୍ୟଶକ୍ତିର ଅଧିକାରୀ ହୁଏ, ଏହା ସର୍ବବାଦ ସମ୍ମତ । ଆତ୍ମା ଅନନ୍ତ ଶକ୍ତିର ଭଣ୍ଡାର ହେଲେବି ତାହା ଅଦୃଶ୍ୟ । ଅଦୃଶ୍ୟ ହେଲେବି ଆତ୍ମାଠାରୁ ଆଉ କିଛି ସତ୍ୟ ନାହିଁ । ତାହା ସିନା ଅଦୃଶ୍ୟ ମାତ୍ର ଅନୁଭବରେ ତା'ଜୀବନ୍ତ । ଆଜି ଯିଏ ଜୀବନ୍ତ କାଲି ସିଏ ଜଡ୍ । ଜଡ ମଧ୍ୟରେ ଯେଉଁ କ୍ରିୟାଶୀଳ ତାହା ଆତ୍ମା ଏବଂ ଆତ୍ମା ସର୍ବତ୍ର ପରିବ୍ୟାପ୍ତ । ଏ ତତ୍ତ୍ୱ ଅତ୍ୟନ୍ତ ପୁରୁଣା ଓ ସମସ୍ତଙ୍କୁ ଜଣା । ଏକଥା ଶାସ୍ତ୍ରାନୁମୋଦିତ ଯେ ଆତ୍ମାର ଶରଣାପନ୍ନ ହେଲେ, ଆଶ୍ରିତ ଠାରେ ଦିବ୍ୟଶକ୍ତି ସଂଚରୀ ଯାଏ । ଆତ୍ମାକୁ ଭଗବାନ ଭାବି ପୃଥିବୀର ଅଧିକାଂଶ ଲୋକେ ପୂଜାର୍ଚ୍ଚନା କରନ୍ତି । କିନ୍ତୁ ଏସବୁ ସମୁଦ୍ର କୂଳରେ ବସି

ଲହଡ଼ି ଗଣିବା ସାଙ୍ଗରେ ସମାନ। କାରଣ ଏହା ଦ୍ୱାରା କୌଣସି ସୁଫଳ ମିଳିନଥାଏ। ଶରଣାପନ୍ନ ଶବ୍ଦଟିର ଯେଉଁ ଗଭୀର ଅର୍ଥ ଅଛି, ତାକୁ କ'ଣ ଲୋକେ ବୁଝନ୍ତି ? ଶରଣାପନ୍ନ ହେବାର ଅର୍ଥ ହେଲା ସମସ୍ତ ଇନ୍ଦ୍ରିୟ ସଂଯମ ପୂର୍ବକ ସ୍ଥିର ଚିତ୍ତ ମଣିଷ ନିଷ୍ଠା, ଭକ୍ତି, ସମର୍ପଣ ଓ ବିଶ୍ୱାସକୁ ଏକତ୍ର ଠୁଳ କରି ଆତ୍ମାଠାରେ ଧ୍ୟାନମଗ୍ନ ହେବା। ଭଗବାନଙ୍କୁ ବିଶ୍ୱାସ କରନ୍ତି ବୋଲି ଯେଉଁମାନେ ଦାବୀ କରନ୍ତି, ସେମାନଙ୍କ ଭକ୍ତିଭାବ କ'ଣ ଏହିପରି ? ତେଣୁ ତାହା ନିଃଷ୍ଫଳ ପୂଜାର୍ଚ୍ଚନା। ଏସବୁ ବାହ୍ୟାଡ଼ମ୍ବର। ମଣିଷ କିଛି ପାଇବା ଆଶାରେ ଭଗବାନଙ୍କୁ ପୂଜାର୍ଚ୍ଚନା କରେ ଏବଂ କିଛି ବି ପାଏ। ସେସବୁ ବସ୍ତୁ କୈନ୍ଦ୍ରିକ ଓ କ୍ଷଣସ୍ଥାୟୀ, କାରଣ ବସ୍ତୁର ଆରମ୍ଭ ଓ ଶେଷଥାଏ। କିନ୍ତୁ କାମନା ବାସନା ମୁକ୍ତ ମଣିଷର କିଛି ପାଇବାର ଆଶା ନଥିଲେ ବି ସେ ପାଏ ବେଶୀ ଓ ତାହା ପୁଣି ଅକ୍ଷୟ। ସେ ପାଏ ଦିବ୍ୟ ଶକ୍ତି ଯାହାର କ୍ଷୟ ନାହିଁ। ପ୍ରବୃତ୍ତି ପ୍ରଧାନ ମଣିଷ ଏକଥା ବୁଝେ ନାହିଁ। ପ୍ରବୃତ୍ତି ଓ ନିବୃତ୍ତି ମଧ୍ୟରେ କିଏ କାମ୍ୟ ସେ କଥା ନ ବୁଝି ମଣିଷ ଭ୍ରମରେ ପଡ଼ି ଘୁରି ବୁଲେ। ଏହା ସମୁଦ୍ର କୂଳରେ ବସି ଲହଡ଼ି ଗଣିବା ନୁହେଁତ ଆଉ କ'ଣ। ଆସକ୍ତି ହେତୁ ମଣିଷ କିଛି ସମୟ ପାଇଁ ଆନନ୍ଦଲାଭ କରେ ସତ, ମାତ୍ର ଅନାସକ୍ତ ହେତୁ ସେ ଯେଉଁ ଆନନ୍ଦ ପାଏ, ତାହା ବିମଳ, ପବିତ୍ର ଅମୃତ ତୁଲ୍ୟ ଦିବ୍ୟାନୁଭୂତି। ଏଥିରେ କ୍ଳାନ୍ତି କିମ୍ବା ଅବସାଦ ନଥାଏ, ଥାଏ ଆସକ୍ତି ଜନିତ ସୁଖ। ଆଧ୍ୟାତ୍ମିକତାର ପ୍ରଭାବ ଏହିପରି। କ୍ଷୀରରେ ଅଦୃଶ୍ୟ ଘୃତପରି ଏହା ଜୀବନରେ ଶକ୍ତିକେନ୍ଦ୍ର। ଅନାବଶ୍ୟକ କହି ଯେଉଁମାନେ ଏହାକୁ ଅବଜ୍ଞା କରନ୍ତି ସେମାନଙ୍କ ଜୀବନ ଅନ୍ତସାର ଶୂନ୍ୟ। ଯାହାଙ୍କ କଥା ଆମେ ଏଠାରେ କହିବାକୁ ଯାଉଛୁ, ତାଙ୍କ ଜୀବନ ଆଧ୍ୟାତ୍ମିକତାରେ ପରିପୂର୍ଣ୍ଣ। ତେଣୁ ଅଲୌକିକ ଶକ୍ତିର ଗନ୍ତାଘର। ଦିବ୍ୟ ସତ୍ତାର ବିକାଶ ହେତୁ ସେ ଅଜେୟ ମଣିଷର ବିକାରଗ୍ରସ୍ତ ମନରେ ଦିବ୍ୟସତ୍ତାର ଉତ୍ତରଣ ହୁଏନା। ମନକୁ ସ୍ୱଚ୍ଛ ଦର୍ପଣ ପରି କରିବାକୁ ହେଲେ ସବୁ ମଇଳାକୁ ସଫା କରିବାକୁ ହୁଏ। ଏହା ହୁଏ ନିରନ୍ତର ଭଗବାନଙ୍କ ନାମ ସ୍ମରଣ ଦ୍ୱାରା। ମଣିଷର ଅହଂକାର ଏକ ବଡ଼ ଶତ୍ରୁ। ହିଂସା ଦ୍ୱାରା ଶତ୍ରୁକୁ ପରାସ୍ତ କରିହୁଏନା, ବର୍ତ୍ତମାନ

ପ୍ରେମ ଓ ଅହିଂସା ବଳରେ ଏ ଶରୀର ଏକ କ୍ଷେତ୍ର ଓ ଏ କ୍ଷେତ୍ରକୁ ଯିଏ ସଂଚାଳନ କରନ୍ତି ସେ କ୍ଷେତ୍ରଜ୍ଞ। ସେ ଯେଉଁ ଅସାଧ୍ୟ ସାଧନ କରିଗଲେ, ତା ମୂଳରେ ଥିଲା ଏହି ଆଧ୍ୟାତ୍ମିକଶକ୍ତି ଯାହା ସମସ୍ତ ଆସୁରୀକ ଶକ୍ତିକୁ ପରାସ୍ତ କରିବା ପାଇଁ ସମର୍ଥ। ସେ ଶକ୍ତିଠାରୁ ପରାସ୍ତ ହେଲେ ଯେ ତାହା ସବୁଦିନ ପାଇଁ ବିଲୁପ୍ତ ହୋଇଯାଏ, ତା ନୁହେଁ। ସମାଜରେ ସେ ଶକ୍ତିର ବାରମ୍ବାର ଆବିର୍ଭାବ ହୁଏ। କାରଣ ଦିବ୍ୟଶକ୍ତି ଓ ଆସୁରୀକ ଶକ୍ତି ସବୁବେଳେ ପାଖାପାଖି ଥାଆନ୍ତି। ସେହି କାରଣରୁ ରାମ ଓ ରାବଣ, କୃଷ୍ଣ ଓ କଂସ ଏବଂ ଯୁଧିଷ୍ଠିର ଓ ଦୁର୍ଯୋଧନ ଏକ ସମୟରେ ହିଁ ଆତଯାତ ହୋଇଥାନ୍ତି। ବାରମ୍ବାର ଦୁଷ୍ଟଶକ୍ତିର ଆବିର୍ଭାବ ହେତୁ, ଭଗବାନ ବିଭିନ୍ନ ରୂପରେ ବାରମ୍ବାର ଅବତୀର୍ଣ୍ଣ ହୋଇ ସମାଜରେ ଶାନ୍ତି ପ୍ରତିଷ୍ଠା କରନ୍ତି। ସେଥିପାଇଁ ଗୀତାରେ ଭଗବାନ ଶ୍ରୀକୃଷ୍ଣ କହିଛନ୍ତି। " ଧର୍ମସଂସ୍ଥାପନାର୍ଥାୟ ସମ୍ଭବାମି ଯୁଗେ ଯୁଗେ।" ମଣିଷ ଏକଥା ନଜାଣିବା ଏକ ବିପଦର କଥା ଯେ ଆତ୍ମା ସମସ୍ତ ଶକ୍ତିପୁଞ୍ଜର ଉତ୍ସ ହେଲେ ମଧ୍ୟ ବିନା ସାଧନାରେ ତାହା ମଣିଷକୁ ପ୍ରାପ୍ତ ହୁଏନା। ଶକ୍ତିବିନା ଜୀବନ ସଂଗ୍ରାମରେ ମଣିଷ ଉତ୍ତୀର୍ଣ୍ଣ ହେବ କିପରି ? ଏହି ଜ୍ଞାନର ମନ୍ତ୍ରଶକ୍ତି ମଣିଷକୁ ଅସାଧ୍ୟ ସାଧନ ପାଇଁ ସମର୍ଥ କରେ।

ଆତ୍ମବାଦରେ ଏହା ଅନସ୍ୱୀକାର୍ଯ୍ୟ। ଏକଥା କିଏ ନଜାଣେ ? ଜାଣି ମଧ୍ୟ ଉପେକ୍ଷା କରିବାରୁ ସମସ୍ତ ଦୁଃଖ ଦୁର୍ଦ୍ଦଶା ଭୋଗିବାକୁ ହୁଏ। ମଣିଷର ଜୀବନ ସଂଘର୍ଷମୟ। ଏ ସଂଘର୍ଷରେ ଉତ୍ତୀର୍ଣ୍ଣ ହେବା ପାଁଇ ଶାରିରୀକ ଓ ମାନସିକ ଶକ୍ତି ଆବଶ୍ୟକ। ଏ ଶକ୍ତି ମିଳିଥାଏ ପୃଷ୍ଟିକର ସାତ୍ତ୍ୱିକ ଆହାର ଦ୍ୱାରା। ଏପରି ଖାଦ୍ୟର ଦ୍ରବ୍ୟଗୁଣ ମନର ଭାବନାକୁ ସୁସ୍ଥ ରଖେ। ଏପରି ସୁସ୍ଥ ଭାବନା ଆଧ୍ୟାତ୍ମିକତାର ମୂଳମନ୍ତ୍ର। ଏହା ତେଜ ଓ ବୀର୍ଯ୍ୟ ବୃଦ୍ଧି ଘଟାଇ ମଣିଷକୁ ସୁସ୍ଥ ସୁଖମୟ କରେ। କାରଣ ଏହା ମନକୁ ବୈରାଗ୍ୟ ଆଡ଼କୁ ଟାଣି ନିଏ। ବୈରାଗ୍ୟ ଲୋଭଶକ୍ତିକୁ ନିୟନ୍ତ୍ରଣ କରେ। ସାଧୁ ଜୀବନ ପାଇଁ ଏହା ଅପରିହାର୍ଯ୍ୟ। ମହାଯୋଗୀ ଶ୍ରୀ ଅରବିନ୍ଦ ତାଙ୍କ ଦିବ୍ୟ ଦୃଷ୍ଟିରେ ଦେଖି ପାରିଥିଲେ ଯେ ମଣିଷର କ୍ରମବିକାଶ ପଥରେ ଯେଉଁ ମାନସ ବ୍ୟକ୍ତିର

ଉତରଣ ଘଟୁଛି ତାକୁ ଧାରଣ କରିବା ପାଇଁ ମଣିଷ ମନର ଉପଯୁକ୍ତ ପ୍ରସ୍ତୁତି ଆବଶ୍ୟକ। ତାହାହେଲେ ମଣିଷ ଅସାଧ ସାଧନ କରି ପାରିବ। ହଜାର ହଜାର ବର୍ଷଧରି ଚଳି ଆସିଥିବା ସୁଦୃଢ଼ ରାଜତନ୍ତ୍ରକୁ ଭାଙ୍ଗି ଗଣତନ୍ତ୍ର ପ୍ରତିଷ୍ଠା କରିବାକୁ ଯିଏ ନୂତନ ଯୁଗ ନିର୍ମାଣ କରିଗଲେ ସେ ସାରା ମାନବ ଜାତିର ଇତିହାସରେ ଭଗବାନଙ୍କର ଏକ ଅବତାର ବୋଲି ବୁଝିବାକୁ ହେବ। କାରଣ ଏହା ଏକ ଅସାଧାରଣ ଘଟଣା। ସମ୍ଭବତଃ ଏ ମହା ମାନବଙ୍କର ମାନସିକ ପ୍ରସ୍ତୁତି ସେଇ ଅତିମାନସ ଶକ୍ତିକୁ ଧାରଣ କରିବାକୁ ଥିଲା। କାଳର ଏକ ଆହ୍ୱାନ ଓ ଶ୍ରୀ ଅରବିନ୍ଦଙ୍କ ଦର୍ଶନର ଏକ ବାସ୍ତବ ଅଧ୍ୟାୟ।

ତାଙ୍କୁ ମାନବ ନିର୍ମାଣର ଏକ ନୂତନ ଯୁଗସ୍ରଷ୍ଟା କହିବା ଯଥାର୍ଥ। କାରଣ ତାଙ୍କ ଦିବ୍ୟ ଦୃଷ୍ଟିରେ ସେ ଯେଉଁ ପ୍ରେମ, ଅହିଂସା, ଓ ସେବାର ସ୍ୱର୍ଗ ରାଜ୍ୟ ଦେଖିଥିଲେ। ଦେହ ସର୍ବସ୍ୱ ମଣିଷ ମନର ଭାବନା ଏବେ ତା ବଦଳରେ ଏକ ତ୍ୟାଗମୟ ସାମ୍ରାଜ୍ୟ ସ୍ଥାପନର ଭିତ୍ତି ସ୍ଥାପନ କରିବାକୁ ଆରମ୍ଭ କରିଛି। ମଣିଷ ମନର କ୍ରମବିକାଶ ଗୋଟିଏ ସୋପାନ ଅତିକ୍ରମ କରି ଆଉ ଗୋଟିଏ ସୋପାନରେ ପହଞ୍ଚିବାକୁ କୋଟି କୋଟି ବର୍ଷ ଲାଗେ। ତ୍ୟାଗମୟ ଯୁଗର ଆଜି ଯେଉଁ ଭିତ୍ତି ପ୍ରସ୍ତର ସ୍ଥାପିତ ହେଲା, ତାହା ଦିନେ ନା ଦିନେ ଅବଶ୍ୟ ସଫଳ ହେବ। ସେତେବେଳେ ତା ହେବ ମାନବ ସଭ୍ୟତାର ଏକ ନୂତନ ଅଧ୍ୟାୟ। ଜୀବସତ୍ତାର କ୍ରମବିକାଶ ମାନବ ସ୍ତରକୁ ଉନ୍ନିତ ହେଲା ପରେ ଦାନବ, ଅସୁର, ମାନବ, ଏହିପରି ଅନେକ ସଭ୍ୟତା ଅତିକ୍ରମ କଲାଣି। ଏବେ ଯେଉଁ ସଭ୍ୟତାରେ ସେ ପାଦ ଦେଇଛି ତାହା ହେବ ଅତି ମାନବ ସଭ୍ୟତା। ଏଯୁଗର ଯେଉଁ ମହାମାନବ ସାରା ବିଶ୍ୱର ଜନତାକୁ ଏକ ନୂତନ ଦର୍ଶନ ସମ୍ବନ୍ଧରେ ସମ୍ବନ୍ଧିତ କରି ତାଙ୍କ ବିଚାରଧାରାରେ ପ୍ରଭାବିତ କରିଗଲେ, ସମ୍ଭବତଃ ତାଙ୍କରି ଠାରେ ଅତିମାନସ ଶକ୍ତି ଅବତରଣ କରିଛି। ତା ନ ହୋଇଥିଲେ ମଣିଷ ତାର ଆଦିମ ପ୍ରବୃତ୍ତି ହିଂସା ବଳଦରେ ପ୍ରେମ ଓ ଅହିଂସା ଆଡ଼କୁ ଏପରି ଅଗ୍ରସର ହେଉଥାନ୍ତା କାହିଁକି ? ଅବଶ୍ୟ ଆଧୁନିକ ଶିକ୍ଷା ମଣିଷକୁ ତା ମୂଳଲକ୍ଷ୍ୟରୁ ବିଚ୍ୟୁତ

କରି ଅଧିକରୁ ଅଧିକ ଦେହ ସର୍ବସ୍ୱ କରୁଛି । କିନ୍ତୁ ବିଶ୍ୱଜନତାର ମନରାଜ୍ୟରେ ପ୍ରେମ ଓ ଅହିଂସାର ଆଦର ବୁଢୁଛି, ଏକଥା ଅସ୍ୱୀକାର କରିହେବ ନାହିଁ । ଯେଉଁ ଅତିମାନସ ଶକ୍ତିର ଅବତରଣ କଥା ମହାଯୋଗୀ ଶ୍ରୀ ଅରବିନ୍ଦ କହିଛିନ୍ତି, ତାହା କ'ଣ ମିଥ୍ୟା ? ଜୀବନବ୍ୟାପୀ ସାଧନା କରି ଯିଏ ମହାଯୋଗୀ ଭାବରେ ସ୍ୱୀକୃତ, ତାଙ୍କ ଦିବ୍ୟ ଦର୍ଶନତତ୍ତ୍ୱ ମିଥ୍ୟା ହେବ କିପରି ? ଏକ ନିର୍ଦ୍ଦିଷ୍ଟ କାର୍ଯ୍ୟ ସଂପାଦନ କରିବା ପାଇଁ ଦୈବୀ ଶକ୍ତିର ଆର୍ବିଭାବ ହୁଏ । ଅତିମାନସ ଶକ୍ତିର ଅବତରଣ ହେତୁ ଏ ମହାମାନବ ଅଲୌକିକ କାର୍ଯ୍ୟ ସଂପାଦନ କରି ସାରା ବିଶ୍ୱକୁ ବିସ୍ମୟାବିଭୂତ କଲେ । ତେଣୁ ମହାଯୋଗୀ ଶ୍ରୀ ଅରବିନ୍ଦଙ୍କ ଦର୍ଶନ ମିଥ୍ୟା ନୁହେଁ, ସତ୍ୟ । ମିଥ୍ୟା ମଧ୍ୟରେ ମଣିଷ ମନରେ ଯେଉଁ ଭ୍ରାନ୍ତି ସୃଷ୍ଟି ହୁଏ ତାହା ମିଥ୍ୟାଚାରର ପ୍ରଭାବ । ଏ ପ୍ରଭାବ ମଣିଷକୁ ଭ୍ରମିତ କରି ତାର ସର୍ବନାସ କରେ । କିନ୍ତୁ ସତ୍ୟ ନୁହେଁ । ସାଧୁଙ୍କ ମନରେ ଭ୍ରମ ବୋଲି କିଛି ନଥାଏ । ସେ ନିଜର ଲକ୍ଷ୍ୟ ପଥରେ ନିରନ୍ତର ଅଗ୍ରସର ହୋଇ ଉଦ୍ଦିଷ୍ଟ କାର୍ଯ୍ୟ ସଂପାଦନ ପରେ ଆତ୍ମବଳୀ ଦାନ କରନ୍ତି । ଏହାହିଁ ଅବତାର ବାଦର ଇତିହାସ । କ୍ଷମତାର ହସ୍ତାନ୍ତର ପରେ ସାରା ଭାରତର ଦୃଶ୍ୟପଟଥିଲା ଅତ୍ୟନ୍ତ ଲୋମହର୍ଷଣକାରୀ । ହିଂସା, ପ୍ରତିହିଂସା ଜନୀତ ଉତ୍ତେଜନା, ରକ୍ତପାତ, ହତ୍ୟା, ଧର୍ଷଣ, ଲୁଣ୍ଠନ, ଗୃହଦାହର ବିଭିଷିକା ମଧ୍ୟରେ ଭାରତର ସାଂସ୍କୃତିକ ପରଂପରା ଧ୍ୱସ୍ତ ବିଧ୍ୱସ୍ତ ହୋଇଗଲା । ମଣିଷ ପ୍ରତିହିଂସାରେ ରକ୍ତପିପାସୁ ଦାନବ । ଉଗ୍ର ଧର୍ମାନ୍ଧତା ହେତୁ ବିଞ୍ଚି ହୋଇ ପଡ଼ିଲା ହସ୍ତପଦ ଛିନ୍ନ କୁଢ଼ କୁଢ଼ ମୃତଦେହ । ସାଧୁ ଜୀବନର ଭୟବର୍ଦ୍ଧକ ଏକ କଠୋର ସଂଯମର କଥା । ନିର୍ଭୟଚିତ୍ତ ମହାମାନବ ଗାନ୍ଧି ପ୍ରତ୍ୟେକ ଦଙ୍ଗାଗ୍ରସ୍ତ ଅଞ୍ଚଳ ବୁଲି ଚାଲି ପ୍ରଚାର କରୁଥିଲେ । ଶାନ୍ତି ବୋଲି ଅନାସକ୍ତ ନିରୁଦ୍‌ବିଗ୍ନ । ଶାନ୍ତି ଚିତ୍ତ ମଣିଷ ସବୁବେଳେ ଏହିପରି ନିର୍ଭୟ । ପ୍ରଶ୍ନଥିଲା ପଞ୍ଜାବର ସୀମା ନିର୍ଦ୍ଧାରଣ । ଏ କାର୍ଯ୍ୟରେ ଭାର ଅର୍ପଣ କରାଯାଇଥିଲା । Sir cyrildradelifeଙ୍କ ଉପରେ । ପ୍ରତିହିଂସାର ଦାବାନଳ ଜଳୁଥିଲା । ଲାହୋର, ଅମୃତ୍‌ସର, Golden Temple ଥିଲା ପଞ୍ଜାବର ଶିଖ୍ ସଂପ୍ରଦାୟର ଅତିପବିତ୍ର ଓ ଗୁରୁତ୍ୱପୂର୍ଣ୍ଣ ଧର୍ମପୀଠ । ଏସବୁ

ପଞ୍ଜାବର ଅର୍ନ୍ତଭୂକ୍ତ ନହେଲେ ପଞ୍ଜାବର ସବୁ ମୁସଲମାନ ମାନଙ୍କୁ ଅତି ନିର୍ମମ ଭାବରେ ହତ୍ୟା କରିବାକୁ ସମସ୍ତ ଶୀଖ୍ ସଂପ୍ରଦାୟ ପ୍ରତିଜ୍ଞାବଦ୍ଧ । ଇଂରେଜ ମାନଙ୍କର ଅନ୍ୟତମ ବିଳାସମୟ ରଙ୍ଗଶାଳା ଥିଲା ପଞ୍ଜାବ କ୍ଲବ । ସେହିଠାରେ ରହି Sir cyrildradelife ଅବସ୍ଥାକୁ ନିରୀକ୍ଷଣ କରୁଥିଲେ । ଅବସ୍ଥା ଶାନ୍ତ ନହେଲେ ସୀମା ନିର୍ଦ୍ଧାରଣ କାର୍ଯ୍ୟ କରିବେ କିପରି ? ଅବସ୍ଥାକୁ ଶାନ୍ତ କରିବା ପାଇଁ ଏକମାତ୍ର ଭରସା ଗାନ୍ଧି ସାକ୍ଷାତ୍ ଦେବଦୂତ । ତାଙ୍କ ଆଧାତ୍ମିକ ଶକ୍ତି ଓ ତେଜ ପାଖରେ ଉଗ୍ର ପିଶାଚମାନେ ବି ଭକ୍ତି ଓ ଶ୍ରଦ୍ଧାରେ ଝାଉଁଳି ପଡୁଥିଲେ । ସେତେବେଳକୁ  ଲୋକେ ଭୟ ଓ ଆତଙ୍କରେ ସହର ଛାଡ଼ି ପଳାଇଥିଲେ ଏବଂ ସେମାନେ ସମସ୍ତେ ଥିଲେ ଶୀଖ୍ ସଂପ୍ରଦାୟ । ସେମାନଙ୍କର ଦାଢ଼ି ଓ ପଗଡ଼ି ସେମାନଙ୍କୁ ସହଜରେ ଚିହ୍ନଟ କରୁଥିଲା । ସେମାନେ ସଂଖ୍ୟାଲଘୁ ହୋଇଥିବାରୁ ଆତ୍ମରକ୍ଷା ପାଇଁ ଶସସ୍ତ୍ର ହୋଇ ରହୁଥିଲେ । ଏପରିକି ଖଣ୍ଡା ଓ କୃପାଣକୁ ଧାର୍ମିକ ମାନ୍ୟତା ସେମାନେ ଦେଇଛନ୍ତି । ଲାହୋର ପୃଥିବୀର ଅନ୍ୟତମ ସବୁଠାରୁ ଅଧିକ ଜନଗହଳୀପୂର୍ଣ୍ଣ ସାତ ମାଇଲ ବ୍ୟାପୀ ଅଞ୍ଚଳରେ ଥିବା ଆକବର ୱାଲ ମଧ୍ୟରେ ୩ଲକ୍ଷ ମୁସଲମାନ ଓ ଏକଲକ୍ଷ ହିନ୍ଦୁ-ଶୀଖ୍, ପ୍ରତି ବର୍ଗମାଇଲରେ ଏକଲକ୍ଷ ଚାରିହଜାର ଲୋକ ବାସବାସ କରୁଥିଲେ । ସେଠାରେ ଥିଲା ଅନେକ ମସ୍‌ଜିଦ୍, ଦୋକାନ ବଜାର, ମନ୍ଦିର ଓ ପୁରୁଣା ଭଙ୍ଗାରୁଜା କୋଠାବାଡ଼ି । ଏସିଆର ଏହାଥିଲା ସବୁଠାରୁ ବଡ଼ ପରିତ୍ୟକ୍ତ ଜନବସତି । ସାତ ମାଇଲ ପରିବ୍ୟାପ୍ତ ଏ ପବିତ୍ର କ୍ଷେତ୍ର ଏଇ କେଇଟା ଦିନ ପୂର୍ବରୁ ଥିଲା ସୁଖ ସମୃଦ୍ଧିର ସମୁନ୍ନତ ଅଞ୍ଚଳ । ପାଚିଲା ଗହମର ସ୍ୱର୍ଣ୍ଣାଭ ଦୃଶ୍ୟ ପଥିକର ଚିତ୍ତ ହରଣ କରୁଥିଲା । ଆଜି ପରିତ୍ୟକ୍ତ, ଉପେକ୍ଷାରେ ଉଜୁଡ଼ା ଅଞ୍ଚଳ, ପ୍ରକୃତିର ଧ୍ୱସଂଲୀଳା ନୁହେଁ, ମଣିଷର ହିଂସାତ୍ମକ ପୈଶାଚିକ କାଣ୍ଡର ଏକ ନଗ୍ନଦୃଶ୍ୟ । ଏହାଥିଲା ପିଜୁଳୀ, କଦଳୀ, ଆଖୁ, କମଳା ଓ ସୁମିଷ୍ଟ ଫଳମୂଳ ଅମୃତ ତୁଲ୍ୟ ବିସ୍ତିର୍ଣ୍ଣ ଖଜୁରୀ ବଣ । ସବୁ ଆଜି ଉଜୁଡ଼ି ଯାଇଛି । ସବୁଆଡ଼େ ଖାଲି ଧ୍ୱସ୍ତବିଧ୍ୱସ୍ତ କୁଢ଼ କୁଢ଼ ଭଙ୍ଗାଘର, ରାସ୍ତା ଘାଟ ଏବଂ ଗାଡ଼ି ମଟର, ଭଙ୍ଗାରୁଜା ଅସ୍ତଶସ୍ତ୍ର ବିକ୍ରିୟ କେନ୍ଦ୍ର ଓ ଆହୁରି ଅନେକ କିଛି । ହିନ୍ଦୁ ମୁସଲିମ୍, ଶୀଖ୍

ସଂପ୍ରଦାୟର ପରସ୍ପର ବିରୋଧି ପକ୍ଷମାନେ ନିର୍ମମ ହତ୍ୟାକାଣ୍ଡରେ ଉନ୍ମୁକ୍ତ । ରାସ୍ତା ଘାଟରେ ଅସଂଖ୍ୟ ମୃତଦେହ, ସ୍ତନଯୁଗଳ କ୍ଷତବିକ୍ଷତ ଅସଂଖ୍ୟ ମହିଳା ଓ ନୀରିହ ନିଷ୍ପାପ ଶିଶୁ ମାନଙ୍କର କୁଢ଼ କୁଢ଼ ଶବ । ଏସବୁ ନୃଶଂସ ହତ୍ୟାକାଣ୍ଡ ଦେଖି ଅନ୍ୟମାନେ ରହିଥାଆନ୍ତେ କିପରି ? ଭୟ, ଆତଙ୍କରେ ହଜାର ହଜାର ନରନାରୀ ପ୍ରାଣ ବିକଳରେ ପଳାଇ ଯାଇଥିଲେ । ଶାନ୍ତି ରକ୍ଷାପାଇଁ ପୁଲିସର ସବୁ ଉଦ୍ୟମ ବ୍ୟର୍ଥ ହୋଇଥିଲା । ସେଇ ହିଂସାର ଅନଳରେ ସବୁ ପୋଡ଼ିଜଳି ଛାରଖାର ହୋଇଯାଇଥିଲା । ଲାହୋରର ୩୫ମାଇଲ ପୂର୍ବକୁ ଅବସ୍ଥିତ ଅମୃତସର ସହର । ଏହା ଭାରତରେ ଶତକଡ଼ା ଦୁଇଭାଗ, ଅର୍ଥାତ ଛ ମିଲିୟନ୍ ଶୀଖ୍ ମାନଙ୍କର ପବିତ୍ର ଧର୍ମପୀଠ । ଏଠାରେ ଶୀଖ୍ ଧର୍ମର ପବିତ୍ର ଗ୍ରନ୍ଥସାହେବ ମୟୁର ପୁଛ ଓ ସୁବର୍ଣ୍ଣ ରଙ୍ଗର ମୂଲ୍ୟବାନ କପଡ଼ା ଦ୍ୱାରା ଆବୃତ ରହି ଅସଂଖ୍ୟ ଗୋଲାପ ଫୁଲରେ ସୁସଜ୍ଜିତ ଓ ପୂଜିତ । ଏଠାରେ ସ୍ୱର୍ଣ୍ଣମନ୍ଦିର ଶୀଖ୍ ମାନଙ୍କର ପରମପୂଜ୍ୟ ଉପାସନା ସ୍ଥଳୀ । ଏହାର ସୌନ୍ଦର୍ଯ୍ୟ ବୃଦ୍ଧି ସୁବିଶାଳ ପୁଷ୍କରଣୀ ଜଳରାଶୀ ଓ ଗୋଲାପର ବିଶାଳ ବଗିଚା । ମୁସଲମାନଙ୍କ ନୃଶଂସ ଅତ୍ୟାଚାରରୁ ରକ୍ଷାପାଇବା ପାଇଁ ହିନ୍ଦୁ ଧର୍ମର ଏକ ଶାଖା ଶୀଖ୍ ଧର୍ମ ଭାବରେ ଉଭା ହୋଇଥିଲା । ଏହା ଯଦି ଏକେଶ୍ୱର ବାଦକୁ ବିଶ୍ୱାସ କରେ, ହିନ୍ଦୁ ଧର୍ମର ଉଦାରତା ବଦଳରେ ହିଂସାକୁ ହିଂସାଦ୍ୱାରା ପ୍ରତିହିତ କରିବା ଏହାର ଲକ୍ଷ୍ୟ । କାରଣ ସେମାନଙ୍କ ନେତା ତାରାସିଂ କହୁଥିଲେ ମୋଗଲ ମାନେ ହେଉଛନ୍ତି ଆକ୍ରମଣକାରୀ । ସେମାନଙ୍କ ଜନ୍ମଭୂମି ପଞ୍ଜାବକୁ ରକ୍ଷା କରିବା ପାଇଁ ଜନ୍ମଭୂମି ସେମାନଙ୍କୁ ରକ୍ତ ମାଗୁଛି । ମୋଗଲ ଆକ୍ରମଣ କାରୀଙ୍କୁ ହତ୍ୟାକରି ଜନ୍ମଭୂମିର ଆହ୍ୱାନରେ ସେମାନେ ରକ୍ତାକ୍ତ ସଂଘର୍ଷ କରିବେ । ତାରାସିଂହ ଙ୍କର ଏହି ଆହ୍ୱାନ ଶୀଖ୍ ସଂପ୍ରଦାୟର ଯୁବକମାନଙ୍କୁ ଉତ୍ତେଜିତ କରିଦେଲା । ଧର୍ମାନ୍ଧତାରେ ଉନ୍ମତ୍ତ ଶୀଖ୍‌ମାନେ ହତ୍ୟା କରିଚାଲିଲେ ମୁସଲମାନ ମାନଙ୍କୁ ଅତ୍ୟନ୍ତ ନୃଶଂସ ଭାବରେ, ଏହାଥିଲା ସେମାନଙ୍କ ପ୍ରତିହିଂସାର ତାଣ୍ଡବ ଲୀଳା । ତାରାସିଂ ଜଣେ ସ୍କୁଲ ଶିକ୍ଷକ ଥିବାରୁ ତାଙ୍କର ସାଙ୍ଗ ସାଥି ମାନେ ତାଙ୍କୁ ମାଷ୍ଟର ବୋଲି ଡ଼ାକୁଥିଲେ । ଦଙ୍ଗାରେ ତାଙ୍କ ପରିବାରର ଅନେକ ଲୋକ ନିହତ ହୋଇଥିବାରୁ ସେ ରାଗରେ

ଜଳୁଥିଲେ । ଜୁନ୍ ମାସରେ ସେ ଶୀଖ୍ ଯୁବକମାନଙ୍କୁ ମୁସଲମାନ ମାନଙ୍କ ବିରୁଦ୍ଧରେ ଉତ୍ତେଜିତ କରିବାରୁ ପ୍ରଚଣ୍ଡ ଦଙ୍ଗା ହେଲା ଓ ବହୁ ମୁସଲମାନ ନିହତ ହେଲେ । ଏପରି ହତ୍ୟାକାଣ୍ଡର ଅବସାନ ଘଟାଇବାକୁ ଶୀଖ୍ ମାନଙ୍କର ଦଶମଗୁରୁ ଘୋଷଣା କଲେ, ହିନ୍ଦୁ ଓ ମୁସଲମାନ ବୋଲି କିଛି ନାହିଁ, ସମସ୍ତେ ଈଶ୍ୱରଙ୍କର ସନ୍ତାନ । କିନ୍ତୁ କେହି ଅନ୍ୟ ଉପରେ ଅତ୍ୟାଚାର କଲେ ତାକୁ ଦମନ କରିବା ପାଇଁ ସେ ହିନ୍ଦୁ ଓ ମୁସଲମାନଙ୍କୁ ନେଇ ଏକ ଉଗ୍ରସଂଗଠନ କଲେ । ଏହାଥିଲା ଶୀଖ୍ ସଂପ୍ରଦାୟର ଏକ ପରିମାର୍ଜିତ ଓ ପରିବର୍ଦ୍ଧିତ ରୂପ । ମାତ୍ର ଏ ସଂଗଠନରେ ଶୀଖ୍ମାନେ ମୁଖ୍ୟ ଅଂଶୀଦାର ହେବା କାରଣରୁ ଏହା ହିନ୍ଦୁ ପ୍ରଭାବଶୂନ୍ୟ ହୋଇଗଲା । କାଳକ୍ରମେ ଏହା ମୁଖ୍ୟତଃ ମୁସଲମାନ ବିରୋଧି ଏକ ହିଂସାତ୍ମକ ପ୍ରଚଣ୍ଡ ଶୀଖ୍ ସଂଗଠନ ହୋଇଥିଲା ଏବଂ ପାଞ୍ଚଗୋଟି ଧାର୍ମିକ ସଂକେତ ଯଥା କୃପାଣ, ଖଣ୍ଡା, ପାନିଆ, ଡ଼ାହାଣ ହାତରେ ବଳା ଏବଂ ଯୋଦ୍ଧାବେଶରେ ସଜ୍ଜିତ ହୋଇ ବିତରଣ କରିବାର ପ୍ରଥା ଗୃହୀତ ହେଲା । ଏହାଛଡ଼ା ମୁସଲମାନଙ୍କ ଦ୍ୱାରା କଟାଯାଇଥିବା ପଶୁର ମାଂସ ଭକ୍ଷଣ, ଧୁମ୍ରପାନ, ମଦ୍ୟପାନ ଓ ମୁସଲମାନ ମହିଳା ସହିତ ସହବାସକୁ ନିଷିଦ୍ଧ କରାଗଲା । ୧୯୪୭ ଜୁଲାଇ ମାସ ବେଳକୁ ଭାରତର ସମୁଦାୟ ୬ମିଲିଅନ ପଞ୍ଜାବୀ ମାନଙ୍କ ମଧ୍ୟରୁ ୫ ମିଲିଅନ ଥିଲେ ଶୀଖ୍ ସଂପ୍ରଦାୟର । ଏମାନଙ୍କ ଦଖଲରେ ଥିଲା ପଞ୍ଜାବର ସମୁଦାୟ ଜମିର ୪୦ଭାଗ ଏବଂ ଏମାନେ ଥିଲେ ଭାରତର ସୈନ୍ୟ ବିଭାଗର ଏକ ତୃତୀୟାଂଶ । ଶୀଖ୍ ସଂପ୍ରଦାୟର ଲୋକ ଏବଂ ପ୍ରଥମ ଓ ଦ୍ୱିତୀୟ ବିଶ୍ୱଯୁଦ୍ଧରେ ଏମାନେ ସମୁଦାୟ ସାମରିକ ପୁରସ୍କାର ମଧ୍ୟରୁ ଏକ ତୃତୀୟାଂଶ ଅଧିକାର କରିଥିଲେ । ପଞ୍ଜାବରେ ସେମାନଙ୍କ ସ୍ୱଳ୍ପକାଳ ଶାସନ ସମୟରେ ଅସଂଖ୍ୟ ମୁସଲମାନଙ୍କୁ ହତ୍ୟା କରିବା ସାଙ୍ଗେ ସାଙ୍ଗେ ସେମାନଙ୍କ ସମାଧି ପୀଠମାନଙ୍କୁ ଭାଙ୍ଗି ମାଟିରେ ମିଶାଇ ଦିଆଯାଇଥିଲା । ତେଣେ ଅଗଷ୍ଟ ୧୫ ଭାରତର ସ୍ୱାଧିନତା ପାଇଁ ଦିନ ଧାର୍ଯ୍ୟ ହୋଇଥିବାରୁ ଦିଲ୍ଲୀରେ ମାଉଣ୍ଟବେଟେନ ଘମାଘୋଟ ଆଲୋଚନା ଚଳାଇଥାନ୍ତି । ଦୁଇଟି ସମସ୍ୟା ତାଙ୍କୁ ବିବ୍ରତ କରୁଥିଲା । ଏକେତ ବ୍ରିଟିଶ୍ ଅଫିସର ଓ ସେମାନଙ୍କ ପରିବାର ବର୍ଗଙ୍କର ନିରାପତ୍ତା ଓ ମଧ୍ୟବର୍ତ୍ତୀକାଳୀନ ସରକାର ଗଠନ

ସଂପର୍କରେ ମାଉଣ୍ଟବେଟେନ ବିଭିନ୍ନ ସଂଗଠନ ମାନଙ୍କ ସହ ଗୁରୁତ୍ୱପୂର୍ଣ୍ଣ ବୈଠକମାନ କରୁଥିଲେ । ଏଥି ସହିତ ମୁସଲିମ୍ ଲିଗ୍‌ର ଧମକ ସମସ୍ୟାକୁ ଅଧିକ ଜଟିଳ କରୁଥିଲା । ମଧ୍ୟବର୍ତ୍ତୀକାଳୀନ ମନ୍ତ୍ରୀମଣ୍ଡଳ ଗଠନ କରିବା ଏକ ଜଟିଳ ପରିସ୍ଥିତି ସୃଷ୍ଟି କରିଥିଲେ ମଧ୍ୟ କଂଗ୍ରେସ ଦଳରୁ ପୁରୁଣା ନେତାମାନଙ୍କୁ ମନ୍ତ୍ରୀପଦ ଦେଇ ସେମାନଙ୍କ କାର୍ଯ୍ୟକୁ ତଦାରଖ କରିବା ପାଇଁ ମୁସଲିମ ଲିଗ୍‌ର ଜଣେ ଜଣେ ନେତାଙ୍କୁ ନିଯୁକ୍ତ କଲେ । ଏହା ସହିତ ଜଣେ ବ୍ରିଟିଶ୍ ଜେନେରାଲ Sir Robert Lockhand ଙ୍କୁ ନିଯୁକ୍ତ କଲେ ।

ଉତ୍ତରପୂର୍ବ ସୀମାନ୍ତ ପ୍ରଦେଶ ଭାରତରେ ନା ପାକିସ୍ଥାନରେ ରହିବ ସେ କଥା ସ୍ଥିର କରିବାକୁ ? ଯେହେତୁ ବେଙ୍ଗଲ୍‌କୁ ସ୍ୱାଧିନ ରହିବା ପାଇଁ ସେ ମନା କରିଦେଇଥିଲେ, ଉତ୍ତର ପୂର୍ବାଞ୍ଚଳ ପ୍ରଦେଶକୁ ମଧ୍ୟ ସେହିପରି ସ୍ୱାଧିନ ରହିବା ପାଇଁ ଅନୁରୂପ ମନା କରି ଦେଲେ । ୧୫ ଅଗଷ୍ଟରେ ଭାରତକୁ ସ୍ୱାଧିନତା ପ୍ରଦାନ କରିବାକୁ ମାଉଣ୍ଟ ବେଟେନ ଯେଉଁ ନିଷ୍ପତ୍ତି ନେଇଥିଲେ ତା ବିରୁଦ୍ଧରେ ଦେଶରେ ପ୍ରବଳ ଜନମତ ଦେଖାଦେଲା । କାରଣ ଗ୍ରହ ମାନଙ୍କର ଚଳନ ଦୃଷ୍ଟିରୁ ଏହି ଦିନଟି ଅଶୁଭ ବୋଲି ଜ୍ୟୋର୍ତିବିଦ୍‌ମାନେ ଗଣନା କରି କହିଲେ । ଏହି ଜନମତର ଚାପରେ ମାଉଣ୍ଟବେଟେନ ୧୫ ଅଗଷ୍ଟ ପରିବର୍ତ୍ତେ ୧୪ ଅଗଷ୍ଟ ମଧ୍ୟ ରାତ୍ରିରେ ସ୍ୱାଧିନତା ପ୍ରଦାନ କରିବାକୁ ନିଷ୍ପତ୍ତି ନେଲେ । ଏହାପରେ ଜାତୀୟ ପତାକାରେ କେଉଁ ଚିତ୍ର ସ୍ୱାଧିନତାର ପ୍ରତୀକ ଭାବେ ସ୍ଥାନ ପାଇବ ତାହା ଗାନ୍ଧି ନିଜେ ସ୍ଥିର କରି ପତାକାର ମଝିରେ ତାଙ୍କ ଅରଟ ଚକ୍ର, ଧଳା ସବୁଜ ଓ ଈଷତ୍ ଲାଲ ରଙ୍ଗକୁ ସ୍ଥାନିତ କରି ନିଜର ସିଲ୍‌ରେ ବ୍ୟବହାର କଲେ । ଏସବୁ ରଙ୍ଗର ପ୍ରତୀକ ହେଲା ଶାନ୍ତି, ପ୍ରଗତି ଓ ଅହିଂସା । ଏହାକୁ ଭାରତର ଜାତୀୟ ପତାକାରେ ମାନ୍ୟତା ଦିଆଗଲା ।

ମଧ୍ୟବର୍ତ୍ତୀ କାଳୀନ ମନ୍ତ୍ରୀମଣ୍ଡଳ ଗଠନ ପରେ ଗାନ୍ଧି ମନ୍ତ୍ରୀମାନଙ୍କର ଏକ ଆଚରଣ ବିଧି ଘୋଷଣା କଲେ । ତାଙ୍କ ମତରେ ମନ୍ତ୍ରୀମାନେ ଖଦଡ଼ ପିନ୍ଧିବେ, ସଂପ୍ରଦାୟିକ ହିଂସାକାଣ୍ଡକୁ ବିରୋଧ କରିବେ, ସରଳ ନିରାଡ଼ମ୍ବର ଜୀବନ ଯାପନ କରିବେ, ଚାକର ବାକର ହୀନ ଛୋଟିଆ ବଙ୍ଗଳାରେ ରହିବେ, ଦୁର୍ନିତୀଠାରୁ ମୁକ୍ତ ରହିବେ, ଲୋକଙ୍କୁ ନ୍ୟାୟପୂର୍ଣ୍ଣ ଶାସନ ଦେବେ । ଆଚରଣରେ ଗାଁ ଗଣ୍ଡାର ଲୋକଙ୍କ ଭଳି

ଚଳିବେ ଇତ୍ୟାଦି । କ୍ଷମତା ପାଇଲେ ମନ୍ତ୍ରୀମାନେ ବିଳାସମୟ ଜୀବନ କାଟିବେ ବୋଲି ଯାହା ଅନୁମାନ କରିଥିଲେ, ଆଜି ତାହା ଶତପ୍ରତିଶତ ସତ୍ୟରେ ପରିଣତ ହୋଇଛି । ପଶ୍ଚିମ ପଞ୍ଜାବକୁ ଆସିଥିବା ଶରଣାର୍ଥୀ ମାନଙ୍କ ପ୍ରତି ହିନ୍ଦୁ ଓ ମୁସଲମାନ ମାନଙ୍କୁ ସତର୍କ କରାଇ ଦେଇ କହିଥିଲେ ଯେ, ସେମାନଙ୍କ ପ୍ରତି ଯଦି ସହନଶୀଳ ବ୍ୟବହାର କରାନଯାଏ, ତେବେ ସଂପ୍ରଦାୟିକ ଅସହିଷ୍ଣୁତା ସାରାଦେଶକୁ ବ୍ୟାପୀ ଯିବ ଏବଂ ଭାରତ ପୃଥିବୀରେ ଯେଉଁ ଆଦର୍ଶ ଦେଖାଇବାକୁ ବଚନବଦ୍ଧ ହୋଇଛି ତାହା ବିପନ୍ନ ହୋଇଯିବ । ଗାନ୍ଧିଙ୍କର ଏହି ଆଶଙ୍କା ଆଜି ବାସ୍ତବରେ ପରିଣତ ହୋଇଛି ଏବଂ ପ୍ରଶାସନରେ ଦୁର୍ନିତି ଓ ଭ୍ରଷ୍ଟାଚାର ପୁରି ଯାଇଛି ଏବଂ ଶହ ଶହ ଦୁର୍ନିତି ଓ କଳାଟଙ୍କା ଠୁଳ କରିବାର ଅଭିଯୋଗମାନ ବିଚାରଧୀନ ଅଛି ଏବଂ ବହୁ ଘଟଣାରେ ଆସାମୀମାନେ ଧରାପଡ଼ିଛନ୍ତି ।

ଶରଣାର୍ଥ ମାନଙ୍କ ଶିବୀରର ଦୁର୍ଦ୍ଦଶା କହିଲେ ନସରେ । ଦିଲ୍ଲୀଠାରୁ ୧୨୦ ମାଇଲ ଦୂର ପ୍ରଚଣ୍ଡ ଖରାରେ ଆସିଥିବା ୩୨ ହଜାର ଶରଣାର୍ଥୀମାନଙ୍କ ମଧ୍ୟରୁ ଅନେକ ଥିଲେ ରକ୍ତାକ୍ତ ଓ କ୍ଷତବିକ୍ଷତ । ସେମାନଙ୍କର ଗାଁ ସବୁ ଉଜୁଡି ଯାଇଥିଲା । ଆବର୍ଜନାମୟ ଅସ୍ୱାସ୍ଥ୍ୟକର ପରିବେଶରେ ଦିଲ୍ଲୀରେ ସେମାନଙ୍କ ଶିବିରରେ ରୋଗାକ୍ରାନ୍ତ ଲୋକମାନଙ୍କର ସେବା ପାଇଁ ଗାନ୍ଧି ଆୟୋଜନ କଲେ ଏକ ସେବାକେନ୍ଦ୍ର ଓ ଡାକ୍ତରଖାନା । ଦିନରାତି କଠିନ ପରିଶ୍ରମ ଦ୍ୱାରା ଗାନ୍ଧି ନିଜକୁ ନିୟୋଜିତ କଲେ ଲୋକଙ୍କର ସେବା କାର୍ଯ୍ୟରେ ଏବଂ ପରିଷ୍କାର ପରିଛନ୍ନତା ସହିତ ଉପଯୁକ୍ତ ପରିବେଶ ସୃଷ୍ଟି ପାଇଁ ନିର୍ମାଣ, ନିର୍ମଳ ପାନୀୟ ଜଳ ପାଇଁ ଗଭୀର କୂପ ଖନନ ଇତ୍ୟାଦି । କାମରେ ଦିନସାରା କଠିନ ପରିଶ୍ରମ ପରେ ବିଳମ୍ବିତ ସନ୍ଧ୍ୟାରେ ନିଜ ସେବାଦଳ ସହିତ ସେ ଦିଲ୍ଲୀ ଫେରିଲା ବେଳେ ଅତ୍ୟଧିକ ପରିଶ୍ରମ ହେତୁ କ୍ଳାନ୍ତ ହୋଇ ତାଙ୍କ କାରର ପଛସିଟରେ ଶୋଇ ପଡୁଥିଲେ । ଏପରି ପରିଶ୍ରମ ହେତୁ ୭୭ ବର୍ଷର ଗାନ୍ଧି ଦୁର୍ବଳ ହୋଇ ପଡ଼ିଲେ ଏବଂ ତାଙ୍କର ସ୍ୱାସ୍ଥ୍ୟ ଭଗ୍ନ ହେଲା । ଶରଣାର୍ଥୀ ଶିବିରରେ କ୍ଷତବିକ୍ଷତ ରୋଗାକ୍ରାନ୍ତ ଲୋକମାନଙ୍କର ମାଛି ରଣଭଣ ପୁଜରକ୍ତ ପୂର୍ଣ୍ଣ ଖୋଲା କ୍ଷତ

ସବୁ ସଫା ସୁତୁରା କରି ଔଷଧ ଲଗାଇଲା ବେଳେ ଲୋକେ ତାଙ୍କୁ ବିକଳରେ ଚାହିଁ ରହୁଥିଲେ । ସେ ସବୁ ଦୃଶ୍ୟ ଥିଲା ଅତ୍ୟନ୍ତ କରୁଣ, ସତେ ଯେମିତି ଦୁର୍ଗତମାନଙ୍କର ସେଥିଲେ ଦେବଦୂତ ପରି ଏକମାତ୍ର ସହାୟ । ସ୍ନେହମୟୀ ଜଣେ ଜନନୀ ପରି । ଶରଣାର୍ଥି ଶିବିର କାମ ସାରି ସନ୍ଧ୍ୟାରେ ଯେତେବେଳେ ଗାନ୍ଧି ଫେରୁଥିଲେ, ଯେଉଁଠି ପ୍ରାର୍ଥନା ସମୟ ହେଉଥିଲା, ସେଠାରେ ସେ ତାଙ୍କର କାରଟିକୁ ରାସ୍ତା କଡରେ ରଖି ପ୍ରାର୍ଥନାରେ ବସି ଯାଉଥିଲେ ଏବଂ ଶ୍ରୀମଦ୍ ଭଗବତଗୀତାର କୌଣସି ନା କୌଣସି ପ୍ରସଙ୍ଗ ଉପରେ ଆଲୋଚନା କରି ଲୋକଙ୍କୁ ବୁଝାଇଥିଲେ । ଏକଥା ସମସ୍ତେ ଜାଣନ୍ତି ଯେ, ଗୀତା ଥିଲା ତାଙ୍କର ଅତି ଆଦରର ସ୍ନେହମୟୀ ଜନନୀ ସଦୃଶ ଏବଂ ପ୍ରତ୍ୟେକ କାର୍ଯ୍ୟର ପ୍ରେରଣାର ଉତ୍ସ । ସେ କହୁଥିଲେ ଜୀବନର ସବୁ ସମସ୍ୟାର ସମାଧାନ ପାଇଁ ଗୀତାରେ ଉପଦେଶ ରହିଛି ଏବଂ ଏହାକୁ ଯିଏ ବିଶ୍ୱାସ କରେ ତାକୁ ଶାନ୍ତି ମିଳେ । ଗୀତାରେ ଯାହାସବୁ କୁହାଯାଇଛି, ତାକୁ ସଂଘର୍ଷମୟ ଜୀବନ ଦର୍ଶନ ବୋଲି କୁହଯାଇପାରେ ଏବଂ ପ୍ରତ୍ୟେକ ଘଟଣାରେ ସତ୍ୟର ଜୟବୋଲି ଦର୍ଶାଯାଇଛି । ପ୍ରକୃତରେ ପ୍ରତ୍ୟେକ ମଣିଷ ବା ପ୍ରତ୍ୟେକ ଜାତି ପକ୍ଷରେ ଦୁଇଟି କଥା ସବୁବେଳେ ସତ୍ୟ । ଅହଂକାରର ପତନ ଓ ସତ୍ୟର ଜୟ । ଏହାକୁ ପ୍ରକୃତିଚକ୍ରର ନିୟମ ବୋଲି ଧରାଯାଇ ପାରେ ।

କ୍ଷମତା ହସ୍ତାନ୍ତର ପାଇଁ ସ୍ଥିର ହୋଇଥିବା ଅଗଷ୍ଟ ମାସ ୧୫ ତାରିଖ ପାଖେଇ ଆସୁଥିଲା । ଏଥିପାଇଁ ୧୯୪୭ ଜୁଲାଇ ମାସ ୧୮ ତାରିଖରେ ରାଜାଙ୍କର ଅନୁମୋଦନ ମିଳିଗଲା । ଏହାଥିଲା ବିଲାତ ଭାରତ ମଧ୍ୟରେ ଥିବା ସଂପର୍କ ଶେଷ ହେବାର ଶେଷ ଦିନ । କେବଳ କ୍ଷମତା ହସ୍ତାନ୍ତର ନୁହେଁ, ଅଧିକ ଦେଶଜୟ କରିବା, ଅଧିକ ସମୁଦ୍ର ଯାତ୍ରା କରିବା, ଅଧିକ ଦେଶର ଅର୍ଥଭଣ୍ଡାରକୁ ଲୁଣ୍ଠନ କରିବା, ଅଧିକ ଲୋକଙ୍କ ଉପରେ ଅତ୍ୟାଚାର କରିବା ଓ ଅଧିକରୁ ଅଧିକ ଲୋକଙ୍କୁ ଶାସନ କରିବାର ସମସ୍ତ ସୁଯୋଗରୁ ବ୍ରିଟିଶ୍ ଜାତିର ଯୁଗ ସରିଯିବାର ସହିତ ବ୍ରିଟିଶ୍ ସାମ୍ରାଜ୍ୟର ପତନ ଘଟିଲା । Indian bill of Independence ଆଗତ କରି ବ୍ରିଟିଶ୍ ପ୍ରଧାନମନ୍ତ୍ରୀ

clement attlee ପାର୍ଲାମେଣ୍ଟରେ କହିଲେ, a state at the point of sword has been fored to sarrender power, but it was very race for a people who had long enjoyed power over a country to hard over power voluntarily ବିରୋଧି ଦଳ ନେତା winston churchill ଏହାକୁ ଏକ Tidy little bill ଅଭିହିତ କରି କହିଲେ A tidy little bill of this rare nature had dioplayed better mount better very well. ଆଲୋଚନା ଓ ଯୁକ୍ତିତର୍କ ପରେ ବିଲ୍‌ଟି ପାଶ୍ ହୋଇ ଇତିହାସରେ ପରିଣତ ହେଲା ଏବଂ ଭାରତରେ ବ୍ରିଟଶ୍ ସାମ୍ରାଜ୍ୟର ସୂର୍ଯ୍ୟ ଅସ୍ତମିତ ହୋଇଗଲା । ତାପରେ ଆସିଲା ଦେଶୀୟ ରାଜା ମହାରାଜାମାନଙ୍କର ଭାରତରେ ମିଶିବା କଥା । ଏ ମିଶ୍ରଣ ପ୍ରସ୍ତାବ ଆଗତ କରି ଜଣ ଜଣ କରି ମାଉଣ୍ଟବେଟେନ ରାଜା ମହାରାଜା ମାନଙ୍କୁ ପଚାରିଲେ । ଜଣେ କହିଲେ ଭାରତରେ ମିଶିଲେ ସେ ତାଙ୍କ ଭିତରେ ବାଘଶୀକାର କରିବାର ଅଧିକାର ପାରିବେ କି ? ଆଉ ଜଣେ କହିଲେ ସେ ଯଦି ମିଶିବେ ତେବେ ତାଙ୍କୁ ୟୁରୋପରେ ଦେଶ ସବୁ ବୁଲିବାକୁ ଅନୁମତି ଦିଆଯିବ କି ? ଆଉଜଣେ ଦିୱାନ କହିଲେ ତାଙ୍କ ରାଜା ବର୍ତ୍ତମାନ ସମୁଦ୍ର ଯାତ୍ରାରେ ଥିବାରୁ ସେ କିଛି କହିପାରିବେ ନାହିଁ । ଏଥିରୁ ବୁଝିବାକୁ ହେବ ଯେ ଅଧିକାଂଶ ରାଜା ମହାରାଜା ସେମାନେ ରାଜ୍ୟରେ ପ୍ରଜାମାନଙ୍କ କଥା ଚିନ୍ତା ନକରି ଭୋଗ ବିଳାସ ଭିତରେ ଜୀବନ କାଟିବାକୁ ଅଧିକ ସୁଖକର ମଣୁଥିଲେ । ସେମାନଙ୍କ ଠାରୁ ଏପରି ଉତ୍ତର ଶୁଣି ମାଉଣ୍ଟବେଟେନ ମିଶ୍ରଣ ପ୍ରସ୍ତାବରେ ସ୍ୱାକ୍ଷର କରିବାକୁ କହିଲେ । ଏହାପରେ ସେ ସମ୍ରାଟ୍ ଷଷ୍ଠ ଜର୍ଜଙ୍କୁ କହିଲେ ଆଜି ଆପଣଙ୍କର ସାର୍ବଭୌମ କ୍ଷମତାର ଅବସାନ ଘଟିଲା । ଏଣିକି ଅଗଷ୍ଟ ପନ୍ଦର ପରେ ଯେଉଁ ନୂତନ ଭାରତ ଜନ୍ମ ନେବାକୁ ଯାଉଛି, ତା ପ୍ରତି ସଦୟ ହୁଅନ୍ତୁ । କାରଣ ଭାରତ ପାଇଁ ଦକ୍ଷ ପ୍ରଶାସନିକ ଅଧିକାରୀ, ଡ଼ାକ୍ତର, ଇଂଜିନିୟର ଇତ୍ୟାଦି ବହୁ ସଂଖ୍ୟାରେ ଆବଶ୍ୟକ ହେବ ।ଏସବୁ ପୂରଣ କରିବାକୁ ଭାରତ ଏକା ଏକା ସକ୍ଷମ ନୁହେଁ । ଏଥିପ୍ରତି ଆପଣଙ୍କର ସହଯୋଗ ଏକାନ୍ତ ଆବଶ୍ୟକ । ଭାରତ,

ବ୍ରିଟିଶ୍ ଜାତିଠାରୁ ଏପରି ଉଦାରତା ଆଶାକରେ । କାଶ୍ମୀର ପ୍ରସଙ୍ଗରେ ସେ କହିଲେ, କାଶ୍ମୀରର ଏପରି ଭୌଗଳିକ ସ୍ଥିତି ହେତୁ ଭାରତ ସହିତ ଚୀନ, ତିବତ ଏବଂ ପାକିସ୍ଥାନ ସୁସଂପର୍କକୁ ରଖିବା ଏକାନ୍ତ ଆବଶ୍ୟକ । କାଶ୍ମୀରକୁ ଭାରତ ସହିତ ମିଶାଇବାକୁ କାଶ୍ମୀରର ବଂଶାନୁକ୍ରମିକ ହିନ୍ଦୁରାଜା ଅନିଛୁକ ଥିବାରୁ ମାଉଣ୍ଟବେଟେନ ତାଙ୍କୁ ମିଶ୍ରଣ ପ୍ରସ୍ତାବରେ ରାଜି ହେବାକୁ କହିଲେ । କାଶ୍ମୀର ଥିଲା ତାଙ୍କର ଅତି ପ୍ରିୟ ରାଜ୍ୟ । ୱେଲସର ଯୁବରାଜଙ୍କ ସହିତ ସେ କାଶ୍ମୀରରେ ପୋଲ କ୍ରିଡା କରିଥିଲେ । ବାରମ୍ବାର ଗସ୍ତ କରି କାଶ୍ମୀରର ରାଜା ହରି ସିଂ କାଶ୍ମୀର ହିତ ପାଇଁ ସେ ତାଙ୍କ ଉପରେ ଚାପ ସୃଷ୍ଟି କରୁଥିଲେ । କାରଣ ଇହମତ ଅଲ୍ଲୀ ମୁସଲମାନ ବହୁଳ କାଶ୍ମୀରକୁ ପାକିସ୍ଥାନର ଏକ ଅଂଶ ବିଶେଷ ଭାବରେ ରଖିବାକୁ ଚାହୁଁଥିଲେ । ଏଣେ ପଟେଲଙ୍କୁ ଦେଇଥିବା ପ୍ରତିଶୃତି ଅନୁସାରେ କାଶ୍ମୀରକୁ ଭାରତ ସାଙ୍ଗରେ ରଖିବାକୁ ମାଉଣ୍ଟବେଟେନ ଚାହୁଁଥିଲେ । କିନ୍ତୁ ଏହାକୁ ପାକିସ୍ଥାନ ସହିତ ରଖିବାକୁ ଜିନା ମାଉଣ୍ଟବେଟେନଙ୍କୁ କହିଥିଲେ ।  ହରି ସିଂ ହିନ୍ଦୁ ରାଜା ଥିଲେ ମଧ୍ୟ ପାକିସ୍ଥାନ କାଶ୍ମୀରକୁ ଏକ ସମ୍ମାନଜନକ ସ୍ୱତନ୍ତ୍ର ରାଜ୍ୟର ମାନ୍ୟତା ଦେବ। ମାଉଣ୍ଟବେଟେନ ହରି ସିଂକୁ ବୁଝାଇ କହିଲେ, କାଶ୍ମୀରର ଶତକଡ଼ା ୯୦ ଭାଗ ମୁସଲମାନ ହୋଇଥିବାରୁ ଏହା ପାକିସ୍ଥାନ ସହିତ ରହିବା ଉଚିତ । ଉତ୍ତରରେ ହରି ସିଂ କହିଲେ, ସେ କେବେହେଲେ ପାକିସ୍ଥାନ ସହିତ ରହିବେ ନାହିଁ । ମାଉଣ୍ଟବେଟେନ କହିଲେ, ତେବେ ତାହା ଭାରତ ସହିତ ରହୁ ଏବଂ କାଶ୍ମୀରର ସୀମାନ୍ତକୁ ସୁରକ୍ଷା ଦେବା ପାଇଁ ପଦାତିକ ବାହିନୀର ଏକ ଡ଼ିଭିଜନ ସୈନ୍ୟ ଯୋଗାଇ ଦିଆଯିବ । ହରି ସିଂ କହିଲେ, ନା, ସେ ଭାରତ ସହିତ ବି ରହିବେ ନାହିଁ , ସ୍ୱାଧୀନ ହୋଇ ରହିବେ । ମାଉଣ୍ଟବେଟେନ କହିଲେ ନା, ସ୍ୱାଧୀନ ହୋଇ ଆପଣ ରହିପାରିବେ ନାହିଁ । ଆପଣଙ୍କ ରାଜ୍ୟର ଅବସ୍ଥିତି ଏପରି ଯେ ଆପଣ ଭାରତ ଓ ପାକିସ୍ଥାନ ପ୍ରତି ଏପରି ଶତୃ ମନୋଭାବ ରଖିଲେ ଉଭୟ ଦେଶ ମଝିରେ ରହି କାଶ୍ମୀର ଚାପି ହୋଇଯିବ ଏବଂ ସେମାନଙ୍କ ଆକ୍ରମଣକୁ ଆପଣ ସାମ୍ନା କରି ପାରିବେ ନାହିଁ । ଅବସ୍ଥା ଚକ୍ରରେ ଆପଣଙ୍କ ସିଂହାସନ

ଓ ଏପରିକି ପ୍ରାଣ ବି ଯାଇପାରେ। ହରି ସିଂ ନଦୀରୁ ମାଛ ଶୀକାର କରୁଥିଲେ। ମାଉଣ୍ଟବେଟେନ କଥା ଶୁଣି ଚମକି ଉଠି ବିଚଳିତ କଣ୍ଠରେ କହିଲେ 'ହେଉ ତେବେ', ଆପଣ ଯଦି ଏପରି ସୁରକ୍ଷା ଦେବେ କାଶ୍ମୀର ଭାରତ ସହିତ ମିଶିବ। ଦିନେ ଯେ ଏପରି ଘଟଣା ଘଟିବ, ସେକଥା ଦେଶୀୟ ରାଜାମାନେ କେବେ ଭାବିନଥିଲେ। ମିଶ୍ରଣ ଦସ୍ତାବିଜରେ ସ୍ୱାକ୍ଷର କରିବା କଥା ଶୁଣି ଜଣେ ଛୋଟ ପିଲାଟିଏ ପରି ଧକେଇ ଧକେଇ କାନ୍ଦିଲେ, ଆଉ ଜଣେ ଶୁଣୁ ଶୁଣୁ ହୃଦଘାତ୍‌ରେ ପ୍ରାଣ ହରାଇଲେ, ଆଉ ଜଣେ କହିଲେ ରାଜାମାନଙ୍କୁ ବିଧାତା ଦିବ୍ୟ କ୍ଷମତା ପ୍ରଦାନ କରିଛନ୍ତି। ସେ ସ୍ୱାକ୍ଷର କରିବାକୁ ମନା କରିଦେଲେ। ମାତ୍ର ସେ ସ୍ୱାକ୍ଷର ନକଲେ ବଳ ପ୍ରୟୋଗ କରାଯିବ ବୋଲି ଯେତେବେଳେ କୁହାଗଲା। ସେତେବେଳେ ସେ ମୂର୍ଚ୍ଛାହୋଇ ତଳେ ପଡ଼ିଗଲେ। ସତରେ ପୁରୁଷାନୁକ୍ରମେ ରାଜାମାନେ ଶାସନ କରୁଥିବାରୁ, କ୍ଷମତା ଛାଡ଼ିବା ବେଳେ ବହୁରାଷ୍ଟ୍ର କୁଣ୍ଠା ପ୍ରକାଶ କଲେ। ସେମାନଙ୍କ ବିରୁଦ୍ଧରେ ବଳ ପ୍ରୟୋଗର ଧମକକୁ ମିଶ୍ରଣ ଦସ୍ତାବିଜରେ ସ୍ୱାକ୍ଷର କରିବାକୁ ସେମାନେ ବାଧ ହେଲେ। ଅଳ୍ପ କେତେକ ସ୍ୱାଧିନତା ପ୍ରେମୀ ରାଜା ସ୍ୱଇଛାରେ ସ୍ୱାକ୍ଷର କଲେ। ଏକଥା ଅତ୍ୟନ୍ତ କଷ୍ଟକର ଥିଲେ ମଧ୍ୟ ପଟେଲଙ୍କ ବଳିଷ୍ଠ ବ୍ୟକ୍ତିତ୍ୱ ଏହା ସଂପାଦନ କଲେ। ପଞ୍ଜାବର ଆଠଜଣ ଏକାଥରେ ସ୍ୱାକ୍ଷର କଲାବେଳେ ବ୍ୟାକୁଳ କଣ୍ଠରେ କହିଲେ ଆମେ ସ୍ୱାକ୍ଷର କରିନଥିଲେ ଆମେ ଆଜି ଜଳନ୍ତା ଚୁଲିରେ ପଡ଼ି ମୃତ୍ୟୁବରଣ କରିଥାଆନ୍ତୁ। ପ୍ରକୃତରେ ଏହାଥିଲା ଏକ ନିର୍ଦ୍ଦୟ ଓ ନୃଶଂସ କାର୍ଯ୍ୟ। ମାଉଣ୍ଟବେଟେନଙ୍କ ଏପରି କାର୍ଯ୍ୟକୁ କେତେକ ରାଜା ଦୃଢ଼ ବିରୋଧ କଲେ। ମାଉଣ୍ଟବେଟେନଙ୍କ ଏହି ଯୋଜନାକୁ ସଫଳ ପରିବା ପାଇଁ ଭି.ପି ମେନନ ଦୃଢ଼ ସମର୍ଥନ କରୁଥିଲେ। ମାଉଣ୍ଟବେଟେନଙ୍କ ବ୍ୟକ୍ତିଗତ ବନ୍ଧୁ ଭୋପାଳ ରାଜା ତାଙ୍କ ଚା'ପାନ ନିମନ୍ତ୍ରଣକୁ ତାସ୍ଲ୍ୟକରି କହିଲେ ଏପରି ନିମନ୍ତ୍ରଣ କେବଳ ଦିନ ମଜୁରିଆ ଓ ବଢ଼େଇ ମାନଙ୍କୁ କରାଯାଏ, ରାଜାମାନଙ୍କୁ ନୁହେଁ। ଉଦୟପୁର ରାଜା ପଡ଼ୋଶୀ ରାଜାମାନଙ୍କୁ ନେଇ ଏକ ମିଳିତ ବିରୋଧି ସଂଘ ଗଢ଼ିବାକୁ ଉଦ୍ୟମ କଲେ। ଗୋୟାଲିୟର ରାଜା ମଧ୍ୟ

ଏହି ସଂଗଠନକୁ ସମର୍ଥନ କଲେ । ଟାଭାକୋର ରାଜା ତାଙ୍କ ପ୍ରଧାନମନ୍ତ୍ରୀଙ୍କ ନେତୃତ୍ୱରେ ସ୍ୱାଧିନ ରହିବାକୁ ଘୋଷଣା କଲେ । ଅଗଷ୍ଟ ପନ୍ଦର ପାଖେଇ ଆସିଲା ବେଳକୁ ଏମାନଙ୍କ ବିରୋଧ ଏକ ଜଟିଳ ସମସ୍ୟା ସୃଷ୍ଟିକଲା । ଏହା ଦେଖି ପଟେଲ ତାଙ୍କ ସ୍ଥାନୀୟ କଂଗ୍ରେସ ଦଳକୁ କାମରେ ଲଗାଇଲେ । ଅନେକ ରାଜାଙ୍କୁ ଭାରତ ସହିତ ମିଶିବାକୁ ବଳ ପ୍ରୟୋଗର ଧମକ ଦିଆଗଲା । ଓଡ଼ିଶାର ରାଜାଙ୍କୁ ତାଙ୍କ ପ୍ରାସାଦରେ ବନ୍ଦୀ କରି ସ୍ୱାକ୍ଷର ନ କରିବା ପର୍ଯ୍ୟନ୍ତ ଛଡ଼ାଯିବ ନାହିଁ ବୋଲି ଧମକ ଦିଆଗଲା । ଟାଭାକୋର ମହାରାଜା ପ୍ରଧାନମନ୍ତ୍ରୀଙ୍କୁ କଂଗ୍ରେସ ବିକ୍ଷୋଭକାରୀଙ୍କ ଦ୍ୱାରା ଛୁରୀ ଭୁସି ହତ୍ୟା କରାଗଲା । ରାଜା ଡ଼ରିଯାଇ ଭାରତ ସହିତ ରହିବାକୁ ତାଙ୍କର ସମ୍ମତି ଦିଲ୍ଲୀକୁ ଜଣାଇ ଦେଲେ । ଯୋଧପୁର ରାଜାଙ୍କ ମୃତ୍ୟୁ ପରେ ତାଙ୍କ ପୁଅ ନୂଆ କରି ସିଂହାସନ ଆରୋହଣ କରି ଉଡାଜାହାଜରେ ଭ୍ରମଣ କରିବା, ନାରୀମାନଙ୍କୁ ଉପଭୋଗ କରିବା ଓ ଖେଳକୁଦରେ ମାତି ରହିଥାନ୍ତି । କଂଗ୍ରେସ ଦଳର ସମାଜବାଦୀ ନେତା ମାନଙ୍କର କୌଣସି ସାହାଯ୍ୟ ନ ପାଇ ମୁସଲିମ୍‌ଲିଗର କେତେକ ନେତାମାନଙ୍କ ସହିତ ଦିଲ୍ଲୀରେ ଏକ ଗୁପ୍ତ ମନ୍ତ୍ରଣା କରି, ପାକିସ୍ଥାନ ସହିତ ରହିଲେ କି ପ୍ରକାର ସାହାଯ୍ୟ ପାଇବେ ବୋଲି ଜାଣିବାକୁ ଚାହିଁଲେ, ଜିନା ତାଙ୍କ ଟେବୁଲ ତ୍ରରୁ ଖଣ୍ଡେ ସାଦା କାଗଜ ବାହାର କରି କହିଲେ, କ'ଣ ତୁମର ସର୍ତ୍ତ ସେ ସବୁ ଏହି କାଗଜରେ ଲେଖିଦିଅ । ରାଜା ଚିନ୍ତା କରିବାକୁ ସମୟ ମାଗି ହୋଟେଲକୁ ଫେରିଗଲେ । ହୋଟେଲରେ ପହଞ୍ଚିଲା ପରେ ଦେଖିଲେ ଭି.ପି ମେନନ ତାଙ୍କୁ ସେଠାରେ ଅପେକ୍ଷା କରିଛନ୍ତି । ମେନନ କହିଲେ, ଭାଇସ ରାଏ ତାଙ୍କୁ ଦେଖା କରିବା ପାଇଁ ତାଙ୍କ ଅଫିସକୁ ଡ଼କାଇଛନ୍ତି । ମାଉଣ୍ଟବେଟେନ ଆସିଲେ ଏବଂ ମେନନଙ୍କୁ ତାଙ୍କ ଠାରୁ ଭାରତ ସହିତ ରହିବାକୁ ସମ୍ମତିର ସ୍ୱାକ୍ଷର ନେବା ପାଇଁ କହି ଚାଲିଗଲେ । ଯୋଦ୍ଧପୁର ରାଜା ସ୍ୱାକ୍ଷର ଦେଲା ପରେ ହଠାତ୍ ପିସ୍ତଲ ବାହାର କରି ମେନନ ମୁଣ୍ଡକୁ ଲକ୍ଷ୍ୟ କରି ଗୁଳିକରି ଦେବାକୁ ଧମକ ଦେଲେ । ଧମକର ଚିତ୍କାର ଶୁଣି ତତ୍‌କ୍ଷଣାତ୍ ମାଉଣ୍ଟବେଟେନ ଫେରି ଆସି ତାଙ୍କ ହାତରୁ ପିସ୍ତଲ ଛଡାଇ ନେଲେ । ତିନିଦିନ

ପରେ ମେନନ ଯୋଦ୍ଧପୁରକୁ ଭାରତ ସହ ମିଶିଯିବାର ଚୁକ୍ତିପତ୍ର ରାଜାଙ୍କ ଘରକୁ ପଠାଇ ଦେଲେ। ଏହା ପରେ ରାଜା ମେନନଙ୍କୁ ଖୁସି କରିବା ପାଇଁ ଏକ ବନ୍ଧୁ ମିଳନ ଆୟୋଜନ କରି ମେନନଙ୍କୁ ନିମନ୍ତ୍ରଣ କଲେ, ମେନନ ଆସିଲେ। ସେଦିନ ଜୋର କରି ମେନନଙ୍କୁ ମଦ୍ ପିଆଇଲେ ଏବଂ ମାଂସର ରୋଷ୍ଟ ସହିତ ନୃତ୍ୟ କରିବାକୁ ନର୍ତ୍ତକୀମାନଙ୍କୁ ଆଦେଶ ଦେଲେ। ଶାକାହାରୀ ମେନନଙ୍କ ପାଇଁ ଏହାଥିଲା ଏକ ଅତ୍ୟନ୍ତ ଦୁଃଖର ଦିନ। ତାପରେ ରାଜା ନୃତ୍ୟଗୀତକୁ ବନ୍ଦ କରିଦେଇ ତାଙ୍କ ବ୍ୟକ୍ତିଗତ ଉଡ଼ାଯାହାଜରେ ମେନନଙ୍କୁ ଦିଲ୍ଲୀନେଇ ଗଲେ। ଦିଲ୍ଲୀ ବିମାନବନ୍ଦରରେ ପହଞ୍ଚିଲା ପରେ ମେନନ ଆଉ ଚାଲିପାରୁନଥିଲେ, କିନ୍ତୁ ତାଙ୍କ ଥରିବା ହାତର ଆଙ୍ଗୁଳୀ ଦେଖାଇ ଯୋଦ୍ଧାପୁର ଭାରତରେ ମିଶିଗଲା ବୋଲି ସଂକେତ ଦେଲେ। ଅନ୍ୟ ପାଞ୍ଚଗୋଟି ରାଜ୍ୟର୍ ରାଜାମାନେ ଯାହା ସବୁ ପାକିସ୍ଥାନରେ ମିଶିବାର ଥିଲା, ସେମାନେ ଜିନ୍ନାଙ୍କ ପାଖରେ ଧାଡ଼ିବାନ୍ଧି ଆପତ୍ତି କଲେ। ସେତେବେଳକୁ ସେ ରାଜ୍ୟ ଗୁଡ଼ିକର ମିଶ୍ରଣ ପ୍ରକ୍ରିୟା ଶେଷ ହୋଇ ଯାଇଥିଲା। ହାଇଦର ନିଜାମ ଶତଚେଷ୍ଟା କରି ତାଙ୍କ ରାଜ୍ୟକୁ ସ୍ୱାଧୀନ ରଖିବାକୁ ବିଟ୍ରେନର ଅନୁମୋଦନ ପାଇଲେ ନାହିଁ। କାଶ୍ମୀରକୁ ମଧ୍ୟ ସ୍ୱାଧିନ ହୋଇ ରହିବାକୁ ଦିଆଗଲା ନାହିଁ।

ଜୁନାଗଡ଼ର ରାଜା ଥିଲେ ଭିନ୍ନ ପ୍ରକୃତିର ମଣିଷ। ମୁସଲିମ୍‌ଲିଗର ଜଣେ ଏଜେଣ୍ଟ ତାଙ୍କୁ ବୁଝାଇ ଦେଇଥିଲେ ଯେ, ସେ ଯଦି ଭାରତ ସହ ରହିବାକୁ ରାଜି ହୁଅନ୍ତି, ତେବେ ତାଙ୍କ କୁକୁର ମାନଙ୍କୁ ମାରିଦିଆଯିବ। ଏକଥା ଶୁଣି ସେ ବିଚଳିତ ହୋଇ ପଡ଼ିଲେ ଏବଂ ସ୍ୱାଧୀନ ନହୋଇ ପାକିସ୍ଥାନ, ଭାରତ କାହା ସହିତ ରହିବେ ଠିକ୍ କରି ପାରିଲେ ନାହିଁ। ଅଗଷ୍ଟ ୫ତାରିଖ ଦିନ ଦୁଇଜଣ ଭାରତୀୟ ରାଜନେତାଙ୍କୁ କହିଲେ, ଏ ହେଉଛନ୍ତି ପଞ୍ଜାବ C.I.D ର Mr. Savage. ଆପଣମାନଙ୍କୁ ମୋର ଗୋଟିଏ ଗପ କହିବାର ଅଛି। ଏଗପଟିକୁ ଜିନା ଏବଂ ଲିଆକତ ଅଲ୍ଲୀ ଖାଁ ଖୁବ୍ ଧ୍ୟାନର ସହିତ ଶୁଣିବା ଦରକାର। କାରଣ ଭାରତରେ ବ୍ରିଟିଶ୍ ଇଣ୍ଟିଲିଜେନ୍‌ସ ଅର୍ଗାନାଇଜେସନ ଏତେ ବଳିଷ୍ଠ ବୋଲି ଯେଉଁ ଖ୍ୟାତି ଅର୍ଜନ କରିଛି। ତାହା

କେବଳ ଏହାଙ୍କ ଦ୍ୱାରା ସମ୍ଭବ ହୋଇଛି । ରାଜନୀତିଜ୍ଞ ମାନଙ୍କ ମଧ୍ୟରେ ଯେତେସବୁ ଗୁପ୍ତ ଘଟଣା ଅଛି । ସେ ସବୁକୁ ଏହି ସଂସ୍ଥା ସଠିକ୍ ଭାବରେ ଠାବ କରି ଜଣାଇଦିଏ । ଶୀଖ୍ ସଂତ୍ରାସବାଦୀ ମାନଙ୍କର ଏକ ବଡ଼ଦଳ ଆର.ଏସ୍.ଏସ୍.ସହିତ ଘନିଷ୍ଠ ଗୁପ୍ତ ସଂପର୍କ ରଖିଥିଲା । ଏହି ଦଳର ମୁଖ୍ୟଥିଲେ ତାରାସିଂ । ଲାହୋରଠାରେ ଅନୁଷ୍ଠିତ ସଂତ୍ରାସବାଦୀ ମାନଙ୍କର ଏକ ଗୁପ୍ତ ବୈଠକରେ ତାରାସିଂ ସାରା ଭାରତକୁ ରକ୍ତ ରଞ୍ଜିତ କରିବାକୁ ଯୋଜନା କରିଥିଲା । ଏହି ଯୋଜନା ଅନୁସାରେ ଶୀଖ୍ ସଂପ୍ରଦାୟର କମାଣ ବିଧ୍ୱଂସୀ ତାଲିମ ପ୍ରାପ୍ତ ସଂଗଠନ ଦିଲ୍ଲୀଠାରୁ କରାଚୀ ଯାତ୍ରା କରିବାକୁ ଥିବା underground spy train ଗୁଡ଼ିକୁ ଉଡ଼ାଇ ଦେବା ପାଇଁ ଠିକଣା କରିଥିଲେ । ଟ୍ରେନ ଗୁଡ଼ିକର ନିର୍ଦ୍ଦିଷ୍ଟ ରେଳପଥ ଓ ଛାଡ଼ିବାର ସମୟ ଜାଣିବାକୁ ତାରାସିଂ ଗୋଟିଏ windless rule ରଖିଥିଲେ ଏବଂ ତାକୁ ଚଳାଇବା ପାଇଁ ଜଣେ operator ଙ୍କ ଠାରୁ ଜାଣି ପାରୁଥିଲେ । କରାଚିରେ ମଧ RSS ସଭ୍ୟମାନଙ୍କୁ ସତର୍କ ରହି କାମ କରିବାକୁ ତାଲିମ ଦିଆଯାଉଥିଲା । ସେମାନେ ଥିଲେ ଉଗ୍ର ଓ ନିଷ୍ଠୁର । ଅଗଷ୍ଟ ୧୪ ତାରିଖ ଦିନ ତାଲିମ ପ୍ରାପ୍ତ ଉଗ୍ର R.S.S ସଭ୍ୟମାନଙ୍କୁ ସାଧା ପୋଷାକରେ କରାଚି ସହରର Constitution Assembly ଠାରୁ ନୂଆ ଗଭର୍ଣ୍ଣର ଜେନେରାଲଙ୍କ ଅଫିସ ପର୍ଯ୍ୟନ୍ତ ମୃତୟନ କରାଯାଇଥିଲା । ଉଦ୍ଦେଶ୍ୟ ଥିଲା, ପାକିସ୍ଥାନରେ ଜନ୍ମଦାତା ଯେତେବେଳେ ବିଜୟ ଗର୍ବରେ ମହାଆଡ଼ମ୍ବରରେ ବିଶାଳ ଶୋଭାଯାତ୍ରାରେ କରାଚିର ରାଜରାସ୍ତାରେ ଯାଉଥିବେ, ସେତେବେଳେ ଗ୍ରେନେଡ ମାଡ଼ରେ ତାଙ୍କୁ ହତ୍ୟାକରି ସମଗ୍ର ଉପମହାଦେଶରେ ଏକ ଗୃହଯୁଦ୍ଧର ଆୟୋଜନ କରାଯିବ । ଏଖବର ତୁରନ୍ତ ପହଞ୍ଚିଲା ମାଉଣ୍ଟବେଟେନଙ୍କ ପାଖରେ । ଆଶ୍ଚର୍ଯ୍ୟ, ମାଉଣ୍ଟବେଟେନ ହଠାତ୍ କିଛି ଚିନ୍ତା କରିପାରିଲେ ନାହିଁ । କ'ଣ କରିବେ ସେ । ପଞ୍ଜାବରେ ଗଭର୍ଣ୍ଣରଙ୍କ ସାଙ୍ଗରେ ମନ୍ତ୍ରଣା କରି ସମୁଦାୟ ଶୀଖ୍ ସନ୍ତ୍ରାସବାଦୀଙ୍କୁ ଆରେଷ୍ଟ କରିବାକୁ କହିଲେ । କିନ୍ତୁ ପଞ୍ଜାବର ଗଭର୍ଣ୍ଣର ସେମାନଙ୍କ ବିରୁଦ୍ଧରେ କିଛି ନିର୍ଦ୍ଦିଷ୍ଟ ଅଭିଯୋଗ ନାହିଁ କହି ଆରେଷ୍ଟ କରିବାକୁ ଆଦେଶ ଦେବେ ନାହିଁ ବୋଲି କହିଲେ । କିନ୍ତୁ ତାରା ସିଂଙ୍କର

ଶୀଖ୍‌ମାନେ ଅଗଷ୍ଟ ମାସ ୧୧ ତାରିଖରୁ ୧୪ ତାରିଖ ମଧ୍ୟରେ R.S.S ସହଯୋଗରେ ସେମାନଙ୍କର ପ୍ରଥମ ପର୍ଯ୍ୟାୟ କାର୍ଯ୍ୟସ୍ୱରୁପ ଗିଦରବାହା ରେଳ ଷ୍ଟେସନକୁ ଧ୍ୱସଂ କରିଦେଲେ । ଏହାଦ୍ୱାରା ରେଲ ଚଳାଚଳ କରିବ ନାହିଁ ଏବଂ ସେମାନେ ଅତି ନୃସଂଶ ଭାବରେ ମୁସଲମାନ ମାନଙ୍କୁ ହତ୍ୟା କରିବେ । ସେତେବେଳକୁ ଭାରତ ଓ ପାକିସ୍ଥାନ ମଧ୍ୟରେ ପଞ୍ଜାବ ସୀମା ନିର୍ଦ୍ଧାରଣକୁ ନେଇ ଶୀଖ୍ ଓ ମୁସଲମାନଙ୍କ ମଧ୍ୟରେ ପ୍ରଚଣ୍ଡ ହିଂସାକାଣ୍ଡର ଆଶଙ୍କା ଥିବାରୁ Sir Radetief ପ୍ରଚଣ୍ଡ ଗ୍ରୀଷ୍ମରେ ସୀମା ନିର୍ଦ୍ଧାରଣ କରିବାକୁ ବ୍ରିଟିଶ୍ ପ୍ରସ୍ତୁତ ମାନଚିତ୍ରକୁ ଆଧାର କରି ଦିନରାତି କାମରେ ଲାଗିପଡ଼ିଲେ । ସୀମା ନିର୍ଦ୍ଧାରଣ ଠିକ୍ ଭାବରେ ନହେଲେ ଉଭୟ ପକ୍ଷର ଉଗ୍ର ସଂନ୍ତ୍ରାସବାଦୀମାନେ ପ୍ରଚଣ୍ଡ ହିଂସାକାଣ୍ଡ ଘଟାଇ ସାରା ଉପମହାଦେଶକୁ ରକ୍ତ ରଞ୍ଜିତ କରିଦେବେ । ଏପରି ଅବସ୍ଥାରେ Sir Radetief ଯେତେ ଶିଘ୍ର ସମ୍ଭବ ସୀମା ନର୍ଦ୍ଧାରଣ କାମ ଶେଷ କରିବାକୁ ବ୍ୟଗ୍ରଥିଲେ । ଅସହ୍ୟ ଗରମ, ଅସ୍ତବ୍ୟସ୍ତ ହୋଇ ପଡୁଥିଲେ Sir Radetief । ରିପୋର୍ଟ ପ୍ରକାଶ ପାଇଲା ପରେ କିପରି ନୃଶଂସ ହତ୍ୟାକାଣ୍ଡ ଘଟିବ ସେ କଥା ଭାବି ସେ ଅଥୟ ହେଉଥିଲେ । ଏଣେ ସୀମାନିର୍ଦ୍ଧାରଣ ପାଇଁ ସେ ଯେଉଁସବୁ ମ୍ୟାପ ବ୍ୟବହାର କରୁଥିଲେ ସେସବୁ ଥିଲା ଅତ୍ୟନ୍ତ ବିବଦ ମାନ । କେଉଁ ମ୍ୟାପକୁ ସେ ଠିକ୍ ଭାବରେ ଗ୍ରହଣ କରିବେ ? ଏଣେ ଉଭୟ ପକ୍ଷର ଉଗ୍ର ସଂନ୍ତ୍ରାସବାଦୀ ମାନଙ୍କ ମଧ୍ୟରେ ମ୍ୟାପ୍‌ଗୁଡ଼ିକୁ ନେଇ ପ୍ରଚଣ୍ଡ ମତଭେଦ ଥିଲା । ପ୍ରଚଣ୍ଡ ହତ୍ୟାକାଣ୍ଡର ବିଭିଷିକା ଅନୁମାନ କରି Sir Radetief ଅସ୍ଥିର ଅନୁଭବ କରୁଥିଲେ । ଆଶା ଓ ଆଶଙ୍କା ମଧ୍ୟରେ ଭୟ ଓ ଆତଙ୍କ ତାଙ୍କୁ ଉଦ୍‌ବିଗ୍ନ କରି ରଖିଥିଲା । ପଞ୍ଜାବର ପାଞ୍ଚଗୋଟି ନଦୀର କୌତୁହଳ ପ୍ରଦ ଗତିପଥ ସୀମାନିର୍ଦ୍ଧାରଣ ପାଇଁ ପ୍ରଚଣ୍ଡ ବାଧା ଦେଉଥିଲା । ମ୍ୟାପ୍ ଗୁଡିକର ବିଭିନ୍ନ ଅଞ୍ଚଳକୁ ନେଇ ଭିନ୍ନ ଭିନ୍ନ ଲୋକସଂଖ୍ୟା ସମସ୍ୟାକୁ ଆହୁରି ଜଟିଳ କରୁଥିଲା । ଲୋକସଂଖ୍ୟାକୁ ନେଇ ସିମା ନିର୍ଦ୍ଧାରଣ ଥିଲା ଏକ ମୁଖ୍ୟ ପ୍ରସଙ୍ଗ । ବେଙ୍ଗଲର ସୀମା ନିର୍ଦ୍ଧାରଣ କାର୍ଯ୍ୟ ଥିଲା ଅପେକ୍ଷାକୃତ ସହଜ । କାରଣ ସେଠାରେ ଝୋଟ ଉତ୍ପାଦନ ଅଞ୍ଚଳ ଓ ଚଟକଳ

ଅଞ୍ଚଳ ମଧ୍ୟରେ ସୀମାଥିଲା ସ୍ପଷ୍ଟ । ଆଉ ସଂଖ୍ୟା ବି ଥିଲା ସଂପୂର୍ଣ୍ଣ ଅଲଗା ଅଲଗା ସଂପ୍ରଦାୟର । ଏଠାରେ ପଞ୍ଜାବ ପାଇଁ ଜଳ ହିଁ ଜୀବନ । ଜଳସେଚନ ପ୍ରକଳ୍ପ ଗୁଡ଼ିକ ଏଠାରେ ଏପରି ଭାବରେ ନିର୍ମାଣ କରାଯାଇଛି ଯେ, ଦୁଇ ସୀମା ମଧ୍ୟରେ ଜଳକୁ ଅଲଗା ଅଲଗା କରିହେବ ନାହିଁ । ଲାହୋରରେ ଉଭୟ ସଂପ୍ରଦାୟର ଲୋକଙ୍କ ସଂଖ୍ୟା ପ୍ରାୟ ସମାନ । କିନ୍ତୁ ଅମୃତସର ସହର ଯଦିଓ ଶୀଖ୍ ମାନଙ୍କର ଗର୍ବ, ତଥାପି ତାହା ମୁସଲିମ୍ ବହୁଳ ସହର । ସେମାନଙ୍କ ଭିତରେ ପରସ୍ପର ପ୍ରତି ଶତୃତା ଯେ ନଥିଲା ତା ନୁହେଁ, ମାତ୍ର ସାମାଜିକ ସ୍ତରରେ ଶ୍ରଦ୍ଧା ଓ ସହଯୋଗ ବି ଥିଲା । ସେ ଯେଉଁ ଘରେ ରହି କାମ କରୁଥିଲେ ସେଠାରେ ଅସହ୍ୟ ଗରମ ହେତୁ ସେ ଅସ୍ତବ୍ୟସ୍ତ ହୋଇ ପଡୁଥିଲେ । ସେଇ ପାଖରେ ଥିଲା ଏକ ପୁରୁଣା ପ୍ରଶସ୍ଥ ଘର ଯେଉଁଠାରେ ୧୮୫୭ ମସିହା ସିପାହୀ muitiny ବେଳେ ବ୍ରିଟିଶ୍ ଫଉଜ ମାନଙ୍କୁ ରଖାଯାଇଥିଲା । ଦୁଇ ଗୋଷ୍ଠୀ ମଧ୍ୟରେ ପରସ୍ପର ପ୍ରତି ଶତ୍ରୁତାର ବାତାବରଣ ଦେଖି ସେ ବଡ଼ ଧରଣର ରକ୍ତପାତ ଆଶଙ୍କା କରୁଥିଲେ । ଏଇ ଉପରେ ସେ ତାଙ୍କର ସୀମା ନିର୍ଦ୍ଧାରଣ ରିପୋର୍ଟ ପ୍ରକାଶ କରିବାକୁ ଜାଣିଶୁଣି ବିଳମ୍ବ କରୁଥିଲେ । ଯଦିଓ ଦୁଇ ସମ୍ପ୍ରଦାୟର ଲୋକେ ବଂଶାନୁକ୍ରମେ ଏକତ୍ର ବାସ କରୁଥିଲେ ମଧ୍ୟ ପ୍ରଚଣ୍ଡ ହଣାକଟା ଆରମ୍ଭ ହୋଇଥିଲା । ମୁସଲମାନମାନଙ୍କୁ ଅତି ନୃସଂଶ ଭାବରେ ହତ୍ୟାକାଣ୍ଡର ସେ ବିଭତ୍ସ ଦୃଶ୍ୟ ଥିଲା ଅତି ଭୟଙ୍କର । ସେମାନଙ୍କ ଯୌନାଙ୍ଗକୁ କାଟି ସେମାନଙ୍କ ପାଟିରେ ଅଥବା ମୃତ ମୁସଲମାନ ମହିଳାଙ୍କ ଯୌନାଙ୍ଗରେ ଭର୍ତ୍ତି କରାଯାଇଥିଲା । ଶିଖ୍ ସଂପ୍ରଦାୟର ଲୋକେ ରାଗିଗଲେ କେତେ ନିଷ୍ଠୁର ଓ ଭୟଙ୍କର ହୋଇପାରନ୍ତି, ଏହା ଥିଲା ଏକ ନମୂନା । ଲାହୋର ପୋଷ୍ଟ ଅଫିସରୁ ହଜାର ହଜାର ହିନ୍ଦୁ ବିରୋଧି ଚିଠି ସବୁ ଆସିବାକୁ ଲାଗିଲା । ଜଣେ ସାଇକେଲ ଆରୋହୀ ଗୋଟିଏ ଟିଣ ଡବ୍ବା ବୁଲାଇ ବୁଲାଇ ହିନ୍ଦୁ ମାନଙ୍କ ଉପରକୁ ଫିଙ୍ଗି ଦେଲା । ତାକୁ ଖୋଲି ଦେଖାଗଲା ଯେ ଜଣେ ହିନ୍ଦୁଙ୍କର ଯୌନାଙ୍ଗକୁ ସେଥିରେ ରଖାଯାଇଛି ଏବଂ ଗୋଟିଏ ପ୍ରଚାର ପତ୍ରରେ ଏହିପରି ଦୁର୍ଦ୍ଦଶା ସହିବାକୁ ହେବ ବୋଲି ଲେଖା ଯାଇଛି । ଏହାର ଠିକ୍ ପରେ ପରେ ଶହ ଶହ

ହିନ୍ଦୁଙ୍କ ହତ୍ୟା କରିବା ଓ ଅସଂଖ୍ୟ ହିନ୍ଦୁ ମହିଳା ମାନଙ୍କୁ ଧର୍ଷଣ କରିବାର ସମ୍ବାଦ ପ୍ରଚାରିତ ହେଲା । ଖାଲି ହତ୍ୟା ଓ ଧର୍ଷଣ ନୁହେଁ ଶହ ଶହ ଗୃହଦାହର ଖବର ମଧ୍ୟ ପ୍ରଚାରିତ ହେଲା । ହିନ୍ଦୁ ଓ ଶିଖ୍ ମାନଙ୍କ ମଧ୍ୟରେ ଭୟ ଓ ଆତଙ୍କ ସୃଷ୍ଟି କରିବା ଥିଲା ଏହାର ଉଦ୍ଦେଶ୍ୟ । ଚାହୁଁ ଚାହୁଁ ଲାହୋର ଓ ଅମୃତସରରେ ହତ୍ୟା, ଧର୍ଷଣ, ଏସିଡ୍ ଆକ୍ରମଣ ଓ ଗୃହଦାହ ଭୟଙ୍କର ରୂପ ଧାରଣ କଲା । ଲାହୋରରେ ଜିନାଙ୍କୁ ହତ୍ୟା କରିବାର ଯୋଜନା ପୋଲିସ୍‌କୁ ଜଣାଥିଲା । ତେଣୁ ପୋଲିସ୍ ଚାରିଆଡ଼େ ବୁଲି ମାରଣାସ୍ତ୍ରର ସନ୍ଧାନ କରୁଥିଲା । ଗୋଟିଏ ଅଳିଆ ଆବର୍ଜନାପୂର୍ଣ୍ଣ ସ୍ଥାନରେ ବନ୍ଦଥିବା ଘରୁ ଦୁର୍ଗନ୍ଧ ବାହାରୁ ଥିଲା । ଦୁଆର ଖୋଲି ପୋଲିସ୍ ଦେଖିଲା ଗୋଟିଏ କ୍ଷତ ବିକ୍ଷତ ମୃତଦେହ ପଚିସଡ଼ି ଯାଇ ଗଳିତ ଅବସ୍ଥାରେ ପଡ଼ିଥିଲା । ଅମୃତସରର ଅବସ୍ଥା ଆହୁରି ଉଦବେଗଜନକ । ହତ୍ୟା ଓ ଧର୍ଷଣ ସେଠାରେ ଏକ ନିତିଦିନିଆ ସାଧାରଣ କଥାରେ ପରିଣତ ହୋଇଥିଲା । ହତ୍ୟା ଓ ପୋଡ଼ାଜଳା ସର୍ବତ୍ର ଦେଖିବାକୁ ମିଳିଥିଲା । ଶେଷରେ ବ୍ରିଟିଶ୍ ଫୌଜକୁ ଡ଼କାଯାଇଥିଲା । ମାତ୍ର ଦଙ୍ଗାକୁ ନିୟନ୍ତ୍ରଣ କରିବା ପାଇଁ ଏହାଥିଲା ଏକ ସାମୟିକ ଘଟଣା । ଫୌଜ ଫେରିଗଲା ପରେ ଆହୁରି ଅଧିକ ହିଂସା ଘଟୁଥାଏ । ଉପଦ୍ରୁତ ସାରା ସହର ଭୟ ଓ ଆତଙ୍କରେ ଥରହର ହେଉଥିଲା । କିପରି ଶାନ୍ତିରକ୍ଷା କରାଯିବ, ପୋଲିସ୍‌ର ମୁଣ୍ଡବ୍ୟଥାର କାରଣ ହେଉଥିଲା । ପାଗଳ ପରି ସମସ୍ତେ ଉନ୍ମତ୍ତ କାଣ୍ଡରେ ମାତି ରହିଥାନ୍ତି । ଏପରିକି ଅଗଷ୍ଟ ପନ୍ଦର ପରେ କିପରି ଶାନ୍ତିରକ୍ଷା କରାଯିବ, ସେଥିପାଇଁ ମାଉଣ୍ଟବେଟେନ ସାରା ପଞ୍ଜାବରେ ୫୫,୦୦୦ ପୁଲିସ୍ ମୁତୟନ କରିଦେଲେ । ସେମାନଙ୍କ ସାଙ୍ଗକୁ ଭାରତୀୟ ସେନାବାହିନୀର ଫୌଜ ମାନଙ୍କୁ ଏହି କାର୍ଯ୍ୟରେ ନିଯୁକ୍ତ କରିଦେଲେ । ଏଥିରେ ଗୁର୍ଖା ଜବାନମାନେ ଥିଲେ ସଂଖ୍ୟାଧିକ, କାରଣ ଉପଦ୍ରବ ଓ ହିଂସାକାଣ୍ଡକୁ ଆୟତ୍ତ କରିବା କାର୍ଯ୍ୟରେ ସେମାନଙ୍କର ଖ୍ୟାତିଥିଲା । ଏସବୁ କାର୍ଯ୍ୟପାଇଁ ଜଣେ ବ୍ରିଟିଶ୍ ମେୟର ଜେନେରାଲଙ୍କୁ ଦାୟିତ୍ୱ ଦିଆଯାଇଥିଲା । ସାରା ପଞ୍ଜାବର ଆଇନ୍ ଶୃଙ୍ଖଳା ପରିସ୍ଥିତିର ଏତେ ଅବନତି ହୋଇଥିଲା ଯେ, ଶାନ୍ତିରକ୍ଷା କରିବା ପାଇଁ ପଞ୍ଜାବର ଲୋକ ସଂଖ୍ୟାଠାରୁ ଅଧିକ

ପୋଲିସ୍ ଓ ସୈନ୍ୟ ବିଭାଗର ଯବାନ ମାନଙ୍କୁ ମୁତୟନ କରାଯିବା ଦରକାର ବୋଲି ପଞ୍ଜାବର ଗଭର୍ଣ୍ଣର ମାଉଣ୍ଟବେଟେନଙ୍କୁ କହିଥିଲେ । ଏ ଅବସ୍ଥା ଦେଖି ମାଉଣ୍ଟବେଟେନଙ୍କର ମନେହେଲା ଏଭୟଙ୍କର ବିପତ୍ତିରୁ ପଞ୍ଜାବକୁ ରକ୍ଷା କରି ନପାରିଲେ ତାଙ୍କର ଘୋର ନିନ୍ଦା ହେବ ଓ ସଂବାଦ ପତ୍ର ଗୁଡ଼ିକରେ ତାଙ୍କୁ ତୀବ୍ର ଭତ୍ସନା କରାଯାଇ ତାଙ୍କୁ ଭାରତରେ ସବୁଠାରୁ ଅଯୋଗ୍ୟ ଭାଇସରାଏ ଭାବେ ଚିତ୍ରଣ କରାଯିବ । ପଞ୍ଜାବର ଏହି ଗୁରୁତର ଅବସ୍ଥାକୁ ନେହେରୁ, ଜିନା, ଗଭର୍ଣ୍ଣର ଓ ଭାଇସ୍ ରାୟଙ୍କ ମଧ୍ୟରୁ କେହିହେଲେ ଅନୁମାନ କରିପାରିନଥିଲେ । ଏହା ସେମାନଙ୍କ ଅଯୋଗ୍ୟତାର ଏକ ବଡ଼ ପ୍ରମାଣ । ସେମାନଙ୍କର ଅଦୂର ଦର୍ଶିତା ପାଇଁ ଭାରତକୁ ଏପରି ଦୁର୍ଦ୍ଦଶା ଭୋଗିବାକୁ ପଡ଼ିଲା । ଗାନ୍ଧିଙ୍କ ସହ ଏକମତ ହୋଇ ନେହେରୁ ଓ ପଟେଲ ଯଦି ଭାରତର ବିଭାଜନକୁ ବିରୋଧ କରିଥାନ୍ତେ, ତେବେ ଯେଉଁ ଦକ୍ଷତାର ସହ ବ୍ରିଟେନ ଭାରତକୁ ଶହେ ବର୍ଷ ଧରି ଶାସନ କରିଥିଲା, ସେହି ଦକ୍ଷତା ବଳରେ ଜିନାଙ୍କର ଏକଜିଦିଆ ପଣକୁ ଦମନ କରିପାରିଥାନ୍ତା । ମାତ୍ର ସେମାନେ ତାହା କଲେ ନାହିଁ । ସେମାନେ ଭାରତକୁ ବିଭାଜନ କରିବା ପାଇଁ ଗାନ୍ଧିଙ୍କ ଉପଦେଶକୁ ନମାନି ଭୟଙ୍କର ରକ୍ତପାତ କଲେ । ଗାନ୍ଧିଥିଲେ ଭାରତର ପ୍ରାଣ, ଭାରତର ଆତ୍ମାକୁ ସେ ଚିହ୍ନିଥିଲେ । ପ୍ରତ୍ୟେକ କ୍ଷେତ୍ରରେ ଭାରତବାସୀଙ୍କ ମନସ୍ତତ୍ତ୍ୱକୁ ସେ ବୁଝି ପାରୁଥିଲେ । ସେଥିପାଇଁ ତାଙ୍କର ଅନେକ ଶିଷ୍ୟ ତାଙ୍କୁ ଭାରତରେ ଜଣେ ଭବିଷ୍ୟବାଣୀ କହିପାରୁଥିବା ଋଷି ବୋଲି କହୁଥିଲେ । ପଞ୍ଜାବର ଏହି ସାଂପ୍ରଦାୟିକ ହିଂସା ବେଳେ ଜଣେ ମୁସଲିମ୍ ମହିଳା ତାଙ୍କୁ କ୍ରୋଧରେ କହିଲେ, opposied to partiation in our grand want ton ସେ ଜାଣିଥିଲେ ଭାରତର ସଂସ୍କୃତିକୁ । ସେ ଜାଣିଥିଲେ ଭାରତର ପାରଂପାରିକ ସାମାଜିକ ବ୍ୟବସ୍ଥାକୁ । ସେ ଜାଣିଥିଲେ ମଣିଷ ସୃଷ୍ଟି କରିଥିବା ସ୍ୱାର୍ଥଜଡ଼ିତ ଜାତିପ୍ରଥା ଓ ସଂପ୍ରଦାୟିକତାକୁ ସର୍ବତ୍ର ପରିବ୍ୟାପ୍ତ ଦିବ୍ୟ ଆତ୍ମାକୁ ସେ ଦେଖିଥିଲେ । ସେ ଜାଣିଥିଲେ ଗୋଷ୍ଠିଗତ ବିଭେଦ ସମାଜ ପତନର କାରଣ ଓ ଏକତ୍ର ରହିବାର ବନ୍ଧୁଭାବ ଉନ୍ନତିର ପଥ । ସେଥିପାଇଁ ବନ୍ଧୁ ଭାବରେ ହଜାର

ହଜାର ବର୍ଷଧରି ରହିଆସିଥିବା ହିନ୍ଦୁ ମୁସଲମାନ ଏକତ୍ର ବାସ କରନ୍ତୁ ଓ ଦେଶର ବିଭାଜନ ନହେଉ। ବିଭାଜନ ପଥରେ ଯେତେ ଯୁକ୍ତିଯୁକ୍ତ ଐତିହାସିକ କାରଣ ଥାଉନା ପଛେ ସ୍ୱାର୍ଥ ଓ କ୍ଷମତା ଲିପସା ଥିଲା ମୁଖ୍ୟ କାରଣ। ଫଳରେ ବିଭାଜନକୁ ରୋକିବା ସମ୍ଭବ ହେଲା ନାହିଁ। ଗାନ୍ଧି ସଂପୂର୍ଣ୍ଣ ଏକୁଟିଆ ହୋଇଗଲେ। ତାପରେ ଗାନ୍ଧିଙ୍କର ସ୍ୱାସ୍ଥ୍ୟ ହାନି ଘଟିଲା ଓ କଙ୍କାଳ ସାରଶୂନ୍ୟ ହୋଇ ମେହନ୍ତର ବସ୍ତିରେ ଯାଇ ରହିଲେ। ଏଣେ ରକ୍ତାକ୍ତ ସଂଘର୍ଷ ଆଶଙ୍କା କରି ପଞ୍ଜାବ ଓ କଲିକତା ପାଇଁ ମାଉଣ୍ଟବେଟେନ ସୈନ୍ୟ ବିଭାଗର ସମସ୍ତ ଯବାନ ମାନଙ୍କୁ ନିଯୁକ୍ତ କରିବାକୁ ଯୋଜନା କରି ଦେଖିଲେ, ତାହା ପଞ୍ଜାବ ପାଇଁ ନିଅଣ୍ଟ ହେବ। କିନ୍ତୁ ପଞ୍ଜାବ ଠାରୁ କଲିକତାର ସମସ୍ୟା ଥିଲା ଅତ୍ୟନ୍ତ ଉଦ୍‌ବେଗଜନକ। କାରଣ କଲିକତାର ଅସଂଖ୍ୟ ଗଳିରେ ଥିବା ବଜାର ଓ ବସ୍ତି ଅଞ୍ଚଳର ଦଙ୍ଗାକୁ ନିୟନ୍ତ୍ରଣ କରିବା ପାଇଁ ଯେତେ ସୈନ୍ୟ ଆବଶ୍ୟକ ତାହା ତାଙ୍କୁ ମିଳିଲା ନାହିଁ। ତେଣୁ ଅସହାୟ ଭାବରେ ଗାନ୍ଧିଙ୍କର ଶରଣ ପଶିଲେ। ଜଣା ଥିଲା ଯେ, ହଜାର ହଜାର ସୈନ୍ୟ ବଳପ୍ରୟୋଗ କରି ଯେଉଁ ଦଙ୍ଗାକୁ ନିୟନ୍ତ୍ରଣ କରି ପାରିବେ ନାହିଁ, ଏକ ଗାନ୍ଧି ତାଙ୍କର ଅହିଂସା ଓ ପ୍ରେମ ଦ୍ୱାରା ତାକୁ ଆୟତ୍ତ କରିପାରିବେ। ଗାନ୍ଧିଙ୍କୁ ସହାୟତା ପାଇଁ ଅନୁରୋଧ କଲେ। ଗାନ୍ଧି କହିଲେ, ଏହାହିଁ ବିଭାଜନ ପାଇଁ ତୁମ ଯୋଜନାର ଫଳ। ମାଉଣ୍ଟବେନେଟନ କହିଲେ, ହଁ ତା ସତ, କିନ୍ତୁ କଲିକତାରେ ଯେଉଁ ଭୟଙ୍କର ହତ୍ୟାକାଣ୍ଡ ଓ ପୋଡାଜଳା ଘଟିବାକୁ ଯାଉଛି, ତାକୁ ଆୟତ୍ତ କରିବାକୁ ଆପଣଙ୍କ ଛଡା ମୁଁ ବା ଅନ୍ୟ କେହି ସମର୍ଥ ନୁହଁନ୍ତି। ତେଣୁ ଆପଣ ମୋର ସୀମା ସୈନ୍ୟ ବାହିନୀ ପରିବର୍ତ୍ତେ ଏକମାତ୍ର ଶାନ୍ତିଦୂତ ଭାବରେ କଲିକତା ଯାଆନ୍ତୁ। ଗାନ୍ଧି ତାଙ୍କ ଉତ୍ତରରେ କହିଲେ ମୁଁ କିନ୍ତୁ ଉପବାସ, ସୂତା କଟା ଓ ପ୍ରାର୍ଥନା ଦ୍ୱାରା ସ୍ୱାଧୀନତା ଦିବସ ପାଳନ କରିବାକୁ ସ୍ଥିର କରିଛି। ଏହାକୁ ମୋର ତପସ୍ୟା ଭାବି ନୂଆଖାଲିକୁ ଚାଲିଯିବି। କାରଣ ତାହା ସଂଖ୍ୟାଲଘୁ ହିନ୍ଦୁ ମାନଙ୍କର ଅଞ୍ଚଳ। ମୁସଲମାନ ବହୁଳ ନୂଆଖାଲିର ହିନ୍ଦୁମାନେ କିପରି ନିରାପଦ ରହିବେ, ମୁଁ ସେଥିପାଇଁ ଚିନ୍ତିତ। ଦୁର୍ଗତ ଜନତାର ସେବା ମୋର

ଜୀବନ ବ୍ୟାପୀ ସାଧନା । ଆଜି ମୁଁ ତାହା ପାଳନ ନକଲେ ସୁରକ୍ଷା ବନ୍ଦୀଙ୍କୁ କ୍ରୋଧରେ ନୂଆଖାଲିର ସଂଖ୍ୟାଲଘୁ ହିନ୍ଦୁମାନେ ଉଦ୍ଧାର ପାଇବେ ନାହିଁ । ସୁରାବର୍ଦ୍ଦି କେତେ ଦୁର୍ନିତୀଗ୍ରସ୍ତ ତାହା ସମସ୍ତେ ଜାଣନ୍ତି । ୧୯୪୨ରେ ଯେତେବେଳେ ଦୁର୍ଭିକ୍ଷରେ ପଡ଼ି ସାରା ବେଙ୍ଗଲ ଛାରଖାର ହୋଇଗଲା ସେତେବେଳେ ଦରିଦ୍ର ମାନଙ୍କ ପାଇଁ ଉଦ୍ଦିଷ୍ଟ ସରକାରୀ ଶସ୍ୟକୁ କଳାବଜାରରେ ବିକ୍ରୀ କରି ବିପୁଳ ଅର୍ଥ ଉପାର୍ଜନ କରିଥିଲେ । ତାଙ୍କର ବ୍ୟକ୍ତିଗତ ଜୀବନ ଶୈଳୀ ଅତ୍ୟନ୍ତ ବ୍ୟୟ ବହୁଳ । ତାଙ୍କର ଦାମୀ ପୋଷକ ଓ ଚର୍ବିଯୁକ୍ତ ମାଂସହାର, ନିର୍ତ୍ତକୀ ମାନଙ୍କର ନୃତ୍ୟ ଓ ଯୌନ ବ୍ୟଭିଚାରରେ ତାଙ୍କ ଖର୍ଚ୍ଚର ସୀମା ନଥିଲା । ପ୍ରଚୁର କଳାଟଙ୍କା ସଂଗ୍ରହ କରି ବେଙ୍ଗଲର ବହୁସ୍ଥାନରେ ଭଡ଼ାଟିଆ ଗୁଣ୍ଡାମାନଙ୍କୁ ରଖି ସାରା ବେଙ୍ଗଲକୁ ଭୟରେ ଥରହର କରୁଥିଲେ । ଏପରି ହେବାକୁ ପ୍ରଶୟ ଦେଲେ ସ୍ୱାଧୀନ ଭାରତର ମନ୍ତ୍ରୀମାନେ ଦୁର୍ଗତ ଜନତା ପ୍ରତି ଉଦାସୀନ ରହିବେ । ଶାକହାରୀ ଗାନ୍ଧି ଆଧାତ୍ମିକ ଚେତନା ହେତୁ ତାଙ୍କ ଆଚରଣ ଓ ଜୀବନ ଶୈଳୀରେ ଥିଲେ ସଂପୂର୍ଣ୍ଣ ବିପରୀତ । ଦାମୀ ସଫେରୀ (ମଦ୍ୟ) ଥିଲା ସୁରାବର୍ଦ୍ଦିଙ୍କ ଏକ ବିଳାସ । ଗାନ୍ଧିଙ୍କ ପାଇଁ ଲେମ୍ବୁ ପାଣିଥିଲା ଯଥେଷ୍ଟ । ଅଥଚ ଜନସେବାରେ ସୁରାବର୍ଦ୍ଦି ଥିଲେ ଜଣେ ପ୍ରଚଣ୍ଡ ଜନନାୟକ । ତାଙ୍କ ବ୍ୟକ୍ତିତ୍ୱର ପ୍ରଚାର ଓ ପ୍ରସାର ପାଇଁ ନିଯୁକ୍ତ ଥିଲେ ଅସଂଖ୍ୟ ଭଡ଼ାଟିଆ ଗୁଣ୍ଡା ଓ ଚାଟୁକାର । ଉଲ୍ଲେଖନୀୟ ଘଟଣା ହେଲା ୧୯୪୬ ମସିହାରେ ଜିନାଙ୍କର direct action day ରେ କଲିକତାର ଅସଂଖ୍ୟ ନର ସଂହାର ପଛରେ ଥିଲା ତାଙ୍କରି ନେତୃତ୍ୱ । ଅବସ୍ଥା ଏପରି ଅସମ୍ଭାଳ ହେଲା ଯେ, ହିନ୍ଦୁମାନେ ଯେତେବେଳେ ପ୍ରତିଶୋଧ ପରାୟଣ ହୋଇ ଉଠିଲେ ସେତେବେଳ ସୁରାବର୍ଦ୍ଦି ଗାନ୍ଧିଙ୍କର ସାହାଯ୍ୟ ପାଇଁ ଆକୁଳ ନିବେଦନ କରିବାକୁ ବାଧ ହେଲେ । ସେ ଗାନ୍ଧିଙ୍କର ସୋଦପୁର ଆଶ୍ରମକୁ ଯାଇ ତାଙ୍କୁ ବ୍ୟାକୁଳ ହୋଇ କହିଲେ ଆପଣ କଲିକତାରେ ନ ରହିଲେ ଆଉ କେହି ଏହି ହିଂସାର ଅନଳ କୁଣ୍ଡରୁ କଲିକତାକୁ ଉଦ୍ଧାର କରି ପାରିବେ ନାହିଁ । ଆପଣ ସବୁବେଳେ କହନ୍ତି, ଆପଣଙ୍କ ଆଖିରେ ହିନ୍ଦୁ ଓ ମୁସଲମାନ ସମସ୍ତେ ସମାନ । ତେଣୁ ମୁସଲମାନ

ମାନଙ୍କ ଉପରେ ହିନ୍ଦୁ ମାନଙ୍କର ଏ ପ୍ରଚଣ୍ଡ ହିଂସାତ୍ମକ ଆକ୍ରମଣ ବେଳେ କେବଳ ଆପଣ ହିଁ ସହାୟ । ସୁରାବର୍ଦ୍ଦିଙ୍କ ଠାରେ ମୁସଲମାନ ମାନଙ୍କ ପ୍ରତି ସହାନୁଭୂତି ଥିବା ଲକ୍ଷ୍ୟ କରି ଗାନ୍ଧି କହିଲେ, ସେ କଲିକତାରେ ରହିବାକୁ ହେଲେ ସୁରାବର୍ଦ୍ଦିଙ୍କୁ ଦୁଇଟି ସର୍ତ୍ତ ମାନିବାକୁ ହେବ । ପ୍ରଥମରେ ନୂଆଖାଲିର ମୁସଲମାନ ମାନଙ୍କ ଠାରୁ ପ୍ରତିଶୃତି ଆଣିବାକୁ ହେବ ଯେ ସେଠାରେ ହିନ୍ଦୁମାନଙ୍କ ପ୍ରତି ଅନ୍ୟାୟ ହେବ ନାହିଁ । ଜଣେ ମାତ୍ର ହିନ୍ଦୁଙ୍କୁ ହତ୍ୟା କଲେ ସେ ଆମରଣ ଅନଶନ କରିବେ । ଏହାଥିଲା ଗାନ୍ଧିଙ୍କର ସବୁଠାରୁ ବଡ଼ ଅହିଂସା ଅସ୍ତ୍ର । ଗାନ୍ଧି ତାଙ୍କ କଥାରେ ସବୁବେଳେ ଅଟଳ, ଏକଥା ସମସ୍ତେ ଜାଣନ୍ତି । ଏକଥା ବି ସମସ୍ତେ ଜାଣିଥିଲେ ଯେ ଅନଶନ କରି ଗାନ୍ଧି ଦେହ ତ୍ୟାଗ କଲେ ସାରା ଦେଶବ୍ୟାପୀ ଯେଉଁ ଆନ୍ଦୋଳନ ହେବ, ତାକୁ କୌଣସି ଶକ୍ତି ସମ୍ଭାଳି ପାରିବେ ନାହିଁ । ତାଙ୍କର ଏପରି ନୈତିକ ଚାପକୁ ଏଡ଼ାଇ ଯିବା କାହା ପକ୍ଷରେ ସମ୍ଭବ ନୁହେଁ । ଗାନ୍ଧି ତାଙ୍କ ୨ୟ ସର୍ତ୍ତରେ କହିଲେ ସୁରାବର୍ଦ୍ଦି ତାଙ୍କ ସାଙ୍ଗରେ ନିରସ୍ତ୍ର ଭାବରେ କଲିକତାର ସହର ତଳି କୌଣସି ଏକ ଛୋଟ ଘରେ ଦିନ ରାତି ଏକାଠି ରହିବାକୁ ହେବ । କାରଣ କୌଣସି ହତ୍ୟାକାଣ୍ଡ କି ପୋଡ଼ାଜଳା ହେଲେ କଲିକତାର ଶାନ୍ତି ପାଇଁ ଉଭୟଙ୍କୁ ଜୀବନଦାନ କରିବାକୁ ହେବ । ସୁରାବର୍ଦ୍ଦି ବାଧ୍ୟ ହୋଇ ସର୍ତ୍ତକୁ ମାନି ନେଇଥିଲେ । ଏହା ପରେ ଗାନ୍ଧି ଦିଲ୍ଲୀକୁ ଜଣାଇ ଦେଇ ଚିଠି ଲେଖିଥିଲେ, ତାହା ଏହିପରି ଥିଲା । I have got nature have and i am going to under the work never keept close water, ଇଂରେଜ ଶାସନର ଅନ୍ତିମ ଦିନ ଗୁଡ଼ିକରେ ମାଉଣ୍ଟବେଟେନ ତାଙ୍କ ଡ଼ାଇରୀରେ ଏକଥା ଲିପିବଦ୍ଧ କରିଯାଇଛନ୍ତି । ସେ ତାଙ୍କ ଶାସନର ପ୍ରତ୍ୟେକ ଦିନର ଘଟଣା ଗୁଡ଼ିକୁ ଅତ୍ୟନ୍ତ ନୀରପକ୍ଷ ଭାବରେ ବର୍ଣ୍ଣନା କରିଯାଇଛନ୍ତି ।

ଏହାପରେ ଉତ୍ତର ପୂର୍ବାଞ୍ଚଳ ପ୍ରଦେଶକୁ ନେଇ ପାକିସ୍ତାନର ଗଠନ ପ୍ରକ୍ରିୟା ଆରମ୍ଭ ହେଲା । ଏ ପ୍ରକ୍ରିୟା ଆରମ୍ଭ ହେବା କ୍ଷଣି ଦେଶର ସର୍ବତ୍ର କଂଗ୍ରେସ ଦଳର ସଭ୍ୟମାନେ ବାଣ ରୋଷଣି ମଧ୍ୟରେ ଭୋଜିଭାତ, ନାଚଗୀତର ଆସର ଆୟୋଜନ

କରି ସ୍ୱାଧିନତା ଦିବସର ସ୍ମାରକୀ ପାଳନ କଲେ। ସେମାନଙ୍କ ସମାଜବାଦୀ ନେତାମାନେ କହିଲେ, ଏସବୁ ଉତ୍ସବ ରାଜକୀୟ ଢ଼ଙ୍ଗରେ ପାଳନ ହେବ ଓ ସମାଜବାଦ କଥା ପରେ ବିଚାର କରାଯିବ। ଆସାମର ସିଲିହଟରେ ଏ ଉତ୍ସବ ଅତ୍ୟନ୍ତ ଆଡ଼ମ୍ବରରେ ପାଳନ କରାଯାଇଥିଲା। କଂଗ୍ରେସ ଦଳର ଆଦେଶାନୁସାରେ ଅଗଷ୍ଟ ୧୫ ତାରିଖ ଦିନ ସମଗ୍ର ଦେଶର ସ୍କୁଲ ପିଲାମାନଙ୍କୁ ସ୍ୱାଧୀନତାର ସ୍ମାରକୀ ଭାବରେ ମିଠା ଓ ମେଡ଼ାଲ ଦିଆଯାଇଥିଲା। ଏହା ଛଡ଼ା ପ୍ରତ୍ୟେକ ସିନେମା ହଲରେ ମାଗଣାରେ ସିନେମା ଦେଖିବାର ସୁବିଧା କରାଗଲା। ଏପରି ଉତ୍ସବାନୁଷ୍ଠାନକୁ କେତେକ ଯାଗାରେ ବିରୋଧ କରାଗଲା। ଲାହୋରରେ ଏପରି ଉତ୍ସବ ପାଳନକୁ ବନ୍ଦ ରଖିବା ପାଇଁ ସରକାର ଘୋଷଣା କଲେ, କାରଣ ସେଠାରେ ହିଂସାତ୍ମକ ଭାବରେ ଉତ୍ତେଜନା ଲାଗି ରହିଥିଲା। ସାରା ଦେଶର କଂସେଇଖାନା ଗୁଡ଼ିକୁ ଅଗଷ୍ଟ ୧୫ ତାରିଖ ଦିନ ବନ୍ଦ ରଖିବାକୁ କଂଗ୍ରେସ ଆଦେଶ ଦେଲା। Right wing ହିନ୍ଦୁ ମହାସଭା ଦେଶ ବିଭାଜନର ଘୋର ବିରୋଧି ଥିଲେ। ସେମାନଙ୍କ ନେତା ତାଙ୍କର ଅନୁଗାମୀ ମାନଙ୍କୁ ଏପରି ଉତ୍ସବ ପାଳନ କରିବାକୁ ବାରଣ କରିବା ସହିତ ଅପମାନିତ ଦେଶ ମାତୃକାର ସମ୍ମାନ ରକ୍ଷା କରିବାକୁ ନିଜକୁ ଉତ୍ସର୍ଗ କରିବାକୁ ଶପଥ ନେବା ପାଇଁ ଆଦେଶ ଦେଲେ। ଏବେ ମଧ୍ୟ ସମାଜବାଦୀଙ୍କ କଂଗ୍ରେସ ଓ ଉଗ୍ରବାଦୀ ହିନ୍ଦୁ ମହସଭା (ସ୍ୱୟଂସେବକ ମଣ୍ଡଳ) ମଧ୍ୟରେ ଥିବା ମତଭେଦର ନମୁନା ସବୁଦେଖିବାକୁ ମିଳୁଛି। ତେଣୁ ସ୍ୱାଧିନତା ଦିବସ ପାଳନ କ୍ଷେତ୍ରରେ ମଧ୍ୟ ମତଭେଦ ଦେଖାଗଲା। ଅହଂକାରୀ ଜିନା ମଧ୍ୟ ଭାଇସରୋଏଙ୍କ ଠାରୁ ନିଜକୁ ଆହୁରି ଅଧିକ ସମ୍ମାନର ଅଧିକାରୀ ବୋଲି ଦାବୀ କରି ନିଜର ସ୍ୱତନ୍ତ୍ର ମର୍ଯ୍ୟାଦା ଖୋଜିଲେ। ସେ ଜଣେ ଭାରତ ବିରୋଧି ଅହଂକାରୀ ହୋଇଥିବାରୁ ଭାରତର ପ୍ରତ୍ୟେକ କ୍ଷେତ୍ରର କାର୍ଯ୍ୟ ଶୈଳୀକୁ ବିରୋଧ କରି ପାକିସ୍ଥାନ ପାଇଁ ଏକ ସ୍ୱତନ୍ତ୍ର ଶୈଳୀ ଚାହୁଁଥିଲେ। ଏହି କାରଣରୁ ଉତ୍ସବ ପାଳନ କରିବାକୁ ପାକିସ୍ଥାନ ମଧ୍ୟରାତ୍ରି ପର୍ଯ୍ୟନ୍ତ ଅପେକ୍ଷା କରିବାକୁ କହିଲେ। ତା ଛଡା ପୃଥିବୀର ସାରା ମୁସଲିମ୍ ସମାଜର ସବୁ ବଡ଼ ନେତାଙ୍କ ଆଦେଶ ଅନୁସାରେ

ପାକିସ୍ଥାନର ସ୍ୱାଧୀନତା ଦିବସ ଅଗଷ୍ଟ ମାସରେ ହେବା କଥା । କିନ୍ତୁ ସେଦିନ ରମଜାନ୍ ମାସ ଆରମ୍ଭ ହେଉଥିବାରୁ ତାହା ମଧ୍ୟ ବନ୍ଦ ରହିଲା । ତାଙ୍କର ଏପରି ଆଚରଣ ଭାରତ ଓ ପାକିସ୍ଥାନ ମଧ୍ୟରେ ବନ୍ଧୁଭାବ ସୃଷ୍ଟି କରିବାକୁ ଅନ୍ତରାଏ ହେଲା । ଜିନାଙ୍କ ନିର୍ଦ୍ଦେଶରେ ଭାରତ ଓ ପାକିସ୍ଥାନ ପାଇଁ ସ୍ୱାଧିନତା ଦିବସ ଅଲଗା ଅଲଗା ହୋଇଗଲା । ସେଇ ଦିନଠାରୁ ଭାରତ ଯଦିଓ ପୃଥିବୀର ସବୁରାଷ୍ଟ୍ର ମାନଙ୍କୁ ବନ୍ଧୁରାଷ୍ଟ୍ର ଭାବେ ଗ୍ରହଣ କରିଆସିଛି, ଏପରିକି ପାକିସ୍ଥାନ ସହିତ ମଧ୍ୟ, ପାକିସ୍ଥାନ କିନ୍ତୁ ସେ ପୁରୁଣା ବୈରୀ ଭାବକୁ ଛାଡ଼ି ପାରୁନାହିଁ । ପୃଥିବୀର ଶାନ୍ତିପୂର୍ଣ୍ଣ ସହାବସ୍ଥାନ ପ୍ରକ୍ରିୟାର ଏକ ଘୋର ବିରୋଧି ।

ଇଂରେଜମାନେ ଭାରତ ଛାଡ଼ିବାର ପ୍ରସ୍ତୁତି ଆରମ୍ଭ ହୋଇଗଲା । ବ୍ୟାଙ୍କ ମାନଙ୍କରେ ଗଚ୍ଛିତ ଥିବା ସମସ୍ତ ଜିନିଷ ଛାଡି  ଚାଲିଯିବା ପାଇଁ ଆଦେଶ ହେଲା । କିନ୍ତୁ କେତେକ ଘଟଣାର ସ୍ମୃତି ଛାଡ଼ିଯିବା ସମ୍ଭବ ହେଲା ନାହିଁ । କାନପୁର ଠାରେ ୯୫୦ ଜଣ ଲୋକଙ୍କୁ ନାନା ସାହେବଙ୍କ ବିପ୍ଳବୀ ମାନେ ଅତି ନିର୍ମମ ଭାବେ ହତ୍ୟା କରି ଯେଉଁ କୂଅକୁ ଫିଙ୍ଗି ଦେଇଥିଲେ, ତାକୁ ସ୍ଥାନାନ୍ତର କରିବାକୁ ନିଷ୍ପତ୍ତି ହୋଇଥିଲା । ଏ ଘଟଣା ଘଟିଥିଲା ସିପାହୀ ବିଦ୍ରୋହ ସମୟରେ । ଏହାଥିଲା ବ୍ରିଟିଶ୍ ଜାତି ପକ୍ଷରେ ଘୋର ଅପମାନ କଥା । ଏମାନେ ସମସ୍ତେ ଥିଲେ ଇଂରେଜ । ଏହିପରି ଅନେକ ବ୍ରିଟିଶ୍ ସ୍ମରଣୀୟ ସ୍ଥାନ ରକ୍ଷଣାବେକ୍ଷଣ ଅଭାବରୁ ଭାଙ୍ଗି ରୁଜି ଯାଇଥିଲା ଏବଂ ସେସବୁ ଉପରେ ଆଣ୍ଠୁଏ ବହଳରେ ଘାସ ଉଠି ପରିତ୍ୟକ୍ତ ଅବସ୍ଥାରେ ପଡିଥିଲା । ସିପାହୀ ବିଦ୍ରୋହ ପରେ ବିଗ୍ରେଡିୟର ଜନ୍ ନିକୋଲସନ ଦିଲ୍ଲୀ ଉପରେ ଆକ୍ରମଣ କରି ପ୍ରତିଶୋଧ ପରାୟଣତାର ପ୍ରମାଣ ଦେଇଥିଲେ, ତାଙ୍କ ସମାଧି ସ୍ତମ୍ଭର ଲେଖାମାନ ବିକୃତି ହୋଇଯାଇଥିଲା । ଭାରତ ସ୍ୱାଧିନତା ପାଇବାର ଛତିଶ ଘଣ୍ଟା ପୂର୍ବରୁ ସାଥିହରା ଅବସାଦ ଗ୍ରସ୍ତ ସେଇ ଗାନ୍ଧି କଲିକତାର ଏକ ଆବର୍ଜନା ପୂର୍ଣ୍ଣ ସହର ତଳି ବସ୍ତିକୁ ଚାଲିଯିବା ପାଇଁ ସ୍ଥିର କଲେ । ଲୋକସେବାକୁ ଜୀବନ ବ୍ୟାପି ବ୍ରତ ଓ ତପସ୍ୟା ଭାବି ଯିଏ ସାଧନା କରୁଥିଲେ ତାଙ୍କୁ ଶେଷରେ ଅସହାୟ ଓ ନିଃସଙ୍ଗ ହେବାକୁ

ପଡ଼ିଲା । ଏହାଥିଲା ତାଙ୍କ ଉପାସନାର ଫଳ । ଏପରି କାହିଁକି ହୁଏ ? ବହୁକ୍ଷେତ୍ରରେ ଏହା ପ୍ରମାଣିତ ଯେ ତ୍ୟାଗ ଓ ତପନିଷ୍ଠ ଜନନାୟକ ମାନଙ୍କର ଜୀବନବ୍ୟାପୀ ସାଧନାର ମୂଲ୍ୟ ମିଳିଥାଏ ଦୁଃଖ, ଯନ୍ତ୍ରଣା ଓ ନିଃସଙ୍ଗତା ମଧ୍ୟରେ ଏବଂ ମୃତ୍ୟୁ ପରେ ହିଁ ଇତିହାସ ଆକଳନ କରିଥାଏ ସେମାନଙ୍କ ଜୀବନ ବ୍ୟାପୀ ତ୍ୟାଗ, ତପସ୍ୟା ଓ ସାଧନାର ବହୁମୁଖି ପ୍ରତିଭାକୁ । କୁହାଯାଏ ତ୍ୟାଗ ହିଁ ତ୍ୟାଗ, ସେଥିରେ ଭୋଗର ସନ୍ଧାନ ମିଳିଲେ ତ୍ୟାଗର ମହିମା କଳୁଷିତ ହୋଇଥାଏ । ଭୋଗ ଓ ତ୍ୟାଗର ସମନ୍ୱୟ, ତ୍ୟାଗର ଦିବ୍ୟ ମହିମାକୁ ମ୍ଳାନ କରିଦିଏ, ତାଙ୍କ ଜୀବନରେ ଏହାହିଁ ପ୍ରମାଣିତ ହୋଇଛି । ବାସ୍ତବରେ ସେ ଅମର ରହି କୋଟି କୋଟି ଲୋକଙ୍କ ହୃଦୟରେ ଆରାଧ୍ୟ ହୋଇ ଯାଇଛନ୍ତି । ମାନବ ଜୀବନ ତାଙ୍କର ଧନ୍ୟ ହୋଇଯାଇଛି । ତାଙ୍କ ଯାତ୍ରାର ଲକ୍ଷ୍ୟସ୍ଥଳ ଥିଲା ତାଙ୍କ ଆଶ୍ରମଠାରୁ ମାତ୍ର ଦଶମାଇଲ ଦୂରରେ । କିନ୍ତୁ ମନେ ହେଉଥିଲା ସେ ଯେମିତି ବହୁ ଆଲୋକ ବର୍ଷ ଦୂରରେ ଥିବା ନର୍କକୁ ଅତିକ୍ରମ କରି ଶାନ୍ତିମୟ ସ୍ୱର୍ଗୀୟ ପୂଣ୍ୟପୀଠକୁ ଯାତ୍ରା କରୁଛନ୍ତି । ଏହା କେବଳ ଦେଖିପାରନ୍ତି ପୂଣ୍ୟ ପ୍ରାଣମାନେ ତାଙ୍କ ଦିବ୍ୟ ଚକ୍ଷୁରେ । ହିନ୍ଦୁ ଦର୍ଶନରେ ଏହାହିଁ ନିର୍ବାଣ ବା ମୁକ୍ତି । ତାହା ଜନ୍ମମୃତ୍ୟୁ ଚକ୍ରରୁ ମୁକ୍ତ । ଭଗବାନଙ୍କର ଦିବ୍ୟଧାମରୁ ମଣିଷ ମର୍ତ୍ତ୍ୟକୁ ଆସିଥାଏ କର୍ମ ସାଧନ କରିବାକୁ । ଖାଲି ଆବର୍ଜନାମୟ ବସ୍ତି ଅଞ୍ଚଳ କାହିଁକି, ଦୁର୍ଗତର ସେବା କରିବାକୁ ସେପରି ଦୟାର୍ଦ୍ର ହୃଦୟ ନର୍କକୁ ଯିବା ପାଇଁ ବି ଆପତ୍ତି କରନ୍ତି ନାହିଁ । କାରଣ ସବୁ ମଣିଷ ଠାରେ ଆତ୍ମାର ବର୍ତ୍ତମାନତା ସମାନ, ଏକଥା ସେ ଜାଣନ୍ତି । କାରଣ ସେ ଘୃଣା ବିବର୍ଜିତ ଦିବ୍ୟାତ୍ମା ସେପରି ମଣିଷ ଇନ୍ଦ୍ରିୟ ମାନଙ୍କୁ ଦମନ କରେ ଖରା, ବର୍ଷା, ଶୀତ, କାକର, ଖଟା-ମିଠା କି ପିତା-କଷା, କିଛି ଜାଣି ପାରନ୍ତି ନାହିଁ । ଉତ୍ସର୍ଗୀକୃତ ସେବାରେ ସେ ଅନାସକ୍ତ ତପନିଷ୍ଠ ସାଧକ । ସାଧାରଣ ମାନବ ଚର୍ମଚକ୍ଷୁରେ ସେପରି ଦିବ୍ୟାତ୍ମା ମାନଙ୍କର ମହାତ୍ମାକୁ କଳିପାରନ୍ତି ନାହିଁ । କଲିକତା ପୃଥିବୀର ସବୁଠାରୁ ହିଂସାତ୍ମକ  ଭୟଙ୍କର ସହର, ଯେଉଁଠି ରାତ୍ରି ପାଲଟି ଯାଏ ବିଭତ୍ସ ନର୍କ ରାଜ୍ୟ । ସେହିଠାରେ କିଛି ଆଶ୍ଚର୍ଯ୍ୟଜନକ କାର୍ଯ୍ୟ, ଯାହା ଭାଇସ୍ ରାଏଙ୍କ କ୍ଷମତାରେ ଅସାଧ୍ୟ,

ତାହା କରିବାକୁ ଚାଲିଗଲେ । ଭାଇସ୍ ରାଏ ଜଣେ କ୍ଷମତାଶାଳୀ ରାଜକର୍ମଚାରୀ । ତାଙ୍କର କ୍ଷମତା ସୀମିତ । କିନ୍ତୁ ଆଧ୍ୟାତ୍ମିକ ଶକ୍ତିର ସୀମା ନାହିଁ । କାରଣ ତାହା ଆତ୍ମାରୁ ଜାତ, ଆତ୍ମା ଅନନ୍ତ ଶକ୍ତିର ଭଣ୍ଡାର । ତାକୁ କଳନା କରିହୁଏ ନାହିଁ । ଆଧ୍ୟାତ୍ମିକ ଶକ୍ତି ଲାଭ କରିବାକୁ ହେଲେ ମନ, ହୃଦୟ ଓ ଆତ୍ମାକୁ ସାଧନା ଦ୍ୱାରା ଏକ ବିନ୍ଦୁରେ ଠୁଳ କରିବାକୁ ହୁଏ । ଏହି ସାଧନା ଯେଉଁ ସାଧକର ଯେତେ ବେଶି, ସେଇ ସାଧକର ଆତ୍ମଶକ୍ତି ସେତେ ଜାଗ୍ରତ । ସେଇ ଆତ୍ମଶକ୍ତି ମଣିଷର କଳନା ବାହାରେ ଆଶ୍ଚର୍ଯ୍ୟ ଜନକ ଘଟଣା ଘଟାଇପାରେ । ମହାତ୍ମା ଗାନ୍ଧି ସେଇ ଶକ୍ତିର ଅଧିକାରୀ, କାରଣ କଠୋର ବ୍ରହ୍ମଚର୍ଯ୍ୟ ବ୍ରତ ପାଳନ କରି ସେ ଆତ୍ମାର ସେଇ ଶକ୍ତିକୁ ଜାଗ୍ରତ କରିଥିଲେ । କଲିକତାର ଭୟଙ୍କର ବିଭତ୍ସ ହିଂସାକାଣ୍ଡ ଆୟତ୍ତ କରିବା ଥିଲା ରାଜଶକ୍ତିର ବାହାରେ । ସେଥିପାଇଁ ଭାଇସ୍ ରାଏ ଗାନ୍ଧିଙ୍କୁ ଅନୁରୋଧ କରି ତାଙ୍କୁ ଆୟତ୍ତ କରିବାକୁ କହିଥିଲେ । ସମସ୍ତ ପ୍ରକାର ହିଂସାଶକ୍ତି ଠାରୁ ଅହିଂସାର ଶକ୍ତି ଅଧିକ ହୋଇ ଥିବାରୁ, ନିରୁପାୟ ଅସହାୟ ଭାଇସ୍ ରାଏ ଗାନ୍ଧିଙ୍କ ଠାରେ ଶରଣ ପଶିଥିଲେ । ତେଣୁ ପ୍ରେମ ଓ ଅହିଂସା ଦ୍ୱାରା ଆତ୍ମଶକ୍ତିକୁ ଜାଗ୍ରତ କରି କଲିକତାର ଆଣାୟତ ହିଂସାକାଣ୍ଡକୁ ଆଶ୍ଚର୍ଯ୍ୟ ଜନକ ଭାବେ ଆୟତ୍ତ କରିବା ପାଇଁ ଗାନ୍ଧି କଲିକତାର ସେଇ ଆବର୍ଜନାମୟ ଅଳିଆକୁ ଚାଲିଗଲେ । କଲିକତାର ଅଧିଷ୍ଠାତ୍ରୀ ଦେବୀ, ଭୟଙ୍କର ଲହଲହ ଜିଭ, ଗଳାରେ ସର୍ପ ଓ ମଣିଷ ଖପୁରୀର ମାଳ, ପ୍ରତିଦିନ ଅସଂଖ୍ୟ ଲୋକ ଭକ୍ତିଚିତ୍ତରେ ତାଙ୍କୁ ଦର୍ଶନ କରନ୍ତି । ବେଳେ ବେଳେ ଶିଶୁ ଓ ପଶୁବଳୀ ଦେବାର ପରଂପରା ସେଠାରେ ଅଛି । ହିନ୍ଦୁ ପରଂପରାରେ କାହିଁ କେଉଁ ଅନାଦି କାଳରୁ କାଳୀ ଉପାସନାର ପରଂପରା ଚଳି ଆସୁଛି । ସେ ହେଉଛନ୍ତି ସଂହାରିଣୀ । ଭୟଙ୍କର ଉଗ୍ର ରୂପରେ କଳ୍ପନା ପଛରେ ଯେଉଁ ଦର୍ଶନ ରହିଛି ତାହାହେଲା ଦୁଷ୍ଟ ଶକ୍ତିକୁ ସଂହାର କରିବାର ଉଗ୍ରରୂପ । ସେଇ କାଳୀଙ୍କର ଉଗ୍ରରୂପ ଧାରଣ କରି ୧୯୪୬ ଜିନାଙ୍କର direct action day ଘୋଷଣା ଠାରୁ ଏପରି କୌଣସି ଦିନ ନଥିଲା । ଯେଉଁଦିନ କଲିକତା ସହରରେ ହିନ୍ଦୁ - ମୁସଲମାନ ମଧ୍ୟରେ ହିଂସାକାଣ୍ଡ ନଥିଲା । ତା ସାଙ୍ଗକୁ ଥିଲା

ଅସଂଖ୍ୟ ପୋଡ଼ାଜଳା ଭଙ୍ଗା ତୁଟାର ବର୍ବରୋଚିତ କାଣ୍ଡ । କେଉଁଦିନ ହୁଏତ ସାରା କଲିକତା ସହର ହଣାକଟା ପୋଡ଼ାଜଳରେ ଧ୍ୱଂସ ପାଇଯିବା ଆଶଙ୍କାରେ ଲୋକେ ଆତଙ୍କିତ ଥିଲେ । ସେଇ କଲିକତାର ଆବର୍ଜନା ପୂର୍ଣ୍ଣ ଦୁର୍ଗନ୍ଧମୟ ନର୍କପୁରୀ ମଶା-ମାଛିରେ ଭଣ ଭଣ ବସ୍ତି ଅଞ୍ଚଳରେ ଯୁଦ୍ଧ ପୂର୍ବର ଖଣ୍ଡେ Cheverlot ଗାଡ଼ି ନିଜ କେତେଜଣ ସହଚରଙ୍କୁ ନେଇ ପହଞ୍ଚିଲେ । ମୌସୁମୀ ବର୍ଷାରେ ଭିଜି ରାସ୍ତାଘାଟ ସବୁ ପାଣି କାଦୁଅରେ ପଚପଚ । ଅନେକ ଭଙ୍ଗା ତୁଟା ଟିଣ ଚାଳିଆଘର ସବୁ ଅତିକ୍ରମ କରି ସେ ପହଞ୍ଚିଥିଲେ ବାଲିଆଘାଟ ରୋଡ଼ରେ । ବହୁତ୍ୟାଗ ଓ ଅପେକ୍ଷା ପରେ ଯେଉଁଦିନ ଭାରତର ସ୍ୱାଧୀନ ଦିନ କଲିକତାକୁ ଉତ୍ସବ ମୁଖର କରିବାକୁ ଲୋକେ ଚାହିଁ ବସିଥିଲେ, ସେଇଦିନ ଦୁଇସଂପ୍ରଦାୟ ବ୍ୟାପକ ପ୍ରସ୍ତୁତି କରି ସାରା ସହରକୁ ଧ୍ୱଂସ କରିଦେବାକୁ ଯୋଜନା କରିଥିଲେ । ଦୁଇ ସଂପ୍ରଦାୟର ଉଗ୍ର ଗୁଣ୍ଡା ମାନଙ୍କ ହାତରେ ଥିଲା ଛୁରୀ, ଭୁଜାଲି, ବନ୍ଧୁକ, ପିସ୍ତଲ, ସୁଦୃଢ଼ ଲୁହାଛଡ଼, କାଠ ଫାଳିଆ, ଠେଙ୍ଗା ଇତ୍ୟାଦି ଅସଂଖ୍ୟ ମାରଣାସ୍ତ୍ର । ଏପରିକି ଉତ୍ତେଜନାପୂର୍ଣ୍ଣ ପରିବେଶରେ ଗାନ୍ଧି ସେଠାରେ ପହଞ୍ଚିଲେ ଅଗଷ୍ଟ ୧୩ ତାରିଖରେ । ରାସ୍ତାର ଦୁଇ କଡ଼ରେ ମଳମୂତ୍ର, ରକ୍ତ ଭିଜା କନାପଟାର ସମାବେଶ । ଅପରିଷ୍କାର ନାଳ ନର୍ଦ୍ଦମା ସମସ୍ତ ପରିବେଶକୁ କରିଛି ଦୁର୍ଗନ୍ଧମୟ ଅସ୍ୱାସ୍ଥ୍ୟକର । ଆଉ କିଏ ହୋଇଥିଲେ ଦଣ୍ଡେ ରହିବା ଅସମ୍ଭବ ହୋଇ ଥାଆନ୍ତା । ଗାନ୍ଧିଜୀ କିନ୍ତୁ ଭାବୁଥିଲେ ଆମ ଦେଶର ଶିକ୍ଷିତ ସମାଜ, ବୁଦ୍ଧିଜୀବୀ ଓ ସରକାରଙ୍କ ଦାୟିତ୍ୱ ହୀନତା, ଉଦାସୀନତା ଓ ସଚେତନତାର ଅଭାବ କଥା । ସେ ଭାବୁଥିଲେ ଏଥିପାଇଁ ଘୃଣାଭାବ ପୋଷଣ କଲେ କିମ୍ବା ଲୋକଙ୍କୁ ନିନ୍ଦା କଲେ ସମସ୍ୟାର ସମାଧାନ ହେବ ନାହିଁ । ଏଥିପାଇଁ ରାଷ୍ଟ୍ର ଦାୟିତ୍ୱ ଯେତିକି ଗୁରୁତ୍ୱପୂର୍ଣ୍ଣ, ପ୍ରତ୍ୟେକ ନାଗରିକର ମଧ୍ୟ ସେତିକି ଦାୟିତ୍ୱ । ଖାଲି ସହର ବଜାର ନୁହେଁ, ବସ୍ତି ଅଞ୍ଚଳରେ ମଧ୍ୟ ପରିଷ୍କାର ପରିଛନ୍ନତା ପ୍ରତି ଜାପାନ, ଜର୍ମାନ, ସୁଇଜରଲ୍ୟାଣ୍ଡ ଓ ଆମେରିକା ଭଳି ଶିକ୍ଷିତ ସମୃଦ୍ଧ ଦେଶ ଗୁଡ଼ିକରେ ସରକାର ଯେତିକି ସଚେତନ ପ୍ରତ୍ୟେକ ସାଧାରଣ ନାଗରିକ ସେତିକି ସଚେତନ । ଏପରି ପରିବେଶ ଏକ ସାମାଜିକ

ଅପରାଧ ବୋଲି ସେସବୁ ଦେଶରେ ବିଚାର କରାଯାଏ । ଏହାକୁ ଅପରାଧ ବୋଲି କହିବା ପାଇଁ ଆମ ଦେଶରେ ବି ଆଇନ ଅଛି, ମାତ୍ର ସରକାରୀ ଉଦାସୀନତା ଓ ଲୋକଙ୍କ ସାମାଜିକ ଜ୍ଞାନର ଅଭାବ ହେତୁ ଏପରି ଆବର୍ଜନାମୟ ପରିବେଶ ଦେଖିବାକୁ ମିଳେ ଓ ରୋଗ ବ୍ୟାଧିରେ ଲୋକେ ଅତିଷ୍ଟ ହୁଅନ୍ତି । ହିଂସାକାଣ୍ଡର ତାଣ୍ଡବକୁ ଲୋପ କରିବାକୁ କିମ୍ବା ସ୍ୱାସ୍ଥ୍ୟକର ପରିବେଶ ସୃଷ୍ଟି କରିବାକୁ ହେଲେ, ଶିକ୍ଷାର ବ୍ୟାପକ ପ୍ରସାର ଓ ପରିବେଶ ପ୍ରତି ସାଧାରଣ ସଚେତନତା ଏକାନ୍ତ ଆବଶ୍ୟକ । ଏହି କଥା ଭାବି ଗାନ୍ଧି ଗଠନ କରିଥିବା ସେବା ଦଳକୁ ସାଙ୍ଗରେ ଧରି ବସ୍ତି ଅଞ୍ଚଳର ଏହି ସମସ୍ୟାକୁ ଦୂର କରିବା କାର୍ଯ୍ୟରେ ଅହୋରାତ୍ର ଲାଗି ପଡ଼ିଲେ ଏବଂ ଏଥିପ୍ରତି ସରକାରଙ୍କ ଦୃଷ୍ଟି ଆକର୍ଷଣ କରିବାକୁ ପ୍ରତ୍ୟେକ ବସ୍ତିରେ ନାଗରିକ କମିଟି ମାନ ଗଠନ କଲେ । କ୍ରମେ କ୍ରମେ ଲୋକେ ଏହାଦ୍ୱାରା ପ୍ରଭାବିତ ହୋଇ ସଚେତନ ହେଲେ ଏବଂ ତଥାକଥିତ ଶିକ୍ଷିତ ସମାଜ ଓ ବୁଦ୍ଧିଜୀବୀ ମହଲ ନିଜକୁ ଲଜ୍ଜିତ ଅନୁଭବ କଲେ । ଗୋଟିଏ ହିସାବରୁ ଜଣା ପଡ଼ିଛି ଯେ, କଲିକତାରେ ବାସ କରୁଥିବା ତିନି ଲକ୍ଷ ପୁଷ୍ଟିହୀନତା ପାଇଁ ବିଭିନ୍ନ ରୋଗରେ ପୀଡ଼ିତା ମାନେ କ୍ରମେ କ୍ରମେ ଯେପରି ସୁସ୍ଥ ହେବାକୁ ଲାଗିଲେ ସେହିପରି ଚାରିଲକ୍ଷ କୁଷ୍ଠରୋଗୀ ଓ ଚାରିଲକ୍ଷ ଭିକାରୀ ମଧ୍ୟ ଖୁବ୍ ସଚେତନ ହୋଇ ଉଠିଲେ । ଗାନ୍ଧିଙ୍କ ନେତୃତ୍ୱରେ ଏକାର୍ଯ୍ୟ ଏପରି ବ୍ୟାପକ କରାଗଲା ଯେ, ସରକାର ଏଥିପାଇଁ ବିଭିନ୍ନ ଯୋଜନା ମାଧ୍ୟମରେ ନିଜ ହାତକୁ ନେଲେ । ଅବଶ୍ୟ ଏଥିପାଇଁ କିଛି ସମୟ ଲାଗିଲା, ମାତ୍ର ଏହାର ସଫଳତା ସମସ୍ତଙ୍କ ମନରେ ଏକ ପ୍ରେରଣା ହୋଇ ରହିଗଲା । ସେଇ ପ୍ରେରଣା ଫଳରେ ଏସବୁ ସମସ୍ୟା ଆମ ଦେଶରେ ବହୁ ପରିମାଣରେ ସମାଧାନ ହୋଇଛି । ପୂଣ୍ୟାତ୍ମା ଗାନ୍ଧିଙ୍କ ନିଷ୍ଠାପର କାର୍ଯ୍ୟ ଏହିପରି ଅଲୌକିକ । କଲିକତାର ଉତ୍ତେଜନାପ୍ରବଣ ପରିବେଶ କ୍ରମେ ଶାନ୍ତ ହୋଇଗଲା । କଲିକତାର ହାଇଦରି ହାଉସ୍‌ରେ ରହି ଗାନ୍ଧିଜୀ ଏସବୁ କାମ କରୁଥିଲେ । ସେ ଯେତେବେଳ ପ୍ରଥମେ ହାଇଦରୀ ହାଉସ୍‌ରେ ପ୍ରବେଶ କଲେ ସେତେବେଳେ ମୁସଲମାନମାନେ ତାଙ୍କୁ

ଘୋର ବିରୋଧ କରି ଚିତ୍କାର Go Back, Go Back. ଶାନ୍ତ ନିରୁଦବିଗ୍ନ ଗାନ୍ଧି ସବୁ ଶୁଣିଲେ । ତାଙ୍କ ଗାଡ଼ି ଉପରକୁ ପଥର ବର୍ଷା ହେଲା । ଅବଚଳିତ ଗାନ୍ଧି ଧୀରେ ଗାଡ଼ିରୁ ଓହ୍ଲାଇ ସେମାନଙ୍କୁ କହିଲେ, ମୋତେ ମାରି ଦେବତ ମାରିଦିଅ । କିନ୍ତୁ ମୋତେ ମାରିଦେଲେ ତୁମେ କ'ଣ ପାଇବ ? ମୁଁ କାହାର ଶତ୍ରୁ ନୁହେଁ । ଏ ସମୟରେ ଆସିଛି ତୁମର ସେବା କରିବାକୁ । ବାରମ୍ବାର ମୋତେ ଏଇ କାମରେ ଈଶ୍ୱର ପଠାଉଛନ୍ତି । ତୁମେ ଶାନ୍ତ ହୁଅ । ମୁଁ ମୋ ଜୀବନ ଯାତ୍ରାର ଶେଷ ପର୍ଯ୍ୟାୟରେ ପହଞ୍ଚି ସାରିଛି । ମୋର ଆଉ ବିଶେଷ କିଛି କରିବାର ନାହିଁ । ମୋତେ ମାରିଦେଲେ ମୁଁ ଆଉ ତୁମ ପାଖରେ ନଥିବି । ମୁଁ ବର୍ତ୍ତମାନ ତୁମରି ନିୟନ୍ତ୍ରଣରେ ନିରାପଦ । ମାରିଦେବ ତ ଦିଅ, ପ୍ରାଣ ଭୟରେ ମୁଁ ପଳାଇଯିବି ନାହିଁ କି ପ୍ରତିବାଦ କରିବି ନାହିଁ । ନୂଆଖାଲିରେ ହିନ୍ଦୁମାନଙ୍କୁ ମୁଁ ରକ୍ଷା କରିଛି ବୋଲି ତୁମେ ଯାହା କହୁଛ ତା ଠିକ୍ । ସେଠାକାର ମୁସଲମାନ ନେତା, ଯିଏ କିନ୍ତୁ ହିନ୍ଦୁ ହତ୍ୟା ପାଇଁ ଦାୟୀ, ସେ ମୋତେ ପ୍ରତିଶ୍ରୁତି ଦେଇଛନ୍ତି ଯେ, ସେଠାରେ ଆଉ ଜଣେ ହେଲେ ହିନ୍ଦୁ ନିହତ ହେବେ ନାହିଁ । ଅଗଷ୍ଟ ୧୫ ତାରିଖ ଦିନ ସେମାନେ ଶାନ୍ତି ଶୃଙ୍ଖଳା ରକ୍ଷା କରିବେ । ଏଠାକୁ ଆସିଛି ପ୍ରତିଶ୍ରୁତି ଦେବାକୁ ଯେ, ଏଠାରେ ଆଉ ଜଣେ ହେଲେ ମସୁଲମାନ ନିହତ ହେବେ ନାହିଁ । ଆଉ କ'ଣ ତୁମେ ଚାହଁ ? ତୁମେ କ'ଣ ଶାନ୍ତି ଚାହଁ ନାହିଁ ? ମୁଁ କଲିକତା ଆସିଛି ମୁସଲମାନ ମାନଙ୍କର ନିରାପତ୍ତା ପାଇଁ । ଯଦି ହିନ୍ଦୁମାନେ ଅମାନ୍ୟ କରନ୍ତି, ତେବେ ତାହା ସେମାନେ କରିବେ ମୋ ଜୀବନ ବିନିମୟରେ । ମୁସଲମାନ ମାନଙ୍କ ନିରାପତ୍ତା ପାଇଁ ମୁଁ ସବୁକିଛି କରିବାକୁ ପ୍ରସ୍ତୁତ । ତେଣୁ ତୁମେ ଶାନ୍ତ ହୁଅ ଓ ଶାନ୍ତିରକ୍ଷା କର । ଗାନ୍ଧିଙ୍କର ଏହି ନିବେଦନ ପ୍ରତି ପ୍ରଥମେ ସେମାନେ ଉଦାସୀନ ରହିଲେ ମଧ୍ୟ ଶାନ୍ତିରକ୍ଷା କରିବାକୁ ପ୍ରତିଶ୍ରୁତି ଦେଲେ । ଏହାପରେ ସେ ରହିବା ପାଇଁ ହାଇଦର ହାଉସ୍‌କୁ ଗଲେ । ହାଇଦର ହାଉସ୍ ଥିଲା ଜଣେ ଧନୀ ମୁସଲମାନଙ୍କର ପରିତ୍ୟକ୍ତ କୋଠା । ଭଙ୍ଗାତୁଟା ଘରଟି ଥିଲା ଅତ୍ୟନ୍ତ ଅପରିଷ୍କାର ଅପରିଚ୍ଛିନ୍ନ । ଚାରିଆଡ଼େ ଅଳିଆ ଆବର୍ଜନା ମୂଷା, ଚୁଚୁନ୍ଦ୍ରା, ଅସରପା, ସାପ ଓ ବେଙ୍ଗରେ ଭର୍ତ୍ତି । ପାଇଖାନାଟି ଥିଲା ଅତ୍ୟନ୍ତ ଅପରିଷ୍କାର

ଓ ଦୁର୍ଗନ୍ଧମୟ । ପୁରା ଦିନତମାମ ଲାଗି ସେ ଘରଟିକୁ ସଫା କରି ଚାରିଆଡ଼େ ବ୍ଲିଚିଂ ପାଉଡ଼ର ପକାଇଲା ପରେ ଗାନ୍ଧି ସେଠାରେ ଦିନରାତି ହିନ୍ଦୁ ଓ ମୁସଲମାନ ମାନଙ୍କୁ ଶାନ୍ତିରକ୍ଷା କରିବାକୁ ବୁଝାଇବାରେ ଲାଗିଲେ । ସିଦ୍ଧ ତପସ୍ୱୀର ତେଜ ପରି ଗାନ୍ଧିଙ୍କର ସେମାନଙ୍କ ଉପରେ ନୈତିକ ଚାପର ପ୍ରଭାବ ପଡିଲା । ସେମାନେ ଦଳ ଦଳ ହୋଇ ହିନ୍ଦୁ ମାନଙ୍କ ସହ ମିଶି ସାରା କଲିକତାର ଗଳି କନ୍ଦି ବୁଲି ଲୋକଙ୍କୁ ବୁଝାଇବାକୁ ଲାଗିଲେ । ହିନ୍ଦୁ ଓ ମୁସଲମାନ ଏପରି ମିଳିତ ଉଦ୍ୟମ ଦେଖି ସମସ୍ତଙ୍କର ସହଯୋଗ ମିଳିଲା । ଯେଉଁ ଅତ୍ୟନ୍ତ ଉଗ୍ରପନ୍ଥୀମାନେ ବିରୋଧ କରି ହିଂସାକାଣ୍ଡ କରିବା ଯିଦ୍ ଧରିଲେ, ସେମାନଙ୍କୁ ହିନ୍ଦୁ ଓ ମୁସଲମାନ ମାନେ ମିଳିତ ଭାବରେ ବୁଝାଇଲେ । ଚାହୁଁ ଚାହୁଁ କଲିକତା ଶାନ୍ତ ହୋଇଗଲା ଏବଂ ଦେଖାଗଲା ଯେ, କେତେକ ଉଗ୍ରପନ୍ଥୀ ମାନଙ୍କ ଭିତରେ ମାନବିକତା ଜାଗ୍ରତ ହେବାରୁ, ସେମାନେ କେତେକ ସ୍ଥାନରେ ଶାନ୍ତି ରକ୍ଷା କରିବାକୁ ନେତୃତ୍ୱ ନେଲେ । ତଥାପି କେତେକ ଅତ୍ୟନ୍ତ ଅସହିଷ୍ଣୁ ଉଗ୍ରପନ୍ଥୀ ମାନେ ଗାନ୍ଧିଙ୍କୁ  ଲକ୍ଷ୍ୟକରି ଝରକା ବାଟେ ପଥର ଫିଙ୍ଗିଲେ । ସେତେବେଳେ ଗାନ୍ଧି ହାଇଦରୀ ହାଉସ୍  ମଝିରେ ଧ୍ୟାନମଗ୍ନ ଋଷିଟିଏ ପରି ଶାନ୍ତି ରକ୍ଷା ପାଇଁ ଆବେଦନ ପତ୍ର ଲେଖୁଥିଲେ । ସେ ଆବେଦନ ପତ୍ରରେ ଲେଖାଥିଲା ହିନ୍ଦୁମାନେ ଯଦି ମୁସଲମାନ ମାନଙ୍କର ସୁରକ୍ଷା ଦାୟିତ୍ୱ ନ ଦିଅନ୍ତି, ତେବେ ମୁଁ ଆମରଣ ଅନଶନ କରି ପ୍ରାଣ ବିସର୍ଜନ ଦେବି । ଏଠାରେ ଦୃଢ଼ ରହି ତାଙ୍କର ଅହିଂସା ଅସ୍ତ୍ର ପ୍ରୟୋଗ କଲେ । ଏ ନିବେଦନ ସେ ଲେଖୁଥିଲେ । ମୁଁ ଜନ୍ମରୁ ହିନ୍ଦୁ, କର୍ମରେ ହିନ୍ଦୁ ଓ ହିନ୍ଦୁ ମାନଙ୍କ ମଧ୍ୟରେ ହିନ୍ଦୁ, ହିନ୍ଦୁ ମାନଙ୍କର ଶତ୍ରୁ ମୁଁ କେବେ ହେବି କିପରି ? ମୋର ଏ ନିବେଦନକୁ ନମାନି କଲିକତାର ହିନ୍ଦୁମାନେ ଯଦି ମୁସଲମାନ ମାନଙ୍କର ସୁରକ୍ଷା ଦାୟିତ୍ୱ ନ ନିଅନ୍ତି, ତେବେ ମୁଁ ଆମରଣ ଅନଶନ କରି ଆତ୍ମ ବିସର୍ଜନ କରିବି ।

ହିନ୍ଦୁ ଜଗତରେ ଭଗବାନଙ୍କର ଦଶ ଅବତାରକୁ ଗ୍ରହଣ କରାଯାଇଛି ଏବଂ ତାକୁ ବିଶ୍ୱାସ କରାଯାଇ ଯୁଗଯୁଗ ଧରି ଏ ପର୍ଯ୍ୟନ୍ତ ପୂଜା ଅର୍ଚ୍ଚନା କରାଯାଇ ଆସୁଛି । ଏହି ବିଚାର ପଛରେ ଯେଉଁ ବିଶ୍ୱାସ ରହିଛି ତାହା ହେଲା କୌଣସି ଏକ ଅସମ୍ଭବ

କାର୍ଯ୍ୟକୁ ସଂପାଦନ କରିବା ପାଇଁ ଭଗବାନ ଭିନ୍ନ ଭିନ୍ନ ଅବତାର ଗ୍ରହଣକରି ଅଲୌକିକ ପ୍ରତିଭା ବଳରେ ତାକୁ ସଂପାଦନ କରିଥାନ୍ତି । ସେଥିପାଇଁ ଭଗବାନ ନିଜେ କହିଛନ୍ତି "ସମ୍ଭବାମି ଯୁଗେଯୁଗେ" । ଭଗବାନଙ୍କର ଏତେ ଅବତାର ଗ୍ରହଣ କଲାପରେ ଆଉ ଯେ ଅବତାର ଗ୍ରହଣ କରିବେ ନାହିଁ ଏହା ନୁହେଁ, ଯେତେବେଳେ କୌଣସି ଏକ ଆଶ୍ଚର୍ଯ୍ୟ ଜନକ କାମ ସଂପାଦନ କରିବା ପାଇଁ କିମ୍ବା ଦୁଷ୍ଟ ଶକ୍ତିର କବଳରୁ ମାନବ ସମାଜକୁ ରକ୍ଷା କରିବା ପାଇଁ ଆବଶ୍ୟକ ପଡେ, ଭଗବାନ ଆଉ ଯେ କେତେ ଅବତାର ଗ୍ରହଣ କରିବେ ସେକଥା କହି ହେବନାହିଁ । କାରଣ ଦୁଷ୍ଟ ଶକ୍ତି ଆର୍ବିଭାବ ହେବାର ଶେଷ ହୋଇନାହିଁ କିମ୍ବା ଧର୍ମରେ ଗ୍ଲାନି ଘଟିବା ଶେଷ ହୋଇଁନାହିଁ। ସୁତରାଂ ଭଗବାନଙ୍କର ଅବତାର ଗ୍ରହଣ କରିବା ଯୁଗ ପରେ ଯୁଗ ଆବଶ୍ୟକ ହୋଇଥାଏ। ସାଧାରଣତଃ ଯେଉଁ ଯୁଗରେ ଭଗବାନ ଏପରି ଅବତାର ଗ୍ରହଣ କରିଛନ୍ତି ସେହି ଯୁଗରେ ଭଗବାନଙ୍କର ଅଲୌକିକ ପ୍ରତିଭାକୁ ଜାଣିପାରନ୍ତି ନାହିଁ। କିନ୍ତୁ ସେପରି କାର୍ଯ୍ୟର ତୁଳନା ନଥିବାରୁ ବିସ୍ମୟ ବିଭୂତ ମଣିଷ ତାଙ୍କୁ ଭଗବାନଙ୍କର ଅବତାର ବୋଲି ଗ୍ରହଣ କରିନିଏ ଏବଂ ସବୁକାଳ ପାଇଁ ଏହି ବିଶ୍ୱାସ ମଣିଷ ମନରେ ରହିଯାଏ। ମୀନ, କଛପ, ନୃସିଂହ, ବରାହ, ରାମ, କୃଷ୍ଣ, ବୁଦ୍ଧ, କଲ୍‌କୀ ଇତ୍ୟାଦି ଦଶ ଅବତାରର ଏହାହିଁ ଦର୍ଶନ ତତ୍ତ୍ୱ। ରକ୍ତ ମାଂସର ଦେହ ଧାରଣ କରି ତ୍ୟାଗପୂତ ସାଧୁ ଯଦି କୌଣସି ଏକ ଅସମ୍ଭବ କାର୍ଯ୍ୟକୁ ନିଜର ଆଲୌକିକ ପ୍ରତିଭା ବଳରେ ସଂପାଦନ କରି ବିଶ୍ୱବାସୀଙ୍କୁ ବିସ୍ମୟାଭିଭୂତ କରି ପାରନ୍ତି ତାକୁ ଭଗବାନଙ୍କର ଅନ୍ୟ ଏକ ଅବତାର ବୋଲି ଗ୍ରହଣ କରିବା ଯଥାର୍ଥ। ନିଜର ନୈସର୍ଗିକ କ୍ଷମତା ବଳରେ ସାରା ବିଶ୍ୱକୁ ଭୟରେ ଥରହର କରୁଥିବା ଏକ ରାଜଶକ୍ତି ଯଦି କୌଣସି ଶକ୍ତି ଦ୍ୱାରା ପରାଜୟ ସ୍ୱୀକାର କରେ, ତେବେ ତାଙ୍କୁ ଭଗବାନଙ୍କର ଅଲୌକିକ ଶକ୍ତି ସଂପନ୍ନ ଏକ ଅବତାର ଭାବେ ସ୍ୱୀକାର କରିବା ସମିଚୀନ। ନିଜର ତ୍ୟାଗ ତପସ୍ୟା ଓ ଉତ୍ସର୍ଗକୃତ ସେବା ପାଇଁ ବିଶ୍ୱ କବି ରବିନ୍ଦ୍ର ନାଥ ଟାଗୋରଙ୍କ ଦ୍ୱାରା ମହାତ୍ମା ଉପାଧିରେ ଭୂଷିତ ମୋହନ ଲାଲ କରମ ଚାନ୍ଦ

ଗାନ୍ଧି ସେହିପରି ଜଣେ ଅଲୌକିକ ପ୍ରତିଭାଶାଳୀ ବୀରପୁରୁଷ । ଦୁର୍ଦ୍ଦାନ୍ତ ବ୍ରିଟିଶ୍ ସାମ୍ରାଜ୍ୟର ବନ୍ଦୀଶାଳାରେ ଶହ ଶହ ବର୍ଷ ଧରି ଦାସତ୍ୱର ଜୀବନ କାଟୁଥିବା ଭାରତର ଚାଳିଶ କୋଟି ଜନତାଙ୍କୁ ପ୍ରେମମୟ ଅହିଂସା ବଳରେ ବନ୍ଦୀଶାଳାରୁ ମୁକ୍ତ କରି ଗାନ୍ଧି ମହା ମାନବ ହୋଇଛନ୍ତି ଏବଂ ପ୍ରେମ ଓ ଅହିଂସା କେତେ ଶକ୍ତିଶାଳୀ ତାହା ଦେଖାଇ ଦେଇ ସାରାବିଶ୍ୱକୁ ଗାନ୍ଧି ସ୍ତବ୍ଧଚକିତ କରିଛନ୍ତି । ପ୍ରେମ ଓ ଅହିଂସା ଅସ୍ତ୍ରକୁ ଉଦ୍‌ଭାବନ କରି ସାରାଦୁନିଆକୁ ସେ ଉପହାର ଦେଇଛନ୍ତି ଏକ ସ୍ୱର୍ଗୀୟ ଅମୃତର ଭଣ୍ଡାର । ଯାହାର ତୁଳନା ନାହିଁ କି ଯାହାର ଆଦି ଅନ୍ତ ନାହିଁ, ଯାହା ସାରା ସୃଷ୍ଟି ସର୍ଜନାର ଦିବ୍ୟ ଉପାଦାନ, ଦିବ୍ୟ ତତ୍ତ୍ୱ । ଏ ନୀଳ ଆକାଶ, ସମୁଦ୍ରର ଏନୀଳ ଜଳରାଶୀ, ବିସ୍ତିର୍ଣ୍ଣ ବନାନୀର ଶ୍ୟାମଳ ଶୋଭା, ଝରଣାର କଳୁକୁଳୁ ନାଦ, ପକ୍ଷୀ କୂଳର କାକଳୀ ଆଉ ସମସ୍ତ ଜୀବ ଜଗତର ରହସ୍ୟ ଭରା ଅନନ୍ତ ପ୍ରେମମୟ ଦର୍ଶନ, ସବୁଠାରେ ଯିଏ ପ୍ରକାଶିତ, ସବୁକିଛି ଯାହାଙ୍କର ପ୍ରତିଛବି, ସବୁଠାରେ ପ୍ରେମମୟ ସୌକୁମାର୍ଯ୍ୟ ପ୍ରେମ, ତାର ରୂପ ନାହିଁ ଆକାର ନାହିଁ, ଅଥଚ ସମସ୍ତ ସର୍ଜନାର ସେ ମୂଳାଧାର । ସେ ପୁଣି ଅନନ୍ତ ଅପାର । ମାୟାରେ ଆଛନ୍ନ ଅନ୍ଧ ମଣିଷ ସିନା ତାକୁ ଦେଖିପାରେ ନାହିଁ, କିନ୍ତୁ ଦିବ୍ୟ ଦୃଷ୍ଟିରେ ଦେଖିଲେ ସବୁଠାରେ ବିଦ୍ୟମାନ । ଫୁଲର ବାସ୍ନାକୁ ଅବା ଆତ୍ମାର ପରିବ୍ୟାପ୍ତିକୁ ଦେଖି ହୁଏନା କି କଳି ହୁଏନା, ତା'ର ସ୍ଥିତିକୁ କ'ଣ ଅସ୍ୱୀକାର କରି ହୁଏ ? ସବୁଥିରେ ସେହିଁ କର୍ତ୍ତା, ସେହିଁ କାରଣ । ସେ ସ୍ୱର୍ଗୀୟ ହେଉ କି ନୈସର୍ଗିକ ହେଉ । ସବୁଠାରେ ସେହିଁ ନାଦବ୍ରହ୍ମ । ସେଇ ପ୍ରେମ ଓ ଅହିଂସାର ଶକ୍ତିକୁ ତାଙ୍କ ମର୍ତ୍ତ୍ୟର ମାନବ ମଧ୍ୟରେ କିଏ ଜାଣିଥିଲା ? କିଏ ଦେଖିଥିଲା ଦୁର୍ଜୟ ରାଜଶକ୍ତି ପରାସ୍ତ କରିବାର ତା ଶକ୍ତିକୁ । ଅନ୍ୟାୟ ଓ ଅତ୍ୟାଚାର ବିନାଶ ପାଇଁ ଅଥବା ଧର୍ମର ସଂସ୍ଥାପନା ପାଇଁ ଆଉ କ'ଣ ଅଛି ତା'ଠାରୁ ଅଧିକ ଶକ୍ତିଶାଳୀ ? ବିଜ୍ଞାନ ବଳରେ ନିୟୁକ୍ଲିୟର ଅସ୍ତ୍ର ଉଦ୍‌ଭାବନ କରି ମଣିଷ ନିଜକୁ ଭାବୁଛି ସର୍ବଶକ୍ତିମାନ କିନ୍ତୁ ପ୍ରେମ ଓ ଅହିଂସାର ଶକ୍ତିକୁ ସେ କ'ଣ କଳିଛି ? ହୃଦୟର ନିତ୍ୟ ବୃନ୍ଦାବନରେ ନିତ୍ୟ ରାସରେ ସେ ନିତ୍ୟ ନିରଞ୍ଜନ । ସେପରି ପ୍ରେମମୟ ଅବିନାଶୀ ଆତ୍ମାକୁ ସେ ଜାଣନ୍ତି ।

ଆତ୍ମାର ତ ଅମୃତମୟ ନିର୍ଝର ସଦା ପ୍ରବାହିତ। କେଜାଣି କାହିଁକି ମଣିଷ ଏ ଅମୃତମୟ ପ୍ରବାହରେ ମନ୍ଦ ଚିନ୍ତାର ଆବର୍ଜନା ପିଙ୍ଗି ନିଜକୁ ଆବର୍ଜନାମୟ କରେ। ସେପରି ଗାନ୍ଧିଙ୍କୁ ଜଣେ ଦେବଦୂତ ଅଥବା ଭଗବାନଙ୍କର ଅନ୍ୟ ଏକ ଅବତାର ବୋଲି ଗ୍ରହଣ କରିନେବା ସମ୍ପୂର୍ଣ୍ଣ ନିରାପଦ।

ସେଇ ଗାନ୍ଧିଙ୍କର ବ୍ୟକ୍ତିତ୍ୱ, କୃତିତ୍ୱ ତ୍ୟାଗ ଓ ସେବାର ଏକ ଚିତ୍ର ଆଙ୍କିବା ପାଇଁ ଏ ପୁସ୍ତକରେ ଉଦ୍ୟମ କରାଯାଇଛି, ମାତ୍ର ତାଙ୍କର ବହୁମୁଖୀ ପ୍ରତିଭାର ଦିଗନ୍ତ ଏତେ ଏତେ ପ୍ରସାରିତ ଯେ, ତାହାର ଏକ ପୂର୍ଣ୍ଣଚିତ୍ର ପ୍ରଦାନ କରିବା କାହାରି ପକ୍ଷରେ ସମ୍ଭବ ନୁହେଁ। ତାଙ୍କ ଆଧ୍ୟାତ୍ମିକ ବିଚାର ଧାରାର ବିଶାଳତା ଯେପରି ବ୍ୟାପକ, ତାଙ୍କ କର୍ମ ପ୍ରବଣତା ଓ ସ୍ୱାଧୀନତା ପାଇ ଉତ୍ସର୍ଗୀକୃତ ସେବାର ଦିଗନ୍ତ ସେହିପରି ପରିବ୍ୟାପ୍ତ। ତାଙ୍କର ବ୍ରହ୍ମଚର୍ଯ୍ୟ ପାଳନ ଯେପରି କଠୋର, ତାଙ୍କ ଋଷି ଜୀବନର ଆଧ୍ୟାତ୍ମିକ ଗଭୀରତା ମଧ୍ୟ ସେହିପରି ବିସ୍ମୟକର। ସେ-ଜୀବନ ବ୍ୟାପୀ ପ୍ରତ୍ୟେକଟି ଜଟିଳ ମୂହୁର୍ତ୍ତରେ ଅହିଂସା ଅସ୍ତ୍ର ପ୍ରୟୋଗ କରି ସଫଳ ହୋଇଛନ୍ତି। କଲିକତାରେ ହିନ୍ଦୁ ମୁସଲମାନ ମଧ୍ୟରେ ଯେଉଁ ପ୍ରଚଣ୍ଡ ଦଙ୍ଗା ହୋଇଥିଲା, ଯାହାକୁ ଆୟତ୍ତ କରିବା ପାଇଁ ନିଜେ ଭାଇସରାଏ ସମର୍ଥ ହୋଇନଥିଲେ, ଗାନ୍ଧିଜୀ ତାକୁ ଆୟତ୍ତ କରିଥିଲେ ତାଙ୍କର ଅଦ୍ଭୁତ ଅହିଂସା ଅସ୍ତ୍ରକୁ ପ୍ରୟୋଗ କରି। ଅବଶ୍ୟ ମୁସଲମାନ ମାନଙ୍କର ସେ କ୍ରୋଧାନ୍ୱିତ ଦଳ ସୁରାବର୍ଦ୍ଦିଙ୍କୁ ଆସିବାର ଦେଖି ଆହୁରି ଅଧିକ ହିଂସ୍ର ହୋଇ ଉଠିଥିଲେ। ମାତ୍ର ସୁରାବର୍ଦ୍ଦିଙ୍କ ଉପସ୍ଥିତିରେ ନୂଆଖାଲିରେ ଘଟିଥିବା ଘଟଣା ଓ ମୁସଲମାନଙ୍କର ହିନ୍ଦୁ ସୁରକ୍ଷା ସଂପର୍କରେ ଦେଇଥିବା ପ୍ରତିଶୃତି ବର୍ଣ୍ଣନା କରି ବୁଝାଇ ଦେବାରୁ ଶାନ୍ତ ହୋଇ ଯାଇଥିଲେ ଓ ଗାନ୍ଧିଙ୍କ ବିଚାରଧାରାକୁ ମଧ୍ୟ ସମର୍ଥନ କରିଥିଲେ। କଲିକତାର ସେ ହିଂସାକାଣ୍ଡ ସାରା ପୃଥିବୀରେ ଆଲୋଡନ ସୃଷ୍ଟି କରିଥିଲା। କାରଣ କଲିକତା ଯେ ପୃଥିବୀର ସବୁଠାରୁ ଉତ୍ତେଜନା ପ୍ରବଣ ନଗରୀ ଏ କଥା ସମସ୍ତେ ଜାଣନ୍ତି। ଜିନା ଯେଉଁ ଡାଇରେକ୍ଟ ଆକ୍ସନ ଡେ ଘୋଷଣା କରିଥିଲେ ତାହା ଥିଲା ଗଣତାନ୍ତ୍ରିକ ଶାସନ ଇତିହାସରେ ପ୍ରଥମ ଘଟଣା ଏବଂ ଏହାଦ୍ୱାରା ସମଗ୍ର

ସହର ଯେ ନିଶ୍ଚିହ୍ନ ହୋଇଯିବ, ଏ ଆଶଙ୍କା ସମସ୍ତଙ୍କର ଥିଲା। ମାଉଣ୍ଟବେଟେନଙ୍କ ଅନୁରୋଧ କ୍ରମେ ଗାନ୍ଧିଜୀ ସେଠାରେ ଘଟିଥିବା ପୂର୍ବରୁ ହଜାର ଜହାର ହତ୍ୟାକାଣ୍ଡରେ ହୁଗୁଳୀ ନଦୀ ରକ୍ତ ରଞ୍ଜିତ ହୋଇଯାଇଥିଲା। ସେପରି ଏକ ଭୟଙ୍କର ରକ୍ତପାତରୁ ରକ୍ଷା କରି କଲିକତାରେ ଶାନ୍ତି ପ୍ରତିଷ୍ଠା କରିଥିବା ସମ୍ଭବ ହୋଇଥିଲା କେବଳ ଋଷି ପ୍ରତିମ ଅହିଂସାର ଅବତାର ଗାନ୍ଧିଜୀଙ୍କ ଦ୍ୱାରା। ଏଥିରେ ଭାରତର ଭାଇସରାଏ ବିସ୍ମୟ ପ୍ରକାଶ କରି କହିଥିଲେ 'Oh' what a devin' ଏବଂ ତାଙ୍କର ମନ୍ତବ୍ୟ ସାରା ପୃଥିବୀର ଗଣମାଧ୍ୟମରେ ତୁର୍ଯ୍ୟ ନାଦରେ ପ୍ରତିଧ୍ୱନୀତ ହୋଇଥିଲା। ଅହିଂସା ଉପାୟରେ ଏପରି ଅଲୌକିକ ଘଟଣା ସାରା ପୃଥିବୀ ଇତିହାସରେ ଅଦ୍ୱିତୀୟ। ନିଃସ୍ୱାର୍ଥପର ଉତ୍ସର୍ଗୀକୃତ ସେବାରେ ସାରା ଜୀବନ କାଟିଦେବା ସମ୍ଭବତଃ ପୃଥିବୀ ଇତିହାସରେ ସେ ହେଉଛନ୍ତି ପ୍ରଥମ ତ୍ୟାଗଦୀପ୍ତ ଅନାସକ୍ତ ସନ୍ନ୍ୟାସୀ। ତାଙ୍କ କୃତିତ୍ୱ ଯେ ପର୍ଯ୍ୟନ୍ତ ପୃଥିବୀରେ ସୂର୍ଯ୍ୟ ଚନ୍ଦ୍ର ଆତଯାତ ହେଉଥିବ, ସେ ପର୍ଯ୍ୟନ୍ତ ଉଜ୍ଜ୍ୱଳ ଆଲୋକରେ ଦୀପ୍ତିମାନ ରହିଥିବ। ସେ କେବଳ ଜଣେ ଆଦର୍ଶ ପୁରୁଷ ନୁହଁନ୍ତି ଭଗବାନଙ୍କର ଜଣେ ନିଷ୍କଳଙ୍କ ଅବତାର।

ସ୍ୱାଧୀନତା ଆନ୍ଦୋଳନର ଦୀର୍ଘ ଯାତ୍ରା ପଥର ଶେଷରେ ସ୍ୱାଧୀନତା ମିଳିବାର ମାତ୍ର କେଇ ଘଣ୍ଟା ପୂର୍ବରୁ, ଯେତେବେଳେ ଗାନ୍ଧିଜୀ ପଦ୍ମାସନ ମୁଦ୍ରାରେ ବସି ପତ୍ରକାର ମାନଙ୍କ ପ୍ରଶ୍ନର ଉତ୍ତର ଦେଉଥିଲେ ଶାନ୍ତ ଓ ନିରୁଦ୍‌ବିଗ୍ନ ଭାବରେ, ସେତେବେଳେ ଏ ଦେଶର ଏକ କ୍ରୋଧିତ ଜନ ପଟୁଆର ହାଇଦର ହାଉସ୍‌କୁ ଘେରି ଯାଇ ପଥର ବୃଷ୍ଟି କଲେ ଅତ୍ୟନ୍ତ ନୃଶଂସ ଭାବରେ। ଅବିଚଳିତ ଗାନ୍ଧି ଅବଶ୍ୟ ପତ୍ରକାର ମାନଙ୍କ ପ୍ରଶ୍ନର ଉତ୍ତର ଦେଇ ଚାଲିଲେ ଶାନ୍ତ କଣ୍ଠରେ। ମାତ୍ର ତାଙ୍କ ପ୍ରତି ଏପରି ବର୍ବର ଆକ୍ରମଣ ତାଙ୍କ ଜୀବନର ପ୍ରଥମ ଘଟଣା। ଯେଉଁ ଗାନ୍ଧିଙ୍କ ବଳିଷ୍ଠ ବ୍ୟକ୍ତିତ୍ୱର ଉଜ୍ଜ୍ୱଳ ଆଭା ପାଖରେ କୌଣସି ଦିନ କେହି ଜଣେ ଅଙ୍ଗୁଳି ନିର୍ଦ୍ଦେଶ କରିବାକୁ ସାହସ କରିନଥିଲେ, ବ୍ରିଟେନର ସମ୍ରାଟ୍ ଷଷ୍ଠ ଜର୍ଜ ସସମ୍ମାନେ ପାଛୋଟି ନେଇଥିଲେ ବକିମହାମ ରାଜପ୍ରାସାଦକୁ ଏକା ସହିତ ଚା'ପାନ କରି ପୃଥିବୀର ଏକ

ଜଟିଳ ସଂକଟ ସଂପର୍କରେ ଆଲୋଚନା କରିବାକୁ ତାଙ୍କ ପ୍ରତି ନିଜ ଦେଶର ଲୋକଙ୍କର ଏ ଅସୌଜନ୍ୟ ବ୍ୟବହାର ଅତ୍ୟନ୍ତ ଦୁଃଖ ଦାୟକ। ଏହା ସୁସଂସ୍କୃତ ପରଂପରାର ଘୋର ଅବକ୍ଷୟ ଓ ଅମାର୍ଜିତ ଆଚରଣ। ଏ ଘଟଣାକୁ ପୃଥିବୀ ବ୍ୟାପୀ ନିନ୍ଦା କରାଯାଇଥିଲା; କାରଣ ଗାନ୍ଧିଜୀ କୌଣସି ସଂପ୍ରଦାୟିକ ସଂକିର୍ଣ୍ଣତା ମଧ୍ୟରେ ଆବଦ୍ଧ ନଥିଲେ। ତାଙ୍କର ଦର୍ଶନ ଥିଲା ମାନବବାଦ। ଖାଲି ଭାରତ ନୁହେଁ ସାରା ପୃଥିବୀରେ ଗଣତାନ୍ତ୍ରିକ ଶାସନ ପ୍ରତିଷ୍ଠା କରିବା ପାଇଁ ଦକ୍ଷିଣ ଆଫ୍ରିକାରୁ ସେ ଆରମ୍ଭ କରିଥିଲେ ରାଜତନ୍ତ୍ର ବିରୁଦ୍ଧରେ ଆନ୍ଦୋଳନ ଏବଂ ସେଇଠାରୁ ସାରା ପୃଥିବୀକୁ ଆହ୍ୱାନ କରିଥିଲେ ଗଣତାନ୍ତ୍ରିକ ଶାସନ ପ୍ରତିଷ୍ଠା କରିବାକୁ। ଜାତି ଜାତି ମଧ୍ୟରେ ଥିବା ବର୍ଣ୍ଣ ବୈଶମ୍ୟ ଓ ଛୋଟ ବଡ ଭେଦ ଭାବ ବିରୁଦ୍ଧରେ ତାଙ୍କର ଐତିହାସିକ ସଂଗ୍ରାମ କୋଟି କୋଟି ଲୋକଙ୍କ ମନରେ ଭୟ ଦୂର କରି ରାଷ୍ଟ୍ରୀୟ ପ୍ରଗିତରେ ନିଜର ସାମର୍ଥ୍ୟ ବିନିଯୋଗ କରିବାକୁ ସୁଯୋଗ ପାଇଛନ୍ତି। ଫଳରେ ଜାତି, ଧର୍ମ ବର୍ଣ୍ଣ ନିର୍ବିଶେଷରେ ମାନବ ସମ୍ବଳକୁ ସାରା ବିଶ୍ୱର କଲ୍ୟାଣ ପାଇଁ ବିନିଯୋଗ କରିବାକୁ ସୁଯୋଗ ମିଳିଛି। ଏଭଳି ଜଣେ ପୁଣ୍ୟ ପ୍ରାଣଙ୍କୁ ସାଂପ୍ରଦାୟିକ ସଂକୀର୍ଣ୍ଣତା ମଧ୍ୟରେ ଆବଦ୍ଧ କରି ଅମାନୁଷିକ ବ୍ୟବହାର କରିବା ଖାଲି ନିନ୍ଦନୀୟ ନୁହେଁ ପାପପୂର୍ଣ୍ଣ ମଧ୍ୟ। ଗାନ୍ଧିଙ୍କ ପ୍ରତି ଏପରି ବ୍ୟବହାର କରିବା ଅଠର ଘଣ୍ଟା ପରେ ଆର.ଏସ୍.ଏସ୍ ସଂଗଠନ ପକ୍ଷରୁ ଜିନାଙ୍କୁ ହତ୍ୟା କରିବା ଏକ ଗୁପ୍ତ ଯୋଜନା ହୋଇଥିଲା। କରାଚିର ରାଜ ରାସ୍ତାରେ ଭାଇସ ରାଏଙ୍କୁ ସାଙ୍ଗରେ ଧରି ଜିନା ଯେଉଁ ଦିନ ଯାତ୍ରା କରିବେ ସେଇଦିନ ତାଙ୍କୁ ହତ୍ୟା କରାଯିବ ବୋଲି ସ୍ଥିର ହୋଇଥିଲା। ଆର.ଏସ୍.ଏସ୍. ଉଗ୍ର ହିନ୍ଦୁମାନଙ୍କର ଏକ ଗୁପ୍ତ ସଂଗଠନ। ସେମାନେ ଚାହାଁନ୍ତି ଭାରତରେ ହିନ୍ଦୁ ରାଜ୍ୟ ପ୍ରତିଷ୍ଠା କରିବାକୁ । ଗାନ୍ଧି ଜଣେ ହିନ୍ଦୁ, ମାତ୍ର ସେ କେବଳ ହିନ୍ଦୁ ସଂପ୍ରଦାୟର ନୁହଁନ୍ତି। ସେ ସମସ୍ତଙ୍କୁ ସମାନ ବିଚାର କରୁଥିଲେ ମଧ୍ୟ ଏ ଦେଶକୁ ଆକ୍ରମଣ କରି ଜୟକଲା ପରେ ଯେଉଁ ମୁସଲମାନ ମାନେ ଶାସନ କରି ହିନ୍ଦୁ ମାନଙ୍କ ପ୍ରତି ଅକଥନୀୟ ଅତ୍ୟାଚାର କଲେ, ସେଇ ମୁସଲମାନ ମାନଙ୍କୁ ସମସ୍ତ

ପ୍ରକାର ସାହାଯ୍ୟ ଓ ସମର୍ଥନ କରୁଛନ୍ତି। ତେଣୁ ଆମର ଶତୃ।। ସେହିପରି ଜିନା ଜଣେ ଉଗ୍ର ମୁସଲମାନ। ସେ ଜୋର କରି ଆମ ଦେଶକୁ ଦୁଇଭାଗ କରି ଦେଲେ ଏବଂ ସେ ଆମ ହିନ୍ଦୁ ମାନଙ୍କୁ ଘୃଣା କରନ୍ତି। ସେଇ ଅତ୍ୟାଚାରୀ ଶାସକ ମାନଙ୍କର ସେ ବଂଶଧର। ଯେଉଁ ଗାଈକୁ ଗୋ ମାତା କହି ଆମେ ପୂଜା କରୁ। ମୁସଲମାନ ମାନେ ତାକୁ ହତ୍ୟା କରି ଖାଇଯାଆନ୍ତି। ଆମ ଦେଶର ବହୁ ହିନ୍ଦୁ ମନ୍ଦିରକୁ ସେମାନେ ଭାଙ୍ଗି ଦେଇଛନ୍ତି, ତେଣୁ ସେ ଆମର ଶତୃ। ତାଙ୍କୁ ଆମେ ହତ୍ୟା କରିବୁ। ଏହି ବିଚାରରେ ସେମାନେ ଗାନ୍ଧି ଓ ଜିନାଙ୍କୁ ହତ୍ୟା କରିବା ପାଇଁ ଯୋଜନା କରିଥିଲେ। ହିନ୍ଦୁ ମହାସଭାର ଆର.ଏସ୍.ଏସ୍. ସଂଗଠନ ଏ ପର୍ଯ୍ୟନ୍ତ ହିନ୍ଦୁତ୍ୱକୁ ନେଇ ଗର୍ବ କରନ୍ତି ଓ ଆର୍ଯ୍ୟ ମାନଙ୍କ ବଂଶଧର ବୋଲି ଭାବନ୍ତି।

ପାକିସ୍ଥାନ ଜନ୍ମଦିନ ଉତ୍ସବ ପାଳନ କରିବାକୁ କରାଚିଠାରେ ଆସାମ୍ଲି ହଲକୁ ଅତି ଆଡମ୍ବର ସହକାର ସୁସଜ୍ଜିତ କରାଯାଇଥିଲା। ପାକିସ୍ଥାନର ଜନ୍ମପରେ ଜିନାଙ୍କୁ ସେ ଦେଶର ଜାତିପିତା କୁହାଗଲା। ସାରା ପୃଥିବୀରେ ମୁସଲମାନ ବହୁଳ ପାକିସ୍ଥାନ ଏକ ସ୍ୱତନ୍ତ୍ର ସ୍ୱାଧୀନ ରାଷ୍ଟ୍ର ବୋଲି ଘୋଷଣା କରିବାକୁ ଭାଇସ ରାଏଙ୍କୁ ସାଙ୍ଗରେ ଧରି ସେ ଯିବା ପାଇଁ ସ୍ଥିର ହୋଇଥିଲା। ଆର.ଏସ୍.ଏସ୍. ଏହାକୁ ଏକ ସୁଯୋଗ ଭାବି କରାଚିର ରାଜରାସ୍ତାରେ ତାଙ୍କୁ ହତ୍ୟା କରିବା ପାଇଁ ଯୋଜନା କରିଥିଲେ। କ୍ୟାନ୍‌ସର ରୋଗରେ ଜିନା ପୀଡିତ ଥିଲେ ଏବଂ ତାଙ୍କ ସ୍ୱାସ୍ଥ୍ୟ ଅବସ୍ଥା ଉଦ୍‌ବେଗ ଜନକ ଥିଲା। ସେଇ ଠାରୁ ବ୍ରିଟିଶ୍ ସାମ୍ରାଜ୍ୟ ପତନ ହେବା ମାତ୍ର ତିରିଶ ଘଣ୍ଟା ବାକି ଥିଲା। କରାଚିର ଆସାମ୍ଲି ହଲରେ ୪୫ ମିଲିୟନ ଲୋକଙ୍କର ରାଷ୍ଟ୍ରକୁ ଅନ୍ୟ କେତେକ ଦେଶର ପ୍ରତିନିଧିଙ୍କ ଉପସ୍ଥିତିରେ ଭାଇସ ରାଏଙ୍କ ଦ୍ୱାରା ନୂତନ ରାଷ୍ଟ୍ର ଭାବେ ଘୋଷଣା କରିବାକୁ ଜିନା ସ୍ଥିର କରିଥିଲେ। ମାଉଣ୍ଟ ବେଟେନ ତାଙ୍କର ରୋଲସ୍ ରୟାଲ କାର୍‌ରେ ସୁଶୋଭିତ ଥିଲେ। କିନ୍ତୁ ଇଂଲିଶ କୋଟ୍ ପ୍ୟାଣ୍ଟ ଟାଇ ପିନ୍ଧିଥିବା ଜିନା ଦିଶୁଥିଲେ କଙ୍କାଳି ବ୍ୟାଧିଗ୍ରସ୍ତ। ମଞ୍ଚ ଉପରେ ଭାଇସ ରାଏଙ୍କ ପାଖରେ ବସିଥିଲେ ଜିନା। ପ୍ରଥମେ ସ୍ମିତ ହସି ମାଉଣ୍ଟ ବେଟେନ ଠିଆ ହୋଇ

ବ୍ରିଟେନ ରାଜାଙ୍କର ଶୁଭାଶିଷ ଜଣାଇଲେ ନୂତନ ରାଷ୍ଟ୍ରକୁ ଏବଂ ତାଙ୍କ ସଂକ୍ଷିପ୍ତ ଭାଷଣରେ କହିଲେ, କାଳର ସ୍ରୋତରେ ଭାସି ପାକିସ୍ଥାନ ଆଜି ଏକ ସ୍ୱତନ୍ତ୍ର ସ୍ୱାଧୀନ ରାଷ୍ଟ୍ରରେ ପରିଣତ ହୋଇଛି । ଏହାପ୍ରତି ବ୍ରିଟେନର ସଦିଚ୍ଛା ରହିଛି ଏବଂ ଏଣିକି ବ୍ରିଟେନ ଓ ପାକିସ୍ଥାନ ବନ୍ଧୁ ରାଷ୍ଟ୍ର ହୋଇ ରହିବେ । ଯାହା କିଛି ଘଟି ଯାଇଛି ତାକୁ ଭୁଲିଯାଇ ଆଗକୁ ପାକିସ୍ଥାନ କିପରି ଏକ ସ୍ୱଚ୍ଛଳ ରାଷ୍ଟ୍ର ହେବ ସେଇକଥା ଚିନ୍ତା କରିବା ଆବଶ୍ୟକ । ଏହାପରେ ସେ ଜିନାଙ୍କ ଆଡ଼କୁ ଚାହିଁ ଦେଖିଲେ ତାଙ୍କୁ ମୁଖ ବିଷର୍ଣ୍ଣ, ବ୍ୟାଧି ପୀଡିତ ଶୀର୍ଣ୍ଣ କଙ୍କାଳ ସାର ଜିନା ମୃତ୍ୟୁର ଦ୍ୱାର ଦେଶରେ ପହଞ୍ଚି ଯାଇଛନ୍ତି । ନିସ୍ତେଜ ଶରୀରକୁ ଧରି ସେ କେବଳ ପଡ଼ି ରହିଛନ୍ତି । କ'ଣ ସେ କରିବେ ? ଆର.ଏସ୍.ଏସ୍.ର ଧମକ ସ୍ୱତ୍ତ୍ୱେ ସେ ତାଙ୍କର କାରର ଡୋର ସବୁ ବନ୍ଦ କରି ଲୋକ ଭିଡ଼ ଭିତରେ ଜିନାକୁ ନେଇ ଚାଲିଯିବେ ନା, ଆଉ କ'ଣ କରିବେ ଭାବି ପାରିଲେ ନାହିଁ । ଏପରି ଏକ ସ୍ୱତନ୍ତ୍ର ଉତ୍ସବରେ ବି ଜିନାଙ୍କଠାରେ କିଛି ପ୍ରତିକ୍ରିୟା ନାହିଁ ଓ ତାଙ୍କ ଶରୀର ଶୁଷ୍କ ଦେଖି ତାକୁ ମୃତ ବୋଲି ତାଙ୍କର ମନେ ହେଲା । ମାତ୍ର ସେ ଜୀବତ ଥିଲେ ବି ମୃତବତ୍ ପଡି ରହିଥିଲେ । କ୍ଷୀଣ କଣ୍ଠରେ ସେ କହିଲେ ଇସଲାମିକ୍ ସଂସ୍କୃତିରେ ସହନଶୀଳତା ତେର ଶହ ବର୍ଷର ପୁରୁଣା । ଏହି ପରଂପରାରେ ସବୁ ଦେଶ ସହିତ ଆମେ ଭାତୃଭାବ ରଖିବୁ । ଏତିକିରେ ସେ ତାଙ୍କର ଭାଷଣ ଶେଷ କଲେ । ପାଖା ପାଖି ବସିଥିଲେ ଦୁଇ ପରସ୍ପର ବିରୋଧି ଜିନା ଓ ମାଉଣ୍ଟବେଟେନ ସେମାନେ ଆସନ ଛାଡ଼ି ଉଠିଲେ । ଅଳ୍ପ ଦୂରରେ ଅପେକ୍ଷାରେ ଠିଆ ହୋଇଥିଲା ରୋଲସ୍ ରୟାଲ କାର୍ । ସେମାନଙ୍କୁ ନେବା ପାଇଁ ମାଉଣ୍ଟବେଟେନ ତାଙ୍କ ପତ୍ନୀଙ୍କ ଡ୍ରାଇଭରକୁ ଆଦେଶ ଦେଇଥିଲେ ସତର୍କ ରହିବାକୁ । କାରଣ ସେ ଆଶଙ୍କା କରୁଥିଲେ ବାଟରେ ଯିବାବେଳେ କିଛି ଦୁର୍ଘଟଣା ଘଟିପାରେ । କାର୍ ପାଖକୁ ଯିବା ବାଟରେ ମାଉଣ୍ଟବେଟେନଙ୍କ ମନରେ ଚଳଚ୍ଚିତ୍ରର ଦୃଶ୍ୟ ପରି ଅନେକ ଛବି ତାଙ୍କ ଆଗରେ ଭାସି ଉଠିଲା । ୧୮୮୧ ମସିହା ଫେବୃୟାରୀ ମାସରେ ଦେହ ତ୍ୟାଗ କରିଥିବା ତାଙ୍କ ବଡ଼ ଦାଦା ଟିସାର ଆଲେକଜାଣ୍ଡାର ୨ୟଙ୍କ ବୋମା ବିସ୍ଫୋରଣ

ହେତୁ ମୃତ୍ୟୁ ଘଟିଥିବା କଥା। ଫ୍ରାନ୍ସ ଠାରେ କେହିଜଣେ ତାଙ୍କ ଖୋଲା ଯାନ ଉପରକୁ ବୋମା ଫିଙ୍ଗିଥିଲା ଏବଂ ସେଥିରେ ତାଙ୍କର ମୃତ୍ୟୁ ଘଟିଥିଲା। ଆଉ ଗୋଟିଏ ଦୃଶ୍ୟରେ ସେ ଦେଖିଲେ ତାଙ୍କ ସଂପର୍କୀୟ ଭଉଣୀ Chares ତ୍ରୟୋଦଶକୁ ବିବାହ କରିବାକୁ ଯାଉଥିଲା ବେଳେ ବୋମା ବିସ୍ଫୋରଣରେ ମୃତ୍ୟୁ ବରଣ କରିଥିଲେ। ଅନ୍ୟ ଏକ ଦୃଶ୍ୟରେ ଦେଖିଲେ ତାଙ୍କର ଅନ୍ୟ ଜଣେ ଦାଦା ଗ୍ରାଣ୍ଡ ଡକ୍ ସେନାଜ ୧୯୦୪ ମସିହାରେ ଠିକ୍ ସେହିପରି ଜଣେ ଆତଙ୍କବାଦୀଙ୍କ ବୋମା ମାଡ଼ରେ ମୃତ୍ୟୁ ବରଣ କରିଥିଲେ। ତାଙ୍କ ମାନସ ପଟ୍ଟରେ ଏସବୁ ଦୃଶ୍ୟ ତାଙ୍କ ମନରେ ଭୟ ସଂଚାର କଲା। ବର୍ତ୍ତମାନ ଏତେବଡ଼ ଜନ ଗହଳୀ ଭିତରେ ଜିନାଙ୍କୁ ସାଙ୍ଗରେ ଧରି ଯିବାକୁ ହେବ। କରାଚି ରାଜରାସ୍ତାରେ ଯିବାବେଳେ କ'ଣ ଯେ ଘଟିବ କହିହେବ ନାହିଁ। ରାସ୍ତାର ଦୁଇ କଡ଼ର ମାତ୍ର ଏକଫୁଟ ବ୍ୟବଧାନରେ ସୈନ୍ୟ ବାହିନୀର ହଜାର ହଜାର ଯବାନ ନିରାପତ୍ତା ପାଇଁ ମୁତୟନ ଅଛନ୍ତି। କିନ୍ତୁ ସେମାନଙ୍କ ପଛ ପାଖ ଜନ ଗହଳିରୁ କେହି ବୋମା ଫିଙ୍ଗିଲେ ସେମାନେ ଜାଣି ପାରିବେ ନାହିଁ କି କିଛି କରିପାରିବେ ନାହିଁ। ଆର.ଏସ୍.ଏସ୍. ତାଙ୍କୁ ଓ ଜିନାଙ୍କୁ ହତ୍ୟା କରିବା ପାଇଁ ଯୋଜନା କରିଛନ୍ତି ତାହା ତାଙ୍କୁ ଜଣା । ସିଆଇଡି ତାଙ୍କୁ ଏ ସଂପର୍କରେ ଯେଉଁ ରିପୋର୍ଟ ଦେଇଛନ୍ତି ସେହି ଅନୁସାରେ ଆର.ଏସ୍.ଏସ୍.ର ଷଡଯନ୍ତ୍ରକାରୀ ମାନଙ୍କୁ ଏ ଜନଗହଳୀ ଭିତରେ ଠାବ କରିବାକୁ ସକ୍ଷମ ନୁହଁନ୍ତି। ମାତ୍ର ସେମାନେ ଅଛନ୍ତି। ଯେ କୌଣସି ମୂହୁର୍ତ୍ତରେ ତାଙ୍କ ଜୀବନ ଜିନାଙ୍କ ସହିତ ବୋମା ମାଡ଼ରେ ଯାଇପାରେ। ଜିନା ଚେତାଶୂନ୍ୟ ହୋଇ ପଡି ରହିଛନ୍ତି। ଆଉ କେଇଟା ମୂହୁର୍ତ୍ତରେ ତାଙ୍କ ଜୀବନ ଯାଇପାରେ। କରାଚିରେ ତାଙ୍କର କେହି ଜଣାଶୁଣା ନାହାନ୍ତି। ଜୀବନରେ କେବେ ସେ କରାଚି ଆସି ନାହାନ୍ତି। ଖାଲି କରାଚି କାହିଁକି, ପାକିସ୍ଥାନର କୌଣସି ଅଞ୍ଚଳକୁ ସେ ଜାଣି ନାହାନ୍ତି। କେବଳ ମାନଚିତ୍ର ଦେଖି ପାକିସ୍ଥାନର ଅବସ୍ଥିତି ସଂପର୍କରେ ଯାହା କିଛି ତାଙ୍କର ଧାରଣା ଅଛି। ଜୀବନରେ କେବେ ବି କରାଚି ଆସି ନାହାଁନ୍ତି। ଅଖଣ୍ଡ ଭାରତରେ ଦିଲ୍ଲୀ ଓ ବମ୍ବେ ଛଡ଼ା ଆଉ କେଉଁଠିକୁ ସେ କେବେ ଯାଇ

ନାହାଁନ୍ତି । କେବଳ ଭାରତକୁ ଦୁଇଭାଗ କରି ଏକ ସ୍ୱତନ୍ତ୍ର ସ୍ୱାଧୀନ ମୁସଲମାନ ରାଷ୍ଟ୍ର ଗଠନ କରିବାକୁ ତାଙ୍କ ଦାବୀ ତାଙ୍କୁ ମୁସଲମାନ ସଂପ୍ରଦାୟର ଜଣେ କର୍ତ୍ତା ଭାବେ ପରିଚୟ ଦେଇଛି । ସେଇ ଜିନା ଏବେ ତାଙ୍କ ସାଙ୍ଗରେ ସହଯାତ୍ରୀ । ବୋମା ବିସ୍ଫୋରଣ ହେଲେ ଏକା ସାଙ୍ଗରେ ଦୁଇ ଜଣଙ୍କର ଜୀବନ ଯିବ । ତେବେ ଦକ୍ଷିଣ ପୂର୍ବ ଏସିଆର ପୂର୍ବତନ ଆଡମିରାଲ ଭାରତର ସର୍ବ ଶକ୍ତିମାନ ଭାଇସ ରାଏ । ବ୍ରିଟିଶ୍ ରାଜ ବଂଶର ସୁନାମ ଧନ୍ୟ ଯୁବକ । ତାଙ୍କ ଜୀବନ କ'ଣ ଏହିପରି ଅସହାୟ ଭାବରେ ଚାଲିଯିବ ? ନାନା ଆଶା ଆଶଙ୍କା ଭିତରେ ମନ ତାଙ୍କର ଆନ୍ଦୋଳିତ ହେଉଥିଲା ଅତି ଧୀର ମନ୍ଥର ଗତିରେ ତାଙ୍କ କାର୍ ଆଗକୁ ଚାଲିଥିଲା । ସବୁ ଆଡ଼େ ଜନଗହଳୀ, ସବୁ ଆଡ଼େ କୋଳାହଳ, ସବୁଆଡେ ଭୟ ଓ ବିପଦର ସମ୍ଭାବନା । ପଥର ମୂର୍ତ୍ତିଟିଏ ଭଳି ନିରବ ନିଶ୍ଚଳ ହୋଇ ସେ ବସିଥିଲେ । ପଛ କାର୍‌ରେ ଆସୁଥିଲେ ପତ୍ନୀ ଇଡୁଉଇନ୍ କିପରି ସେ ଅଛନ୍ତି, ତାଙ୍କ ଆଦେଶକୁ ମାନି ସେ ସତର୍କରେ ବସିଛନ୍ତି କି ନା, ଏ ସେକଥା ଦେଖିବାକୁ ପଛକୁ ସେ ଚାହିଁ ପାରୁନଥିଲେ । ଯୁଆଡ଼େ ଚାହିଁଲେ ଗହଳି ଓ କୋଳାହଳ । ଯେ କୌଣସି ମୁହୂର୍ତ୍ତରେ ବୋମା ବିସ୍ଫୋରଣ ଘଟିପାରେ । କେଉଁ ଆଡୁ ବୋମା ଆସିବ ତାକୁ ଜାଣିବା ପାଇଁ ରାଡ଼ର ସତର୍କ ହୋଇ ରହିଛି । ହଠାତ୍ ତାଙ୍କ ହୋଟେଲ ଶୀର୍ଷରେ ପତାକାଟିଏ ଦେଖି ସେ ସଚେତନ ହୋଇଗଲେ । ଛବିଶ ଘଣ୍ଟା ପୂର୍ବରୁ ଚାକିରୀ ହରାଇଥିବା ଜଣେ ଯୁବକ ହୋଟେଲ ବାଲକୋନୀରେ ଠିଆ ହୋଇ ତାଙ୍କର ମାରଣାସ୍ତ୍ର ସଜାଡୁଥିଲେ । ତାକୁ ଦେଖି ମାଉଣ୍ଟବେଟେନକୁ ଆଶ୍ଚର୍ଯ୍ୟ ଲାଗିଲା ସେ ଭାବିଲେ ଏ କ'ଣ ସେଇ ଯୁବକ ଯିଏ କାଲି ଚାକିରୀ ହରାଇ ରାଗରେ ତାଙ୍କ ଉପରକୁ ଗୁଳି ଚଳାଇବାକୁ ପ୍ରସ୍ତୁତ ହୋଇ ଠିଆ ହୋଇଛନ୍ତି ? କାର୍‌ରେ ବସିବାଠାରୁ ଦୁହେଁ ସଂପୂର୍ଣ୍ଣ ନୀରବ ଥିଲେ । କେହି କାହାରିକୁ ପଦେବି କିଛି କହି ନଥିଲେ । ଜିନା ତାଙ୍କ ବୃଥା ଅହଂକାର ପାଇଁ ଜଣାଶୁଣା । ସବୁବେଳେ ସେ ଗମ୍ଭୀର । ସମ୍ଭବତଃ ସେ ନିଜକୁ ସମସ୍ତଙ୍କଠାରୁ ଅଧିକ ବଡ଼ ବୋଲି ମନେ କରନ୍ତି । ଅନ୍ୟମାନଙ୍କ ସହିତ ଖୋଲା ହୃଦୟରେ କଥାବାର୍ତ୍ତା କରିବାକୁ

ସେ ପସନ୍ଦ କରନ୍ତି ନାହିଁ। ଏ କଥା ପ୍ରତି ଧ୍ୟାନ ଦେବାକୁ ମାଉଣ୍ଟବେଟେନଙ୍କ ପାଖରେ ସମୟ ନଥିଲା। କାରଣ ସେ ଗମ୍ଭୀର ଚିନ୍ତିତ ଥିଲେ। ଜନ ଗହଳୀ ଭିତରେ କୋଳାହଳମୟ ପରିବେଶକୁ ଦେଖି ସେ ଭାବୁଥିଲେ, ଏମାନଙ୍କୁ ସେ ସ୍ୱାଧୀନତା ଦେଇଛନ୍ତି, କୃତଜ୍ଞତାରେ ଏମାନେ ତାଙ୍କର ଜୟଗାନ କରିବା କଥା, ତା ନ କରି ଏମାନେ ଏତେ ବିଶୃଙ୍ଖଳିତ କାହିଁକି ? ଏମାନେ କ'ଣ ଏତେ କୃତଘ୍ନ। ଚାହୁଁ ଚାହୁଁ ତାଙ୍କର କାର୍ ସେ ବାଲକୋନୀଟିକୁ ଅତିକ୍ରମ କରିଗଲା। ରେଞ୍ଜ ବାହାରକୁ ଚାଲି ଯିବାରୁ ଯୁବକ ଜଣକ କୋଠରୀ ଭିତରକୁ ପଶିଯାଇ ଆକଣ୍ଠ ମଦ ପିଇ ଦେଲେ। ତାଙ୍କର ମନେ ହେଲା ସେ ଯୁବକ ଜଣକ ଆର.ଏସ୍.ଏସ୍. ସଭ୍ୟ ଏବଂ ଜିନାଙ୍କୁ ହତ୍ୟା କରିବା ଲକ୍ଷ୍ୟ। ମାତ୍ର ସେ ତାହା କରି ପାରିବେ ନାହିଁ, କାରଣ ତାଙ୍କ ସାଙ୍ଗରେ ସେ ନିଜେ ଅଛନ୍ତି। ବୋମା ବିସ୍ଫୋରଣ କଲେ ସେବି ଆଘାତ ପାଇବେ, ଏହି କାରଣରୁ ସେ ତାଙ୍କ କାର୍ ଉପରେ ବୋମା ବିସ୍ଫୋରଣ କରିବେ ନାହିଁ। ଏତିକି ବେଳେ ହଠାତ୍ ଜିନ୍ଦାବାଦ ଜିନ୍ଦାବାଦ ଧ୍ୱନୀରେ ଗର୍ଜି ଉଠିଲା ସମସ୍ତ ପରିବେଶ ପ୍ରାୟ ପାଞ୍ଚ ମିନିଟ ଧରି। ସେତେବେଳେକୁ ଜିନା ସଂପୂର୍ଣ୍ଣ ମୃତବତ୍ ହୋଇ ପଡ଼ି ରହିଥିଲେ। ସେମାନଙ୍କ ଜିନ୍ଦାବାଦ ଧ୍ୱନୀ ବନ୍ଦ୍ ହେଲା ପରେ ଅବସ୍ଥା ଶାନ୍ତ ହୋଇଗଲା। ସେତେବେଳକୁ ତାଙ୍କ ଗାଡ଼ି ଯେଉଁ ଯାଗାରେ ପହଞ୍ଚିଥିଲା ସେ ଅଞ୍ଚଳ ଥିଲା କେବଳ ହିନ୍ଦୁ ମାନଙ୍କର ବଜାର ଅଞ୍ଚଳ। ପ୍ରତ୍ୟେକଟି ଦୋକାନ ବଜାର ଥିଲା ହିନ୍ଦୁ ମାନଙ୍କର। ହିନ୍ଦୁମାନଙ୍କ ଅଞ୍ଚଳରେ ଜିନାଙ୍କ ଉଦ୍ଦେଶରେ ଜିନ୍ଦାବାଦ କରିବା ସମ୍ଭବ ନୁହେଁ। ଜିନାଙ୍କର ସିଟ ଉପରେ ଝଡ ବର୍ଷାରେ କୋତରା ପକ୍ଷୀ ଶାବକଟିଏ ପରି ସେ ଆଉଜି ପଡ଼ିଥିଲେ। କୋଳାହଳ ଶବ୍ଦ ବନ୍ଦ ହେବାରୁ ତାଙ୍କର କୋଟରାଗତ ହାଡ଼ ମାଂଶ ଶୁଖିଲା ମୁହଁରେ ସ୍ମିତ ହସ ଦେଖାଗଲା ସେ ଉଠି ବସି କହିଲେ ଏ କେବଳ ହିନ୍ଦୁ ଅଞ୍ଚଳ। ତେଣୁ ଆକ୍ରମଣର ସମ୍ଭାବନା ନାହିଁ। କାରଣ ଡୋର ଖୋଲି ବାହାରକୁ ଦେଖିବା ଜିନାଙ୍କ ସାହାସ ନଥିଲା। ସେ କିଛି ନକହି ନୀରବରେ ପଡି ରହିଲେ। ଏହିପରି ବ୍ୟକ୍ତିତ୍ୱ ଜିନା ଯିଏ ଆଗରୁ କେବେ କରାଚି ଆସି ନଥିଲେ କି ଦେଖି

ନଥିଲେ । ସେ ହୋଇଗଲେ ପୃଥିବୀର ସବୁଠାରୁ ମୁସଲମାନ ବହୁଳ ପାକିସ୍ଥାନର ଜାତିପିତା । ଏହାହିଁ ବିଧାତାର ବିଧାନ । ବହୁଲୋକଙ୍କର ସମାବେଶରେ ଗାନ୍ଧି ଉପସ୍ଥିତି ରହିବା ପାଇଁ ସ୍ଥିର ହୋଇଥିଲା ଅଗଷ୍ଟ ୧୪ ତାରିଖ ସନ୍ଧ୍ୟା ୫ଟା ବେଳକୁ । ଗାନ୍ଧି ତରତର ହୋଇ ନିଜର କାମ ସାରି ଦୁଇଜଣ ତରୁଣୀଙ୍କ କାନ୍ଧରେ ହାତ ଭରା ଦେଇ ଆସି ହାଇଦରୀ କୋଠାର ଦ୍ୱାର ଦେଶରେ ପହଞ୍ଚିଲେ । ସବୁ ନିର୍ଦ୍ଦିଷ୍ଟ କାର୍ଯ୍ୟକ୍ରମ ପରି ଗାନ୍ଧିଜି ଠିକ୍ ସମୟରେ ଆସିଲେ ଅପେକ୍ଷାରତ ଲୋକଙ୍କୁ ଭେଟିବାକୁ । ଗାନ୍ଧିଜୀ ତାଙ୍କ ସ୍ୱାଧୀନତା ଆନ୍ଦୋଳନର ଦୀର୍ଘ ଯାତ୍ରାପଥ ସମାପ୍ତି ପ୍ରାର୍ଥନା ସଭାରେ କରିବାକୁ କହିଲେ । ଲେଲିନ୍ ଯେପରି ତାଙ୍କ ବିପ୍ଳବର ଶେଷ ସେଲ୍ ଭିତରେ ଅସଂଖ୍ୟ ଲୋକ ମାନଙ୍କ ଉପସ୍ଥିତିରେ ଘୋଷଣା କରିଥିଲେ, ଗାନ୍ଧିଜୀ ସେହିପରି ଅସଂଖ୍ୟ ଲୋକଙ୍କ ଉପସ୍ଥିତିରେ ହାଇଦରୀ ହାଉସ୍‌ରେ ତାଙ୍କ ଯାତ୍ରାର ଶେଷ ଏକ ପ୍ରାର୍ଥନା ସଭାରେ କରିବାକୁ କହିଲେ । ପ୍ରାର୍ଥନା ତାଙ୍କ ଜୀବନର ସମସ୍ତ ଚେତନାକୁ ଆବୋରି ବସିଥିଲା । କାରଣ ପ୍ରତିଟି ନିଶ୍ୱାସରେ ସେ ଜୀବନକୁ ଉତ୍ସର୍ଗ କରିଥିଲେ ଜଗତର ସେବାମୟ କାର୍ଯ୍ୟରେ । ରାଜପ୍ରାସାଦ ହେଉ ଅବା ଆବର୍ଜନାମୟ ସହରତଳି ଅଞ୍ଚଳ ବା ଅପରିଚ୍ଛିନ୍ନ, ଗାଁ ଗଣ୍ଡା ହେଉ, ଯେ କୌଣସି ସ୍ଥାନରେ ଥିଲେବି ନିୟମିତ ଭାବେ ପ୍ରାର୍ଥନା ସଭାରେ ଯୋଗ ଦେବା ତାଙ୍କର ଏକ ଅଭ୍ୟାସ । ପ୍ରତ୍ୟେକ ପ୍ରାର୍ଥନା ସଭାରେ ଶ୍ରୀମଦ୍ ଭାଗବତ୍ ଗୀତାକୁ ମୂଳ ଭିତ୍ତି କରି ଚାରିତ୍ରୀକ ଗଠନ, ଈଶ୍ୱର ଭକ୍ତି, ସମାଜର ସଂସ୍କାର, ଦେଶ ପ୍ରୀତି, ସେବା ଓ ତ୍ୟାଗ ଇତ୍ୟାଦି ବିଷୟରେ ଲୋକଙ୍କୁ ବୁଝାନ୍ତି ଓ ଉପସ୍ଥିତ ସମସ୍ୟା ମାନଙ୍କର ଉପଯୁକ୍ତ ସମାଧାନ ପାଇଁ ନିଜର କର୍ତ୍ତବ୍ୟ ସଂପର୍କରେ ଲୋକଙ୍କୁ ସଚେତନ କରାନ୍ତି । ଏଥି ସହିତ ପ୍ରାକୃତିକ ଚିକିତ୍ସା, ଲୋକଙ୍କ ସହିତ ଆଳାପ ଆଲୋଚନା, ଖବର କାଗଜ ପଢ଼ିବାର ଅଭ୍ୟାସ, ରେଡ଼ିଓ ଶୁଣିବାର ଅଭ୍ୟାସ, ପ୍ରତିଦିନ ପେଟ ସଫାରଖିବା, ଗୀତା ପାଠ, ଅହିଂସା ଆଚରଣ ଉପକାରିତା ମଧ୍ୟ ପ୍ରାର୍ଥନା ସଭା ଆଲୋଚନାର ଅନ୍ତର୍ଭୁକ୍ତ । ହିଂସା ଓ ଘୃଣାର ସହର ଭାବେ କଲିକତାର ଯେଉଁ ଦୁର୍ନାମ ଥିଲା ତାର ସଂଶୋଧନ ପାଇଁ ହାଇଦରୀ ହାଉସ୍‌ଠାରେ ଅନୁଷ୍ଠିତ

ପ୍ରାର୍ଥନା ସଭାରେ ସେ ଲୋକଙ୍କୁ ଉତ୍ସାହିତ କରୁଥିଲେ । ବେଳେବେଳେ ପ୍ରାର୍ଥନା ସଭାରେ ପ୍ରାୟ ଦଶ ହଜାର ଲୋକଙ୍କର ଯୋଗଦାନ ଦେଖି ସେ ତାଙ୍କ କାମର ସଫଳତା ଅନୁଭବ କରୁଥିଲେ । ସେଦିନ ପ୍ରାର୍ଥନା ସଭାରେ ସ୍ୱାଧୀନତା ଦିବସ ଓ ଦେଶ ବିଭାଜନକୁ ନେଇ ସେ ଭାବ ବିହ୍ୱଳ ଭାବରେ ତାଙ୍କ ଅନ୍ତରର ବେଦନା ପ୍ରକାଶ କରିଥିଲେ । ତାଙ୍କ ଆଖି ଛଳଛଳ ହେଉଥିଲା । ସେ କହିଲେ ପରଦିନ ସ୍ୱାଧିନତା ଦିବସ ଥିବାରୁ ଲୋକେ ଆନନ୍ଦିତ ହେବେ, କିନ୍ତୁ ତାଙ୍କ ପାଇଁ ସେଦିନଟି ହେବ ଦୁଃଖର ଦିନ, କାରଣ ସେ ଦିନ ଦେଶର ବିଭାଜନ ହେବ । ସେ ଦିନ ଦିଲ୍ଲୀର ରାଜେନ୍ଦ୍ର ପ୍ରସାଦ ବଗିଚାରେ ଏକ ଛୋଟ ଆଲୋକର ବର୍ତ୍ତିକା ଜଳୁଥିଲା । ରାଜେନ୍ଦ୍ର ପ୍ରସାଦ ଥିଲେ ଭାରତର ସଂବିଧାନ ପ୍ରଣୟନ କମିଟିର ସଭାପତି । ଏହି ଆଲୋକର ବର୍ତ୍ତିକାଟିକୁ ବୈଦିକ ମନ୍ତ୍ରରେ ଅଭିମନ୍ତ୍ରୀତ କରି ପବିତ୍ର କରାଯାଇଥିଲା । କାରଣ ସେ ଦିନ ଶହଶହ ବର୍ଷର ପରାଧୀନତାରୁ ମୁକ୍ତି ଲାଭ କରି ଭାରତ ସ୍ୱାଧୀନ ହେଲା ବୋଲି ଘୋଷଣା ହେବାର ଥିଲା । ସାରାଦେଶ ଉତ୍ସବ ମୁଖର, ଶିକ୍ଷାନୁଷ୍ଠାନ, ଚିକିତ୍ସାଳୟ, ଜେଲ ପରିସର ସବୁଆଡେ ଉତ୍ସାନୁଷ୍ଠାନରେ ଆନନ୍ଦ ଉଲ୍ଲାସ ଦେଖିବାକୁ ମିଳିଥିଲା । କୋର୍ଟ କଚେରୀ ମଧ ବନ୍ଦ ରହିଥିଲା । ଶହ ଶହ ରାଜବନ୍ଦୀଙ୍କୁ କାରାଗାରରୁ ମୁକ୍ତ କରାଯାଇଥିଲା । ଦିଲ୍ଲୀ ସମେତ ପ୍ରତ୍ୟେକ ରାଜ୍ୟର ରାଜଧାନୀରେ ରାଜନୈତିକ ନେତୃବୃନ୍ଦ, ଛାତ୍ର, ସମାଜ ପତ୍ରକାର ଓ ଦେଶପ୍ରେମୀ ମାନଙ୍କର ଭିଡ଼ ଲାଗିରହିଥିଲା । ସମସ୍ତେ ଆଗ୍ରହରେ ଅପେକ୍ଷା କରିଥିଲେ ସ୍ୱାଧୀନତା ଘୋଷଣା ଶୁଣିବାକୁ । ଆନନ୍ଦ ଉଲ୍ଲାସ ମଧରେ ସାରାଦେଶ ମାତି ରହିଥିବା ବେଳେ କଲିକତାର ପରିତ୍ୟକ୍ତ ଜରାଜୀର୍ଣ୍ଣ ହାଇଦରୀ ହାଉସ୍‌ର ଭଗ୍ନ ହୃଦୟ ଗାନ୍ଧି ଲୁଚି ଲୁଚି ଅଶ୍ରୁବର୍ଷଣ କରୁଥିଲେ । ଦେଶ ବିଭାଜନର ଦାରୁଣବାର୍ତ୍ତାର ଛୁରୀକାଘାତରେ ତାଙ୍କ ହୃଦୟ ବିଦିର୍ଣ୍ଣ ହୋଇଯାଉଥିଲା । କାରଣ ଲଣ୍ଡନର ବଙ୍କିମ୍ ହାଉସ୍ ପ୍ୟାଲେସ୍‌ଠାରୁ ଆରମ୍ଭ କରି ଦେଶର ଅସଂଖ୍ୟ ଜନସଭାରେ ଦେଶର ବିଭାଜନ କରିବାକୁ ତାଙ୍କର ସମସ୍ତ ଆକୁଳ ନିବେଦନ ବ୍ୟର୍ଥ ହୋଇଯାଇଥିଲା । ଗାନ୍ଧିଙ୍କର ଜୀବନ ବ୍ୟାପୀ ସାଧନା

କିଛି ମାତ୍ରାରେ ସଫଳ ହୋଇ ଭାରତକୁ ସ୍ୱାଧୀନତା ମିଳିଥିଲା ସତ, ପୃଥିବୀର ସର୍ବ ବୃହତ ସାର୍ବଭୌମ ଶକ୍ତିଶାଳୀ ସାମ୍ରାଜ୍ୟବାଦର ପତନ ଘଟିଥିଲା । ପୃଥିବୀ ବ୍ୟାପି ରାଜତନ୍ତ୍ର ଶାସନ ବିରୁଦ୍ଧରେ ଯୁଦ୍ଧଂଦେହୀ ବାର୍ତ୍ତାର ବିସ୍ଫୋରଣ ଘଟିଥିଲା ସତ, କିନ୍ତୁ ଦେଶ ବିଭାଜନର ବାର୍ତ୍ତା ତାଙ୍କୁ ମର୍ମାହତ କରିଥିଲା ଏବଂ ତାଙ୍କ ହୃଦୟର ଅଭ୍ୟନ୍ତରରେ କରୁଣ ବିଳାପ କରୁଥିଲା । ତାଙ୍କ ଆତ୍ମାର ଅଖଣ୍ଡ ଭାରତର ଚାଳିଶ କୋଟି ନରନାରୀ ସେଦିନ ମଧ୍ୟ ରାତ୍ରିରେ ସ୍ୱାଧୀନତାକୁ ସ୍ୱାଗତ କରୁଥିଲାବେଳେ ପାଖରେ କେହି ଜଣେ ସହୃଦୟ ବ୍ୟକ୍ତି ନଥିଲେ ଆଶ୍ୱାସନା ଦେବାପାଇଁ । ସମସ୍ତେ ତାଙ୍କୁ ଏକୁଟିଆ କରି ଛାଡ଼ି ଯାଇଥିଲେ କ୍ଷମତା ଦଖଲ କରିବାକୁ ।

ଶତସ୍ତରୀ ବୟସର ବୃଦ୍ଧ ତପସ୍ୱୀଙ୍କର ସେ କି ଦାରୁଣ ଯନ୍ତ୍ରଣା । ଅଗ୍ନିଦେବୀ ପାଖରେ ବସି ବୈଦିକ ବ୍ରାହ୍ମଣ ମନ୍ତ୍ର ଉଚ୍ଚାରଣ କରୁଥିଲେ । 'ହେ ଅଗ୍ନିଦେବ ! ତୁମେ ସମସ୍ତ ଦେବାଦେବୀଙ୍କର ପୂଜ୍ୟ, ତୁମେ ସମସ୍ତ ଜ୍ଞାନୀମାନଙ୍କ ହୃଦୟରେ ଅଭ୍ୟନ୍ତରକୁ ପ୍ରବେଶ କରି ପରମ ସତ୍ୟକୁ ଉଦ୍‌ଘାଟନ କର" । ହେ ଅଗ୍ନି ଦେବ ! ତୁମଠାରୁ ତେଜ ନେଇ ପ୍ରତ୍ୟେକ ମଣିଷର ଜନ୍ମ ହୁଏ । ଶେଷରେ ତୁମରି ଠାରେ ପାଉଁଶ ହୋଇଯାଏ । ଏହି ମନ୍ତ୍ର ବାରମ୍ବାର ଉଚ୍ଚାରିତ ହେଉଥିଲା ବେଳେ ଯେଉଁମାନେ ପ୍ରଥମେ ମନ୍ତ୍ରୀପଦ ଅଳଂକୃତ କରିବାକୁ ଥିଲା, ସେମାନେ ଯୋଡ଼ ହସ୍ତରେ ଅଗ୍ନିକୁ ପ୍ରଣାମ କରୁଥିଲେ ଓ ବ୍ରାହ୍ମଣ ସେମାନଙ୍କ ଉପରେ ପବିତ୍ର ଜଳ ସିଞ୍ଚନ କରୁଥିଲେ । ତାପରେ ପହଞ୍ଚିଲେ ତମ୍ବା ପାତ୍ର ଧରି ଠିଆ ହେଇଥିବା ଜଣେ ମହୀୟସୀ ମହିଳାଙ୍କ ପାଖରେ । ମହିଳା ଜଣକ ସେ ପାତ୍ରରୁ ସିନ୍ଦୁର ଆଣି ସେମାନଙ୍କ କପାଳରେ ଟିକା ଲଗାଇଲେ । ହିନ୍ଦୁ ଜଗତର ବିଶ୍ୱାସ ଯେ, ଏହି ଟିକା ସେମାନଙ୍କୁ ମନ୍ଦ ଗ୍ରହର କ୍ରୁର ଦୃଷ୍ଟିରୁ ରକ୍ଷା କରେ । ଏହା ପରେ ସେମାନେ Constitutional Assembly ଯାଇ ଆଇନ ସମ୍ମତ କାର୍ଯ୍ୟ କରିବାକୁ ଶପଥ ନେଲେ । ଠିକ୍ ଏତିକି ବେଳେ ଭାଇସ ରାଏ ତାଙ୍କ ଅଫିସରେ ବସି ଭାବୁଥିଲେ ଆଉ କେଇଟା ମୂହୁର୍ତ୍ତ ପରେ ତାଙ୍କ ସମସ୍ତ କ୍ଷମତା ଚାଲିଯିବ, ସେ କ୍ଷମତାଶୂନ୍ୟ ହୋଇଯିବେ । ମାତ୍ର ପୃଥିବୀର ସର୍ବଶକ୍ତିମାନ ବ୍ରିଟିଶ୍

ସମ୍ରାଟଙ୍କର ପ୍ରତିନିଧି । କ୍ଷମତା ଏହିପରି କ୍ଷଣସ୍ଥାୟୀ, ତେଣୁ କ୍ଷମତା ବଳରେ ଗର୍ବ, ଦମ୍ଭ ଓ ଅଭିମାନ ସବୁ ବୃଥା । ଏହି ଜ୍ଞାନ ସମସ୍ତଙ୍କ ଠାରେ ରହିବା ଦରକାର । ବ୍ରିଟିଶ୍ ସାମ୍ରାଜ୍ୟ ପତନର ଠିକ୍ ଅବ୍ୟବହିତ ପୂର୍ବରୁ Constitutional ଆସେମ୍ବ୍ଲି ଗୃହ ମାନ୍ୟଗଣ ଲୋକଙ୍କ ଭିଡ଼ରେ ଉଛୁଳି ଉଠୁଥିଲା । ବାହାରେ ଲକ୍ଷ ଲକ୍ଷ କଂଗ୍ରେସ କର୍ମୀଙ୍କ ସମାବେଶ । ଆସେମ୍ବ୍ଲି କକ୍ଷର କାନ୍ଥରେ ଅସଂଖ୍ୟ ଗୋଲାପର ସମାରୋହ । ମାଇକ ଷ୍ଟାଣ୍ଡ ପାଖରେ ଠିଆ ହୋଇଥିଲେ କେଇଟା ମୁହୂର୍ତ୍ତ ପରେ ଭାରତର ପ୍ରଧାନମନ୍ତ୍ରୀ ହେବାକୁ ଥିବା ଜବାହରଲାଲ ନେହେରୁ । ସୁନ୍ଦର ଶୁକ୍ଳ ବସ୍ତ୍ର ପରିହିତ ନେହେରୁଙ୍କ ଛାତି ପକେଟରେ ଶୋଭା ପାଉଥିଲା ସଦ୍ୟ ଉଜ୍ଜ୍ୱଳ ଗୋଲାପଟିଏ । ଜବାହର ଲାଲ୍ କହିଲେ, "ସ୍ୱାଧୀନତା ପାଇଁ ଗାନ୍ଧିଜୀଙ୍କ ନେତୃତ୍ୱରେ ଦୀର୍ଘ ଦିନର ଆନ୍ଦୋଳନ ଶେଷ ହୋଇଛି ।" ଏଥିପାଇଁ ଭାରତର ଲକ୍ଷ ଲକ୍ଷ ଲୋକେ ଅକଥନୀୟ ଅତ୍ୟାଚାର ସହିଛନ୍ତି, ହଜାର ହଜାର ଲୋକ କାରାବରଣ କରିଛନ୍ତି ଓ ଗାନ୍ଧିଙ୍କ ଉତ୍ସର୍ଗିକୃତ ସାଧନା ଆଜି ସଫଳ ହୋଇଛି ଓ ଆମେ ଏକ ସ୍ୱାଧୀନ ଗଣତାନ୍ତ୍ରିକ ରାଷ୍ଟ୍ରରେ ପରିଣତ ହୋଇଛେ । ଏଣିକି ଭାରତର ଶାସନ ଆମ ନିଜ ହାତରେ । ଆମର ଶାସନ ସର୍ବୋତ୍ତ ଭାବେ ଉଦ୍ଦିଷ୍ଟ ହେବ ଲୋକଙ୍କର ସେବାରେ । ପ୍ରଗତିର ଅନେକ ପଥ ଆମକୁ ଅତିକ୍ରମ କରିବାକୁ ହେବ । ଆଜି ଆମେ ସମସ୍ତେ ଶପଥ ନେବା ନିଜ ନିଜର ସାମର୍ଥ୍ୟ ଅନୁସାରେ ଦେଶର ସେବା କରିବାକୁ । ସମସ୍ତଙ୍କ ସହଯୋଗ ବିନା ଏ ଗୁରୁ ଦାୟିତ୍ୱ ତୁଲାଇବା ଅତ୍ୟନ୍ତ କଷ୍ଟକର । ଏ ଦେଶରେ ଅଛନ୍ତି ୨୭୫ମିଲିୟନ ହିନ୍ଦୁ ଯେଉଁ ମାନଙ୍କ ଭିତରେ ଅଛନ୍ତି ୭୦ ମିଲିୟନ ଅସ୍ପୃଶ୍ୟ, ୬ ମିଲିୟନ ଶୀଖ୍, ୧୦୦୦୦୦ ପାର୍ଶି ଏବଂ ୨୪୦୦୦ ଜିୟୁ । ଭିନ୍ନ ଭିନ୍ନ ସମ୍ପ୍ରଦାୟର ଏତେ ଲୋକଙ୍କ ଭିତରେ "ଅନେକ ମଧ୍ୟରେ ଏକ ବା ସମସ୍ତଙ୍କର ଭିନ୍ନଭିନ୍ନ ରୁଚି, ଭିନ୍ନଭିନ୍ନ ଧର୍ମ, ବର୍ଣ୍ଣକୁ ନେଇ ସନ୍ତୁଷ୍ଟ କଲା ଭଳି ଶାସନ ପ୍ରତିଷ୍ଠା କରିବା କେତେ କଷ୍ଟକର ଆମେ ଅନୁମାନ କରିବା ଦରକାର । ଏ ହଲରେ ଅନେକ ଲୋକ ଅଛନ୍ତି, ଯେଉଁମାନେ ପରସ୍ପର ସହିତ ନିଜ ମାତୃଭାଷାରେ କଥାବାର୍ତ୍ତା କରୁଛନ୍ତି, ଅନେକ

ଇଂରାଜୀରେ। ଏମାନଙ୍କର ଅଫିସିଆଲ ଭାଷାର ସଂଖ୍ୟା ହେବ ୧୫ ଏବଂ କଥିତ ଭାଷା ୮୪୫ ପ୍ରକାର। ପଞ୍ଜାବୀମାନେ ଭାଷାକୁ ଡାହାଣରୁ ବାମକୁ ପଢ଼ିବାକୁ ହୁଏ। ଦକ୍ଷିଣ ଭାରତର ଲୋକେ ମୁଣ୍ଡ ହଲାଇଲେ ହଁ ବୋଲି ବୁଝିବାକୁ ଓ ଉତ୍ତର ଭାରତ ଲୋକେ ମୁଣ୍ଡ ହଲାଇଲେ ନାଁ ବୋଲି ବୁଝିବାକୁ ହୁଏ, ଏଠାରେ କୁଷ୍ଠ ରୋଗୀଙ୍କ ସଂଖ୍ୟା ସୁଇଜର ଲୋକସଂଖ୍ୟା ସଙ୍ଗେ ସମାନ। ଭିକାରୀଙ୍କ ସଂଖ୍ୟା ହଲାଣ୍ଡ ସହିତ ସମାନ। ୧୧ମିଲିୟନ ବ୍ରାହ୍ମଣ, ୨୦ମିଲିୟନ ଆଦିମ ଅଧିବାସୀ, ନାଗାଲାଣ୍ଡର ଲୋକେ ମଣିଷର ଖପୁରୀକୁ ଶରମାରି ହତ୍ୟା କରନ୍ତି। ୧୦ମିଲିୟନ ଭାରତୀୟ ଯାଯାବର। ପ୍ରତିଦିନ ଭାରତରେ ମିନିଟ୍ ପିଛା ୩୮୩୩୮ ଜଣ ପିଲା ଜନ୍ମ ହୁଅନ୍ତି ଓ ସେମାନଙ୍କ ଭିତରୁ ଚିକିତ୍ସା ଅଭାବରୁ ଏକ ଚତୁର୍ଥାଂଶ ୫ ବର୍ଷ ପୂର୍ବରୁ ମରି ଯାଆନ୍ତି। ଆଉ ୧୦ ମିଲିୟନ ଲୋକ ପ୍ରତିବର୍ଷ ମରିଯାଆନ୍ତି ପୃଷ୍ଟିକର ଖାଦ୍ୟ ଓ ଚିକିତ୍ସା ଅଭାବରୁ।

ଆମର ଏ ବିଶାଳ ଦେଶରେ ଆଧାତ୍ମିକତାର ପ୍ରସାର ଖୁବ୍ ବେଶୀ। ପୃଥିବୀର ଏକ ମହାନ ଧର୍ମର ଉତ୍ପତିସ୍ଥଳ ଆମ ଦେଶ। ହିନ୍ଦୁ ଧର୍ମର ମାତୃଭୂମି ଏଇ ଭାରତ ଯାହା ଇସଲାମ୍ ଧର୍ମ ଦ୍ୱାରା ବହୁଳ ପ୍ରଭାବିତ। ଏଠାରେ ଅସଂଖ୍ୟ ଦେବା ଦେବୀଙ୍କର ପୂଜାର୍ଚ୍ଚନା ହୁଏ। ଭଗବାନ କିଏ ସେ ସଂପର୍କ ଦର୍ଶନ ବଡ଼ ବିଚିତ୍ର, ତାଙ୍କର ଅସଂଖ୍ୟ ରୂପ, ଅସଂଖ୍ୟ ନାମ ଏବଂ ବହୁ ବିସ୍ମୟରେ ପରିପୂର୍ଣ୍ଣ ସେ ଦର୍ଶନ। ସେ କରୁଣାର ଭଣ୍ଡାର, ଅନନ୍ତ କୋଟି ବ୍ରହ୍ମାଣ୍ଡର ସେ ଈଶ୍ୱର, ସେ ଅନନ୍ତ, ପୁଣି ଚତୁର୍ଦ୍ଧାମୂର୍ତ୍ତି, ପୁଣି ସେ ନିରାକାର। ଅବର୍ଣ୍ଣନୀୟ ତାଙ୍କ ମହିମା, ତାଙ୍କରି ଇଚ୍ଛାରେ ମୂକ ବାଚାଳ ହୋଇପାରେ, ପଙ୍ଗୁ ଗିରି ଲଙ୍ଘି ପାରେ। ଏପରି ତାଙ୍କର ଧର୍ମ ଦର୍ଶନକୁ ନେଇ ଅସଂଖ୍ୟ ସଂପ୍ରଦାୟ। ନିରାକାର, ଏକେଶ୍ୱରବାଦ, ଦ୍ୱୈତବାଦ; ସବୁ କିଛି ହିନ୍ଦୁ ଦର୍ଶନର ଅର୍ନ୍ତଭୁକ୍ତ। ଅସଂଖ୍ୟ ଦେବତାଙ୍କ ପାଇଁ ଅସଂଖ୍ୟ ମନ୍ଦିର ଦେବତାଙ୍କ ସଂଖ୍ୟା ଏଠାରେ ତେତିଶ କୋଟି, ସେମାନଙ୍କ ଭିତରେ ଅଛନ୍ତି ନୃତ୍ୟ, ଗୀତ ଓ ମୃତ୍ୟୁର ଦେବତା। ସବୁ ଦେବତାଙ୍କୁ ନେଇ ଅସଂଖ୍ୟ ବିସ୍ମୟକର ପୁରାଣ

ରଚିତ। ବେଶଭୂଷାରେ ବିଚିତ୍ର ସେମାନେ। ଶତକଡ଼ା ୮୩ ଭାଗ ନୀରକ୍ଷର। ଲୋକଙ୍କର ଦୈନିକ ଉପାର୍ଜନ ମାତ୍ର ୨୦ପଇସା, ଏକ ଚତୁର୍ଥାଂଶ ଲୋକଙ୍କର ବାସସ୍ଥାନ ନାହିଁ। ସେମାନେ ଭାରତର ଦୁଇଟି ବୃହତ୍ ସହର ରାସ୍ତାରେ ବାସ କରନ୍ତି, ପିଲା ଜନ୍ମ କରନ୍ତି, ରୋଗାକ୍ରାନ୍ତ ବିକଳାଙ୍ଗ ହୋଇ ଖାଦ୍ୟାଭାବରେ ପଡ଼ି ମରନ୍ତି। ଭାରତର ବାର୍ଷିକ ହାରାହାରୀ ବୃଷ୍ଟିପାତ ୧୧୪ ସେଣ୍ଟିମିଟର, ମାତ୍ର ଅନିୟମିତତା ହେତୁ ମୌସୁମୀ ବର୍ଷାର ଏକ ତୃତୀୟାଂଶ ଜଳ ବ୍ୟବହାର ନ ହୋଇ ସମୁଦ୍ରକୁ ବହିଯାଏ। ଶିକ୍ଷାୟନ ଦୃଷ୍ଟିରୁ ଦେଖିଲେ ଟାଟା, ଡାଲମିଆ ଓ ବିରଳା ଭଳି ତିନିଗୋଟି ବୃହତ ଶିକ୍ଷାୟତନ ଭାରତରେ ମୁଷ୍ଟିମେୟ କୋଟିପତି ଓ ବଡ଼ ବଡ଼ ସାମନ୍ତମାନେ ପାଇଛନ୍ତି। ବିଦ୍ୟୁତ ଶକ୍ତି ଉତ୍ପାଦନ ଭାରତରେ ନାମକୁ ମାତ୍ର। ଏ ସବୁ ଦିଗରେ ପୂର୍ବତନ ରାଜା ମହାରାଜା ମାନେ ଧ୍ୟାନ ଦେଇ ନାହାଁନ୍ତି। ବର୍ତ୍ତମାନ କିନ୍ତୁ ଯୁଗ ବଦଳିଛି। ପୁରୁଣାକୁ ଛାଡ଼ି ନୂଆକୁ ଗ୍ରହଣ କଲା ବେଳେ ସଂଘର୍ଷ ଘଟେ। ପ୍ରତ୍ୟେକ ଯୁଗ ଶେଷରେ ଏପରି ହୁଏ ବୋଲି ଇତିହାସ କହେ। ଆମ ପାଇଁ ବର୍ତ୍ତମାନ ନୂଆ ଯୁଗ ଆସିଛି। ତେଣୁ ସତର୍କତାର ସହ ଆମକୁ କାମ କରିବାକୁ ହେବ। ବହୁକାଳ ଧରି ଚାପିହୋଇ ରହିଥିବା ଲୋକେ ବର୍ତ୍ତମାନ ପାଟି ଖୋଲିଛନ୍ତି। ସେମାନେ ଅନେକ କିଛି ଆଶା କରିବା ସ୍ୱାଭାବିକ। ଧୈର୍ଯ୍ୟର ସହ ଆମେ ସେମାନଙ୍କ କଥା ଶୁଣି ଯୋଜନା ବଦ୍ଧ ଭାବେ ଆମକୁ ସେ ସବୁ ପୁରଣ କରିବାକୁ ହେବ। ଭାରତର ସଂପଦ ପ୍ରଚୁର। ସେ ସବୁର ଉପଯୁକ୍ତ ବିନିଯୋଗ ହୋଇନାହିଁ। ମାତ୍ର ଆମେ ବର୍ତ୍ତମାନ ସେ ସବୁର ଉପଯୁକ୍ତ ବିନିଯୋଗ କରିବା। ଭାରତ ପାଇଁ ମନ୍ଦ ବେଳା ଶେଷ ହୋଇଛି। ଏବେ ଭଲ ସମୟ ଆସିଛି। ବର୍ତ୍ତମାନ ଛୋଟ ଛୋଟ କଥାରେ ସମୟ ନଷ୍ଟ ନକରି ବୃହତ୍ତର ସମସ୍ୟାଟିକୁ ସମାଧାନ କରିବାକୁ ଆମେ ଯତ୍ନଶୀଳ ହେବା। ଚାହୁଁ ଚାହୁଁ ଘଣ୍ଟାରେ ରାତି ବାରଟା ହେଲା। ହଲରେ ସମସ୍ତେ ପ୍ରାର୍ଥନାରେ ବସିଲା ଭଳି ନୀରବ ହୋଇଗଲେ। ଭାରତ ସ୍ୱାଧୀନତା ହେଲା ଏବଂ ଏକ ନୂଆ ଯୁଗର ଆରମ୍ଭ ହେଲା। Constitutional ଆସେମ୍ବ୍ଲି ହଲରେ ଶୁଭଶଙ୍ଖ ବାଜି

ଉଠିଲା । ସମସ୍ତେ ଆନନ୍ଦରେ ନାଚି ଉଠିଲେ । ନେହେରୁ ପ୍ରାଣ ଖୋଲା ହସଟିଏ ହସିଲେ । ବାହାରେ ଅସଂଖ୍ୟ ଲୋକେ ଆନନ୍ଦରେ କୋଳାହଳ କରୁଥିଲେ । ନେହେରୁ ହଲ୍‌ରୁ ବାହାରିଲେ । ତାଙ୍କ ପଛେ ପଛେ ମନ୍ତ୍ରୀମାନେ । ଖୁସିରେ ଲୋକେ ସେମାନଙ୍କୁ ଘେରିଗଲେ । ସାଙ୍ଗେ ସାଙ୍ଗେ ସାରା ଭାରତରେ ଖୁସିର ଲହରୀ ଖେଳିଗଲା । ଦିଲ୍ଲୀ, ବମ୍ବେ, କଲିକତାଠାରୁ ଆରମ୍ଭ କରି ସମସ୍ତ ସହର ଓ ଗ୍ରାମାଞ୍ଚଳରେ ଆଲୋକ ସଜ୍ଜା, ବାଣ ରୋଷଣି ଓ ଭୋଜି ଭାତରେ ସମସ୍ତେ ମାତି ଉଠିଲେ । ଅପୂର୍ବ ସେ ଦୃଶ୍ୟ । ଚାରିଶହ ପଚିଶ ବର୍ଷ ପୂର୍ବେ କଲମ୍ବସ ଯେତେବେଳେ ଭାରତ ଆବିଷ୍କାର କରିବାକୁ ସୀମାହୀନ ନୀଳ ସମୁଦ୍ର ଯାତ୍ରା କରି ଆମେରିକା ଆବିଷ୍କାର କଲେ ୧୪୯୨ ଖ୍ରୀଷ୍ଟାବ୍ଦରେ, ସେତେବେଳେ ଗୋରା ଇଂରେଜ ମାନେ ଆନନ୍ଦରେ ନାଚି ଉଠିଥିଲେ । ପୃଥିବୀର ଏ ମୁଣ୍ଡରୁ ସେ ମୁଣ୍ଡ ପର୍ଯ୍ୟନ୍ତ ଜଳଯାତ୍ରା କରିବା ଥିଲା ଏକ ଯୁଗାନ୍ତକାରୀ ଐତିହାସିକ ଘଟଣା । ଏହାପରେ ପୃଥିବୀର ବହୁଦେଶ ସହିତ ବ୍ରିଟେନର ଅର୍ଥନୈତିକ ଓ ଧର୍ମଗତ ସଂପର୍କ ଜୋଡ଼ି ହୋଇଗଲା । ଅଧିକାଂଶ ଦେଶ କ୍ରମେ କ୍ରମେ ବ୍ରିଟିଶ୍ ଶାସନାଧୀନ ହେଲା ଏହି ପରି ସାମ୍ରାଜ୍ୟ ବିସ୍ତାର କରି ଦରିଦ୍ର ବ୍ରିଟେନ ହୋଇଗଲା କ୍ଷମତାଶାଳୀ ଧନୀ ଏବଂ ପୃଥିବୀର ଅତ୍ୟନ୍ତ ଶକ୍ତିଶାଳୀ ଉପନିବେଶ ବାଦର ସମ୍ରାଟ । ଏହା ନେ କେବଳ ଶୋଷଣ କରିଛି ତା ନୁହେଁ, ଉପନିବେଶବାଦ କରିଛି ବହୁ ଦେଶଙ୍କୁ ଶିକ୍ଷିତ, ଧନୀ, ଚେତନାଶୀଳ ଓ ସଂସ୍କୃତି ପରାୟଣ । ଶଗଡ଼ ଚକ ପରି ସମାଜ ତଳ ଉପର ହୋଇ ଘୋର ପରିବର୍ତ୍ତନ ଭିତର ଦେଇ ଗତି କରୁଛି । ପୁରୁଣାକୁ ଠେଲି ନୂଆ ପ୍ରବେଶ କଲାବେଳେ ଯେଉଁ ସଂଘର୍ଷ ହୁଏ ତାହା ଏକ ସାମାଜିକ ବିପ୍ଳବ । ଏହି ବିପ୍ଳବ ଆଣେ ରୁଚି ଓ ବିଚାରରେ ଘୋର ପରିବର୍ତ୍ତନ । ସମାଜର ସ୍ଥିତି ଦୋହଲି ଯାଏ । ଶିକ୍ଷା, ସ୍ୱାସ୍ଥ୍ୟ, ଅର୍ଥନୀତି ଓ ପରଂପରାରେ ଯେଉଁ ଘୋର ପରିବର୍ତ୍ତନ ଆସେ ତାହା ସମାଜର ଦୃଷ୍ଟି କୋଣକୁ ବଦଳାଇ ଦିଏ । ଏ ସବୁ ସମ୍ଭବ ହେଲା ନୂଆ ନୂଆ ଆବିଷ୍କାର ଓ ଉପନିବେଶ ବାଦର ପ୍ରସାର ଦ୍ୱାରା ।

ନୂଆଦିଲ୍ଲୀରେ ଶୁଭଶଙ୍ଖ ବାଜିଲା ପରେ ସାରା ଦେଶରେ ସ୍ୱାଧୀନତା ଦିବସ

ପାଳନ ଉପଲକ୍ଷେ ସବୁ ଅଫିସରୁ ବ୍ରିଟିଶ୍ ରାଜର ସଂକେତ ଗୁଡ଼ିକୁ ହଟାଇ ଦିଆ ଗଲା ଏବଂ ଭାଇସ ରାଏଙ୍କ ବିଶାଳ ଅଫିସ୍ ଗୃହକୁ ସ୍ୱାଧୀନ ଭାରତର ସଭାପତିଙ୍କ ଅଫିସ୍ ବୋଲି ଘୋଷଣା କରାଗଲା। ଦେଶ ବ୍ୟାପୀ ଉତ୍ସବାନୁଷ୍ଠାନ ଗୁଡ଼ିକ ମଧ୍ୟରୁ Constitutional ଆସେମ୍ବ୍ଲିର ସଭାପତି ରାଜେନ୍ଦ୍ର ପ୍ରସାଦ ଡାକିଥିବା ବନ୍ଧୁ ମିଳନ ଥିଲା ଅନ୍ୟତମ। ଗଣତାନ୍ତ୍ରିକ ବ୍ୟବସ୍ଥା ଅନୁସାରେ ମାଉଣ୍ଟ ବେଟେନ ଯୋଗ ଦେଇଥିଲେ ଅନ୍ୟତମ ନିମନ୍ତ୍ରିତ ଅତିଥି ଭାବରେ। ଏହି ସଭାରେ ଯୋଗ ଦେବା ପାଇଁ ରାଜେନ୍ଦ୍ର ପ୍ରସାଦ ନିମନ୍ତ୍ରଣ କରିଥିବା ଭାରତର ନେତା ମାନେ ପହଞ୍ଚିଲେ। ଏହି ସଭାରେ ରାଜେନ୍ଦ୍ର ପ୍ରସାଦ ପୂର୍ବତନ ଭାଇସ ରାଏ ମାଉଣ୍ଟବେଟନଙ୍କୁ ଭାରତର ପ୍ରଥମ ଗଭର୍ଣ୍ଣର ଜେନେରାଲ ଭାବେ ନିଯୁକ୍ତି ଦେଲେ। ଠିକ୍ ଏତିକି ବେଳେ ଇଂଲଣ୍ଡର ସମ୍ରାଟ୍ ୬ଷ୍ଠ ଜର୍ଜ ତାଙ୍କୁ ଭାରତର ମହତ୍ୱର କାର୍ଯ୍ୟ ସଂପାଦନ ପାଇଁ ଭିସ୍କାଉଣ୍ଟ ପଦରୁ ଇରାଲ ପଦକୁ ଉନ୍ନିତ୍ତ କରିଥିବା ଆଦେଶ ପାଇଲେ। ରାଜେନ୍ଦ୍ର ପ୍ରସାଦଙ୍କ ନିମନ୍ତ୍ରଣକୁ ସେ ନିଜକୁ ଜଣେ ଭାରତୀୟ ଭାବି ଗ୍ରହଣ କଲେ ଏବଂ ଭାରତର ସେବା କରିବା ପାଇଁ ଶପଥ ପତ୍ରରେ ସ୍ୱାକ୍ଷର କଲେ। ସଭାରୁ ଫେରିବା ପୂର୍ବରୁ ନେହେରୁ ତାଙ୍କ ହାତକୁ ଏକ ଲଫାପା ବଢ଼ାଇ ଦେଲେ। ମାଉଣ୍ଟବେଟେନ ଶଯ୍ୟା ଗ୍ରହଣ କରିବା ପୂର୍ବରୁ ସେ ଲଫାପାଟିକୁ ଖୋଲି ଦେଖିଲେ ଓ ଭାରତ ସରକାରଙ୍କ ପ୍ରଥମ ମନ୍ତ୍ରୀମଣ୍ଡଳର ସଦସ୍ୟମାନଙ୍କ ନାମ ଲେଖିବା ପାଇଁ ଅନୁରୋଧ ଥିଲା। ନେହେରୁଙ୍କର ତାଙ୍କ ପ୍ରତି ଏତେ ବିଶ୍ୱାସ ଥିବା ଦେଖି ସେ ଖୁସିରେ ଉଛୁଳି ଉଠିଲେ। ରାତି ବାରଟା ପରେ ଅଗଷ୍ଟ ପନ୍ଦର ତାରିଖ ହେଲା। ସ୍ୱାଧୀନତା ଲାଭ ପରେ ସାରାଦେଶ ଯେତେବେଳେ ଉତ୍ସବ ମୁଖର ଠିକ୍ ସେତିକିବେଳେ ଘଟିଲା ନୃଶଂସ ସାଂପ୍ରଦାୟିକ ହତ୍ୟାକାଣ୍ଡ। ଯେଉଁ ସହର ମାନଙ୍କରେ ଥିଲେ ବେଶି ମୁସଲମାନ। ସେଠାରେ ହତ୍ୟାକାଣ୍ଡର ଦୃଶ୍ୟ ଥିଲା ଅତ୍ୟନ୍ତ ବିଭତ୍ସ।

ପଞ୍ଜାବ ଭାରତର ସଶ୍ୟାଗାର ଭାବେ ପରିଚିତ। ଇଂରେଜ ମାନଙ୍କର ପଞ୍ଜାବକୁ ବିଶେଷ ଅବଦାନ ହେଲା ସୁଦୃଢ କେନାଲ ଓ ରେଳ ଷ୍ଟେସନ। ପ୍ରଚୁର

ବଳକା ଖାଦ୍ୟଶସ୍ୟ ଏହି ରେଳପଥ ଯୋଗେ ଦେଶର ବିଭିନ୍ନ ଅଞ୍ଚଳକୁ ପଠାଯାଏ । ପଞ୍ଜାବ ଏହି କାରଣରୁ ଅନ୍ୟ ପ୍ରଦେଶ ତୁଳନାରେ ଅଧିକ ଧନୀ ଓ କର୍ମଠ । ପ୍ରଦେଶର ଉଚ୍ଚଅଧିକାରୀ ମାନେ ଜନଗହଳୀ ଭିତରେ ମୋଗଲ ଦୁର୍ଗଠାରେ ବିଧି ବିଧାନ ପୂର୍ବକ ଯେତେବେଳେ ସ୍ୱାଧୀନତା ଦିବସ ପାଳନ କରୁଥିଲେ ଠିକ୍ ସେତିକି ବେଳେ ଶୀଖ୍‌ମାନେ ମୁସଲମାନ ମାନଙ୍କୁ ଆକ୍ରମଣ କରି ହତ୍ୟା କଲେ । ମହିଳା ମାନଙ୍କୁ ବାରମ୍ବାର ଧର୍ଷଣ କଲେ । ଅମୃତସର, ସ୍ୱର୍ଣ୍ଣମନ୍ଦିର ଠାରେ ଅସଂଖ୍ୟ ମୁସଲମାନ ମାନଙ୍କୁ ଗଳା କାଟି ହତ୍ୟା କଲେ । ଶୀଖ୍ ସହର ପାତିଆଲାରେ ମୁସଲିମମାନେ ଭୟରେ ପାକିସ୍ଥାନକୁ ପଳାଇବାରେ ଲାଗିଲେ । ପଞ୍ଜାବ ମହାରାଜାଙ୍କ ଭାଇ କଳିନ୍ଦ୍ର ସିଂହ ଦଳେ ଉଗ୍ରଶୀଖ୍ ମାନଙ୍କ ସାହାଯ୍ୟରେ ବିଭତ୍ସ ହତ୍ୟାକାଣ୍ଡ କରିବାରୁ ମୁସଲମାନମାନେ ତ୍ରସ୍ତ କାତର ହୋଇ କ୍ଷତବିକ୍ଷତ ଅବସ୍ଥାରେ ସୀମାନ୍ତ ଅଞ୍ଚଳ ଅତିକ୍ରମ କରି ପାକିସ୍ଥାନକୁ ପଳାଇଗଲେ । କଳିନ୍ଦ୍ର ସିଂହ ଘୋଷଣା କରି କହିଲେ, କ୍ଷେତରେ ଆଉ ଗୋଟିଏ ଫସଲ କାଟିବାକୁ ସେମାନେ ଯେପରି ଆଉ ଗାଁକୁ ନଯାନ୍ତି । ଶହ ଶହ ଶୀଖ୍ ଯୁବକ ହାତରେ ଧାରୁଆ କୃପାଣ ଧରି ମୁସଲମାନ ବସ୍ତିରେ ପଶି ସେମାନଙ୍କୁ ଖୋଜିବାରେ ଲାଗିଲେ । ଗାଁ ସବୁ ପୁରୁଷ ଶୂନ୍ୟ ହୋଇଯାଇଥିଲା, ଯେଉଁଠି ଜଣେ ଅଧେ ସ୍ତ୍ରୀ ଲୋକଙ୍କୁ ପାଇଲେ ସେମାନଙ୍କୁ ଏକାଧିକ ଲୋକ ଏକାଧିକ ବାର ଧର୍ଷଣ କଲେ ଏବଂ ଦେହର ଗୁପ୍ତ ଅଙ୍ଗସବୁ କ୍ଷତ ବିକ୍ଷତ କରି ମୃତବତ୍ ଛାଡ଼ିଦେଲେ । କେହି କେହି ରାତିରେ ଲୁଚି ଲୁଚି ସୀମାନ୍ତ ଡେଇଁ ପାକିସ୍ଥାନକୁ ପଳାଇଗଲେ । ମଣିଷ ଯେତେବେଳେ କ୍ରୋଧରେ ଅଣାୟତ ହୋଇ ନୃଶଂସ ବ୍ୟବହାର କରେ ସେତେବେଳେ ମଣିଷ ପଶୁସ୍ତରକୁ ଖସି ପଡେ । ଅମୃତସର ସ୍ୱର୍ଣ୍ଣମନ୍ଦିର ପରିସରରେ ମଧ୍ୟ ଏସବୁ ବର୍ବରୋଚିତ କାଣ୍ଡ ଘଟିଯାଉଥିଲା । ଏସବୁର ପ୍ରତିଶୋଧ ନେବା ପାଇଁ ମୁସଲମାନ୍ ବହୁଳ ଗାଁ ମାନଙ୍କରେ ହିନ୍ଦୁ ମାନଙ୍କୁ ନିର୍ମମ ଭାବରେ ହତ୍ୟା କରି ମହିଳା ମାନଙ୍କୁ ଧର୍ଷଣ କଲେ ଏପରି ଦୃଶ୍ୟ ସାରା ପଞ୍ଜାବରେ ଦେଖିବାକୁ ମିଳୁଥିଲା । ଘରଦ୍ୱାର ଛାଡି ଯେଉଁ ମୁଲସମାନମାନେ ସୀମାନ୍ତ ଡେଇଁ ପାକସ୍ଥାନକୁ

ପଳାଇଥିଲେ ସେମାନଙ୍କ ସଂପତ୍ତିକୁ ହିନ୍ଦୁମାନେ ଅଧିକାର କରିନେଲେ, ଏପରିକି ସେମାନଙ୍କ ବିଲ୍‌ରେ ପାଚିଲା ଶସ୍ୟକୁ ଅମଳ କରିବା ପାଇଁ ସୁଯୋଗ ପାଇଲେ ନାହିଁ। ମୋଟାମୋଟି ଭାବରେ ଏହା ଥିଲା ସାରା ପଞ୍ଜାବର ଘଟଣା। କଲିକତା, ବମ୍ବେ, ମାଡ୍ରାସ ଏବଂ ଆହୁରି ଅନେକ ସହର ଓ ଗାଁମାନଙ୍କରେ ସାମ୍ପ୍ରଦାୟିକ ବିଭତ୍ସ କାଣ୍ଡମାନ ଘଟିଯାଉଥିଲା। ଯେଉଁ ଭାଇସ ରାଏ ତାଙ୍କ ସମୟରେ ଆଇନ୍ ଶୃଙ୍ଖଳା ପରିସ୍ଥିତିକୁ ନିମିଷ ମାତ୍ରକେ ଆୟତ୍ତ କରି ପାରୁଥିଲେ ସେହି ଭାଇସ ରାଏ ସ୍ୱାଧୀନ ଭାରତର ଗଭର୍ଣ୍ଣର ଜେନେରାଲ ଥାଇ ମଧ୍ୟ ସେପରି ଦୃଢ଼ ହସ୍ତରେ ଆଇନ୍ ଶୃଙ୍ଖଳା ପରିସ୍ଥିତିକୁ ସମ୍ଭାଳିବା ପାଇଁ ସମର୍ଥ ହେଲେ ନାହିଁ। କାରଣ ପ୍ରଶାସନରେ ସେପରି ଦକ୍ଷ ଅଧିକାରୀ ନଥିଲେ ଏବଂ ଉପନିବେଶ ସମୟରେ ଯେପରି ଦକ୍ଷତାର ସହ କାର୍ଯ୍ୟ କରିବା ପାଇଁ ସୁଯୋଗ ଥିଲା, ଗଣତାନ୍ତ୍ରିକ ଶାସନରେ ଅନଭିଜ୍ଞ ଅଧିକାରୀ ମାନଙ୍କ ଦ୍ୱାରା ତାହା ସମ୍ଭବ ହେଉ ନଥିଲା। କଲିକତା କଥା ନକହିବା ଭଲ, କାରଣ ଯେଉଁ କଲିକତା ସାରା ପୃଥିବୀରେ ସବୁଠାରୁ ବେଶୀ ନୃସଂଶ ସେଠାରେ ଶାନ୍ତିରକ୍ଷା କରିବା କିପରି ସମ୍ଭବ ହୁଅନ୍ତା। ସାମ୍ପ୍ରଦାୟିକ ଦଙ୍ଗା ଏପରି ବ୍ୟାପକ ଭାବରେ କଲିକତା ସହରକୁ କବଳିତ କରିନେଇଥିଲା ଯେ, ରାସ୍ତାର କ୍ଷତବିକ୍ଷତ ମୃତ ଶରୀର ବିଞ୍ଚି ହୋଇ ପଡ଼ିଥିଲା ଏବଂ ହୁଗୁଳି ନଦୀ ରକ୍ତରଞ୍ଜିତ ହୋଇ ଲାଲ ପଡ଼ି ଯାଇଥିଲା। ଯେଉଁମାନେ କ୍ଷତ ବିକ୍ଷତ ହୋଇ ଗଳି କନ୍ଦିରେ ପଡ଼ି ରହି ସୁରକ୍ଷା ପାଇଁ ବିକଳ ଚିତ୍କାର କରୁଥିଲେ ସେମାନଙ୍କୁ ରକ୍ଷା କରିବା ପାଇଁ କେହି ନଥିଲେ। ବିଶେଷକରି ମୁସଲମାନ ବହୁଳ ପୂର୍ବବଙ୍ଗରେ ହତ୍ୟା ଧର୍ଷଣର ଦୃଶ୍ୟ ଥିଲା ଅତ୍ୟନ୍ତ ମର୍ମନ୍ତୁଦ। ପଞ୍ଜାବର ରେଲଷ୍ଟେସନ୍ ପାଲଟି ଗଲା ହଜାର ହଜାର ପାକିସ୍ଥାନରୁ ଭୟରେ ପଳାଇ ଆସିଥିବା ହିନ୍ଦୁମାନଙ୍କ ଶରଣାର୍ଥ ଶିବୀର। ସେମାନଙ୍କ ଗହଳିରେ ବାକୀ ନଥିଲା ଷ୍ଟେସନର ଅଫିସ ଘର। ଟିକେଟ ରୁମ୍ ଓ ୱେଟିଙ୍ଗ ରୁମ୍। ପ୍ରତ୍ୟେକ ଟ୍ରେନରେ ପଶି ସେମାନେ ଖୋଜୁଥିଲେ ହଜି ଯାଇଥିବା ପରିବାର ଲୋକଙ୍କୁ ଓ ବନ୍ଧୁ ପରିଜନ ମାନଙ୍କୁ। ବାପା ମା'ଙ୍କୁ ନପାଇ ଛୋଟ କଅଁଳ କେତୋଟି ଶିଶୁ କାନ୍ଦି କାନ୍ଦି ଥକି

ପଡୁଥିଲେ । ଜଣେ ସଦ୍ୟ ପ୍ରସୂତୀ ମହିଳା ଛାତିରେ ନବଜାତ ଶିଶୁଟିକୁ ଧରି ଆତ୍ମିୟ ସ୍ୱଜନଙ୍କୁ ଖୋଜି ଖୋଜି ଦଳାଚକଟାରେ ଶିଶୁଟି ସହିତ ମୃତ୍ୟୁ ବରଣ କରିବା ଦେଖି ଷ୍ଟେସନ ମାଷ୍ଟର ଚିନା ସିଂହ କ୍ଷିପ୍ର ଗିତରେ ଗଲାବେଳେ ଦଳାଚକଟାରୁ ଅଳ୍ପକେ ବର୍ତ୍ତିଗଲେ । କାହାର ପିଲା ମିଳୁନାହିଁ, ସେ କାନ୍ଦି କାନ୍ଦି ବିକଳ ହୋଇ ଖୋଜୁଛି । କାହାର ସ୍ୱାମୀ ମିଳୁନାହିଁ ତ କାହାର ନବ ପରିଣିତା ସ୍ତ୍ରୀକୁ ଖୋଜୁଛି ଅତ୍ୟନ୍ତ ଉଦ୍‌ବିଗ୍ନ ଭାବରେ । ସହଜରେ ଖୋଜିବାକୁ ବାଟନାହିଁ । ଚାରି ଆଡ଼ ଖୁନ୍ଦାଖୁନ୍ଦିର ଭିଡ଼ । ଏପରି ଅବସ୍ଥାରେ ଅନେକ ଲୋକ ଦଳାଚକଟାରେ ଆହତ ହେଲେ ତ ଆଉ କେହି ମଲେ । କେହି କେହି ମହିଳା ସଦ୍ୟଯାତ ଶିଶୁଟିକୁ ଲୋକଙ୍କ ଭିଡ଼ ଭିତରେ ଫୁଙ୍ଗୁଳା ଛାତିରେ ଯାକିଧରି ନୀରିହ ହରିଣି ପରି ଛଳଛଳ ଆଖିରେ ଅସହାୟ ହୋଇ ଚାହାଁଛି । ମାତ୍ର କେହି ସ୍ୱଜନକୁ ନପାଇ ମୂର୍ଚ୍ଛା ଯାଉଛି । ଅମୃତସରରୁ ଷ୍ଟେସନ ମାଷ୍ଟର ୧୦ ଡ଼ାଉନ ଏକ୍ସପ୍ରେସ୍ ଟ୍ରେନ ପହଞ୍ଚିଲା ପରେ କାହାରି ଓହ୍ଲାଇବାର ନଦେଖି ଧାଇଁ ଯାଇ ଗୋଟିଏ ଡୋର ଟାଣି ଖୋଲିଦେଲେ । ଓଃ କି ବିଭତ୍ସ ସେ ଦୃଶ୍ୟ । ତାପରେ ଗୋଟି ଗୋଟି କରି ଡୋର ସବୁ ଖୋଲିଲେ । ଜଣେ ହେଲେ କେହି ଜୀବିତ ନଥିଲେ । ସଂପୂର୍ଣ୍ଣ ଟ୍ରେନଟି ମୃତ ଦେହରେ ଭର୍ତ୍ତି । କାହାର ଖପୁରି ପଥର ଛେଚାରେ ଦଳି ହୋଇଛି, ଆଉ କାହାର ଗଳା କଟା ହୋଇଛି, କାହାର ପେଟକୁ ଭୂଷି ଦେବାରୁ ଅନ୍ତବୁଜୁଳି ବାହାରି ପଡ଼ିଛି, କାହାର କଟା ହାତଗୋଡ଼ ସବୁ ଟ୍ରେନସାରା ବିଞ୍ଚିହୋଇ ପଡ଼ିଛି । ଷ୍ଟେସନ ମାଷ୍ଟର ଆଶ୍ଚର୍ଯ୍ୟରେ ଦଣ୍ଡେ ଠିଆ ହେଲେ । ରକ୍ତରେ ପାଦର ଜୋତା ବୁଡ଼ି ଗଲାଣି । କ'ଣ କରିବେ ସେ ? ହଠାତ ମୃତଦେହର ଗଦା ଭିତରୁ ଛଟପଟ ହେଉଥିବାର ଶବ୍ଦଟିଏ ଶୁଣି ମୃତ ଦେହ ପରେ ମୃତ ଦେହ ଦଳିଚକଟି ପହଞ୍ଚିଲେ ଶବ୍ଦ ଆସୁଥିବାର ସ୍ଥାନରେ । କ୍ଷୀଣ କଣ୍ଠରେ ଜଣେ କହୁଥିଲେ, "ରକ୍ଷା କର ରକ୍ଷା କର" । ଷ୍ଟେସନ ମାଷ୍ଟର କହିଲେ ତୁମେ ବର୍ତ୍ତମାନ ଅମୃତସରରେ ପହଞ୍ଚିଛ । ଆମେ ସବୁ ହିନ୍ଦୁ, ଭୟ କରନାହିଁ, ପୁଲିସ୍ ଅଛି, ଭୟ କର ନାହିଁ । ଷ୍ଟେସନ ମାଷ୍ଟର ଦୁଃଖ, ଭୟ ଓ ବିସ୍ମୟରେ ଅବାକ ହୋଇ ପଛକୁ ଗୋଡ଼ ଫେରାଇ ଦେଖିଲେ ସବା ଶେଷ କମ୍ପାଟ ମେଣ୍ଟରେ

ଲେଖାଯାଇଛି "This Train is our Gift to Mr. Patel" କଲିକତା, ଯେଉଁ ସହରର ବସ୍ତି ଅଞ୍ଚଳର ସେଇ ଅଦ୍ଭୁତ ବୃଦ୍ଧ ଜଣଙ୍କ ସାଙ୍ଗରେ ଖଣ୍ଡିଏ ଗୀତା ଓ ଚରଖାଟିଏ ପାଖରେ ରଖି ପ୍ରାର୍ଥନା କରୁଥିଲେ, ସେଠି ସମସ୍ତେ ଆଶଙ୍କା କରୁଥିଲେ ପଞ୍ଜାବ ଠାରୁ ଆହୁରି ଭୟଙ୍କର ସାଂପ୍ରଦାୟିକ ଦଙ୍ଗା ହେବ। ସବୁ ହିନ୍ଦୁ ଓ ସବୁ ମୁସଲମାନ ହଣା ଖାଇବେ, ଏହି ଆଶଙ୍କାରେ ସମସ୍ତେ ଥିଲେ ତ୍ରସ୍ତ କାତର। ଏପରି ଏକ ବେଳାରେ ଭାରତ ଜାତୀୟ ପତାକା କଲିକତାର ଗଳି କନ୍ଦି ସର୍ବତ୍ର ଉଡୁଥିଲା ଓ ମହାତ୍ମା ଗାନ୍ଧିଙ୍କ ପାଇଁ ଭାରତ ସ୍ୱାଧୀନ ହେଲା ବୋଲି ବର୍ଣ୍ଣନା କରି ନେତାମାନେ ତାଙ୍କର ଜୟଗାନ କରୁଥିଲେ। ଏହି ଉତ୍ସବରେ ଜାତୀୟ ପତାକାକୁ ନେଇ ଦଳେ ଯୁବକ କ୍ରୋଧରେ ଅସ୍ଥିର ହୋଇ ଉଚ୍ଚସ୍ୱରରେ ଘୋର ନିନ୍ଦା କରୁଥିଲେ। ସେମାନଙ୍କୁ ଉନ୍ମତ୍ତ ଦେଖି ପୋଲିସ ଶାନ୍ତ ହୁଅ, ଶାନ୍ତ ହୁଅ ବୋଲି ଚିତ୍କାର କରୁଥିଲେ। ସେମାନେ କ୍ରୋଧରେ ଉତ୍‌କ୍ଷିପ୍ତ ହୋଇ ପୋଲିସ ଆଡ଼କୁ ମାଡ଼ିଆସି ନିର୍ଭୟରେ ଯୁକ୍ତିକଲେ ଏ ଉତ୍ସବ ଜାତିପ୍ରତି ସମ୍ମାନ ନୁହେଁ, ଅସମ୍ମାନ। ଏ ପତାକା ଆମର ଜାତୀୟ ଚିହ୍ନ ନୁହେଁ। ଏହା ଭୀରୁ କାପୁରୁଷ ମାନଙ୍କର ଷଡ଼ଯନ୍ତ୍ରର ଫଳ। ଏ ପତାକାକୁ ଆମେ ସମ୍ମାନ କରିବୁ ନାହିଁ। ମହାତ୍ମା ଗାନ୍ଧି ଆମର ଜାତୀୟ ପିତା ନୁହଁନ୍ତି। ସେ ଆମ ଶତ୍ରୁ ମୁସଲମାନଙ୍କର ନେତା ଆମର ନୁହେଁ। ତାଙ୍କରି ପାଇଁ ଆମ ଦେଶର ବିଭାଜନ ହେଲା। ସେମାନଙ୍କର ଯୁକ୍ତି ହେଲା ଯେଉଁମାନେ ଆମ ଦେଶକୁ ଆକ୍ରମଣ କରି ଶାସନ କଲେ ସେଇ ମୋଗଲ ମାନଙ୍କର ମୁସଲମାନମାନେ ବଂଶଧର। ସେମାନେ ଦେଶର ଶତ୍ରୁ, ଦେଶର ଶତ୍ରୁ ମାନଙ୍କୁ ମହାତ୍ମା ଗାନ୍ଧି ସମର୍ଥନ କରୁଛନ୍ତି। ତେଣୁ ସେ ଦେଶର ଶତ୍ରୁ। ସ୍ୱସ୍ତିକ ଚିହ୍ନ ହିଁ ଆମ ପୂର୍ବ ପୁରୁଷ ଆର୍ଯ୍ୟ ମାନଙ୍କ ବୀରତ୍ୱର ଚିହ୍ନ। ସେ ଚିହ୍ନ ଏ ପତାକାରେ ନାହିଁ। ତେଣୁ ସେ ଚିହ୍ନ ଆମ ଜାତିର ନୁହେଁ। ଆମେ ତାକୁ ସମ୍ମାନ କରିପାରିବୁ ନାହିଁ। ଏ ସବୁ ଯୁବକମାନେ ଥିଲେ ଆର.ଏସ୍.ଏସ୍. ସଭ୍ୟ। ବହୁ କଷ୍ଟରେ ପୋଲିସ୍ ସେମାନଙ୍କୁ ଆୟତ୍ତ କରି ଧରି ନେଇଗଲେ। ପୁନାଠାରେ ଏହି ଯୁବକ ମାନଙ୍କ ମେଳରେ ଥିଲେ ଜଣେ ୩୭ ବର୍ଷୀୟ ଯୁବକ ପତ୍ରକାର

ନାଥୁରାମ ଗଡ଼ସେ । ଯୁବକ ମାନଙ୍କ ଯୁକ୍ତି ଶୁଣି ସେ ମହାତ୍ମାଙ୍କ ପ୍ରତି କ୍ରୋଧରେ ଜଳି ଉଠୁଥିଲେ । କଲିକତା ଥିଲା ଘୋର ଆଶଙ୍କା ଭିତରେ । ନାଥୁରାମ ଗଡ଼ସେ ଥିଲେ ତାଙ୍କ ଦ୍ୱାରା ପ୍ରକାଶିତ ହେଉଥିବା ଦୈନିକ ସଂବାଦପତ୍ର ହିନ୍ଦୁରାଷ୍ଟ୍ରର ସଂପାଦକ । ଏହି ସଂବାଦ ପତ୍ରର ଅଗ୍ରଲେଖାରେ ସେ ନିୟମିତ ଭାବେ ହିନ୍ଦୁ ରାଷ୍ଟ୍ରଗଠନ ସଂପର୍କରେ ଯୁକ୍ତି ବାଢୁଥିଲେ । ଯେଉଁ ଅଗଷ୍ଟ ପନ୍ଦର ତାରିଖରେ ସାରା ଭାରତରେ ସ୍ୱାଧୀନତା ଦିବସ ପାଳନ କରାଯାଉଥିଲା, ସେଇ ଦିନ ସେ "ହିନ୍ଦୁ ରାଷ୍ଟ୍ର" ରେ ଲେଖିଥିଲେ ଏ ଉତ୍ସବର ଉଦ୍ଦେଶ୍ୟ ହେଉଛି ସତ ଘଟଣାକୁ ଲୋକଙ୍କ ପାଖରୁ ଲୁଚାଇ ରଖିବା ପାଇଁ ଏକ କୌଶଳ । ପ୍ରକୃତ କଥା ହେଲା ଶହ ଶହ ହିନ୍ଦୁ ମାନଙ୍କୁ ହତ୍ୟା କରାଯାଉଛି ଓ ଶହ ଶହ ହିନ୍ଦୁ ମହିଳା ମାନଙ୍କୁ ଧର୍ଷଣ କରାଯାଉଛି । ତାଙ୍କର ଏ ସବୁ ଲେଖା ଭାରତରେ ସାଂପ୍ରଦାୟିକ ସଦ୍‌ଭାବନାକୁ ତୀକ୍ତ କରୁଥିଲା । ସେ ଲେଖିଥିଲେ: "The ridivion of India was a Craedity condumining millions of Indians to humible suffering. It was the work of Congress party and its leader Gandhi". ପୁନାରେ ସେଦିନ ନାଥୁରାମ ଗଡ଼ ସେ ତାଙ୍କ ପାଞ୍ଚଶହ ଅନୁଚର ମାନଙ୍କୁ ଛାଡ଼ି ଶପଥ କରିଥିଲେ । "To the montherland which gave me birth and in which I have grown that my body is ready to die for her cause." ସାରା ଜୀବନ ସେ ଏହି କଥା ଉଚ୍ଚାରଣ କଲାବେଳେ ଗର୍ବରେ ତାଙ୍କ ଛାତି ଫୁଲି ଉଠୁଥିଲା । ପାଠ ଓ ଅନ୍ୟ ସବୁ କାର୍ଯ୍ୟରେ ସେ ଅକୃତ କାର୍ଯ୍ୟ ହେଲା ପରେ ଆର.ଏସ୍.ଏସ୍.ର ଦର୍ଶନକୁ ଗ୍ରହଣ କରି ତା'ର ଏକ ସଭ୍ୟ ହୋଇ ଯାଇଥିଲେ । ଏହା ପରେ ଆର.ଏସ୍.ଏସ୍. ଦର୍ଶନ ସଂପର୍କରେ ଭଲଭାବେ ପଢ଼ାପଢ଼ି କରି ସବୁ ସମୟରେ ସାଙ୍ଗସାଥି ମାନଙ୍କୁ ବିଭିନ୍ନ ସାଂଗଠନିକ କାର୍ଯ୍ୟକ୍ରମରେ ଶକ୍ତିଶାଳୀ ଭାଷଣ ଦେଇ ଆର.ଏସ୍.ଏସ୍. ସଂଗଠନର ଏକ ଆଗୁଆ ନେତା ହୋଇଯାଇଥିଲେ । ଶେଷରେ ସେ ଶପଥ କରିଥିଲେ ଯେ ଆର.ଏସ୍.ଏସ୍. ଆନ୍ଦୋଳନକୁ ଦେଶବ୍ୟାପୀ ଶକ୍ତିଶାଳୀ କରିବା ପାଇଁ ଦରକାର ହେଲେ ଜୀବନ

ଉତ୍ସର୍ଗ କରିବାକୁ ପଛଘୁଞ୍ଚା ଦେବେ ନାହିଁ ଏବଂ ସବୁ କାମରେ ଅକୃତ କାର୍ଯ୍ୟ ହୋଇଥିଲେ ମଧ୍ୟ ଏ କାର୍ଯ୍ୟରେ ଅକୃତ କାର୍ଯ୍ୟ ହେବ ନାହିଁ। ଅଗଷ୍ଟ ୧୫ ତାରିଖ, ନୂଆଦିଲ୍ଲୀର ଇଣ୍ଡିଆ ଗେଟ୍ ପାଖରେ ସମୁଦ୍ର ଭଳି ବିଶାଳ ଜନସମାବେଶ ହୋଇଥିଲା ସ୍ୱାଧୀନତା ଦିବସ ପାଳନ କରିବାକୁ। ଏହି ଐତିହାସିକ ସ୍ଥାନର ମହାତ୍ମ୍ୟ ହେଲା ଯେଉଁ ୯୦୦୦ ଭାରତୀୟ ପ୍ରାଣବଳୀ ଦେଇଥିଲେ ପ୍ରଥମ ବିଶ୍ୱଯୁଦ୍ଧରେ ବ୍ରିଟିଶ୍ ସରକାରଙ୍କ ସପକ୍ଷରେ ସେମାନଙ୍କ ପ୍ରତି ସମ୍ମାନ ଜଣାଇବା। ଏହା ଥିଲା ପତାକା ଉତ୍ତୋଳନର ଏକ ସରକାରୀ ଉତ୍ସବ ପ୍ରଥମ ସ୍ୱାଧୀନତା ଦିବସ ପାଳନ ଉପଲକ୍ଷେ। ମାଉଣ୍ଟବେଟେନ ଓ ତାଙ୍କ ପରାମର୍ଶଦାତା ମାନେ ଅଟକଳ କରିଥିଲେ ଯେ, ଏହି ଉତ୍ସବରେ ୩୦,୦୦୦ ଲୋକ ଯୋଗ ଦେବେ। ସେମାନଙ୍କର ଅଟକଳ ଠାରୁ ଯୋଗ ଦେଇଥିଲେ ଅଧିକ ଅଧା ମିଲିୟନ ଲୋକ। ଏତେ ଲୋକଙ୍କର ସମାବେଶ ଭାରତର ରାଜଧାନୀରେ ଆଗରୁ କେହି କେବେ ଦେଖି ନଥିଲେ। ଏହା ଉଚ୍ଛୁଳା ସମୁଦ୍ର ପରି ଦିଶୁଥିଲା। ଉତ୍ସବ ସ୍ଥାନଟି ଲୋକ ଭିଡ଼ରେ ହଜି ଯାଇଥିଲା। ଶୃଙ୍ଖଳା ରକ୍ଷା କରିବା ପାଇଁ ପୋଲିସର ସମସ୍ତ କଟକଣାକୁ ଅମାନ୍ୟ କରି ସମୁଦ୍ର ଜୁଆର ପରି ଚତୁର୍ଦ୍ଦିଗରୁ ଲୋକେ ମାଡ଼ି ଆସିଥିଲେ। ତଳେ ଛୁଞ୍ଚି ପକାଇବାକୁ ଜାଗା ନାହିଁ। କେହି ହାତ ଉଠାଇବାକୁ ଅକ୍ଷମ। ଏଲିଜାବେଥ ଲେଡ଼ି ମାଉଣ୍ଟବେଟେନଙ୍କ ସାଙ୍ଗରେ ଆସିଥିଲେ। ଲୋକଙ୍କ ଭିଡ଼ ଭିତରେ ଚାପିହୋଇ ଅର୍ଦ୍ଧ ନଗ୍ନ ହୋଇଗଲେ। ସବୁଠାରୁ ଯେଉଁ ସୁନ୍ଦର ଓ ଦାମୀ ପୋଷାକ ପିନ୍ଧିଥିଲେ ତା ଛିଣ୍ଡି ଟୁକୁରା ଟୁକୁରା ହୋଇଗଲା। ଯେତେ ଚେଷ୍ଟା କଲେ ବି ସେମାନେ ସିଧାହୋଇ ଠିଆ ହୋଇପାରୁ ନଥିଲେ। ଏଲିଜାବେଥ କୋଲିନ ଲୋକ ଚାପରେ ପଡ଼ି ଅଣନିଃଶ୍ୱାସୀ ହୋଇ ପଡ଼ୁଥିଲେ। ସାଙ୍ଗରେ ଆସିଥିବା ଲେଡ଼ି ମାଉଣ୍ଟବେଟେନଙ୍କୁ ଯେତେ ଖୋଜିଲେ ପାଉ ନଥିଲେ। ତାଙ୍କର ମନେହେଲା ଦଳାଚକଟାରେ ମଣ୍ଡି ହୋଇ ସେ ମରିଯିବେ। ମାଉଣ୍ଟବେଟେନଙ୍କ ୧୭ ବର୍ଷିୟା ଝିଅ ଭିଡ଼ ଭିତରେ ଚାପି ହୋଇଗଲା। ସାଙ୍ଗରେ ଆସିଥିବା ତାଙ୍କ ପିତାଙ୍କର ଦୁଇଜଣ ଷ୍ଟାଫ୍ ଭିଡ଼ ଭିତରେ ଅଦୃଶ୍ୟ ହୋଇଗଲେ। ନିଃଶ୍ୱାସ ମାରିବା

ତାଙ୍କୁ କଷ୍ଟହେଲା । ଉପରୁ କୌଣସି ମତେ ସେ ନେହେରୁଙ୍କ ଆଖି ପଡ଼ିଲେ । ନେହେରୁ ଚିତ୍କାର କରି କହିଲେ, ଲୋକଙ୍କ ଉପରେ ଚଢ଼ି ଚାଲିଆସ । Pamela କହିଲେ I can not I have my shoes. Nehur Pamela Could not do that. କେତେକ ମହିଳା ସେମାନଙ୍କ ଛୋଟ ଶିଶୁ ମାନଙ୍କୁ ଛାତିରେ ଜାକି ଧରିଥିଲେ । ସେତକ କରିବା ବି ସମ୍ଭବ ହେଲା ନାହିଁ । କଅଁଳ ଶିଶୁ ଗୁଡ଼ିକ ହୁଏତ ଭିଡ଼ ଚାପାରେ ଚଟଣି ହୋଇଯିବେ । ଆଉ କିଛି ଉପାୟ ନ ପାଇ ପୁଣି ଧରିନେବା ପାଇଁ ବାରମ୍ବାର ଶିଶୁ ଗୁଡ଼ିକୁ ଉପରକୁ ଟେକି ଫିଙ୍ଗି ଦେଉଥାନ୍ତି । ମନେ ହେଉଥାଏ ସତେ ଯେମିତି ଛୋଟ ଛୋଟ ବେଲୁନ ଗୁଡ଼ିକର ବର୍ଷା ହେଉଛି । ଭିଡ଼ ଭିତରେ ମାଉଣ୍ଟବେଟେନଙ୍କ ଗାଡ଼ି ମଧ୍ୟ ଆଗକୁ ଯାଇ ପାରୁନଥିଲା । ତାଙ୍କର ମନେ ହେଲା ସେ ଯେପରି ପତାକା ଉତ୍ତୋଳନ କରିପାରିବେ ନାହିଁ ଏବଂ ଉତ୍ସବଟି ଧ୍ୱଂସ ହୋଇଯିବ । କାରଣ ସେ ନିଜେ ମଧ୍ୟ ଗାଡ଼ିରୁ ଓହ୍ଲାଇ ବାକୁ ଅକ୍ଷମ । ଏହା ଦେଖି ସେ ନେହେରୁଙ୍କୁ ଚିତ୍କାର କରି କହିଲେ Let us must haist the flag. ମଞ୍ଚ ଉପରେ ତ୍ରିରଙ୍ଗା ପତାକାଟି ଧିରେ ଧିରେ ଉପରକୁ ଉଠିଲା । ମାଉଣ୍ଟବେଟେନ ଓ ଲେଡ଼ି ମାଉଣ୍ଟବେଟେନ ତିନିଥର ଚେଷ୍ଟା କଲେ ଓହ୍ଲାଇ ବାକୁ । କିନ୍ତୁ ଏଥର ଅନୁଭବ କଲେ ଲେଡ଼ି ମାଉଣ୍ଟବେଟେନ ତଳେ ଗାଡ଼ି ଚକାରେ ଦଳି ହୋଇଯିବେ । ବୃଥା ଚେଷ୍ଟା କରି କିଛି ଲାଭନାହିଁ ଭାବି ଗାଡ଼ିରେ ଠିଆହୋଇ ପତାକାଟିକୁ ଔପଚାରିକ ସାଲୁଟ୍ ଜଣାଇ ଚୁପ ରହିଲେ । ସେତେବେଳକୁ ପୋଲିସ୍ କର୍ମଚାରୀ ଓ ପଦସ୍ଥ ଅଧିକାରୀମାନେ ଯେଉଁ ବାରିକେଡ଼ ଓ ଦଉଡ଼ି ବନ୍ଧା କଟକଣା କରିଥିଲେ । ସେସବୁ ଆଉ କିଛି ନଥିଲା । ସବୁଆଡ଼େ ମାଡ଼ିଯାଇଥିଲା ସମୁଦ୍ର ଜୁଆର ପରି ଲୋକଙ୍କର ଭିଡ଼ । ପତାକା ଉତ୍ତୋଳନ ସିନା ହେଲା, କିନ୍ତୁ ସ୍ଥିର ହୋଇଥିବା କୌଣସି ବିଧି ବିଧାନ ପାଳନ କରାଯାଇ ପାରିଲା ନାହିଁ । ବାଜା ବାଜିବା କ୍ଷଣି ପତାକା ଧିରେ ଧିରେ ଉଠି ଜନସମୁଦ୍ର ମଥା ଉପରେ ଉଡ଼ିଲା, ଲୋକେ ଭୁଲିଗଲେ ପଲାସୀ ଯୁଦ୍ଧ, ୧୮୫୭ର ସିପାହୀ ବିଦ୍ରୋହ ଅମୃତସରର ହତ୍ୟାକାଣ୍ଡ ଦେଶର ପିତାଙ୍କ ପ୍ରତି ସବୁ ଅତ୍ୟାଚାର ଓ ଅସଂଖ୍ୟ ବନ୍ଦି

ମାନଙ୍କ ଉପରେ ନିର୍ମମ ଚାବୁକ ପାହାର। ବ୍ରିଟିଶ୍ ଅତ୍ୟାଚାରର ସମସ୍ତ କରୁଣ ଦୃଶ୍ୟକୁ ନିମିଷକେ ଲୋକେ ଭୁଲିଯାଇ ଆନନ୍ଦ ଉଲ୍ଲାସରେ ମାତିଗଲେ। ଲୋକଙ୍କ ପରି ଆକାଶ ମଧ୍ୟ ଏକ ସୁନ୍ଦର ଇନ୍ଦ୍ରଧନୁର ତରଙ୍ଗ ତୋଳି ଅପୂର୍ବ ତେଜରେ ଝଲସି ଉଠିଲା। ଉତ୍ସବ ଶେଷରେ ଗଭର୍ଣ୍ଣର ଦମ୍ପତି ତାଙ୍କ ସୁସଜ୍ଜିତ ଯାନରେ ବସି ସେମାନଙ୍କ ରାଜକୀୟ ପ୍ରାସାଦକୁ ଫେରିଲେ। ନେହେରୁ ମଧ୍ୟ ସେମାନଙ୍କ ସାଙ୍ଗରେ ଫେରିଲେ। ଅଦ୍ଭୁତ ସଫଳତାରେ ଆତ୍ମବିଭୋର ମାଉଣ୍ଟବେଟେନ କହି ଉଠିଲେ ଏପରି ଆନନ୍ଦର ବିଶାଳ ଉତ୍ସବ କେହି କେବେ ଜୀବନରେ ଦେଖି ନଥିବେ। ନେହେରୁ ଚିତ୍କାର କଲେ "ଭଗବାନ ଯେତେବେଳେ ଆମ ଉପରେ ଏତେ ପ୍ରସନ୍ନ, ପୃଥିବୀର କିଏ ଆଉ ଆମ ବିରୁଦ୍ଧରେ ଠିଆ ହେବ।" ସମସ୍ତଙ୍କ ତୁଣ୍ଡରେ ଗୋଟିଏ କଥା, ମାଉଣ୍ଟ ବେଟେନଙ୍କ ଛଡ଼ା ଆଉ କିଏ ଏପରି ସଫଳତା ଅର୍ଜନ କରିପାରନ୍ତେ। ମାଉଣ୍ଟବେଟେନ ନିଜେ ମଧ୍ୟ ଆନନ୍ଦ ବିଭୋର ହୋଇ କହିଲେ କୌଣସି ଇଂରେଜ ଭାରତ ମାଟିରେ ଏପରି ବିପୁଳ ସଂବର୍ଦ୍ଧନା ପାଇନାହାଁନ୍ତି। ମାଉଣ୍ଟବେଟେନଙ୍କ ଆଖିରୁ ଗଳଗଳ ହୋଇ ଆନନ୍ଦର ଅଶ୍ରୁ ଝରି ପଡ଼ିଲା। ଦୁହେଁ ଦୁହିଁଙ୍କ ବାହୁରେ ପଡ଼ିଗଲେ ପଚିଶ ବର୍ଷ ତଳେ ଯୁବକ ଯୁବତୀ ଦୁଇଜଣ ଯେମିତି ପଡ଼ି ଯାଇଥିଲେ ପ୍ରେମରେ ବିଭୋର ହୋଇ। ଜୟ ମାଉଣ୍ଟବେଟେନ, Long live, ମାଉଣ୍ଟବେଟେନ ଧ୍ୱନୀରେ କମ୍ପି ଉଠିଲା ଆକାଶ ପାତାଳ। ରାଜକୀୟ ସାଜସଜାରେ ସୁଶୋଭିତ ବିଶାଳ ପ୍ରାସାଦରେ ଅପେକ୍ଷା କରିଥିଲେ ସମ୍ରାଟ ଷଷ୍ଠ ଜର୍ଜ। Secretary to State ଯାଇ ତାଙ୍କୁ ଜଣାଇଲେ "ଭାରତକୁ କ୍ଷମତା ହସ୍ତାନ୍ତର କାର୍ଯ୍ୟ ଅତ୍ୟନ୍ତ ସୁଚାରୁ ରୂପେ ସଂପାଦିତ ହୋଇଛି। ଭାତରରେ ବ୍ରିଟିଶ୍ ସାମ୍ରାଜ୍ୟର ଅବସାନ ଘଟିଛି। ଏଣିକି ଭାରତ ଓ ବ୍ରିଟେନ ବନ୍ଧୁରାଷ୍ଟ୍ର ହୋଇ ରହିବେ ବୋଲି ଘୋଷଣା କରିଛନ୍ତି। ଏହାଥିଲା ୧୯୪୭ ଅଗଷ୍ଟ ୧୫ ତାରିଖର ଘୋଷଣାନାମା। ଲକ୍ଷଲକ୍ଷ ଲୋକଙ୍କର ଧାଁ ଧପଡ଼ରେ ନୂଆଦିଲ୍ଲୀର ରାସ୍ତାଘାଟ ଆକାଶମାର୍ଗ ଧୂଳି ପଟଳରେ ଆଚ୍ଛାଦିତ ହୋଇଗଲା। ସମସ୍ତଙ୍କ ମୁଖରେ ଆନନ୍ଦର ଛାପ। ପୁରୁଣାଦିଲ୍ଲୀରେ ବି ଆନନ୍ଦ ଉଲ୍ଲାସ ଲାଗି ରହିଥିଲା। ନାଚ ଗୀତର ମହୋତ୍ସବ

ଭିତରେ ଭୋଜିଭାତ, ଘୋଡ଼ାନାଚ, ଭାଲୁନାଚ, ସାପ ଖେଳ, ବାଣଫୁଟା ଓ ଆଲୋକ ସଜ୍ଜାରେ ଉଛୁଳି ଉଠୁଥିଲା ସାରା ପରିସର । ସେଦିନ ଖାଲି ଦେଶର ରାଜଧାନୀ ନୁହେଁ, ପ୍ରତିଟି ରାଜ୍ୟର ରାଜଧାନୀଠାରୁ ଆରମ୍ଭ କରି ସ୍କୁଲ, କଲେଜ, ସରକାରୀ, ବେସରକାରୀ ଅଫିସ୍ ଓ ପୁରପଲ୍ଲୀ ସବୁଆଡ଼େ ହର୍ଷ ଉଲ୍ଲାସର କଳରୋଳ । ଅଧିକାଂଶ ଡ଼ାକ୍ତରଖାନାରେ ଦଳଦଳ ଭାରତୀୟ ନରନାରୀ ଫଳ ଓ ମିଠା ବାଣ୍ଟିଲେ ରୋଗୀମାନଙ୍କୁ । ଜଣା ପଡୁଥିଲା ସତେ ଯେମିତି ଗୋଟାଏ ଯୁଦ୍ଧପରେ ବିଜୟୀ ପକ୍ଷ ଆନନ୍ଦରେ ଉତ୍ସବ ପାଳନ କରୁଛନ୍ତି । ପ୍ରକୃତରେ ଏହା ଯୁଦ୍ଧ ଥିଲା ଉଭୟ ପକ୍ଷର ବିଜୟ । କେହି କିଛି ହରାଇ ନଥିଲେ । ଉଭୟ ପକ୍ଷ ଖାଲି ପାଇଥିଲେ ଆଉ ପାଇଥିଲେ । ମାନବ ଇତିହାସରେ କୌଣସି ଯୁଦ୍ଧ ଉଭୟ ପକ୍ଷକୁ ଏପରି ଆନନ୍ଦ ଦେଇ ନଥିଲା । କିନ୍ତୁ ମାଉଣ୍ଟ ବେଟେନ ପ୍ରଧାନମନ୍ତ୍ରୀ ଅଟଲିଙ୍କୁ ଟେଲିଫୋନ ଯୋଗେ ଅତ୍ୟଧିକ ଆନନ୍ଦ ଉଲ୍ଲାସରେ ମାତିବାକୁ ବାରଣ କରି କହିଲେ, ଦେଶ ବିଭାଜନ ହେତୁ ସାରା ଭାରତରେ ପରଦିନ ସକାଳୁ ପ୍ରଚଣ୍ଡ ଉତ୍ତେଜନା ଓ ସାଂପ୍ରଦାୟିକ ହିଂସାକାଣ୍ଡରେ ଅସଂଖ୍ୟ ଲୋକେ ମୃତାହତ ହୋଇ ପାରନ୍ତି ଓ ବହୁମୂଲ୍ୟ ସଂପତ୍ତି ଧ୍ୱଂସ ହୋଇପାରେ । ଏ କଥା ଶୁଣି ଅଟଲି ଦୁଃଖରେ କହିଲେ, ଏ ବିଜୟ ପାଇଁ ଆମକୁ ବହୁମୂଲ୍ୟ ଦେବାକୁ ପଡ଼ିବ । ସେ ମୂଲ୍ୟ ହେଲା ହିଂସା, ରକ୍ତପାତ ଓ ପ୍ରାଣ ନାଶ । ମାଉଣ୍ଟବେଟେନ ସେତେବେଳେ ଭାବୁଥିଲେ, ଉପ ମହାଦେଶକୁ ବିଭାଜନ କରି ଯେଉଁ ଦୁଇଟି ମ୍ୟାପ୍ ପ୍ରସ୍ତୁତ ହୋଇଛି, ତାହା ପ୍ରକାଶ ପାଇବା ମାତ୍ରେ ୧୫୯୯ ମସିହାରେ ମହାରାଣୀ ପ୍ରଥମ ଏଲିଜାବେଥ ଭାରତରେ ବାଣିଜ୍ୟ କରିବା ପାଇଁ ଯେଉଁ (Royal Char-acter) ଦେଇଥିଲେ ତାହା ବିପୁଳ ସୌଭାଗ୍ୟ ଦେଇ ଶେଷରେ ବ୍ରିଟିଶ୍ ଜାତିକୁ ବିଷାଦର କାଳିମାରେ ନୃଶଂସ ଭାବରେ ଜର୍ଜରୀତ କରିଦେଲା । ମାଉଣ୍ଟବେଟେନ ସେଇ ମ୍ୟାପ୍‌ର କପିଗୁଡ଼ିକୁ ଭାରତର ପ୍ରଧାନମନ୍ତ୍ରୀ ଜବାହାର ଲାଲ୍ ନେହେରୁ ଓ ପାକିସ୍ଥାନର ପ୍ରଧାନମନ୍ତ୍ରୀ ଲିଆକତ୍ ଅଲ୍ଲୀଙ୍କ ହାତକୁ ବଢ଼ାଇ ଦେଇ ଦୁଇ ପୃଥକ ରୁମ୍‌ରେ ବସି ଦେଖି ନେବାକୁ କହିଲେ ଏବଂ ଅନ୍ୟ ଗୋଟିଏ ମିଟିଂରେ ଯୋଗ

ଦେଇ ଦୁଇ ଘଣ୍ଟାପରେ ଫେରି ଆସି ଦେଖିଲେ ଦୁଇଜଣଙ୍କ ମୁହଁ ରାଗରେ ଲାଲ ପଡିଯାଇଛି । ସେମାନେ ଲୁଇସ୍‌ଙ୍କୁ ଦେଖିବା ମାତ୍ରେ ଗର୍ଜନ କରି କହିଲେ ଭାରତର ସ୍ୱାଧୀନତା ଦିବସ ପାଳନ ସରିଛି । ତା ହୋଇନଥିଲେ ଏ ମ୍ୟାପ୍‌କୁ ଛିଣ୍ଡାଇ ଟୁକୁରା କରି ପାଦରେ ଦଳି ଦେଇଥାନ୍ତି । ମାଉଣ୍ଟବେଟେନ ଶାନ୍ତ କଣ୍ଠରେ କହିଲେ Sir Radetief ମୋ ଆଦେଶ ମୁତାବକ ଏ ମ୍ୟାପ୍ ଦୁଇଟି ପ୍ରସ୍ତୁତ କରିଛନ୍ତି । ଅବଶ୍ୟ ଏଥିରେ ସାମାନ୍ୟ ତ୍ରୁଟି ଥାଇପାରେ, କିନ୍ତୁ ଦୁଇ ସଂପ୍ରଦାୟର ଜନସଂଖ୍ୟା ଭିତ୍ତିରେ ପଞ୍ଜାବ ଓ ବେଙ୍ଗଲର ମ୍ୟାପ୍ ପ୍ରସ୍ତୁତ ହୋଇଛି । ବାସ୍ତବରେ ଏହା କିଛି ବିପଦ ସୃଷ୍ଟି କରିପାରେ । ପୃଥିବୀର ଶତକଡା ୮୫ ଭାଗ ଝୋଟ ଯେଉଁ ଅଞ୍ଚଳରେ ଉତ୍ପାଦିତ ହୁଏ ତାହା ପାକିସ୍ଥାନକୁ ଦିଆଯାଇଛି, ମାତ୍ର ଝୋଟଜାତ ପଦାର୍ଥ ତିଆରି କରିବା ପାଇଁ ସେଠାରେ ଗୋଟିଏ ହେଲେ ମିଲ୍ ନାହିଁ । ଏ ସବୁ ମିଲ୍ ଅଛି କଲିକତାରେ । କଲିକତାରେ ଥିବା ମିଲ୍ ଦ୍ୱାରା ଝୋଟଜାତ ପଦାର୍ଥ ତିଆରି ହୋଇ କଲିକତା ବନ୍ଦର ବାଟେ ବାହାରକୁ ରପ୍ତାନୀ ହୁଏ । ପଞ୍ଜାବର ପିଉଣ୍ଡ୍ରି ଲାଇନ ଆରମ୍ଭ ହୋଇଛି କାଶ୍ମୀରକୁ ଲାଗିଥିବା ଜଙ୍ଗଲରୁ ଯେଉଁଠି ଉଦ୍ ନଦୀର ପଶ୍ଚିମ ପାଖରେ ପଞ୍ଜାବ ଆରମ୍ଭ ହୋଇଛି । ଏହି ବାଉଣ୍ଡରି ଲାଇନ ଟାଣିବାରେ Sir Radetief ସନ୍ତୁଷ୍ଟ ନୁହଁନ୍ତି । ମାତ୍ର ଭାଷାଗତ ସୁବିଧା ଦୃଷ୍ଟିରୁ ଏହା କରାଯାଇଛି । ରବି ଓ ସତଲେଜ ନଦୀ ଉତ୍ତର ଦିଗରେ ଶେଷ ସୀମା ପର୍ଯ୍ୟନ୍ତ ଦୁଇ ଶହ ମାଇଲ ବହିଗଲା ପରେ ବିସ୍ତୀର୍ଣ୍ଣ ଭାରତ ମରୁଭୂମି ପାଖରେ ପହଞ୍ଚିଛି । ଲାହୋରକୁ ପାକିସ୍ଥାନ ଓ ସ୍ୱର୍ଣ୍ଣମନ୍ଦିର ସହ ଅମୃତସରକୁ ଭାରତକୁ ଦିଆଯାଇଛି । ଏ ସବୁ କରାଯାଇଛି ଦୁଇ ସଂପ୍ରଦାୟର ଜନସଂଖ୍ୟା ଓ ଭାଷାକୁ ବିଚାର କରି । Sir Radetiefଙ୍କ ଦ୍ୱାରା ପ୍ରସ୍ତୁତ ଏହି ମ୍ୟାପ୍ ପଞ୍ଜାବରେ ଅନିଚ୍ଛାକୃତ ବିପଦ ସୃଷ୍ଟି କରିପାରେ । ଲୋକସଂଖ୍ୟାକୁ ଆଧାର କରି Sir Radetief ଯେଉଁ ମ୍ୟାପ୍ ପ୍ରସ୍ତୁତ କରିଛନ୍ତି ତାହା ପଞ୍ଜାବର ଦୁର୍ଗତିର କାରଣ ହୋଇପାରେ । କାରଣ ରବି ନଦୀର ପ୍ରାକୃତିକ ସୀମାକୁ ଲାଗିଥିବା ଗୁରନାଥପୁର ସହର ଓ ମୁସଲିମ୍ ଗାଁ

ଗୁଡ଼ିକ ପଞ୍ଜାବର ଅନ୍ତର୍ଭୁକ୍ତ କରାଯାଇଛି। ଏଥିପାଇଁ ପାକିସ୍ଥାନର ଲକ୍ଷ ଲକ୍ଷ ଲୋକ ତାଙ୍କୁ କେବେ କ୍ଷମା କରିବେ ନାହିଁ। ଏହାକୁ ଯଦି ପାକିସ୍ଥାନକୁ ଦିଆ ଯାଇଥାନ୍ତା, ତେବେ ଜିନାଙ୍କ ଦେଶ ଏହାର ମାଲିକ ହୋଇଥାନ୍ତେ ସତ୍‌ ମାତ୍ର ଏହା ସହିତ ଯେଉଁ ପ୍ରାକୃତିକ ଶୋଭାମୟ କାଶ୍ମୀର ପାଇଁ ମୋଗଲ ସମ୍ରାଟ ଯାହାଙ୍ଗିର ମୃତ୍ୟୁ ବେଳେ ବ୍ୟାକୁଳ ହେଉଥିଲେ, ତା ମଧ୍ୟ ପାକିସ୍ଥାନକୁ ଚାଲି ଯାଇଥାନ୍ତା। ତା ହୋଇଥିଲେ ଭାରତ ସହ୍ୟ କରି ପାରି ନଥାନ୍ତା। ଏବେ ପାକିସ୍ଥାନ ବି ଗ୍ରହଣ କରିବ ନାହିଁ। କାଶ୍ମୀର ଏକ ବିବାଦୀୟ ରାଜ୍ୟ ହୋଇ ରହିଗଲା। ପାକିସ୍ଥାନ ଆକ୍ରମଣ କରିବ, ବହୁ ରକ୍ତକ୍ଷୟ ଓ ପ୍ରାଣନାଶ ଘଟିବ। ମୁସଲମାନ ବହୁଳ କାଶ୍ମୀରରେ ହିନ୍ଦୁ ରାଜା ହରିସିଂହ। ତାଙ୍କର ମନ ସ୍ଥିରନାହିଁ। ସେ କୌଣସି ନିଷ୍ପତ୍ତି ନେବାକୁ ଅକ୍ଷମ। ଏ ଜଟିଳ ପରିସ୍ଥିତିରେ ଆଉ କ'ଣ କରାଯାଇ ପାରିଥାନ୍ତା ? Radetief ବାଧ୍ୟ ହୋଇ ଏପରି କରିଛନ୍ତି। ସେ ଜାଣନ୍ତି ଯେ ଏହାକୁ ନେଇ ଉଭୟ ପକ୍ଷ ଭିତରେ ହିଂସାକାଣ୍ଡ ଘଟିବ। ତାଙ୍କ ଜୀବନପ୍ରତି ବି ବିପଦ ଅଛି। ତେଣୁ ଯଥେଷ୍ଟ ସିକ୍ୟୁରିଟି ସାହାଯ୍ୟରେ ତାଙ୍କୁ ବିଲାତ ପଠାଇ ଦିଆଯାଇଛି। ତଥାପି ତାଙ୍କ ପ୍ଲେନ୍‌କୁ ବୋମାମାଡ଼ କରିବାର ଭୟ ଦୂର ହୋଇନାହିଁ। ଏକଥା ବି ଜାଣନ୍ତି ଯେ, ପଞ୍ଜାବର ସୀମାରେଖାକୁ ନେଇ ସେଠାରେ ଭୟଙ୍କର ରକ୍ତପାତ ହେବ। ଭାରତର ବିଭାଜନ ପାଇଁ Radetief ନିଯୁକ୍ତିକୁ ଉଭୟ ନେହେରୁ ଓ ଜିନା ସମ୍ମତି ଦେଇଥିଲେ। ଏବେ ଦୁଇଜଣ ଯାକ ଘୋର ଅସନ୍ତୁଷ୍ଟ। ଏହାଦେଖି ତାଙ୍କର ପାରିଶ୍ରମିକ ଭାବରେ ପାଇବାକୁ ଯେଉଁ ୨୦୦୦ ପାଉଣ୍ଡ ପାଇବାର ଥିଲା, ପରିତ୍ୟାଗ କରି ସେ ଚାଲିଯାଇଛନ୍ତି। ଏବେ ମାନବ ଇତିହାସରେ ସବୁଠାରୁ ବଡ଼ ସାଂପ୍ରଦାୟିକଦଙ୍ଗା ଆରମ୍ଭ ହୋଇଗଲାଣି। ଶହଶହ ବର୍ଷଧରି ବସବାସ କରିଥିବା ଭାରତ ଓ ପାକିସ୍ଥାନର ଲୋକେ ନିଜ ପସନ୍ଦ ମୁତାବକ ଭିଟାମାଟି ଓ ଅର୍ପିତ ସଂପତ୍ତି ସବୁ ଛାଡ଼ିଗଲା ବେଳେ ଉଭୟ ପକ୍ଷ ଭିତରେ ଘୋର ବିବାଦ ଆରମ୍ଭ ହୋଇଛି ଏବଂ ଏ ବିବାଦ ଦ୍ୱାରା ପ୍ରଚଣ୍ଡ ହିଂସାକାଣ୍ଡ ଘଟିବ। ଦେଶର ଏ ବିଭାଜନ ଶହଶହ ବର୍ଷଧରି ଏକାଠି ବାସ କରି ଆସିଥିବା ହିନ୍ଦୁ ଓ

ମୁସଲମାନ ମାନଙ୍କୁ ପରସ୍ପର ପ୍ରତି ଶତ୍ରୁ ଭାବରେ ଠିଆକରି ଦେଇଛି । ତେଣୁ ଘରଦ୍ୱାର, ସଂପତ୍ତି ବାଡ଼ି, ଚାଷଜମି ଛାଡ଼ି ପଳାଇଗଲା ବେଳେ ଉଭୟଙ୍କ ମଧ୍ୟରେ ପ୍ରବଳ ଉତ୍ତେଜନା ଓ ହିଂସାକାଣ୍ଡ ଘଟିବ । ଅନେକ ସ୍ଥାନ ହିନ୍ଦୁ ମାନଙ୍କ ଯାଗା ଉପରେ ଯେଉଁ ସବୁ କେନାଲ ଲମ୍ବି ଯାଇଛି ସେସବୁର Embarkment ମୁସଲମାନ ମାନଙ୍କ ଯାଗାକୁ ମାଡ଼ି ବସିଛି ଏବଂ ମୁସଲମାନ ମାନଙ୍କ କ୍ଷେତ୍ରରେ ବୀପରିତ । ଏହିପରି ଅନେକ ବିବାଦୀୟ କାରଣ ହିଂସାକାଣ୍ଡର ଭୟଙ୍କରିତା କଳ୍ପନା କରିହେବ ନାହିଁ । ଏତେ ବଡ଼ ଯେଉଁ ସାଂପ୍ରଦାୟିକଦଙ୍ଗା ୧୯୪୭ ମସିହା ଅଗଷ୍ଟ ସେପ୍ଟେମ୍ବର ମାସରେ ଉତ୍ତର ଭାରତର ସିମାନ୍ତ ଅଞ୍ଚଳର ଘଟିଲା ତାହା କେହି କେବେ ଶୁଣି ନଥିଲେ କି ଦେଖି ନଥିଲେ କିମ୍ବା ଇତିହାସରେ ଘଟିନଥିଲା । ହତ୍ୟା, ଧର୍ଷଣ ପୋଡ଼ାଜଳା, ସମ୍ପତ୍ତି ଲୁଣ୍ଠନ, ବିଭସ୍ସ ଭୟଙ୍କାରିତା ପୃଥିବୀ ଇତିହାସରେ କେବେ ଦେଖାନଥିଲା । ଲକ୍ଷ୍ୟ ଲକ୍ଷ୍ୟ ଆତଙ୍କିତ ହିନ୍ଦୁ ଓ ମୁସଲମାନ ଭାରତ ଓ ପାକିସ୍ଥାନକୁ ପଳାଇଗଲା ପରେ ଯେଉଁ ବିଭସ୍ସ କାଣ୍ଡମାନ ଘଠିଲା, ତାହା ଅଭୁତପୂର୍ବ । ରାସ୍ତାଘାଟରେ ହଜାର ହଜାର ମୃତଦେହ ଅଙ୍ଗ ପ୍ରତ୍ୟେଙ୍ଗ ବିଚ୍ଛିନ୍ନ ହୋଇଗଲା ।  କାହାର ହାତ ଅଛି ତ ପାଦ ନାହିଁ, କାହାର ଗଣ୍ଡି ଅଛିତ ମୁଣ୍ଡନାହିଁ, ହସ୍ତପାଦହୀନ ମୃତଦେହ ପରେ ଦଳିଚକଟି ଦେଇ ଲକ୍ଷ୍ୟ ଲକ୍ଷ୍ୟ ଲୋକ ପସନ୍ଦ ମୁତାବକ ଭୟରେ ଛାନିଆଁ ହୋଇ ଭାରତ ବା ପାକିସ୍ଥାନକୁ ପଳାଇଗଲେ, ଭୟଙ୍କର ଅଗ୍ନିକାଣ୍ଡରେ ହଜାର ହଜାର ଘର ଜଳୁଥିଲା । ମହିଳା ଓ ଶିଶୁ ମାନଙ୍କ ଦୃର୍ଦ୍ଦଶା କହି ହେବନାହିଁ । ହାତରେ ଖଣ୍ଡା, ତରବାରୀ, ଶକ୍ତଲୁହା ଛଡ଼ ଓ କୃପାଳଧରି ସ୍ୱଷ୍ଟ ଦିବାଲୋକରେ ପରସ୍ପରକୁ ହାଣିଦେଉଥିଲେ । ଟ୍ରେନ୍‌ଗୁଡ଼ିକରେ ହସ୍ତ ପାଦହୀନ ମୁର୍ମୂଷୁ ହଜାର ହଜାର ଲୋକଙ୍କ ଭିଡ଼ରେ ଜାଗା ନଥିଲା । କିଏ ଟ୍ରେନ୍‌ର ଛାତ ଉପରେ କିମ୍ବା ଝରକାକୁ ଆଶ୍ରୟ କରି ବିକଳରେ ରକ୍ଷାକର ରକ୍ଷାକର ଚିତ୍କାର କରୁଥିଲେ । ଏପରିକି ଅମୃତସରରେ ପହଞ୍ଚିଲା ପରେ ଗୋଟିଏ ଟ୍ରେନ୍‌ରେ ମଲା ମଣିଷ ଛଡ଼ା ଯିବିତ କେହି ନଥିଲେ, ଏପରି କାଣ୍ଡ ଅଗଷ୍ଟ ମାସରୁ ସେପ୍ଟେମ୍ବର ମାସ ସୁଧା ଚାଲିଥିଲା ଓ କେହି କାହାକୁ ସାହାଯ୍ୟ କରି

ପାରୁନଥିଲେ । ପିତାହରା ପୁତ୍ର, ପୁତ୍ରହରା ପିତା, ମୃତ ପତିର ବିଧବା ପତ୍ନୀ, କ୍ଷତ ବିକ୍ଷତ ମହିଳା ଶିଶୁ କିମ୍ବା ଭାଇ ଓ ଭଉଣୀ କେହି କାହାରିକୁ ଖୋଜି ପାଉନଥିଲେ । ଗୋଟିଏ ଦିନରେ ଅମୃତସର ରେଲଷ୍ଟେସନରେ କୁଢକୁଢ ମୃତଦେହ ପଡିରହିଥିଲା । ସେମାନଙ୍କ ଭିତରେ କେଉଁଠି ଅର୍ଦ୍ଧମୃତ ନରନାରୀ କିମ୍ବା ମହିଳା ଶିଶୁ ବିକଳରେ ଆର୍ତ୍ତନାଦ କରୁଥିଲେ, ଏ ବିଭସ୍ତକାଣ୍ଡର ସିମା ନଥିଲା । ପଞ୍ଜାବ, ଅମୃତସର, ଲାହୋର ଓ କଲିକତାର ରାସ୍ତାଘାଟରେ ବିଞ୍ଚି ହୋଇ ପଡ଼ିଥିଲା ଅସଂଖ୍ୟ ଲୋକଙ୍କର ମୃତଦେହ । ମନେ ହେଉଥିଲା ହତ୍ୟା, ଧର୍ଷଣ ଓ ଲୁଣ୍ଠନ ପ୍ଲେଗରୋଗ ପରି ଗାଁରୁ ଗାଁକୁ ମାଡ଼ି ଯାଇଥିଲା । ୨ୟ ବିଶ୍ୱର ଚାରି ବର୍ଷରେ ଯେପରି ଆମେରିକାନ ମାନଙ୍କୁ ସଂହାର କରାଯାଇଥିଲା; ସବୁ ଘରଦ୍ୱାର ଭାଙ୍ଗି ଧୂଳିସାତ ହୋଇ ଶ୍ମଶାନରେ ପରିଣତ ହୋଇଥିଲା । ଏହା ନଥିଲା ଗୋଟିଏ ଯୁଦ୍ଧ କିମ୍ବା ଗୃହଯୁଦ୍ଧ ଅଥବା ଗରିଲା ଆକ୍ରମଣ । ଏଥିଲା ଅକସ୍ମାତ ଏକ ଧ୍ୱଂସଲୀଳା କିମ୍ବା ଏକ ଦୁର୍ଗର ପତନ । କିମ୍ବା ଏକ ବିସ୍ଫୋରଣ । ଜଣେ ଜଣକୁ ହାଣି ମାରିବା ଥିଲା ପଞ୍ଜାବର ଏକ ସାଧାରଣ ଦୃଶ୍ୟ । ପେସ୍‌ୱାର ସହରରେ ଚା ଦୋକାନ, ହୋଟେଲ, ରେଲ ଷ୍ଟେସନ, ବସ୍‌ଷ୍ଟାଣ୍ଡ, ବସ୍ତି ଅଞ୍ଚଳ, କଳ କାରଖାନା, ହାଟ ସବୁଆଡ଼େ ଶହଶହ ବର୍ଷ ଧରି ଏକାଠି ବାସ କରି ଆସୁଥିବା ଲୋକେ ହଠାତ୍ ପରସ୍ପର ଉପରକୁ ଝାମ୍ପି ପଡ଼ି ହତ୍ୟାକାଣ୍ଡରେ ମାତିଗଲେ । ସେବା ସହାନୁଭୂତି, ଦୟା କ୍ଷମା ଏବଂ ସହନଶୀଳତାରେ ଯେଉଁ ଭାରତ ବିଶ୍ୱ ପ୍ରସିଦ୍ଧ ଓ ଆଦର୍ଶ, ସେଇ ଭାରତର ହିନ୍ଦୁ, ମୁସଲମାନ, ଶୀଖ୍ ପରସ୍ପର ପ୍ରତି ଏପରି ହିଂସ୍ର ହୋଇ ପାରନ୍ତି ଏକଥା କେହିବି କଳ୍ପନା କରି ନଥିଲେ । ଯିଏ ଯାହାକୁ ଯେଉଁଠି ପାଇଲା, ଗଳା କାଟି, ପେଟରେ ଛୁରୀ ଭୂଷି, ଖପୁରୀକୁ ପଥରରେ ଛେଚି, ଛାତିରେ ଡେଣ୍ଟା ପାହାର କରି କିମ୍ବା ଗଣ୍ଡିରୁ ମୁଣ୍ଡ ଅଲଗା କରି ମାରିଲେ ଆଉ ମାରିଲେ । Sir Radetief ଯେଉଁ ମ୍ୟାପ୍ ପ୍ରସ୍ତୁତ କରିଥିଲେ ସେଥିରେ ପାଞ୍ଚ ମିଲିୟନ୍ ଶୀଖ୍ ଓ ହିନ୍ଦୁ ପାକିସ୍ଥାନରେ,ପାଞ୍ଚ ମିଲିୟନ୍‌ରୁ ଉର୍ଦ୍ଧ୍ୱ ମୁସଲିମ୍ ଭାରତରେ ଦର୍ଶା ଯାଇଥିଲା । ଜିନା ଓ ମୁସଲିମ୍ ଲିଗ୍‌ର ଉତ୍ତେଜନା ପୂର୍ଣ୍ଣ ନିର୍ଦ୍ଦେଶରେ ହତ୍ୟାକାଣ୍ଡ ଘଟିଥିଲା ଓ ଭୟ ଏବଂ

ଆତଙ୍କରେ ଲକ୍ଷଲକ୍ଷ ହିନ୍ଦୁ ମୁସଲମାନ ଦେଶାନ୍ତର ହୋଇଗଲେ। ଦୁଇ ଦେଶର ସୀମାନ୍ତରେ ପଞ୍ଜାବର ଶୀଖ୍‌ମାନେ ଜଣେହେଲେ ମୁସଲମାନ ମାନଙ୍କୁ ରଖାଇ ଦେଲେ ନାହିଁ ଏବଂ ସେମାନଙ୍କର ସମସ୍ତ ଘରଦ୍ୱାର, ଦୋକାନ ବଜାର, କଳକାରଖାନା ଓ ଜମିବାଡ଼ି ଅଧିକାର କରିନେଲେ। ହତ୍ୟା, ଧର୍ଷଣ ଓ ଲୁଣ୍ଠନରେ ସବୁ ପାଲଟିଗଲା ବିଭତ୍ସ ନର୍କପୁରୀ। ବହୁସ୍ଥାନରେ ମୁସଲମାନେ ହିନ୍ଦୁ ମାନଙ୍କୁ ଇସଲାମ ଧର୍ମ ଗ୍ରହଣ କରିବାକୁ ବାଧ କଲେ, ନମାନିଲେ ହତ୍ୟା କଲେ। ହିନ୍ଦୁ ମହିଳାମାନେ ଧର୍ଷଣକୁ ଭୟକରି ଆତ୍ମହତ୍ୟା କଲେ। ବହୁ ସ୍ଥାନରେ ଶୀଖ୍‌ମାନେ ଓ ମୁସଲମାନମାନେ ପରସ୍ପର ବିରୋଧି ମହିଳା ମାନଙ୍କର ସ୍ତନ ଯୁଗଳ କାଟି ଜନେନ୍ଦ୍ରିୟ ମାନଙ୍କରେ ଲୁହାଛଡ଼ ଭୂଷି ଦେଇଗଲେ। ଅବିବାହିତା ଯୁବତୀ ମାନଙ୍କର କରୁଣ ଦୁର୍ଦ୍ଦଶା ନକହିଲେ ଭଲ। ବହୁ ସ୍ଥାନରେ ହିନ୍ଦୁ ଓ ଶୀଖ୍‌ମାନେ ନିଜ ସ୍ତ୍ରୀ ବା କନ୍ୟା ମାନଙ୍କର ସତୀତ୍ୱ ରକ୍ଷା ପାଇଁ ନିଜେ ସେମାନଙ୍କୁ ହତ୍ୟା କଲେ। ସୀମାନ୍ତରେ ମୃତଦେହ ଛଡ଼ା ପାଦ ପକାଇବାକୁ ଆଉ ଯାଗା ନଥିଲା। କଲିକତାରେ ସେହିପରି ତୁମୁଳ ହିଂସାକାଣ୍ଡ, ରାସ୍ତାଘାଟ, ଦୋକାନ ବଜାର ଓ ଗଳି କନ୍ଦିରେ ବ୍ୟାପୀଗଲା। ଅଗଷ୍ଟ ୧୭ ତାରିଖ ୧୯୪୭, ପ୍ରାୟ ସନ୍ଧ୍ୟା ପାଞ୍ଚଟା ବେଳକୁ ନାରିକେଳ ଡୋଙ୍ଗାଡ଼ାରେ ୧୦୦,୦୦୦ ଅପେକ୍ଷା ଉତ ଲୋକ ରୁଣ୍ଡ ହୋଇଥିଲେ। ଏହାର ଚତୁର୍ଦ୍ଦିଗ କୋଠାବାଡ଼ିର ଛାତ ଉପରେ ଝୁଲନ୍ତା ଅବସ୍ଥାରେ ଝରକା ମାନଙ୍କରେ, ବାଲକୋନୀ ମାନଙ୍କରେ ମରି ପଡ଼ିଥିବା କୁଢକୁଢ ମୃତଦେହ। ଗଛରେ ପାଚିଲା ଫଳପରି ଚାରିଆଡ଼େ ବିଞ୍ଛିହୋଇ ପଡିଥିଲା କଟାମୁଣ୍ଡ ସବୁ। ଏପରି ବିଭତ୍ସକାଣ୍ଡ କଲିକତାର ସବୁଆଡ଼େ ମୃତ୍ୟୁର ଦେବତାପରି ତାଣ୍ଡବ ନୃତ୍ୟ କରୁଥିଲା। କଲିକତା ଥିଲା ଏସିଆ ମହାଦେଶର ସବୁଠାରୁ ବହୁ ନୃସଂଶ ସହର। ନାରିକେଳ ଡୋଙ୍ଗାଡ଼ାରେ ଯେଉଁ ୧୦୦,୦୦୦ ଲୋକ ରୁଣ୍ଡ ହୋଇଥିଲେ ଦେବଦୂତଙ୍କୁ ଦର୍ଶନ କରିବା ପାଇଁ ସେମାନେ ସମସ୍ତେ ତ୍ରସ୍ତକାତର ଉଦ୍‌ବିଗ୍ନ ଅସହାୟ। ଯେଉଁ କ୍ଷୁଦ୍ରକାୟ ବ୍ୟକ୍ତି ଜଣକ ଏସିଆର ସବୁଠାରୁ ନୃଶଂସ ସହର କଲିକତାରେ ସଂପ୍ରଦାୟିକ ଦଙ୍ଗାକୁ ଆୟତ୍ତ କରିପାରିଥିଲେ ତାଙ୍କରି ସନ୍ଧ୍ୟା

ଦର୍ଶନ ପାଇଁ ଏମାନେ ସବୁଥିଲେ ବ୍ୟାକୁଳ। ସମୟ ପରେ ସେଇ ମହାତ୍ମା ପହଞ୍ଚିଲେ। ତାଙ୍କର ଆସିବା ମାତ୍ରେ ସମସ୍ତଙ୍କ ପ୍ରାଣରେ ଚହଟି ଉଠିଲା ଏକ ଆନନ୍ଦର ତରଙ୍ଗ। ସମସ୍ତେ ହୋଇ ଉଠିଲେ ନୂଆ ଜୀବନ ପ୍ରାପ୍ତ ଚଳଚଞ୍ଚଳ ତରୁଣ ପରି, ଧୈର୍ଯ୍ୟ ଓ ସହନଶୀଳତାରେ ପାହାଡ଼ ପରି ଅଟଳ ଆଉ ଦୁର୍ଗତ ପାଇଁ ଦେବଦୂତ। ଶୀର୍ଣ୍ଣକଙ୍କାଳସାର ଦେହ, ଆଖିରେ ଦିବ୍ୟ ତେଜ, ଆଉ ମୁଖରେ ଅପୂର୍ବ ହସ। ସେ କ୍ଷୁଦ୍ରକାୟ ବ୍ୟକ୍ତି ଜଣକ ଆସିଲେ ହାତରେ ଖଣ୍ଡିଏ ବାଡ଼ି ଓ ପ୍ରାର୍ଥନା ସଭାର ଆସନ। କାରଣ ଯେ କୌଣସି ଅବସ୍ଥାରେ ଥିଲେ ବି ପ୍ରାର୍ଥନା ପାଇଁ ଏଇ ଖଣ୍ଡିକ ତାଙ୍କ ବସିବାର ଆସନ। ପଞ୍ଜାବଠାରୁ ଅଠରଶହ ମାଇଲ ଦୂର ଏହି ସହରରେ ହିନ୍ଦୁ ଓ ମୁଲମାନଙ୍କ ମଧ୍ୟରେ ସାଂପ୍ରଦାୟିକ ଦଙ୍ଗା, ହଣାକଟାର ବିଭତ୍ସ ଦୃଶ୍ୟ। ହଠାତ୍ ପ୍ରାର୍ଥନା ସଭାର ସମୟ ଦେଖି ବସିବା ପାଇଁ ସମସ୍ତଙ୍କୁ ସଂକେତ ଦେଇ ନିଜେ ଚକାଆସନ ପକାଇ ବସି ପଡ଼ି କହିଲେ, ପ୍ରାର୍ଥନାର ଅର୍ଥ ଭଗବାନଙ୍କୁ ସାକ୍ଷୀ ରଖି ନିଜ କର୍ତ୍ତବ୍ୟରେ ନିଜକୁ ସମର୍ପଣ କରିବା। ସମସ୍ତଙ୍କ ତୁଣ୍ଡରେ ମୋ ପ୍ରତି ଧନ୍ୟବାଦର ବର୍ଷା ଦେଖି ମୁଁ ସ୍ତବ୍ଧ। କଲିକତାରେ ଅବଶ୍ୟ ପରିବର୍ତ୍ତନ ଘଟିଛି, ଶାନ୍ତି ଫେରିଛି। କିନ୍ତୁ ଆହୁରି କିଛି ଅଞ୍ଚଳ ଅଛି, ଯେଉଁଠି ତଥାପି ହିଂସା ଓ ଉତ୍ତେଜନା ଲାଗି ରହିଛି। ସେ ତାଙ୍କର ସମସ୍ତ ହିନ୍ଦୁ ଓ ମୁଲସମାନ ଅନୁଚରଙ୍କୁ କହିଲେ କଲିକତାରେ ଶାନ୍ତି ଫେରିଛି ଭଗବାନଙ୍କ ଦୟାରୁ। ଏବେ ଆମ ମସସ୍ତଙ୍କ କର୍ତ୍ତବ୍ୟ ହେଲା, ଏ ଶାନ୍ତିକୁ ଦୀର୍ଘସ୍ଥାୟୀ କରିବା। ଏହା ନିର୍ଭର କରେ ଆମ ସମସ୍ତଙ୍କ ଆଚରଣ ଉପରେ। ପଞ୍ଜାବର ୫୫୦୦୦ ସୀମାନ୍ତ ରକ୍ଷୀ ଶାନ୍ତିରକ୍ଷା କରିବାକୁ ଯେତେବେଳେ ସମର୍ଥ ହେଲେ ନାହିଁ, ଏଠାରେ ଅସ୍ତ୍ରଶସ୍ତ୍ରରେ ସଜ୍ଜିତ ଲୋକମାନେ ତାହା କରିବେ କିପରି ? ହିଂସାତ୍ମକ ଆଚରଣ ଶାନ୍ତି ପ୍ରତିଷ୍ଠା କରିପାରେ ନାହିଁ। ଶାନ୍ତି ପ୍ରତିଷ୍ଠା କରିବାକୁ ହେଲେ ଅହିଂସା ଆଚରଣ ଏକ ମାତ୍ର ଉପାୟ। ଏକଥା ତୁମେ ସମସ୍ତେ ବୁଝିବା ଦରକାର। ଆମେ ସମସ୍ତେ ମଣିଷ, ମଣିଷ ପରି ଅହିଂସା ଆଚରଣ ନ କରି ପଶୁପରି ହିଂସା କରିବା କାହିଁକି ? ପଞ୍ଜାବର ୧୮ଟା ଜିଲ୍ଲା ଦଙ୍ଗାଗ୍ରସ୍ତ ହୋଇ ଅସଂଖ୍ୟ ଲୋକଙ୍କର ପ୍ରାଣଗଲା। ୧୮ଟା

ଜିଲ୍ଲାର ଆୟତନ ପାଲେଷ୍ଟାଇନ୍ ସଙ୍ଗେ ସମାନ । ସେଠାରେ ଲକ୍ଷେ ବ୍ରିଟିଶ୍ ସୈନ୍ୟ ଆଇନ ଶୃଙ୍ଖଳା ରକ୍ଷା କରିବାକୁ ଅସମର୍ଥ ହୋଇଥିଲେ । ପାକିସ୍ଥାନର ଅବସ୍ଥା ଆହୁରି ଖରାପ । ସେ ଦେଶରେ ଅରାଜକତା ବ୍ୟାପୀବାକୁ ବସିଲାଣି । ଯେଉଁମାନେ ପାକିସ୍ଥାନ ରାଷ୍ଟ୍ର ଗଠନ କରିବାକୁ ହିଂସାର ଆଶ୍ରୟ ନେଲେ ସେମାନେ ବୁଝି ପାରିଲେ ନାହିଁ ପାକିସ୍ଥାନ କେତେ ସମସ୍ୟାର ସମ୍ମୁଖୀନ ହେବ । ଖାଦ୍ୟ, ବସ୍ତ୍ର, ବାସଗୃହ, ବ୍ୟାଧି ଇତ୍ୟାଦି ସମସ୍ୟାର ସମାଧାନ୍ ପାଇଁ ପାକିସ୍ଥାନର ଭିତ୍ତିଭୂମି ନାହିଁ । ଝୋଟ ଓ ଆଖୁ ସେଠାରେ ପ୍ରଧାନ କୃଷିଜାତ ଫସଲ । କିନ୍ତୁ ଝୋଟରୁ ଅନେକ ପ୍ରକାର ସାମଗ୍ରୀ ତିଆରି କରିବା ପାଇଁ କାରଖାନା ନାହିଁ କି ତାକୁ ବାହାରକୁ ପଠାଇବାର କିଛି ବ୍ୟବସ୍ଥା ନାହିଁ । ଆଖୁଥିଲେ କ'ଣ ହେବ ? ଚିନି କରିବାକୁ କାରଖାନା ନାହିଁ । ଦେଶ ଚଳାଇବା ପାଇଁ ଅର୍ଥବଳ ଆବଶ୍ୟକ । ତାଲିମପ୍ରାପ୍ତ ଉପଯୁକ୍ତ ଅଧିକାରୀମାନେ ଦରକାର । ବ୍ୟାଙ୍କ, ଅଫିସ, ଶିକ୍ଷାୟତନ, ସ୍ୱାସ୍ଥ୍ୟ ସେବା ଇତ୍ୟାଦି ବିଭିନ୍ନ କାମ ପାଇଁ ଦକ୍ଷ କର୍ମଚାରୀ ଦରକାର । ପାକିସ୍ଥାନରେ ଏ ସବୁ ନାହିଁ, ଯୋଗାଡ଼ କରିବାକୁ ସମୟ ଲାଗିବ । ତେଣୁ ଲୋକଶକ୍ତିର ଅପଚୟ ନକରି ଧିରସ୍ଥିର ଭାବରେ ପ୍ରଥମେ ଭିତ୍ତିଭୂମି ତିଆରି କରିବା ଆବଶ୍ୟକ, ତା ନକରି ହିଂସା ଆଚରଣ ଦ୍ୱାରା ମାନବ ସମ୍ବଳକୁ ଧ୍ୱସ୍ତ ବିଧ୍ୱସ୍ତ କରି କି ଲାଭ ପାଇବ । ସୁତରାଂ ଗୋଟିଏ ରାଷ୍ଟ୍ରର ମର୍ଯ୍ୟାଦା ପାଇବାକୁ ହେଲେ ପ୍ରତ୍ୟେକ କ୍ଷେତ୍ରରେ ପାକିସ୍ଥାନକୁ ଧୈର୍ଯ୍ୟ ଓ ଅହିଂସା ଆଚରଣ କରିବାକୁ ହେବ । କେବଳ ସାଇନବୋର୍ଡ଼ରେ ପାକିସ୍ଥାନ ବୋଲି ଲେଖିଦେଲେ ଲୋକଙ୍କର ଦୁଃଖ ଯିବନାହିଁ । ତା'ଛଡ଼ା ପାକିସ୍ଥାନ ଦେଶ ସହିତ ବିଶେଷ କରି ପଡ଼ୋଶୀ ଦେଶ ମାନଙ୍କ ସହିତ ଉତ୍ତମ ବନ୍ଧୁଭାବ ରଖିବାକୁ ହେବ । ଏହା ହିଁ ପାକିସ୍ଥାନକୁ ଏକ ଉତ୍ତମ ରାଷ୍ଟ୍ରରେ ପରିଣତ୍ କରିବ । ମୁଁ ଜଣେ ହିନ୍ଦୁ ଏବଂ ଶ୍ରୀମଦ୍ ଭାଗବତ ଗୀତା ମୋର ସମସ୍ତ ସଂକଟ କାଳର ଆଶ୍ରୟ । ଜାତି ଭେଦରେ ମଣିଷଙ୍କୁ ମୁଁ ପୃଥକ ପୃଥକ ଭାବରେ ଦେଖେ ନାହିଁ । ମୁଁ ଦେଖେ ସବୁ ମଣିଷ ସମାଜ ଓ ସବୁ ଦେଶରେ ମଣିଷର ଚରିତ୍ର ବି ସମାନ । ହିନ୍ଦୁ ଓ ମୁସଲମାନ ସମସ୍ତେ ମୋ ପାଖରେ

ସମାନ ଦେଶର ବିଭାଜନ ମୁଁ ଚାହେଁନା । କାରଣ ହଜାର ହଜାର ବର୍ଷ ଧରି ସେମାନେ ଭାରତରେ ଏକାଠି ବାସ କରି ଆସୁଛନ୍ତି । ଦେଶ ବିଭାଜନ ହେଲେ ବେଶୀ କ୍ଷତି ହେବ ମୁସଲମାନ ମାନଙ୍କର । କିଏ କାହାକୁ ଶତୃ ଭାବରେ ଆକ୍ରମଣ କରିଥିଲା ସେ ସବୁ ଇତିହାସ । ପୁରୁଷ ପୁରୁଷ ଧରି ପଛରେ କିଏ କାହାକୁ ପରାସ୍ତ କରି ଦେଶ ଜୟ କରିଥିଲା । ସେ କଥାକୁ ଏବେ ଧରି ବସିଲେ କି ଲାଭ ପାଇବା ? କେବଳ ଅଶାନ୍ତି ଓ ଶତୃତା ବଢ଼ିବ, ଶତୃତା ତ ହିଂସାର କାରଣ । ହିଂସା ପଶୁର ଲକ୍ଷଣ । ବହୁକାଳ ଧରି ଦେଶଜୟ କରିବା ଥିଲା ଏକ ରାଜୀକୟ ପରଂପରା । ଏବେ ଆମେ ସ୍ୱାଧୀନ । ନିଜ ଦେଶକୁ ନିଜେ ଶାସନ କରିବା । ଭାରତ ହେଉ କି ପାକିସ୍ଥାନ, ଉଭୟେ ସ୍ୱାଧୀନ ରାଷ୍ଟ୍ର । ସ୍ୱାଧୀନ ରାଷ୍ଟ୍ରର ମୁଖ୍ୟକାମ ଜନମଙ୍ଗଳ, ଜନ ଅସନ୍ତୋଷ ନୁହେଁ କି ଜନଶକ୍ତିର ଅପଚୟ ନୁହେଁ । ଜନଶକ୍ତି ହିଁ ଦେଶର ଅସଲ ସମ୍ବଳ । ଯେତେ ପ୍ରାକୃତିକ ସମ୍ବଳ ଥାଉ, ଜନଶକ୍ତିର ଅଭାବରେ ସେ ସବୁ କି କାମରେ ଆସିବ ? ସେ ସବୁକୁ ଉତ୍ତୋଳନ କରିବ କିଏ ? ତେଣୁ ଲୋକଶକ୍ତିର ସୁରକ୍ଷା ହେଲେ ଦେଶର ବିକାଶ ହେବ ତେଣୁ ଶାନ୍ତିରକ୍ଷା ଆମର ଦାୟିତ୍ୱ । ଆସ ସମସ୍ତେ ସର୍ବଶକ୍ତି ମାନଙ୍କୁ ସ୍ମରଣ କରି ପ୍ରାର୍ଥନା କରିବା ।

ତାଙ୍କ କଥାରେ କି ମନ୍ତ୍ରଶକ୍ତି ଥିଲା କେଜାଣି ଲକ୍ଷଲକ୍ଷ ଲୋକ ଶାନ୍ତ ଭାବରେ ବସି ପଡ଼ିଲେ ପ୍ରାର୍ଥନା ସଭାରେ । ପ୍ୟାରିଲାଲ ନାୟାର ଭାବୁଥିଲେ ଅନେକ ବର୍ଷ ତଳେ ଉପବାସ ଭାଙ୍ଗିଲା ପରେ ସେ ତାଙ୍କୁ କର୍ମପ୍ରବଣ, ଅପୂର୍ବ ଶକ୍ତିର ଉତ୍ସ ଓ ତେଜିଆନ ଭାବେ ଦେଖିଥିଲେ, ଏବେ ବି ସେ ସେହିପରି ଅଛନ୍ତି । ୧ ୯ ୨ ୯ ର ଲବଣ ସତ୍ୟାଗ୍ରହ ସଫଳତା ପରେ ଅନେକ ସ୍ୱପ୍ନ ତାଙ୍କର ଆଖି ଆଗରେ ଭାସି ଉଠିଥିଲା । କାରଣ ଲବଣ ସତ୍ୟାଗ୍ରହର ଅଭୁତ ସଫଳତା ଦେଖି ସାରା ବିଶ୍ୱ ବିସ୍ମୟରେ ସ୍ତବ୍ଧ ହୋଇ ଯାଇଥିଲା । ସାରା ବିଶ୍ୱର States Man ଭଳି ସମ୍ବାଦପତ୍ର ଠାରୁ ଆରମ୍ଭ କରି ପୃଥିବୀର ସବୁ ଖବର କାଗଜରେ ପ୍ରକାଶ ପାଇଥିଲା ଓଃ କି ଅଭୁତ, ୭୮ ବର୍ଷର ବୃଦ୍ଧଙ୍କର ଏ ଶକ୍ତି ଆସିଲା କୁଆଡୁ ? ସାରା ବିଶ୍ୱର ଚିନ୍ତା

ଜଗତକୁ ଓଲଟପାଲଟ କରିଦେଲା । ଖାଲି ଯେ ଏପରି ଖବର ପ୍ରକାଶ ପାଇଥିଲା ତା' ନୁହେଁ ସାରା ବିଶ୍ୱର ସମ୍ବାଦ ପତ୍ରର ପ୍ରତିନିଧିମାନେ ଭାରତକୁ ଆସି ତାଙ୍କର ଫଟୋ ଉଠାଇଥିଲେ ଏବଂ ଏପରି ଶକ୍ତି ସେ ପାଇଲେ କେଉଁଠୁ ବୋଲି ପଚାରିଥିଲେ । ଗାନ୍ଧି କହିଥିଲେ ଶକ୍ତିର ଉତ୍ସ ଆତ୍ମା । ୨୪୦ ମାଇଲ ବାଟ ପାଦରେ ଚାଲି ଚାଲି ଯିବାକୁ ଆପଣମାନେ ଅଦ୍ଭୁତ କଥା ବୋଲି ଭାବୁଛନ୍ତି କିନ୍ତୁ ଆତ୍ମାର ଶକ୍ତିକୁ ଜାଗ୍ରତ କରିପାରିଲେ ଲକ୍ଷ ଲକ୍ଷ ମାଇଲ୍ ଯିବାକୁ କିମ୍ବା ପାହାଡ଼ ପର୍ବତ ଚଢ଼ିବାକୁ ଆତ୍ମଶକ୍ତି ମଣିଷକୁ ସକ୍ଷମ କରେ । ଦେହ କ୍ଳାନ୍ତ ହୁଏନା କି ମନ ଥକି ପଡ଼େନା । ଏହା ଭାରତ ବର୍ଷର ନିଜସ୍ୱ ପ୍ରାଚୀନ ବିଦ୍ୟା । କୌଣସି ମହତ୍ତ୍ୱର କାର୍ଯ୍ୟ ସମ୍ପାଦନ କରିବାକୁ ହେଲେ ଭଗବାନଙ୍କ ପାଖେ ନିଜକୁ ସମର୍ପଣ କରିଦେଇ ଏହିପରି ଆଧ୍ୟାତ୍ମିକଶକ୍ତି ମଣିଷକୁ ମିଳିଥାଏ । ଏହା ଭାରତର ବର୍ଷର ବେଦ, ଗୀତା ଓ ଏହିପରି ଅନେକ ପ୍ରାଚୀନ ଗ୍ରନ୍ଥରେ ପ୍ରଚାରିତ ହୋଇଛି । ଆତ୍ମ କୈନ୍ଦ୍ରିକ ନହୋଇ କେବଳ ଦେହ ସର୍ବସ୍ୱ ମଣିଷକୁ ଏହି ଆଧ୍ୟାତ୍ମିକ ଶକ୍ତି ମିଳିବା ସମ୍ଭବ ନୁହେଁ John raxin ଲେଖିଥିଲେ । ଗାନ୍ଧିଙ୍କର ଆଦର୍ଶଗତ ପ୍ରତିବାଦ ଯେ କୌଣସି ଶକ୍ତିଶାଳୀ ବୋମା ବିସ୍ଫୋରଣ ଠାରୁ ଆହୁରି ଶକ୍ତିଶାଳୀ । ସେ କେବଳ ଜଣେ ଜନରାଜନୀତିଜ୍ଞ ନୁହଁନ୍ତି, ସେ ରାଜନୀତିଜ୍ଞ ମଧ୍ୟରେ ଜଣେ ମହର୍ଷି । ଏସବୁ ପ୍ରଶଂସା ପ୍ରତି ଅନାସକ୍ତ ଗାନ୍ଧି ସବୁ ସୋମବାର ବିରଳା ଭବନରେ ମୌନବ୍ରତ ପାଳନ କଲେ । କିନ୍ତୁ ଦୁଷ୍ଟ ଲୋକଙ୍କର କୁତ୍ସା ତାଙ୍କୁ ସ୍ପର୍ଶ କରି ନଥିଲା । ଉପବାସ ବ୍ରତର ଶେଷ ଦିନରେ ବିରଳା ହାଉସ୍ ଶାନ୍ତ ପଡ଼ିଗଲା ଏବଂ ତାଙ୍କ ସାମନାରେ ଅହିଂସାର ଶକ୍ତି ଭାସି ଉଠିଲା । ହେଲେ ଉପବାସ ହେତୁ ତାଙ୍କ ସ୍ୱାସ୍ଥ୍ୟହାନୀ ଘଟିଲା, ଭୋଜନ କମିଗଲା । ମାତ୍ର ହଠାତ୍ ତାଙ୍କ କିଡ଼ନୀ ପୁଣି ସକ୍ରୀୟ ହୋଇଉଠିଲା । ସେ ସୁସ୍ଥ ଅନୁଭବ କଲେ । ଠିକ୍ ଏତିକିବେଳେ ଛ'ଜଣ ବ୍ୟକ୍ତି ବିରଳା ହାଉସ୍‌କୁ ପ୍ରବେଶ କଲେ ଏବଂ କେତେବେଳେ ଓ କିପରି ସେମାନେ ଗାନ୍ଧିଙ୍କୁ ହତ୍ୟା କରିବେ ଭାବି ସେମାନଙ୍କ ଅସ୍ତ୍ରକୁ ପରୀକ୍ଷା କରିନେଲେ । ଏହି ପରୀକ୍ଷା କରିଥିଲେ ନାଥୁରାମ ଗଡ଼ସେ ଓ ନାରାୟଣ ଆପଟେ । ଗୋପାଲ

ଗଡ଼ସେ ଗୋଟିଏ ଗଛ ଆଡୁଆଳରେ ରହି ଦୁଇ ଶହ ଟଙ୍କା ଦେଇ ପୁନାରୁ କିଣିଥିବା ପିସ୍ତଲ ଗାନ୍ଧିଙ୍କୁ ଲକ୍ଷ କରି ଟ୍ରିଗାର ଦାବିଲେ, କିଛି ହେଲା ନାହିଁ। ସେ ପୁଣି ଥରେ ଚେଷ୍ଟା କଲେ। ତଥାପି କିଛି ହେଲା ନାହିଁ। ଗୋପାଲ ଗୋଟିଏ ଗଛକୁ ଲକ୍ଷ୍ୟ କରି ପିସ୍ତଲରୁ ଗୁଳି ଫୁଟାଇଲା। ଶବ୍ଦ ହେବାରୁ, ଗଛରେ ଗୁଳିର ଦାଗ କିପରି ଲାଗିଛି ବୋଲି ଜାଣିବା ପାଇଁ ସେ ଯାଇ ଗଛକୁ ଦେଖିଲା। ଗଛରେ ଗୁଳିର ଦାଗ ନଥିଲା। ସେଦିନ ଯେଉଁ ବିଶିଷ୍ଟ ବ୍ୟକ୍ତି ବିରଳା ହାଉସ୍‌କୁ ଆସିଥିଲେ ସେ ଥିଲେ ଜଣେ କପା ବ୍ୟବସାୟୀ। ଯାହାଙ୍କୁ ତାଙ୍କ ପାକିସ୍ଥାନ ଗସ୍ତର ବନ୍ଦୋବସ୍ତ କରିବାକୁ ଗାନ୍ଧି କରାଚୀ ପଠାଇଥିଲେ। ଏତିକିବେଳେ ଜାହାଙ୍ଗିର, ପଟେଲ, ଜିନାଙ୍କ ସହିତ ଗୁପ୍ତମନ୍ତ୍ରଣା କରୁଥିଲେ ଗାନ୍ଧିଙ୍କ ପାକିସ୍ଥାନ ଗସ୍ତ ବିଷୟରେ ତାଙ୍କର ପ୍ରତିକ୍ରିୟା ଜାଣିବାକୁ। କାରଣ ତାଙ୍କରି କୌଶଳର ଶୀକାର ହୋଇ ତାଙ୍କୁ କଂଗ୍ରେସ ଛାଡ଼ିବାକୁ ପଡିଥିଲା ବୋଲି ତାଙ୍କର ବିଶ୍ୱାସ। ସେ ଗାନ୍ଧିଙ୍କୁ ଜଣେ ଚତୁର ଶୃଗାଳ ବୋଲି ବିଚାର କରୁଥିଲେ। ଏପରି ଜଣେ ଶତୃକୁ ପାକିସ୍ଥାନ ଆସିବାକୁ ସେ ସହଜରେ ଗ୍ରହଣ କରିପାରୁ ନଥିଲେ। ଶେଷରେ ଗାନ୍ଧିଙ୍କ ପାକିସ୍ଥାନ ଆସିବାକୁ ସେ ସ୍ୱାଗତ କଲେ। ଏହା ଶୁଣି ଗାନ୍ଧି ଚକିତ ହେଲେ। ସେ ଭାବିଲେ ତାଙ୍କ ଅହିଂସା ତତ୍ତ୍ୱ ଭାରତ ବାହାରକୁ ବି ଚାଲିଗଲା, ଭାରତର ଭୌଗୋଳିକସ୍ଥିତି ସିନା ଦୁଇଭାଗ ହୋଇଯାଇଛି, କିନ୍ତୁ ସେ ଉପମହାଦେଶର ଆଧ୍ୟାତ୍ମିକ ଆତ୍ମାକୁ ଭାଗ ଭାଗ ହେବାକୁ ଦେବେନାହିଁ। ବମ୍ବେରୁ ଗାନ୍ଧି ବୋଟରେ ଆସନ୍ତୁ ବୋଲି ଜିନା ଚାହୁଁଥିଲେ। କିନ୍ତୁ ଗାନ୍ଧି ଯେପରି ଚାଲି ଚାଲି ଯାଇଥିଲେ ଲବଣ ସତ୍ୟାଗ୍ରହ କିମ୍ବା ହଜାର ହଜାର ଗାଁକୁ ଗାଁ ପାଦରେ ଚାଲି ଚାଲି ଅହିଂସା ମନ୍ତ୍ର ପ୍ରଚାର କରିଥିଲେ ଅଥବା ସେ ଯେପରି ହଜାର ହଜାର ଗାଁକୁ ପାଦରେ ଚାଲି ଚାଲି ପରିବେଶ ସୁରକ୍ଷା ଓ ଭାତୃ ଭାବରେ ପ୍ରସାର କରୁଥିଲେ, ଠିକ୍ ସେହିପରି ସେ ପାଦରେ ଚାଲି ଚାଲି ପାକିସ୍ଥାନ ଯିବେ। କାରଣ ପାଦରେ ଚାଲି ଚାଲି ଗଲେ ଅନେକ ଆହତ, କ୍ଷତ ବିକ୍ଷତ ଓ ପଞ୍ଜାବର ମୃତକଙ୍କ ପରିବାରର ଅସଂଖ୍ୟ ବନ୍ଧୁଙ୍କୁ ସେ ଭେଟିବେ। ବର୍ଷକ ତଳେ ସେ ନୂଆଖାଲିରେ ପାଦରେ ଚାଲି ଚାଲି ଆତଙ୍କ ଓ

ଦୁର୍ଗତ ମାନଙ୍କ ମଧ୍ୟରେ ସେପରି ପ୍ରେମର ବାର୍ତ୍ତା ପ୍ରଚାର କରୁଥିଲେ, ଆଜି ସେହିପରି ତାଙ୍କୁ ପାକିସ୍ଥାନର ଅସଂଖ୍ୟ ବନ୍ଧୁଙ୍କ ଗ୍ରହଣରେ ଭାତୃଭାବରେ ପ୍ରଚାର କରିବାକୁ ହେବ। ଆଜି ସିନା ସେମାନେ ବିଦେଶୀ ହୋଇଯାଇଛନ୍ତି, କାଲି ଆମେ ଏକା ଦେଶର ଭାଇ ଭାଇ ଥିଲୁ। ତେଣୁ ସେ ପାଦରେ ଚାଲି ଚାଲି ପାକିସ୍ଥାନ ଯିବେ। ମାତ୍ର ଯେଉଁ ପାଦ ତାଙ୍କୁ ପାକିସ୍ଥାନ ନେଇଯିବ, ସେ ପାଦ ଆଜି ବିରଳା ହାଉସ୍‌ର ଲନ୍ ଡେ଼ଇଁବାକୁ ଭିଡ଼ି ଧରୁଛି, ସନ୍ଧ୍ୟା ପ୍ରାର୍ଥନାସଭାକୁ ସେ ମୂର୍ଚ୍ଛି ପାରୁନାହାଁନ୍ତି। ପ୍ରତିଦିନ ନିୟମିତ ସନ୍ଧ୍ୟା ପ୍ରାର୍ଥନା ସଭାରେ ସେ ଭେଟୁଥିଲେ ଅସଂଖ୍ୟ ଦର୍ଶନାଭିଳାସୀ ପ୍ରିୟ ଦେଶବାସୀଙ୍କୁ। ଏହି ପ୍ରାର୍ଥନାସଭାର ମୋହ ତାଙ୍କୁ ଏପରି ବାନ୍ଧି ରଖିଥିଲା କିପରି ? ସେ ପରା ଅନାସକ୍ତ ! ସମ୍ଭବତଃ ଏ ମୋହ ତାଙ୍କର ଜନ୍ମଗତ ପ୍ରେମ ମଣିଷ ପ୍ରତି। ମଣିଷ ପ୍ରତି ବ୍ୟବହାର ଆତ୍ମାର ଇଚ୍ଛା କୁହାଯାଏ। ଜଣେ ଦେଶଭକ୍ତର ଆତ୍ମା ପୁଣି ମଣିଷକୁ ପ୍ରେମ ନକରନ୍ତା କିପରି ? ସବୁକୁ ଜଳାଞ୍ଜଳୀ ଦେଇ ଦକ୍ଷିଣ ଆଫ୍ରିକାଠାରୁ ଭାରତ ପର୍ଯ୍ୟନ୍ତ ଭାଇ ବୋଲି କହି ସାରା ଜୀବନ ଶାନ୍ତିରବାର୍ତ୍ତା ପ୍ରଚାର କରି ଚାଲିଛନ୍ତି। ସେ ଏତେ ଶୀଘ୍ର ସନ୍ଧ୍ୟା ପ୍ରାର୍ଥନାକୁ ଛାଡ଼ି ପାକିସ୍ଥାନ ଚାଲିଯିବେ କିପରି ? ସେଦିନ ସେ ଅନୁଭବ କରୁଥିଲେ ମାଟିର ମୋହ ତାଙ୍କୁ ସହଜରେ ଛାଡୁ ନାହିଁ। ବିରଳା ହାଉସ୍ ସାମନାରେ ପ୍ରାର୍ଥନାସଭାରେ ଯୋଗ ଦେବାପାଇଁ ରୋଡ଼୍ ଭିଡ଼୍ ବଢୁଛି। ଆଜି ସମ୍ଭବତଃ ପ୍ରାର୍ଥନାସଭାରେ ଗୀତାର କର୍ମଯୋଗ ଓ କର୍ମସନ୍ନ୍ୟାସ ଯୋଗ ସଂପର୍କରେ ତାତ୍ତ୍ୱିକ ପ୍ରବଚନ ଦେଇ ସମସ୍ତଙ୍କୁ ମୁଗ୍ଧ ଚକିତ କରିଦେବେ। ଗାନ୍ଧିଜୀ ସେଇ କଥା ଭାବୁଥିଲେ। ଆଖି ବିରଳା ହାଉସ୍ ଭିତରେ ଘୁରି ବୁଲୁଥିଲା । ସେମାନେ ତାଙ୍କର ଯୋଜନାକୁ ସଫଳ କରିବା ପାଇଁ ଉପଯୁକ୍ତ ଯାଗାଟିର ସନ୍ଧାନ କରୁଥିଲେ। ସେ ତିନି ଜଣଥିଲେ ନାଥୁରାମ ଗଡ଼ ସେ, ତାର ଭାଇ ଗୋପାଳ ଗଡ଼ସେ ଓ ନାରାୟଣ ଆପଟେ। ବିରଳା ହାଉସ୍‌ରୁ ବାହାରି ଗାନ୍ଧି ଆସିବେ ପ୍ରାର୍ଥନାସଭାକୁ। ସଭାରେ ଲୋକଙ୍କ ଗହଳି ଭିତରେ ଗାନ୍ଧିକୁ ଲକ୍ଷ୍ୟ କିଏ କରିବେ ଆଉ କେତେ ଦୂରରେ ଗୁଳି ରେଞ୍ଜ ଭିତରେ ରହିବ, ତାହା ପରୀକ୍ଷା କରି ଦେଖୁଥିଲେ। ନାରାୟଣ

ଆପଟେ ଓ ସାଧୁ ବେଶରେ ଆସିଥିବା ତାର ବନ୍ଧୁ ନିଶ୍ଚିତ ହୋଇଥିଲେ ଯେ କିଛି ଅସୁବିଧା ନାହିଁ। ସେମାନେ ସ୍ଥିର କଲେ ଯେ ଜଣେ କିଛି ଦୂରରେ, ଆଉ ଜଣେ ଯେଉଁ ସ୍ଥାନରେ ମାଇକ୍ରୋଫୋନ ଯୋଗେ ପ୍ରବଚନ ଦେବେ ଠିକ୍ ତା ପଛପଟେ ରହିବେ । ସେ ନିଶ୍ଚିତ ହେଲେ, ଠିକ୍ ରେଞ୍ଜରେ ଗୁଳି ଯାଇ ଗାନ୍ଧିଙ୍କ ମଥାରେ ବାଜିବ। ସେଦିନ ଉପରବେଳା ଏତକ ଠିକ୍‌କରି ଦେଇ ସେମାନେ ଚାଲିଗଲେ ଏବଂ ଭାବିଲେ, ମାତ୍ର ଦଶଫୁଟ ଦୂରତାରୁ ଗାନ୍ଧିଙ୍କ ମଥାକୁ ଲକ୍ଷ୍ୟ କରି ଗୁଳି କଲେ ଗୁଳି ଠିକ୍ ଲକ୍ଷ୍ୟ ସ୍ଥଳକୁ ଉଡ଼ାଇଦେବ। ତା ପରଦିନ ଗୋପାଲ ଗଡ଼ସେ ବିରଳା ହାଉସ୍‌ର ଗୋଟିଏ ରୁମ୍‌ରେ ଲୁଚି ରହି ଲୁହା ଗ୍ରେନେଡ୍ ମଧ୍ୟ ଆଣିଥିଲେ। ମେରିନା ହୋଟେଲରେ ରହି ସେମାନେ ତା ଯୋଜନା ପ୍ରସ୍ତୁତ କଲେ। ସେ ଭାବିଲେ ଯେ ପଞ୍ଜାବରେ ଯେଉଁ ହଜାର ହଜାର ହିନ୍ଦୁ ମୁସଲମାନ ମାନଙ୍କ ଦ୍ୱାରା ହଣା ଖାଇଲେ ସେଥିପାଇଁ ଗାନ୍ଧି ଦାୟୀ ଏବଂ ତାଙ୍କୁ ମାରି ସେମାନେ ଭାରତମାତାଙ୍କୁ ତାର ମୂଲ୍ୟ ଦେବେ। ଏ ସବୁ ଯୋଜନା ପ୍ରସ୍ତୁତ କରିସାରି ସେମାନେ ଶୋଇବାକୁ ଗଲେ। ନାଥୁରାମ ଆଖିରେ କିନ୍ତୁ ନିଦ ନାହିଁ। ଅତ୍ୟଧିକ ଚିନ୍ତା ଓ କ୍ଳାନ୍ତରେ ସେ ଅନିଦ୍ରା ରହି କେବଳ ବିଛଣାରେ ପଡ଼ି ରହିଲା। ଅତ୍ୟଧିକ ମୁଣ୍ଡବିନ୍ଧା ହେତୁ ସେ ବିଛଣାରେ ପଡ଼ିରହି ଅସ୍ୱସ୍ତିରେ ଛଟପଟ ହେଲା। ସେମାନଙ୍କୁ କେହି ଚିହ୍ନି ପାରିବେ ନାହିଁ। ସେହିପରି ବେଶରେ ସେମାନେ ନିଜକୁ ସଜାଇଲେ। ଆପଟେ ନିଜ ଆଖିକୁ କଜଳରେ ଖୁବ୍ କଳା କଲା । କପାଳରେ ଲାଲ୍ ଟିକା ଦେଲା। ବମ୍ବେରୁ କିଣିଥିବା ବ୍ଲୁ ରଙ୍ଗର ସୁଟ୍ ପିନ୍ଧିଲା। ମଦନଲାଲ ପାହୋନ ତା ଜୀବନରେ ପ୍ରଥମ ଥର ପାଇଁ କୋଟ ଓ ଟାଇ ପିନ୍ଧିଲା। ସମସ୍ତେ ଭାବନାରେ ଭାରାକ୍ରାନ୍ତ। କେହି କାହାରିକୁ କିଛି ନ କହି ଚୁପ୍‌ଚାପ ଥିଲେ। ମନେ ହେଉଥିଲା ଅତ୍ୟଧିକ ଟେନ୍‌ସନ୍‌ରେ ମେରିନା ହୋଟେଲର ରୁମ୍ ନମ୍ବର ୪୦ ଭରପୂର ହୋଇଯାଇଥିଲା। ପ୍ରତ୍ୟେକଟି ମୁହୂର୍ତ୍ତ ସେମାନଙ୍କୁ ଅସହ୍ୟ ବୋଧ ହେଉଥିଲା। ନାଥୁରାମ ଗଡ଼ସେ ପାଟି ଖୋଲିଲା। କହିଲା ଆଜି ଆମେ ସମସ୍ତେ ସାଙ୍ଗ ହୋଇ ମଉଜ କରିବା। ସେ ରୁମ୍ ବୟକୁ ଡ଼ାକି ସମସ୍ତଙ୍କ ପାଇଁ କଫି

ଆଣିବାକୁ କହିଲା । କଫି ପିଇ ସାରିଲା ପରେ ସେମାନଙ୍କର ଉଦ୍ଦିଷ୍ଟ କାମଟି କରିବା ପାଇଁ ସମୟ ଆସିଗଲା । ପରେ ପରେ, ମଦନଲାଲ ଓ ନାଥୁରାମ ପ୍ରଥମେ ବାହାରି ଗଲେ । ତା'ପରେ ପାଞ୍ଚ ମିନିଟ୍ ବ୍ୟବଧାନରେ ଜଣକ ପରେ ଜଣେ ବାହାରି ଗଲେ ବିରଳା ହାଉସ୍‌କୁ । ସେମାନେ ସମସ୍ତେ ଥିଲେ ବେଶଭୂଷାରେ ଭିନ୍ନ ଏବଂ ଭିନ୍ନ ଭିନ୍ନ ଭାଷାରେ ମଧ୍ୟ କଥାବାର୍ତ୍ତା କରୁଥିଲେ । ପାଖରେ ଟ୍ୟାକ୍ସି ମିଳିଲେ ବି ଆପଟେ ଜଣକ ପରେ ଜଣେ ଟାକ୍ସି ବାଲାଙ୍କ ସହିତ ବିରଳା ହାଉସ୍ ଯିବା ଆସିବା ଭଡ଼ା ବାରଗେନ୍ କରି ଶେଷ ଷୋଳଟଙ୍କାରୁ ବାରଟଙ୍କାରେ ତୁଟାଇବା, ଏପରି କରୁ କରୁ ପନ୍ଦର ମିନିଟ ଚାଲିଗଲା । ସେତେବେଳକୁ ଚାରିଟା ବାଜି ପନ୍ଦର ମିନିଟ୍ ହେଲାଣି । ଗାନ୍ଧିଙ୍କ ପ୍ରାର୍ଥନାସଭାର ସମୟକୁ ଜଗି ଠିକ୍ ସମୟରେ ଯିବାପାଇଁ ଡ଼େରି କରୁଥିଲେ । ଶେଷରେ ରିଗାଲ୍ ସିନେମାହଲ ସାମନାରୁ ଗ୍ରିନ ରଂଗର ଗୋଟିଏ ଗାଡ଼ି ପାଇଲା । ସମୟ ସେତେବେଳକୁ ଅପରାହ୍ନ ଚାରିଟା ବାଜି ପନ୍ଦର ମିନିଟ ହୋଇଥିଲା । ଗାନ୍ଧି ଖୁବ୍ ଦୁର୍ବଳ ଥିଲେ । ଚାଲିବାକୁ ବଳ ପାଉ ନଥିଲା ଗୋଟିଏ ଚେୟାରରେ ବସାଇ ବିରଳା ହାଉସ୍ ଗ୍ରୀନ୍‌ଲନ୍ ବାଟ ଦେଇ ତାଙ୍କୁ ପ୍ରାର୍ଥନାସଭାକୁ ନିଆଗଲା । ପ୍ରାର୍ଥନା ସଭାରେ ସୁନ୍ଦର ସ୍ୱଚ୍ଛ ଗାନ୍ଧିଙ୍କ ପ୍ରବଚନ ଦେବାର ସ୍ଥାନ । ମାଇକ୍ରୋ ଫୋନ ପାଖରେ ପହଞ୍ଚିଲେ ଗାନ୍ଧି । ସେଠାରେ ଥିଲା ମଦନ ଲାଲ ଗାନ୍ଧିଙ୍କୁ ବିନୟ ସହକାରେ ପ୍ରଣାମ କଲା । ଟାଇମବମ୍ ତା ପଛ ପଟରେ ଘାସ୍ ଓ ପତ୍ର ତଳେ ଲୁଚାଇ ରଖାଯାଇଥିଲା । ଗାନ୍ଧି ସେଇ ବାଟ ଦେଇ ଗଲାବେଳେ କ୍ରୋଧରେ ସେ ଭାବିଲା । ଏଇ ମୋର ଶତୃ । ତାର ବାପା ସେତେବେଳେ ଫିରୋଜପୁର ହସ୍‌ପିଟାଲରେ ଚିକିତ୍ସାଧୀନ ଥିଲେ । ଏତିକିବେଳେ ପ୍ରାର୍ଥନାସଭା ମଧ୍ୟରୁ ଜଣେ ଧାଇଁ ଆସି ଗାନ୍ଧିଙ୍କ ପାଦରେ ପ୍ରଣାମ କଲା ଏବଂ ଗାନ୍ଧିଙ୍କୁ ଭଗବାନଙ୍କ ଅବତାର ବୋଲି ସମ୍ବୋଧନା କଲା । ଗାନ୍ଧି ଏପରି ସମ୍ବୋଧନକୁ ପସନ୍ଦ କଲେ ନାହିଁ, କିନ୍ତୁ ତା ଆଡ଼କୁ ଚାହିଁ ହସିଲେ ଏବଂ କହିଲେ ବସ୍, ମୁଁ ତୁମରି ପରି ଜଣେ ମଣିଷ । ଭଗବାନଙ୍କର ଅବତାର ନୁହେଁ । ତୁମେ ଏତେ ଉତ୍ତେଜିତ କାହିଁକି ? ଶାନ୍ତ ହୁଅ, ବସିପଡ଼ । ଏତିକିବେଳେ ଆପଟେ ଗ୍ରୀନ ରଙ୍ଗର

ଗୋଟେ ଗାଡ଼ିରେ ଆସି ପହଞ୍ଚିଲା । ତାଙ୍କର ବିଳମ୍ବ ହୋଇ ଯାଇଥିଲା କାରଣ ସେ ଗାଡ଼ିର ଭଡ଼ା ବାବଦରେ ବାରଗେନିଂ କରୁଥିଲା । କାର୍‌କାରେ୍ ତାକୁ କହିଲା, ମଦନ ଲାଲ୍‌ର ବୋମା ଠିକ୍ ଯାଗାରେ ଓ ଠିକ୍ ଭାବରେ ରଖାଯାଇଛି । ସରଭ୍ୟାଣ୍ଟ ରୁମର ଝରକା ବାଟେ ଗାନ୍ଧିଙ୍କ ମୁଣ୍ଡର ପଛପଟ ପରିସ୍କାର ଦିଶୁଛି । ସେ ରୁମଟିକୁ ବ୍ୟବହାର କରିବା ପାଇଁ ସରଭ୍ୟାଣ୍ଟକୁ ଦଶଟଙ୍କା ଦିଆଯାଇଛି । ରୁମଟିକୁ ସେ ଆପଟେକୁ ଅଙ୍ଗୁଳି ନିର୍ଦ୍ଦେଶ କରି ଦେଖାଇ ଦେଲା । ଆପଟେ କିନ୍ତୁ ସେ ରୁମକୁ ଗଲେ ନାହିଁ । ଏତିକି ବେଳେ, କିଛି ସମୟ ଧ୍ୟାନରେ ବସିଲା ପରେ, ଭାତରର ଜଣେ ପ୍ରାଚୀନ ଋଷି ପରି ଦିଶୁଥିବା ଗାନ୍ଧି ତାଙ୍କ ଉଦ୍‌ବୋଧନ ଦେବାର ଶବ୍ଦ ଶୁଭିଲା । ତାଙ୍କ ସ୍ୱର ଏତେ କ୍ଷୀଣ ଥିଲା ଯେ ତା ଉଦ୍‌ବୋଧନରେ ପ୍ରତ୍ୟେକ ବାକ୍ୟଟିକୁ ସୁଶୀଳା ନାୟାର ଆଉ ଥରେ ପରିସ୍କାର ଭାବରେ ଉଚ୍ଚାରଣ କରୁଥିଲେ । ଆପଟେ, ଗୋପଲ ଗଡସେ ରୁମ୍ ଭିତରକୁ ଯାଇ ଯୋଜନା ଅନୁସାରେ ଝରକା ବାଟ ଦେଇ ଗାନ୍ଧିଙ୍କ ଉପରକୁ ଗ୍ରେନେଡଟିକୁ ଫିଙ୍ଗିବା ଶବ୍ଦ ଶୁଣିଲା ପରେ । ସେ ପୁଣି ଗୋପାଳକୁ କହିଲେ ଯେତେ ସମ୍ଭବ ଲୋକ ଗହଳି ଭିତରେ ପଶି ଗାନ୍ଧିଙ୍କ ନିକଟତର ହେଲା ପରେ ତାଙ୍କୁ ଲକ୍ଷ୍ୟକରି ବନ୍ଧୁକରୁ ଗୁଳି ଚଳାଅ । ଗୋପାଲ ସର୍ଭେଣ୍ଟ ରୁମକୁ ଯାଇ ଯୋଜନା ଅନୁସାରେ କାମ କରିବାକୁ ପ୍ରସ୍ତୁତ ହୋଇଗଲେ । ପ୍ରାର୍ଥନା ସଭାରେ ଗାନ୍ଧି କହିଲେ, "ଯିଏ ମୁସଲମାନର ଶତ୍ରୁ ସିଏ ଆମର ଶତ୍ରୁ" । ଏକଥାକୁ ସୁଶୀଳା ଆୟାର ଆଉ ଥରେ ଜୋର୍‌ରେ କହିଲେ । ସୁଶିଳା ଝରକା ପାଖକୁ ଯାଉ ଯାଉ ଗୋପାଲ ଗଡସେ ଏକଥା ଶୁଣିଲା । ଝରକା ପାଖରେ ପହଞ୍ଚିଲା ପରେ ଦେଖିଲା ଏହି ପ୍ରାର୍ଥନାସଭାର ଗ୍ରାଉଣ୍ଡ ଠାରୁ ଆଠ ଫୁଟ ଉଚ୍ଚରେ ଅଛି ଏବଂ ଝରକା ବାଟ ଦେଇ ଗ୍ରେନେଡ଼ ଫିଙ୍ଗିବା ସମ୍ଭବ ନୁହେଁ । ସେ ଫେରି ଆସିଲା । ଗାନ୍ଧିଙ୍କ ଆଲୋଚନାର ପ୍ରସଙ୍ଗ ଥିଲା, ଆମେରିକାରେ କୃଷ୍ଣକାୟ ମନୁଷ୍ୟ ମାନଙ୍କ ପ୍ରତି ନିର୍ଦ୍ଦୟ ନିର୍ମମ ଅତ୍ୟାଚାର ସଂପର୍କରେ । ଭଗବାନ ସବୁ ଦେଖୁଛନ୍ତି । ନୈତିକତାର ଉଚ୍ଚ ସ୍ତରକୁ ଆମକୁ ଯିବାକୁ ହେବ । ସୁଶୀଳା ଏ ସବୁକୁ ଦୋହରାଇ ଥିଲେ । ନାଥୁରାମ ଗଡ଼ସେ ଭାବିଲା, ଏହାହିଁ

ଉପଯୁକ୍ତ ସମୟ ପ୍ରତିଶୋଧ ନେବା ପାଇଁ । ପଞ୍ଜାବରେ ଅସଂଖ୍ୟ ହିନ୍ଦୁ ମାନଙ୍କର ମୃତ୍ୟୁ ପାଇଁ ସେ ଦାୟୀ, ତେଣୁ ସେ ଆମର ଶତୃ । ସେ ପୁଣି କହୁଛନ୍ତି, ଯେ କେହି ମୁସଲମାନ ପ୍ରତି ଅତ୍ୟାଚାର କରୁଛନ୍ତି, ସେ ଭାରତର ଶତୃ । ଏପରି ଲୋକଙ୍କୁ ମାରିଦେବା ପାପ ନୁହେଁ ପୁଣ୍ୟ । ତାଙ୍କୁ ମାରିବା ଅର୍ଥ ଭାରତ ମା'ର ପୂଜା । ସେ ମହାତ୍ମାଙ୍କ ପାଦରେ ପ୍ରଣାମ କରିବାକୁ ଯାଉଥିବା ବେଳେ ମଦନ ଲାଲ୍‌ର ଟାଇମବମ୍ ଫୁଟିବାର ଭୟଙ୍କର ଗର୍ଜନ ପ୍ରାର୍ଥନାସଭାକୁ ଥର ହର କରିଦେଲା । ପ୍ରବଳ ଧୂଆଁରେ ସବୁ ଆଡ଼କୁ ଆଚ୍ଛନ୍ନ କରିଦେଲା । ସୁଶୀଳା କଣ୍ଠରୁ ବାହାରି ପଡ଼ିଲା, "ହେ ମାଁ । ଗାନ୍ଧି ତାଙ୍କୁ କହିଲେ, ଏହାଠାରୁ ଆଉ ତୁମେ କି ଭଲ ମୃତ୍ୟୁ ଚାହୁଁଥିଲ । ପ୍ରାର୍ଥନା ବେଳର ମୃତ୍ୟୁଠାରୁ ଆଉ କି ଭଲ ମୃତ୍ୟୁ ଅଛି ? ବୋମାର ବିସ୍ଫୋରଣ ଶବ୍ଦ ଶୁଣି ସାରା ପ୍ରାର୍ଥନାସଭାରେ ଭୟର ଆତଙ୍କ ଖେଳିଗଲା । ଅବଶ୍ୟ କେହି ମୃତାହତ ହୋଇନଥିଲେ । ଏତିକି ବେଳେ କାର୍‌କାରେ ଦୌଡିଯାଇ ଗାନ୍ଧିଙ୍କ ଠାରୁ ପନ୍ଦରଫୁଟ ପର୍ଯ୍ୟନ୍ତ ପହଞ୍ଚିଗଲେ । ଗାନ୍ଧି ଅସହାୟ ପଙ୍ଗୁପରି ହୁଇଲ୍ ଚେୟାରରେ ପଡ଼ି ରହିଲେ । ଯିଏ ଦୁଃଖ ଯନ୍ତ୍ରଣା, ଆସକ୍ତି ଓ ଭୟରୁ ମୁକ୍ତ, ଯିଏ ବ୍ରହ୍ମଚର୍ଯ୍ୟ ପାଳନ ହେତୁ ଇନ୍ଦ୍ରିୟାତୀତ, ଯିଏ ଅହିଂସା ଓ ସତ୍ୟଠାରେ ସମର୍ପିତ, ଖଟା ମିଠା ପିତା କଷା ପରି ସମସ୍ତ ସ୍ୱାଦାତୀତ, ତାଙ୍କର ପୁଣି ଭୟ କ'ଣ ? ନିଷ୍ପନ୍ଦ, ନିର୍ବେଦ ପରି ପଡ଼ିରହି କହୁଥିଲେ ହେ ଭଗବାନ "ଏ ଅଜ୍ଞାନ ମାନଙ୍କୁ କ୍ଷମା କରିଦିଅ । କାର୍‌କାରେ ଏତିକି ବେଳେ ଝରକା ବାଟ ଦେଇ ତା ଗ୍ରେନେଡ଼ ଗାନ୍ଧିଙ୍କ ପର୍ଯ୍ୟନ୍ତ ଯାଇ ପାରିବ କି ନାହିଁ ଝରକାର ଉଚ୍ଚତାକୁ ଦେଖୁ ଦେଖୁ ଅଚେତ ହୋଇଗଲା । ଗୋପାଲ ଗଡ଼ସେ ଝରକା ଉପରୁ ଡ଼େଇଁ ପଡ଼ି ଭାବିଲା ଗାନ୍ଧିଙ୍କୁ ଗ୍ରେନେଡ଼ ଫିଙ୍ଗିବ କି ପିସ୍ତଲରୁ ଗୁଳି ଚଳାଇବ । ସେ କିଛି କରିପାରିଲା ନାହିଁ । ସେ ଭାବିଲା, ଏ କାମ ସେ କରିପାରିବ ନାହିଁ, ଅନ୍ୟମାନେ କରନ୍ତୁ କହି ଜଡ଼ ପାଲଟି ଗଲା । ସେ ଅନ୍ଧାର ଭିତରେ ଧଇଁ ସଇଁ ହୋଇ ଦୁଆର ପାଖରେ ଦୀର୍ଘ ନିଃଶ୍ୱାସ ଛାଡ଼ିଲା । ଭୟରେ ଥରିଥରି ଭାବିଲା, ସେ ଧରାପଡ଼ିବ ଏବଂ ଜେଲରେ ଜୀବନ କାଟିବ । କାର୍‌କାରେ ଥିଲା ବଗିଚାରେ । ତା ହାତର ଆଙ୍ଗୁଳି ସବୁ ହାତ ଗ୍ରେନେଡ଼କୁ ଚାପି ଧରି ବନ୍ଧା ହୋଇଥିଲା । ଡ଼େକାନ ଶେଷ

ହାଉସ୍‌ର ମାଲିକ ଭୟରେ ମୂର୍ଚ୍ଛା ହୋଇଗଲା । ଏତିକି ବେଳେ ନାଥୁରାମକୁ ଦେଖିଲା, ଲୋକ ଗହଳିରେ ୩୦ ଫୁଟ ଦୂରରେ ଅଛି କାର୍‌କାରେ୍ । ଭାବିଲା ସେ ସେଠାରେ କାହିଁକି ଅଛି, କିଛି କରୁ ନାହିଁ କାହିଁକି ? କାର୍‌କାରେ୍ ସେତେବେଳେ ଖସି ପଳାଇ ଯିବା ଛଡ଼ା ଆଉ କିଛି ଭାବୁ ନଥିଲା । ସେ ଥିଲା ଜଣେ ଚୋରା ଅସ୍ତ୍ର ବ୍ୟବସାୟୀ । ରସିଦ୍ ନ ଦେଇ ଚୋରାରେ ଅସ୍ତ୍ର କାରବାର କରୁଥିବାରୁ ତାର ଭୟ ହେଲା । ତେଣୁ ସେ କାହାରିକୁ ଅପେକ୍ଷା ନକରି ଲୋକ ଗହଳି ଭିତରକୁ ଚାଲିଗଲା । ବିରଳା ହାଉସ୍ କଡ଼ରେ ଇଟା ପାଚେରୀ ପାଖରେ ତିନି ବର୍ଷର ପିଲାଟିଏ ତା ମା' ପାଖରେ ଖେଳୁଛି ସେ ଦେଖିଲା । ମା' ତା ହାତରେ ବୋମା ଓ ଚାଲିରୁ ଚିହ୍ନି ପାରି ଚିତ୍କାର କଲା ଇଏ ସେଇ, ଇଏ ସେଇ, ଏୟାର ଫୋର୍ସର ଅଫିସର । ସେତେବେଳେକୁ ଷଡ଼ଯନ୍ତ୍ର କାରୀଙ୍କୁ ଧରିବା ପାଇଁ ପୋଲିସ ତତ୍ପର ହୋଇ ଉଠିଥିଲା । ମଦନ ଲାଲ, କାରକାରେ ଓ ଗୋପାଲ ପୋଲିସ୍ ଆଖିରୁ ଖସି ଯିବାର ଉପାୟ ଚିନ୍ତା କରୁଥିଲେ । ନାଥୁରାମ ଅତ୍ୟଧିକ ମୁଣ୍ଡ ବିନ୍ଧା ଯୋଗୁ ଯନ୍ତ୍ରଣାରେ ଅସ୍ଥିର ହେଉଥିଲେ । ସେ ତା ଭାଇକୁ ପୁନା ଚାଲି ଯିବା ପାଇଁ ଆଦେଶ ଦେଲା । ସେ ଏବଂ ଆପଟେ ଆଉ କି ପଦକ୍ଷେପ ନେବେ ସେଇ ଚିନ୍ତାରେ ବୁଡ଼ିଗଲେ । ଆପଟେ ଡ୍ରାଇଭରକୁ ଗାଡ଼ି ରଖିବା ପାଇଁ କହିଲା ଏବଂ ଗାନ୍ଧି ଯେତେବେଳେ ତାଙ୍କ ଅନଶନ ଭାଙ୍ଗିଥିଲେ ଏବଂ ମରଣ ମୁହଁରୁ ରକ୍ଷା ପାଇ ଯାଇଥିଲେ, ବର୍ତ୍ତମାନ ବି ଗାନ୍ଧିଙ୍କ ଅବସ୍ଥା ସେହିପରି ଅଛି ଦେଖି ଏ ହାତ ପାଇଁ ଏକ ସୁଯୋଗ ବୋଲି ନାଥୁରାମ ଭାବିଲା । ବିରଳା ଭବନରେ ଗାନ୍ଧିଙ୍କୁ ଗୁଳି କରିବାର ଖବର ପାଇ ଇଡୁଇନ୍ ପ୍ରଥମେ ଆସି ବିରଳା ଭବନରେ ପହଞ୍ଚିଲେ । ତାଙ୍କ ପରେ ପରେ ଅସଂଖ୍ୟ ଲୋକ ତାଙ୍କ ଅବସ୍ଥା ଦେଖିବା ପାଇଁ ପହଞ୍ଚିବା ସହିତ ନେହେରୁ ଓ ପଟେଲ ଆସି ପହଞ୍ଚିଲେ ଏବଂ ଅସଂଖ୍ୟ ଟେଲିଗ୍ରାମ ଓ ଟେଲିଫୋନରେ ତାଙ୍କ ପ୍ରତି ଶୁଭେଚ୍ଛା ବାର୍ତ୍ତା ପହଞ୍ଚିଲା । ଗାନ୍ଧି ସେମାନଙ୍କୁ କହିଲେ, କେହି ମୋତେ ଆକ୍ରମଣ କରି ନାହାଁନ୍ତି । ଯେଉଁ ବୋମା ପଡ଼ିଥିଲା ତା ଥିଲା ଜଣେ ଆର୍ମି ଅଫିସରର ଅଭ୍ୟାସର କଥା । ଯଦି କେହି ଜଣେ ମୋତେ ଗୁଳି ମାରେ ମୁଁ ହା'ରାମ୍ କହି ତାକୁ ହସି ହସି ଗ୍ରହଣ କରିବି । ଦିଲ୍ଲୀ

ପୋଲିସ୍ ଡ଼େପୁଟି କମିଶନର ପ୍ରଥମେ ଆକ୍ରମଣର ଖବର ପାଇଲେ ଏବଂ ପ୍ରକୃତରେ ଯେଉଁ ପୋଲିସ ଅଫିସର ଏ ଘଟଣାର ତଦନ୍ତ କରିଥାନ୍ତେ, ସେ ଫ୍ଲୁ ଓ ୧୦୩ ଡ଼ିଗ୍ରି ଜରରେ ପୀଡ଼ିତ ହୋଇ ବିଛଣାରେ ଶୋଇ ରହିଥିଲେ। ପ୍ରଥମେ କେହି ଜଣେ ତାଙ୍କୁ ଜଣାଇ ଥିଲେ, ଗାନ୍ଧିଙ୍କ ପ୍ରାର୍ଥନା ସଭାରେ ବୋମା ବିସ୍ଫୋରଣ ହୋଇଛି ଏବଂ ବିସ୍ଫୋରଣ କରିଥିବା ଲୋକ ଆରେଷ୍ଟ ହୋଇଛି। ଦୁଇ ଘଣ୍ଟା ପରେ ଆଉ ଯେଉଁଟି ଖବର ମିଳିଲା ତା'ଥିଲା ଗୁଳି କରିବା ଖବର। ଯେଉଁ ତୃତୀୟ ଖବର ମିଳିଥିଲା, ତା ଥିଲା "ମୃତ୍ୟୁ" ଏ ଖବର ଆସିଥିଲା ଦିଲ୍ଲୀ ପୋଲିସ D.J ସଂଜୀବଙ୍କ ଠାରୁ। ତାଙ୍କର କାମ ଥିଲା ଖବର ଜାଣିବା। ସଂଜୀବ ପୋଲିସ କମିଶନରଙ୍କୁ କହିଲେ ଯେ, ସେ କେଶଟି ଦାୟିତ୍ୱ ନିଜେ ନେବେ, ଏଥିପାଇଁ ବ୍ୟସ୍ତ ହେବା ଉଚିତ ନୁହେଁ। ଏଣେ ନିଜେ ଦାୟିତ୍ୱ ନେବା ପାଇଁ ସେ ବ୍ୟବସ୍ଥା କରିଥିଲେ। ଏବଂ ମଦନ ଲାଲ କେଶ୍‌କୁ ନିଜେ ହ୍ୟାଣ୍ଡେଲ କରିବେ ବୋଲି ପୋଲିସ କମିଶନରଙ୍କୁ କହିଥିଲେ। ଏଣେ ଦିଲ୍ଲୀର ପାର୍ଲିଆମେଣ୍ଟ ଷ୍ଟ୍ରିଟ୍ ପୋଲିସ ଥାନାରେ ମଦନ ଲାଲ୍ ତାଙ୍କର ଏପରି ଅପରାଧ ପାଇଁ ଟଙ୍କା ଦେବାକୁ କହିଥିଲେ। ସେ ଜାଣିଥିଲା ଯେ, ତା ସାଥି ଷଡ଼ଯନ୍ତ୍ରକାରୀମାନେ କେବେ ନାଁ କହିବେ ନାହିଁ ଏବଂ ଗାନ୍ଧିଙ୍କୁ ହତ୍ୟା କରିବା ପାଇଁ ଆହୁରି ଚେଷ୍ଟା କରିବେ। ତା'ପରେ ପୋଲିସ ସହ କିଛି କଥା ହେବ ନାହିଁ ବୋଲି ମୁକ୍‌ହୋଇ ବସିରହିଲା। ପ୍ରଥମେ କିନ୍ତୁ ସେ ପୋଲିସ ପାଖରେ କହିଥିଲା ଯେ, ଏ କାଣ୍ଡରେ ଏକା ସଂପୃକ୍ତ ନୁହେଁ, ହତ୍ୟା ପାଇଁ ଗୋଟାଏ ଗ୍ରୁପ ଅଛି। ସେ ଗ୍ରୁପରେ ସାତଜଣ ଅଛନ୍ତି ବୋଲି କହିଥିଲା। ସେମାନେ ଗାନ୍ଧିଙ୍କୁ ହତ୍ୟା କରିବା ପାଇଁ ଯୋଜନା କରିଛନ୍ତି। ସେ ଥିଲା ଜଣେ ପଞ୍ଜାବ ରିଫ୍ୟୁଜୀ। ସେ ସବୁ ରିଫ୍ୟୁଜୀମାନଙ୍କୁ ମସଜିଦ୍ ଛାଡ଼ିବାକୁ ବାଧ କରୁଥିଲେ ଏବଂ ଯେତେ ପାରିବ ମୁସଲମାନ ମାନଙ୍କୁ ସାହାଯ୍ୟ କରିବ ବୋଲି ପ୍ରତିଜ୍ଞା କରିଥିଲା। କାରଣ ପାକିସ୍ଥାନ ତାକୁ ଟଙ୍କା ଦେଉଥିଲା। ସେ ଏକଥା ବି ମାନିଥିଲା ଯେ ସେ ସର୍ବରାକାର ସଦନରେ ଅନ୍ୟ ସାଥିମାନଙ୍କ ସହ ଥିଲା ଏବଂ ଖୁବ୍ ଜଣାଶୁଣା ରାଜନେତାଙ୍କୁ ସାକ୍ଷାତ କରିଥିଲା। ପୋଲିସ ପାଖରେ ଯେଉଁ ବୟାନ ଦେଇଥିଲା ସେ କେବଳ ଜଣଙ୍କ ନାଁ ଦେଇଥିଲା

ଏବଂ ତାହା ବିରକିରୀ ବୋଲି ଭୁଲଥିଲା । ପୋଲିସର ଜେରା ବେଳେ ମଦନ ଭୁଲ ଭାଲ କରି କହିଥିଲେ ମଧ୍ୟ ପୋଲିସ ତହିଁରୁ ଅନେକ ସୁରାକ ଓ ସୁତ୍ର ଠାବ କରିଥିଲା । ଏଡିଟର ଅଫ୍ ଅଗ୍ରଣୀ ମହାରାଷ୍ଟ୍ର ଓ ହିନ୍ଦୁ ମହାରାଷ୍ଟ୍ର; ଏହି ଦୁଇଟି ବାକ୍ୟ ପୋଲିସର ଇନ୍‌ଭେଷ୍ଟିକ୍‌ସନ ପାଇଁ ଅତ୍ୟନ୍ତ ମୂଲ୍ୟବାନ ଥିଲା । ମାରିୟାନ ହୋଟେଲ ଓ ହିନ୍ଦୁ ମହାରାଷ୍ଟ୍ରକୁ ନେଇ ପୋଲିସ ତୁମୂଳ ଅନୁସନ୍ଧାନ ଚଳାଇଲା ଏବଂ ଅନେକ ତଥ୍ୟ ସଂଗ୍ରହ କରିବାକୁ ସମର୍ଥ ହେଲା ତଥାପି ଇନ୍‌ଭେଷ୍ଟିକ୍‌ସନ ଚାଲୁ ରହିଲା, କାରଣ ସାତଜଣଙ୍କ ମଧ୍ୟରୁ ଆଉ କେତେ ଜଣଙ୍କ ସଂପର୍କରେ ସଂପୂର୍ଣ୍ଣ ତଥ୍ୟ ମିଳିପାରି ନଥିଲା ।

ଦକ୍ଷିଣ ଆଫ୍ରିକାରୁ ଆସିବା ପରେ ପ୍ରତିଦିନ ପରି ପ୍ରଭାତ ହେବା ମାତ୍ରେ ଗାନ୍ଧି ପ୍ରାର୍ଥନାରେ ଚକାପକାଇ ବସିଲା ପରି ତାଙ୍କ ଜୀବନର ଶେଷ ଦିନରେ ମଧ୍ୟ ବସି ପ୍ରାଥର୍ନା କରିଥିଲେ । ଏ ହିନ୍ଦୁ ଧର୍ମର ପୂଣ୍ୟଗ୍ରନ୍ଥ ଶ୍ରୀମଦ୍ ଭାଗବତ ଗୀତାର ସେଇ ଦୁଇ ପ୍ରସିଦ୍ଧ ଶ୍ଳୋକ ସହଚର ମାନଙ୍କ ସାଙ୍ଗରେ ବସି ଆବୃତ୍ତି କରିଥିଲେ । ଜନ୍ମ ହେଲେ ମୃତ୍ୟୁ ଯେପରି ସତ୍ୟ, ମୃତ୍ୟୁ ହେଲେ ଜନ୍ମ ସେହିପରି ସତ୍ୟ । ପ୍ରତ୍ୟେକ ଜନ୍ମର ମୃତ୍ୟୁ ସତ୍ୟ ହୋଇଥିବାରୁ କାହାର ମୃତ୍ୟୁରେ ଅଧୀର ହୋଇ ବିଳାପ କରିବା ଅନୁଚିତ । ଜନ୍ମ ଏବଂ ମୃତ୍ୟୁ ଜୀବନର ଦୁଇ ଶେଷ ବିନ୍ଦୁ ନୁହେଁ । ଏହା ଏକ ନିରବଚ୍ଛିନ୍ନ ପ୍ରବାହ । ଆତ୍ମାର ଅନନ୍ତ ଶକ୍ତିରେ ଏହା ନିରନ୍ତର ଜ୍ୟୋର୍ତିମୟ । ତେଣୁ ମୃତ୍ୟୁକୁ ଭୟ କରିବା କିମ୍ବା ଦୁଃଖରେ ଅଧୀର ହେବା କେବଳ ଅଜ୍ଞାନତା । ଏହି ପରମ ସତ୍ୟକୁ ସ୍ୱୟଂ ଭଗବାନ ପାର୍ଥ ଅର୍ଥାତ୍ ପୃଥିବୀର ସବୁ ମଣିଷ ମାନଙ୍କ ଉଦ୍ଦେଶ୍ୟରେ ପ୍ରଚାର କରିଛନ୍ତି । ସଂସାରରେ ଯିଏ ଯେତେ ଧନୀ, ମାନୀ, ଗୁଣୀ ବା ପ୍ରତିଷ୍ଠାବାନ ହେଲେ ବି ଏହି ସତ୍ୟକୁ କେହି କ'ଣ ଉପକ୍ଷୋ କରିପାରେ ? ଗୀତାର ଏହି ଅମୃତମୟ ବାଣୀକୁ ଉଦ୍ଧାର କରି ସେଦିନ ଗାନ୍ଧି ପ୍ରାର୍ଥନା ସଭାକୁ ସଂବୋଧିତ କରୁଥିଲେ । ପ୍ରାର୍ଥନା ସରିଲା ପରେ ମନୁ ତାଙ୍କୁ ତାଙ୍କ କାମ କରିବା ରୁମକୁ ନେଇଗଲେ । ସେତେବେଳେ ସେ ପାକିସ୍ଥାନ ଯିବା କଥା ଭାବୁଥିଲେ । ମାତ୍ର ଅତ୍ୟଧିକ ଦୁର୍ବଳତା ହେତୁ ବିନା ସାହାଯ୍ୟରେ ଗୋଟିଏ ରୁମରୁ ଆଉ ଗୋଟିଏ ରୁମକୁ ଯାଇ ପାରୁନଥିଲେ ।

ସେ ଲେଖା ପଢ଼ା କରୁଥିବା ଡ଼େସ୍କ ପାଖରେ ବସିଲା ପରେ ମନୁକୁ କହିଲେ ତାଙ୍କ ପାଖରେ ବସି ଗୀତାର ଦୁଇ ଧାଡ଼ି "ହେ ମାନବ, ବିଶ୍ରାମ ନିଅ ନାହିଁ"କୁ ଦିନସାରା ଆବୃତ୍ତି କରିବା ପାଇଁ। ପୂର୍ବ ଦିନ ସନ୍ଧ୍ୟାର ନିଷ୍ପତ୍ତି ଅନୁସାରେ ଆପଟେ ଓ କାର୍କାରେ ଠିକ୍ ସକାଳ ୭ଟା ପରେ ପରେ ପୁରୁଣାଦିଲ୍ଲୀ ରେଲଷ୍ଟେସନର 'ଛ' ନମ୍ବର ବିଶ୍ରାମଗାରରେ ନାଥୁରାମ ଗଡ଼ସେକୁ ଭେଟିବା ପାଇଁ ପହଞ୍ଚିଲେ। ସେତେବେଳେକୁ ଗଡ଼ସେ ନିଦ୍ରାରୁ ଉଠି ସାରିଥିଲା। ସେ ଗାନ୍ଧିଙ୍କୁ ହତ୍ୟା କରିବା ପାଇଁ ନିଷ୍ପତ୍ତି କରିଥିଲେ ମଧ୍ୟ ସେ କାର୍ଯ୍ୟ ସଂପନ୍ନ କରିବାକୁ କିଛି ବାଟ ପାଇ ନଥିଲେ। ସେମାନେ ଦୁଇଘଣ୍ଟା ପର୍ଯ୍ୟନ୍ତ ସେଇ ରୁମ୍‌ରେ ବସି ଏକାଠି ବାର୍ତ୍ତାଳାପ କରିବା, ଥଟ୍ଟା ତାମାସା କରିବା ଓ ଚା କଫି ପିଇବାରେ ସମୟ କାଟୁଥିବାବେଳେ ହଠାତ୍ କଠୋର ହୋଇ ଉଠିଲେ। ଗାନ୍ଧିଙ୍କୁ ହତ୍ୟା କରିବାର ଭାବନାରେ ସେମାନେ ଭାରାକ୍ରାନ୍ତ ହୋଇଗଲେ। ସେମାନେ ଭାବିଲେ ଗତ ୨୦ ତାରିଖ ବୋମା ବିସ୍ଫୋରଣ ପରେ ବିରଳା ହାଉସ୍ କଡ଼ା ପୋଲିସ ପହରାରେ ସୁରକ୍ଷିତ ଥିବ। ଯେଉଁମାନେ ଯାଉଥିବେ ସେମାନଙ୍କୁ ଯାଞ୍ଚ କରାଯାଉଥିବ। ତା ଭିତରକୁ କିମ୍ବା ସନ୍ଧ୍ୟା ପ୍ରାର୍ଥନା ସଭାକୁ ସାଙ୍ଗରେ ବନ୍ଧୁକ ନେଇ ସେମାନେ ଯିବେ କିପରି ? ଏହି ଚିନ୍ତା ସେମାନଙ୍କୁ ବିବ୍ରତ କରୁଥିଲା। ଗଡ଼ସେ ଗୋଟିଏ ଉପାୟ ଚିନ୍ତା କରି କହିଲା, ଆମେ ବଜାରରୁ ଗୋଟିଏ ଓଲ୍ଡ ମଡେଲ୍ କ୍ୟାମେରା କିଣିବା, ସେଇ କ୍ୟାମେରା ଭିତରେ ପିସ୍ତଲଟିକୁ ଲୁଚାଇ ରଖି, ଫଟୋଗ୍ରାଫର ବ୍ୟବହାର କରୁଥିବା କଳା ଗାଉନ ସହିତ ପ୍ରାର୍ଥନା ସଭାକୁ ଯିବା। ଗାନ୍ଧିଙ୍କ ସାମନାରେ କ୍ୟାମେରାକୁ ସଜାଡ଼ି ରଖାଯିବ ଏବଂ ସେଇ କଳା କପଡ଼ାର ଗାଉନ ପିନ୍ଧି ଗଡ଼ସେ କ୍ୟାମେରାରୁ ପିସ୍ତଲ କାଢ଼ି ତାଙ୍କୁ ସୁଟ୍ କରିବ। ଏଇ କଥା ଭାବି ସେମାନେ ଷ୍ଟେସନ ବଜାରୁ କ୍ୟାମେରାଟିଏ କିଣିଲେ। ସେମାନେ ତାକୁ ଦେଖୁ ଦେଖୁ ଆପଟେ କହିଲା ଏପରି କ୍ୟାମେରା ଆଉ କେହି ବ୍ୟବହାର କରୁ ନାହାଁନ୍ତି। ତେଣୁ ସେମାନେ ଗୋଟିଏ ଜର୍ମାନ ବା ଆମେରିକା ତିଆରି କ୍ୟାମେରା କିଣିବା ଉଚିତ। ତା ଛଡା ସେମାନେ କ୍ୟାମେରା ଓ ବୁରଖାଟିଏ କିଣି ସେଇ ରୁମକୁ ଫେରିଲେ ଏବଂ ସେଠାରେ ତାଙ୍କ

ଯୋଜନା କଲେ। ଯୋଜନା ଅନୁସାରେ ନାଥୁରାମ ବୁରଖାଟିକୁ ପିନ୍ଧି ମୁସଲିମ ମହିଳା ବେଶରେ ପ୍ରାର୍ଥନା ସଭାକୁ ପଶି ଗାନ୍ଧିଙ୍କର ଖୁବ୍ ନିକଟରେ ବସିଲା। କାରଣ ଗାନ୍ଧିଙ୍କୁ ତ୍ରାଣକର୍ତ୍ତା ଭାବି ଅନେକ ମୁସଲିମ୍ ମହିଳା ପ୍ରାର୍ଥନା ସଭାକୁ ଆସୁଥିଲେ ଏବଂ ଗାନ୍ଧିଙ୍କ ପାଖରେ ବସୁଥିଲେ। ଏହି ଉପାୟରେ ଗାନ୍ଧିଙ୍କ ଉପରକୁ ଗୁଳି ଚଳାଇବା ସହଜ ହେବ। ମାତ୍ର ପରେ ଏହା ନକରି ମିଲିଟାରୀ ସୁଟ୍ ପିନ୍ଧି ବନ୍ଧୁକଟିକୁ ସହଜରେ ଲୁଚାଇ ରଖିବାକୁ ନାଥୁରାମ ସ୍ଥିର କଲା। ତା'ପରେ ସେମାନେ ବଜାରକୁ ଆସି ନାଥୁରାମ ପାଇଁ ମିଲିଟାରୀ ସୁଟ୍‌ଟିଏ କିଣିଲେ ଏବଂ ରୁମକୁ ଫେରି ଆସିଲେ। ପୋଲିସ ପାଖରେ ମଦନ ଏ ସବୁ ବୟାନ ଦେଇ ଚାଲିଥିଲା ବେଳେ କହିଲା ଆମେ ରୁମକୁ ଫେରି ଆସିଲୁ ଟିକିଏ ବିଶ୍ରାମ ପାଇଁ ସେଠାରେ ନିଷ୍ପତ୍ତି ନେଲୁ ଯେ ପ୍ରାର୍ଥନା ସଭାକୁ ପ୍ରଥମେ ନାଥୁରାମ ଯିବ ଓ ତା ପଛେ ପଛେ ମୁଁ ଓ ଆପ୍‌ଟେ ଯିବୁ। ଯୋଜନା ଅନୁସାରେ ଗଡ୍‌ସେ ପିସ୍ତଲଟିକୁ ଜଙ୍ଘ ସନ୍ଧିରେ ଲୁଚାଇ ରଖି ସାତଟି ଗୁଳି ସାଙ୍ଗରେ ନେଇ ବିରଳା ହାଉସ୍ ଅଭିମୁଖେ ବାହାରି ଗଲା। ସେମାନେ ଗୋଟିଏ ନିରାପଦ ଯାଗାରେ ପହଞ୍ଚିଲା ପରେ ନାଥୁରାମର ବାଦାମ ଖାଇବାକୁ ଇଚ୍ଛା ହେଲା। ସାଙ୍ଗେ ସାଙ୍ଗେ ଆପଟେ ବାଦାମ ଆଣିବାକୁ ଚାଲିଗଲା ଏବଂ କିଛି ସମୟ ପରେ ଫେରି ଆସି ବାଦାମ ମିଳିଲା ନାହିଁ କହି ବାଦାମ ବଦଳରେ କାସୁନଟ କିମ୍ବା ଆଲମଣ୍ଡ ଆଣିବି କି ପଚାରିଲା, ସେ ଭାବିଲା ଭାରତମାତାର ସେବା ପାଇଁ ନାଥୁରାମ ଆଜି ଜୀବନବଳୀ ଦେବାକୁ ଯାଉଛି, ତାର ଯାହା ଇଚ୍ଛା ତା'କୁ ଦେବା ଉଚିତ। ନାଥୁରାମ ନା, ମୋର ସେ ସବୁ କିଛି ଲୋଡ଼ା ନାହିଁ କହି ବଡ କରୁଣ ଚାହାଣିରେ ସମସ୍ତଙ୍କ ଉପରେ ଆଖି ବୁଲାଇ ଆଣି ମୋତେ କେବଳ କିଛି ପେସ୍ତା ଦିଅ। ଆପଟେ ପୁଣି ବଜାରକୁ ଅଳ୍ପ ସମୟ ପରେ ପିନଟର ଗୋଟିଏ ବ୍ୟାଗ ଧରି ଫେରି ଆସିଲା। ନାଥୁରାମ ଅତି ଆଗ୍ରହରେ ସେଥିରୁ କିଛି ଚୋବାଇବାକୁ ଲାଗିଲା ଏବଂ ଚାରି ଆଡକୁ ଚାହିଁଲା। ତା'ପରେ ଆମେ ବିରଳା ମନ୍ଦିର ଯାଇ ଲକ୍ଷ୍ମୀ ନାରାୟଣ ଓ କାଳୀଙ୍କୁ ଦର୍ଶନ କଲୁ। ନାଥୁରାମ ଏ ସବୁ ବିଶ୍ୱାସ କରେ ନାହିଁ। ସେ ଥିବା ଜଙ୍ଗଲକୁ ଅନ୍ୟ ମନସ୍କ

ଭାବରେ ଯାଇ ବୁଲାବୁଲି କଲା । ମନ୍ଦିର ଭିତରେ ହିନ୍ଦୁରୀତି ଅନୁସାରେ ଦେବୀ ମାନଙ୍କ ଦର୍ଶନ କରି ଜୋଡ଼ ହସ୍ତରେ ଆମ କାମର ସଫଳତା ପାଇ ଆର୍ଶୀବାଦ ଭୀକ୍ଷା କରି ଫେରିଲା । ବାହାରକୁ ଆସି ଦେଖିଲା ପ୍ରସିଦ୍ଧ ବୀର ଯୋଦ୍ଧା ଶିବାଜୀଙ୍କ ମୂର୍ତ୍ତି ପାଖରେ ଠିଆ ହୋଇଛି । ଆମେ ତାକୁ ଆଦର ଦର୍ଶନ ହେଲା ବୋଲି କହିଲୁ । ସେବି ଦର୍ଶନ ପାଇଛି ବୋଲି ଆମକୁ କହିଲା । ତାର ଦର୍ଶନ କୌଣସି ଦେବୀ ମୂର୍ତ୍ତି ନଥିଲା, ଥିଲା ଶିବାଜୀଙ୍କ ମୂର୍ତ୍ତି ଯିଏ ନିଜର ବୀରତ୍ୱ ବଳରେ ପୁନାର ପାର୍ବତ୍ୟାଞ୍ଚଳରୁ ମୋଗଲମାନଙ୍କୁ ତଡ଼ି ଦେଇଥିଲେ । ଶିବାଜୀଙ୍କର ଲକ୍ଷ୍ୟ ଥିଲା ହିନ୍ଦୁରାଜ୍ୟ ପ୍ରତିଷ୍ଠା । ସେଥିପାଇଁ ମୋଗଲମାନଙ୍କୁ ସେ ଶତୃ ବୋଲି ଭାବୁଥିଲେ ଏବଂ ମହାରାଷ୍ଟ୍ରର ପାର୍ବତ୍ୟାଞ୍ଚଳରେ ଗରିଲା ଯୁଦ୍ଧ କରି ମୋଗଲ ମାନଙ୍କୁ ଧ୍ୱଂସ୍ତ ବିଧ୍ୱସ୍ତ କରିଥିଲେ । ତାଙ୍କର ମୂର୍ତ୍ତୀକୁ ଦର୍ଶନ କରି ଗାନ୍ଧିଙ୍କୁ ହତ୍ୟା କରିବା ପାଇଁ ପ୍ରେରଣା ପାଇଥିଲେ, ସେ ଭାବୁଥିଲା, ଗାନ୍ଧିଙ୍କୁ ହତ୍ୟା କଲେ ସାରା ପୃଥିବୀ ପ୍ରକମ୍ପିତ ହେବ । ଆପଟେ ନିଜ ହାତ ଘଣ୍ଟାକୁ ଚାହିଁ କହିଲା, ନାଥୁରାମ ଠିକ୍ ସମୟ ଆସି ଯାଇଛି, ଚାରିଟା ବାଜି ତିରିଶ ମିନିଟ ହେଲାଣି ।

ସମସ୍ତଙ୍କୁ ସମାନ ଭାବି ପ୍ରେମରେ ଆପଣାର କରିବା ପାଇଁ ସୁଧାତ୍ମା ଗାନ୍ଧି ଥିଲେ ଜଣେ ଋଷିପ୍ରତୀମ କିନ୍ତୁ ତାଙ୍କର ଏହି ବିଚାର କେତେକ ହିନ୍ଦୁ କୋଠରପନ୍ଥୀ ମାନଙ୍କୁ ଅସହ୍ୟବୋଧ ହେଉଥିଲା । ସେମାନେ ଭାବୁଥିଲେ ଗାନ୍ଧି ଥିଲେ ସେମାନଙ୍କ ଶତୃ । ଏହି ବଚାରରେ ଆର.ଏସ୍.ଏସ୍. ସଭ୍ୟ ମାନେ ଉଦ୍‌ବୁଧ ହୋଇଥିଲେ ଏବଂ ଗାନ୍ଧିଙ୍କୁ ହତ୍ୟା କରିଦେଲେ ହିନ୍ଦୁରାଜ୍ୟ ପ୍ରତିଷ୍ଠା କରିବା ସହଜ ହେବ । ନାଥୁରାମ ଗଡ଼ସେ ଏବଂ ତାର ଅନ୍ୟ ଛଜଣ ସହଯୋଗୀ ଥିଲେ ଆର.ଏସ୍.ଏସ୍.ର ସଭ୍ୟ ବିଶେଷ କରି ନାଥୁରାମ ଗଡ଼ସେ ଗାନ୍ଧିଙ୍କୁ ହତ୍ୟାକରି ସାରା ବିଶ୍ୱକୁ ପ୍ରକମ୍ପିତ କରିପାରିଲେ ଶିବାଜୀଙ୍କ ଦର୍ଶନ ସାର୍ଥକ ହେବ ଏବଂ ଭାରତମାତା ପ୍ରତି ଏକ ଉତ୍ତମ ପୂଜା ହେବ ବୋଲି ବିବେଚିତ ହେବ । ତେଣୁ ଯେତିକି ବିଳମ୍ବ ହେଉଥିଲା ଗଡ଼ସେ ଶିବାଜୀଙ୍କୁ ମନେ ପକାଇ ସେତିକି ଉତ୍ତେଜିତ ହେଉଥିଲେ । ହିନ୍ଦୁ ଧର୍ମର ମୂଳତତ୍ତ୍ୱ ହେଲା

"ସର୍ବେ ଭବନ୍ତୁ ସୁଖିନଃ ସର୍ବେ ସନ୍ତୁ ନିରାମୟା ସର୍ବେ ଭଦ୍ରାଣି ପଶ୍ୟନ୍ତୁ ମା କଶ୍ଚିତ ଦୁଃଖଭାବ ଭବେ" ମାନବବାଦର ଏହି ମହାନ ଦର୍ଶନ ଆଜି କିଛି ଲୋକଙ୍କୁ ଧର୍ମାନ୍ଧ କରିଛି । ଏହା ହିନ୍ଦୁଧର୍ମର ଆଦର୍ଶକୁ ପ୍ରଚାର କରି ପାରିବ ନାହିଁ, ଏହା ସେମାନଙ୍କୁ ସଂକୀର୍ଣ୍ଣମନା କରିବ । ହିଂସା ପ୍ରଣଦୀତ କାର୍ଯ୍ୟରେ ମାତି ମଣିଷ ଯୁଗଯୁଗ ଧରି ଅଶାନ୍ତର ଅନଳରେ ଦଗ୍ଧିଭୂତ ହେଉଥିଲା । ଏହି ତିକ୍ତ ଅନୁଭୂତିରୁ ରକ୍ଷାପାଇବା ପାଇଁ ପ୍ରେମକୁ ହିନ୍ଦୁ ଧର୍ମ ଗ୍ରହଣ କରିଛି । ହିନ୍ଦୁ ଧର୍ମର ଏହି ଆର୍ଦଶକୁ ଯେଉଁମାନେ ବିଭତ୍ସ ଓ ବିକଳାଙ୍ଗ କରୁଛନ୍ତି ସେମାନେ ନିଜକୁ ହିନ୍ଦୁ ବୋଲି ଭାବିବା ଭ୍ରମାତ୍ମକ । ହିନ୍ଦୁ ଧର୍ମର ଏହି ମହାନ ଆଦର୍ଶ ସାରାବିଶ୍ୱକୁ ଦିନେ ଭାତୃତ୍ୱର ବନ୍ଧନରେ ବାନ୍ଧି ସାରା ବିଶ୍ୱରେ ଅଗ୍ରପୂଜା ହୋଇଥିଲା, କିନ୍ତୁ ଧର୍ମାନ୍ଧମାନଙ୍କ ଆଚରଣ ହେତୁ ତାହା ଆଜି ମଳିନ ହୋଇଛି । ଏକଥା ପ୍ରତ୍ୟେକ ହିନ୍ଦୁ ବୁଝିବା ଦରକାର । ଦୁଃଖର କଥା ଯେ ସିନ୍ଧୁ ନଦୀ କୂଳରୁ ମାନବବାଦର ହିନ୍ଦୁଧର୍ମ ଉତ୍ପତ୍ତି ଲାଭ କରିଥିଲା । ଆଜି ସେହି ସିନ୍ଧୁ ନଦୀର କୂଳେକୂଳେ ବସବାସ କରୁଥିବା ଅଧିବାସୀମାନେ ଅଧିକ ହିଂସାତ୍ମକ ଆଚରଣ କରୁଛନ୍ତି । ହିନ୍ଦୁଧର୍ମର ମୌଳିକ ତତ୍ତ୍ୱ ଯେତିକି ଯେତିକି ଅଧିକ ପ୍ରସାର ଲାଭ କରିବ ସେତିକି ସେତିକି ଅଧିକ ଶାନ୍ତିମୟ ବାତାବରଣ ବିଶ୍ୱରେ ବିଛେଇ ହୋଇଯିବ । ହିନ୍ଦୁବୋଲି ନିଜକୁ ଯେଉଁମାନେ ଭାବି ଗର୍ବ କରୁଛନ୍ତି, ଏଦିଗରେ ସେମାନଙ୍କର ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଛି ବୋଲି ସେମାନେ ଭାବିବା ଉଚିତ । ତା ନହେଲେ ଗ୍ରିକ୍ ଟ୍ରାଜେଡ଼ି ପରି ହିନ୍ଦୁସଭ୍ୟତା କ୍ରମେକ୍ରମେ ଧ୍ୱସ୍ତ ବିଧ୍ୱସ୍ତ ହୋଇଯିବ । ଅବଶ୍ୟ ମାନବବାଦ ଉପରେ ପ୍ରତିଷ୍ଠିତ ହିନ୍ଦୁ ଧର୍ମ ବହୁ ଆକ୍ରମଣକୁ ପ୍ରତିହତ କରି ଏପର୍ଯ୍ୟନ୍ତ ତିଷ୍ଠି ରହିଛି । ଆଜିର ତଥାକଥିତ ହିନ୍ଦୁମାନେ ତାକୁ କ'ଣ ଧ୍ୱଂସ କରିଦେବାକୁ ଚାହିଁବେ ? ସେମାନେ ଭ୍ରମାତ୍ମକ ବିଚାର ଓ ଦେହ ସର୍ବସ୍ୱ ସଭ୍ୟତାରେ ପ୍ରଭାବିତ ଓ ରୁଗ୍ଣ ମନରେ ଆକ୍ରାନ୍ତ । ଏ ବ୍ୟାଧିରୁ ସେମାନେ ମୁକୁଳିବା ଦରକାର । ପ୍ରାଚୀନ ଭାରତୀୟମାନେ ପୃଥିବୀର ବହୁ ଦେଶକୁ ଯାଇ କୃଷି, ବାଣିଜ୍ୟ, ଶିକ୍ଷା, ସ୍ୱାସ୍ଥ୍ୟ କ୍ଷେତ୍ରରେ ଯେଉଁ ନିଃସ୍ୱାର୍ଥ ସେବା କରି ଯାଇଛନ୍ତି । ତା'ର ହଜାର ହଜାର ପ୍ରମାଣ

ଏବେ ଇଣ୍ଡୋନେସିଆ, ଥାଇଲାଣ୍ଡ, ମରକୋ ଇତ୍ୟାଦି ବହୁ ଦେଶରେ ମିଳୁଛି। ହିନ୍ଦୁଧର୍ମର ଏ ମହିମା ଆଜି କାହିଁକି ଏ ପରି ଅବଲୁପ୍ତ ପ୍ରାୟ ତାହା ସେମାନେ ଅନୁସନ୍ଧାନ କରିବା ଉଚିତ। ହିନ୍ଦୁ ଏକ ଧର୍ମ ନୁହେଁ, ତାହା ଏକ ବିଚାର, ଗାନ୍ଧିଥିଲେ ଏ ବିଚାରର ପ୍ରତିନିଧି, ତେଣୁ ଖାଣ୍ଟି ହିନ୍ଦୁ। ନାଥୁରାମ ଦୁଇ ହାତ ନିଜ ଛାତି ଉପରେ ଚାପି ରଖି ସେମାନଙ୍କୁ କହିଲେ, ନମସ୍ତେ, ପୁଣି କେବେ ଏକାଠି ଦେଖାହେବ କେଜାଣି। ଏତକ କହି ମନ୍ଦିର ପାହାଚରୁ ଓହ୍ଲାଇ ଆସି ଗୋଟିଏ ଟାଙ୍ଗାରେ ବସି ବିରଳା ହାଉସ୍‌ର ଜନଗହଳି ଭିତରକୁ ପଶିଗଲା। ସାଥୀମାନେ ପଛରେ ରହିଗଲେ। କାହାରି ସାହାଯ୍ୟ ନ ନେଇ ଗାନ୍ଧିଜୀଙ୍କୁ ଏକା ଏକା ହତ୍ୟାକରି ସାରା ପୃଥିବୀ ଥରି ଉଠିବ ଏବଂ ତାର ନାମ ସାରା ବିଶ୍ୱରେ ଚର୍ଚ୍ଚାହେବ। ଏଥିପାଇଁ ସେ ଆଉ କାହାରିକୁ ସାଙ୍ଗରେ ନେଇ ନଥିଲେ। ଗାନ୍ଧିଜୀ ସେଦିନ ନିଷ୍ଠାର ସହ ଗୀତାର ସେଇ ମନ୍ତ୍ରଟିକୁ ସାରାଦିନ ପଢ଼ି ଶୁଣାଇବାକୁ ସେ ମନୁକୁ କହିଥିଲେ। "ହେ ମାନବ ବିଶ୍ରାମ ନିଅ ନାହିଁ"। ଅର୍ଥାତ୍ ଆଳସ୍ୟ ତ୍ୟାଗ କରି କାମରେ ଲାଗିଯାଅ। ଉପବାସ ପରେ ପ୍ରଥମ ଥର ପାଇଁ ବିନା ସାହାଯ୍ୟରେ ସେ ଦିନ ସେ ଚାଲି ପାରୁଥିଲେ ତାଙ୍କର ଓଜନ ଅଧା ପାଉଣ୍ଡ ବଢ଼ି ଯାଇଥିଲା। ଏ କଥା ଦେଖି ସେ ଭାବିଲେ ଭଗବାନ ଚାହାଁନ୍ତି ସେ ଆଉ କିଛି କରନ୍ତୁ। ମଧ୍ୟାହ୍ନ ବିଶ୍ରାମ ପରେ ସେ ଅନେକ ଲୋକଙ୍କୁ ସାକ୍ଷାତ କରି ବାର୍ତ୍ତାଳାପ କଲେ। ସେମାନଙ୍କ ଭିତରେ ଥିଲେ ଲୌହମାନବ ଭାବେ ପରିଚିତ ସର୍ଦ୍ଦାର ବଲ୍ଲଭ ଭାଇ ପଟେଲ, ତାଙ୍କର ଅତ୍ୟନ୍ତ ଅନୁଗତ ସହଚର। ସେ ଥିଲେ ଅତ୍ୟନ୍ତ ବାସ୍ତବବାଦୀ ଓ ନେହେରୁ ଥିଲେ ଭାବପ୍ରବଣ ସମାଜବାଦୀ ଉଚ୍ଚାଭିଳାସୀ। ସେ ଦୁଇଜଣଙ୍କ ଭିତରେ ଥିଲା ଘୋର ମତପାର୍ଥକ୍ୟ ଯଦିତ ଦୁହେଁ ଥିଲେ ତାଙ୍କର ନିକଟତର ସହଯୋଗୀ। ଏହି ମତପାର୍ଥକ୍ୟ ଶେଷରେ ତିକ୍ତତାରେ ପରିଣତ ହେବାରୁ ନେହେରୁଙ୍କ ମନ୍ତ୍ରୀମଣ୍ଡଳରୁ ପଟେଲ ଇସ୍ତଫା ଦେଇଦେଲେ। ଏହାର ନକଲଟି ଗାନ୍ଧିଙ୍କ ଡ଼େସ୍କ ଉପରେ ପଡ଼ିଥିବା ଦେଖି ଗାନ୍ଧି ଭାବିଲେ ନେହେରୁଙ୍କ ବ୍ୟବହାର ପଟେଲଙ୍କୁ ଖୁବ୍ ଆଘାତ ଦେଇ ନଥିଲେ ସେ ତାଙ୍କ ସହ ବିଚାର ବିମର୍ଷ ନ କରି ଏପରି ପଦକ୍ଷେପ ନେଇ ନଥାନ୍ତେ। ଦୁହିଁଙ୍କ ଭିତରେ ଥିବା ମତପାର୍ଥକ୍ୟ ଆଗରୁ ଜଣାଥିଲା। ଏ ପ୍ରସଙ୍ଗରେ ଗାନ୍ଧି

ମାଉଣ୍ଟବେଟେନଙ୍କୁ ପଚାରିଥିବାରୁ, ମାଉଣ୍ଟବେଟେନ କହିଥିଲେ "Bath our necessary in the Service of India" ପରେ ଗାନ୍ଧି ଦୁଇଜଣଙ୍କୁ ଡ଼ାକି ଆଲୋଚନା କରୁଥିବା ବେଳେ ଆଭା ତାଙ୍କ ଖାଇବା ପାଇଁ ଛେଳି କ୍ଷୀର, ପରିବା, ଜୁସ ଓ କିଛି କମଳା ଆଣି ପାଖରେ ଥୋଇଲେ। ସେତକ ଶେଷ କରି ଗାନ୍ଧି ତାଙ୍କ ଚରଖା ଆଣିବାକୁ କହି ନେହେରୁ ଓ ପଟେଲଙ୍କୁ ସ୍ୱାଧିନତା ସଂଗ୍ରାମ ବେଳେ ଏକତ୍ର ବସି ନିଷ୍ପତ୍ତି ନେବାପରି ବୁଝାସୁଝା କର। ଇସ୍ତଫା ପତ୍ର ପ୍ରତ୍ୟାହାର କରିଦେଲେ। କିନ୍ତୁ ଉଭୟଙ୍କ ମଧ୍ୟରେ ଯେଉଁ ମତପାର୍ଥକ୍ୟ ଥିଲା, ତାହା ସେହିପରି ରହିଲା। ସେମାନେ ମିଳିମିଶି କାମ କରିବାର କୌଶଳ ଜାଣି ସକ୍ଷମ ହେଲେ ନାହିଁ। କାରଣ ସେମାନଙ୍କ ଦୃଷ୍ଟିକୋଣ ଥିଲା ପୂର୍ବ ପଶ୍ଚିମ ପରି ପୃଥକ ପୃଥକ, ଏହି କଥା ଗାନ୍ଧିଙ୍କୁ ଖୁବ କଷ୍ଟ ଦେଇଥିଲା। କାରଣ କଂଗ୍ରେସ ଦଳର ସଂଗଠନ କ୍ଷେତ୍ରରେ ପଟେଲଙ୍କର ଅବଦାନ ଥିଲା ଅବିସ୍ମରଣୀୟ। ପାଞ୍ଚଶହ ଷାଠିଏ ରାଜା ମହାରାଜାଙ୍କ ଉପରେ ଚାପ ପ୍ରୟୋଗ କରି ଭାରତକୁ ସାର୍ବଭୌମ ରାଷ୍ଟ୍ରରେ ପରିଣତ କରିବା ଥିଲା ତାଙ୍କର ଐତିହାସିକ କୃତିତ୍ୱ।

ନାଥୁରାମ, ଆପଟେ ଓ କାର୍‌କାରେ୍ ବିର୍ଲା ହାଉସ୍ ବଗିଚାରୁ ବାହାରିଲେ। ପରେ ପରେ ନାଥୁରାମ ଗାନ୍ଧିଙ୍କ ପ୍ରାର୍ଥନାସଭା ସ୍ଥଳୀର ଲୋକଗହଳି ଭିତରେ ହଜିଗଲା, ସେତେବେଳେ ସେ ବେଶ୍ ପ୍ରଫୁଲ୍ଲ ଜଣାପଡୁଥିଲା। ଆପଟେ ଓ କାର୍‌କାରେ୍ ବିରଳା ହାଉସ୍ ବିନାବାଧାରେ ପ୍ରବେଶ କଲେ। ସେମାନେ ପରସ୍ପର କଥା ହେଉନଥିଲେ। ଜନଗହଳି ବିକ୍ଷିପ୍ତ ଭାବରେ ଥିଲା। ପ୍ରାର୍ଥନାସଭାର ସମୟ ଆସିବା ମାତ୍ରେ ଲୋକେ ରୁଣ୍ଡ ହୋଇଗଲେ। ସେତେବେଳେକୁ ପ୍ରାୟ ୫ଟା ବାଜିଥିଲା। ସେ ଦୁଇଜଣ ନାଥୁରାମର ଦୁଇ ପାଖରେ ଏବଂ କେହି କାହାରିକୁ କିଛି କହୁନଥିଲେ କି କେହି କାହାରିକୁ ଚାହୁଁନଥିଲେ। ନାଥୁରାମ ଏପରି ଧିରସ୍ଥିର ହୋଇ ଯାଇଥିଲେ ଯେ, ମନେ ହେଉଥିଲା ସେ ଯେମିତି ସମସ୍ତଙ୍କୁ ଭୁଲିଯାଇଛି। ସେମାନଙ୍କର ଯୋଜନା ଥିଲା, ଗାନ୍ଧି ଲୋକଙ୍କ ଆଡ଼କୁ ଚାହିଁ ବସିଗଲା ପରେ ସେମାନେ ତାଙ୍କୁ ହତ୍ୟା କରିବେ। ମଦନ ପୋଲିସ୍ ପାଖରେ କହିଥିଲା। ସେତେବେଳେକୁ ସନ୍ଧ୍ୟା ୫ଟା

ବାଜି ସାରିଥିଲା । ଗାନ୍ଧି ଅଳ୍ପଟିକେ ବିଳମ୍ବରେ ପ୍ରାର୍ଥନା ସଭାକୁ ଆସିଲେ । ନାଥୁରାମ ସିଧା ଏକଲୟରେ ଆଡକୁ ଚାହିଁଥିଲା । ସେ ଏପରି ଧିରସ୍ଥିର ଥିଲା ଯେ ଜଣା ପଡୁଥିଲା ସେ ଯେମିତି ନିଜଭିତରେ ନିଜେ ହଜିଯାଉଛି । ମୋତେ ଖୁବ୍ ଡର ଲାଗୁଥିଲା । ମୁଁ ଭାବିଲି ସେ କ'ଣ ଏ କାମ କରିପାରେ ? ଏପରି କାର୍ଯ୍ୟ ସେ ଆଗରୁ କେବେ କରି ନଥିଲା । ହୁଏତ ସେ ନରଭସ୍ ହୋଇଯିବ । ତାଠାରୁ ଗାନ୍ଧି ୩୫ ଫୁଟ ଦୂରରେ ଥିଲେ । ସେତେବେଳେକୁ ପାଞ୍ଚଟା ବାଜି ଦଶ ମିନିଟ୍ ହୋଇଥିଲା । ପ୍ରାର୍ଥନା ସଭାକୁ ଆସିବାରେ ଗାନ୍ଧିଙ୍କର ଏପରି ବିଳମ୍ବ ହୁଏ ନାହିଁ । ଗାନ୍ଧି ଆସିଲେ ସାଙ୍ଗରେ ଥିଲେ ପଟେଲ । ପଟେଲଙ୍କ ସାଙ୍ଗରେ କଥା ହେଉଥିବା ବେଳେ ଗାନ୍ଧିଙ୍କର କଣ୍ଠସ୍ୱର ଖୁବ୍ ଗମ୍ଭୀର ଜଣାପଡିଥିଲା । ସେ ପଟେଲଙ୍କୁ କହିଲେ Take care of India ସୁଶୀଳା ନାୟାର ଦେଖାଯାଉନଥିଲେ । ଗାନ୍ଧି ପ୍ରାର୍ଥନାସଭାକୁ ଆସିଲା ବେଳେ ଯେଉଁ ଡାକ୍ତର ଜଣକ ତାଙ୍କ ଆଗେ ଆଗେ ଆସନ୍ତି ସେ ଏବେ ପାକିସ୍ଥାନରେ ଅଛନ୍ତି । ତାଙ୍କ ବଦଳରେ ଆଉ ଯେଉଁ ପୋଲିସ୍ ଅଫିସରଙ୍କୁ ନିଯୁକ୍ତ କରାଯାଇଥିଲା, ସେ ଗୋଟିଏ ଜରୁରୀ ମିଟିଂରେ ଯୋ ଦେବାକୁ ଯାଇଥିବାରୁ ସେଠାରେ ନଥିଲେ । ଆଭା ଓ ମନୁ ଦୁଇ ବାଳିକାଙ୍କ କାନ୍ଧରେ ଭରାଦେଇ ଗାନ୍ଧି ଯିବା ଆସିବା କରନ୍ତି । ସେମାନଙ୍କ କାନ୍ଧକୁ ଆଶ୍ରା କରି ଗାନ୍ଧି ଯିବାକୁ ଉଠିଲେ । ଏହା ହିଁ ଥିଲା ତାଙ୍କର ଶେଷ ଯାତ୍ରା । ଗାନ୍ଧି ବିରଳା ହାଉସ୍ ଆଡକୁ ନଯାଇ ଲନ୍ ଆଡକୁ ଗଲେ ଏବଂ ଯାଉ ଯାଉ ଆଭା ଆଉ ମନୁଙ୍କୁ ତାଙ୍କ ଆସିବାର ବିଳମ୍ବ ପାଇଁ ଗାଳି ଦେଉଥିଲେ । ତୁମେ ମୋର ଘଣ୍ଟା, ମୁଁ ଆଉ କେଉଁ ଘଣ୍ଟା ଦେଖିବି କାହିଁକି ? ତୁମେ ଠିକ୍ ସମୟରେ ସବୁ କର ବୋଲି ମୁଁ ଜାଣେ । ଆଜି ତୁମେ ବିଳମ୍ବ କଲ କାହିଁକି ? ନିର୍ଦ୍ଧିଷ୍ଟ ସମୟଠାରୁ ସାମାନ୍ୟ ବିଳମ୍ବ ମୁଁ ସହ୍ୟ କରିପାରେ ନାହିଁ । ସେମାନେ ଚାଲି ଆସି ପ୍ରାର୍ଥନା ମଣ୍ଡପ ପାଖରେ ପହଞ୍ଚିଲେ । ଗାନ୍ଧି ସେମାନଙ୍କ କାନ୍ଧରୁ ହାତ କାଢ଼ିନେଇଥିଲେ । ଏତିକି ବେଳେ ଗହଳି ଭିତରୁ ବାପୁଜୀ, ବାପୁଜୀ ବୋଲି ଧିର ଶବ୍ଦ ଶୁଭିଲା । ଆଉ ମାତ୍ର ତିନି ପାଦ ଥିଲା ପ୍ରାର୍ଥନା ମଣ୍ଡପରେ ପହଞ୍ଚିବାକୁ । ବଳିଷ୍ଠ ନାଥୁରାମ ଆଗେଇ ଆସିଲା ଗାନ୍ଧିଙ୍କ

ପାଖକୁ । ମନୁ ଭାବିଲା ସେ ବୋଧହୁଏ ଗାନ୍ଧିଙ୍କ ଚରଣ ସ୍ପର୍ଶ କରିବାକୁ ଚାହୁଁଛି । ସେ ତାର ଗୋଟିଏ ହାତ ବଢ଼ାଇ କହିଲା ଶାନ୍ତି ରକ୍ଷାକର । ନାଥୁରାମ ଯୋଡ ହସ୍ତରେ ଆଉ ଗୋଟିଏ ପାଦ ଆଗେଇ ଆସି କହିଲା, ନମସ୍ତେ ବାପୁଜୀ । ପିସ୍ତଲଟିକୁ ଦୁଇ ପାପୁଲି ମଝିରେ ଲୁଚାଇ ରଖିଥିଲା । ନାଥୁରାମ ମନୁକୁ ଠେଲିଦେଇ ପିସ୍ତଲର ଟ୍ରିଗରକୁ ତିନିଥର ଦାବୀ ଦେଲା । ତିନୋଟି ଯାକ ଗୁଳି ଶୀର୍ଣ୍ଣକଂକାଳ ଗାନ୍ଧିଙ୍କର ଛାତି ବିଦ୍ଧ କଲା । ବନ୍ଧୁକର ସେ ଶବ୍ଦରେ ସ୍ଥିର ନିଶ୍ଚଳ ଶାନ୍ତ ପରିବେଶ ଥରିଗଲା । ଲୋକେ ଇତସ୍ତତଃ ହୋଇଗଲେ । "ହେ ରାମ" କହି ଗାନ୍ଧି ଟଳିପଡିଲେ । ଅର୍ଦ୍ଧମୃତ ପ୍ରିୟ ବାପୁଙ୍କର ଶୁକ୍ଳ ବସ୍ତ୍ର ରକ୍ତରେ ଭିଜି ଯାଇଛି । ଆଖି ଦୁଇଟା ନିଶ୍ଚଳ ହୋଇଯାଇଛି । ତାଙ୍କର ସେ ପୁରୁଣା କାଳିଆ ଘଡିଟି ରକ୍ତର ଛିଟା ଲାଗି ଅଣ୍ଟାରେ ଝୁଲି ରହିଛି । ତାଙ୍କ ପାପୁଲି ଦୁଇଟି ଯୋଡି ହୋଇ ସତେ ଯେମିତି ଘାତକ ଆଡ଼କୁ ପ୍ରଣାମ କରିବା ଢ଼ଙ୍ଗରେ ସ୍ଥିର ହୋଇଯାଇଛି । ସମୟ ହୋଇଥିଲା ପାଞ୍ଚଟା ବାଜି ସତର ମିନିଟ୍ । ମାଉଣ୍ଟ ବେଟେନ ଗାଡିରୁ ଓହ୍ଲାଉ ଓହ୍ଲାଉ ଖବର ପାଇଗଲେ । କିଛି ସମୟ ପରେ ପୃଥିବୀର କୋଟି କୋଟି ଲୋକ ଯାହା ପଚାରିଥାନ୍ତେ ସେ ସେଇ ପ୍ରଶ୍ନ ପଚାରିଲେ "How it happend." ମାଉଣ୍ଟବେଟେନ ତତ୍‌କ୍ଷାଣାତ ପତ୍ନୀଙ୍କୁ ସାଙ୍ଗରେ ଧରି ବିରଳା ହାଉସ୍‌ରେ ପହଞ୍ଚିଲେ । ମୁହଁ ଘୋଡାଇଥିବା ଲୋକ କହିଲା ଏ କାମ ଜଣେ ମୁସଲମାନ କରିଛି । ମାଉଣ୍ଟବେଟେନ ପ୍ରଚଣ୍ଡ ଚିତ୍କାର କରି କହିଲେ "What ? Who didit. Who is the Criminal. ଗାନ୍ଧିଙ୍କର ହତ୍ୟା ଖବର ବିଜୁଳି ବେଗରେ ବ୍ୟାପିଗଲା ସାରା ପୃଥିବୀବ୍ୟାପୀ । ଅଲ ଇଣ୍ଡିଆ ରେଡ଼ିଓ ଯେଉଁ ଢଙ୍ଗରେ ବର୍ଣ୍ଣନା କରି ଏ ଖବର ପ୍ରଚାର କଲା ତାହା ସାରା ଭାରତକୁ ଥରହର କରିଦେଲା । ପ୍ରଶ୍ନଥିଲା ହତ୍ୟାକାରୀ କିଏ, ହିନ୍ଦୁ ନା ମୁସଲମାନ ? ପୋଲିସ୍ ଅଲ ଇଣ୍ଡିଆ ରେଡ଼ିଓକୁ ଯେଉଁ ଖବର ଦେଇଥିଲା, ସେଥିରେ ଅଭିଯୁକ୍ତ ଥିଲା ନାଥୁରାମ ଏବଂ ସେ ଥିଲା ଜଣେ ବ୍ରାହ୍ମଣ ଓ ଆରଏସ୍‌ଏସ୍‌ର ସଭ୍ୟ । ସାରା ଭାରତରେ ଖେଳିଗଲା ଗଭୀର ଶୋକର ଛାୟା । ଇଂରେଜ କବଳରୁ ଯିଏ ଭାରତକୁ ସ୍ୱାଧୀନ କରିଥିଲେ ଏବଂ ଜଣେ ମହର୍ଷି

ପରି ଅନାଶକ୍ତ ରହି ସାରାବିଶ୍ୱରେ ରାଜତନ୍ତ୍ରର ଅବସାନ ପାଇଁ ଯିଏ ଜାଗରଣ ସୃଷ୍ଟି କରିଥିଲେ, ତାଙ୍କୁ ଜଣେ ହିନ୍ଦୁ ହତ୍ୟା କରିଛନ୍ତି। ଏହା ଥିଲା ଅଲ୍ ଇଣ୍ଡିଆ ରେଡ଼ିଓର ଖବର । ଏ ଖବର ଶୁଣି ଖାଲି ଭାରତ କାହିଁକି ସାରା ପୃଥିବୀ ସ୍ତବ୍ଧ ହୋଇଗଲା। ତାଙ୍କ ମରଶରୀରକୁ ନିଆଯାଇ ବିରଳା ହାଉସ୍‌ରେ ଗାନ୍ଧି ଯେଉଁ କୁଶଶଯ୍ୟାରେ ନିଦ୍ରା ଯାଉଥିଲେ, ଯେଉଁ ଅରଟରେ ସୂତା କାଟୁଥିଲେ ତା ପାଖରେ ରଖାଗଲା। ସେ ବ୍ୟବହାର କରୁଥିବା ଚପଲ, ଖାଇବା ପାତ୍ର, ରକ୍ତ ଭିଜା ଚାଦର, ତାଙ୍କର ତିନି ମାଙ୍କଡ, ଅରଟ, ଜେରଭା ଜେଲରେ ବ୍ୟବହାର କରିଥିବା ଖାଇବାର ଟିଣ ପାତ୍ର ଇତ୍ୟାଦି ପଦାର୍ଥମାନ ତାଙ୍କ ମରଶରୀର ପାଖରେ ରଖାଗଲା। ତାଙ୍କର ଏକ ପ୍ରତିମୂର୍ତ୍ତି ଓ ପ୍ରିୟଗୀତା ମଧ୍ୟ ରଖାଗଲା। ସେଠାରେ ମାଉଣ୍ଟବେଟେନ ପହଞ୍ଚିଲା ବେଳକୁ ବିରଳା ହାଉସ୍ ଲୋକାରଣ୍ୟରେ ଫାଟି ପଡୁଥିଲା। ଅଶ୍ରୁଜଳରେ ଜୁଡୁବୁଡୁ ନେହେରୁଙ୍କ ସୁନ୍ଦର ମୁହଁଟି ବିବର୍ଣ୍ଣ ହୋଇଥିଲା। ପଟେଲ କାନ୍ଥକୁ ଆଉଜି ପଥର ପରି ପଡ଼ି ରହିଥିଲେ। ମନୁ କରକାପାତରେ ଝାଉଁଳି ପଡିଥିବା ପଦ୍ମଫୁଲଟିଏ ପରି ବସିରହି ତା'ର ପ୍ରିୟ ବାପୁଙ୍କର ହାତ ପାପୁଲିଟିକୁ କୋଳରେ ଧରି ନିଃଷ୍ପ୍ରାଣ ଜଡ଼ ପରି ବସି ରହିଥିଲା। ଦୁଃଖରେ ଅଧିର ମହିଳାମାନେ ତାଙ୍କ ପାଖରେ ବସି କରୁଣ ସ୍ୱରରେ ଗୀତାପାଠ କରୁଥିଲେ। ଯିଏ ତାଙ୍କୁ ଜଣେ ଦେବପ୍ରତିମ ପୂଜ୍ୟପାଦ ବୋଲି ବିଶ୍ୱାସ କରୁଥିଲେ ସେଇ ମାଉଣ୍ଟ ବେଟେନ ଲୁହ ଛଳ ଛଳ କୋମଳ ଶିଶୁଟିଏ ପରି ନିର୍ବାକ ହୋଇ ତାଙ୍କୁ ଚାହିଁ ରହିଥିଲେ। ଗାନ୍ଧି ସବୁବେଳେ ଶାନ୍ତ ଓ ନିରୁଦବିଗ୍ନ ଥିଲେ ଠିକ୍ ସେହିପରି ତାଙ୍କ ଶଯ୍ୟାରେ ଶାନ୍ତ ନିଶ୍ଚଳ ହୋଇ ପଡି ରହିଥିଲେ। ନିଷ୍ପନ୍ଦ ପରିସରକୁ ଦୋହଲାଇ ଦେଇ ପ୍ରଥମେ ମାଉଣ୍ଟବେଟେନ କହିଲେ, ସେ ବୁଦ୍ଧ, ଖ୍ରୀଷ୍ଟଙ୍କ ପରି ଇତିହାସରେ ଅମର ହୋଇ ରହିବେ। ଇଡୁଉଇନ୍ ବାପୁଙ୍କ ପାଦ ଦୁଇଟିକୁ ଜାବୁଡି ଧରି ପୋଷା ମୃଗୀଣିଟିଏ ପରି ନୀରବରେ ଅଶ୍ରୁ ବର୍ଷଣ କରୁଥିଲେ। ମାଉଣ୍ଟବେଟେନ, ନେହେରୁ ଓ ପଟେଲଙ୍କ ପାଖକୁ ଯାଇ ଦୁଇଜଣଙ୍କ ଉପରେ ହାତ ରଖି କହିଲେ Do n't Loose Heart. ଭାବିଲେ ଜାତି ଉଦ୍ଦେଶ୍ୟରେ ତାଙ୍କର ପ୍ରଥମ କାମ ହେବ Pray to thedeparted Soul ଭାବରେ ସେ ତାଙ୍କର ଅନ୍ତେଷ୍ଟି କ୍ରିୟାର ଉପସ୍ଥିତ

ରହିବା । ନେହେରୁ ଓ ପଟେଲଙ୍କ ସମ୍ମତି କ୍ରମେ ସେ ତାଙ୍କ ମରଶରୀରକୁ ସାଧାରଣ ଦର୍ଶନ ପାଇଁ ଗୋଟିଏ ସ୍ପେଶାଲ ଟ୍ରେନ୍‌ରେ ରଖି ସାରାଭାରତ ଭ୍ରମଣ କରିବାକୁ ଆଦେଶ ଦେଲେ । ଗାନ୍ଧିଙ୍କ ସେକ୍ରେଟାରୀ ପ୍ୟାରୀଲାଲ ଜଣାଇଲେ ଯେ, ଗାନ୍ଧିଙ୍କ ଅନ୍ତିମ ଇଚ୍ଛା ଥିଲା ତାଙ୍କ ମରଶରୀର ହିନ୍ଦୁ ପ୍ରଥା ଅନୁସାରେ ଚବିଶ ଘଣ୍ଟା ମଧ୍ୟରେ ଦାହ ହେବ । ମାଉଣ୍ଟବେଟେନ କହିଲେ ତା ହେଲେ ଆମେ ଏପରି ଆୟୋଜନ କରିବା ଯେ, ଦିଲ୍ଲୀରେ ଏପରି ଲୋକ ସମାଗମ ଆହୁରି କେହି କେବେ ଦେଖି ନଥିବେ । ମିଲିଟାରୀ ସଂଗଠନ ଛଡା ଆଉ କେହି ଏପରି ଆୟୋଜନ କରିପାରିବେ ନାହିଁ । ନେହେରୁ ଓ ପଟେଲ ତାଙ୍କ ଆଡ଼କୁ ଆଶ୍ଚର୍ଯ୍ୟରେ ଚାହିଁ ଭାବିଲେ ଗାନ୍ଧିଙ୍କ ଅନ୍ତେଷ୍ଟିକ୍ରିୟାର ପଟୁଆର ଯୁଦ୍ଧ କରିବାରେ ଅଭ୍ୟସ୍ତ ସୈନ୍ୟ ବାହିନୀ ନେବେ । ସେମାନେ ଅନିଚ୍ଛାକୃତ ସମ୍ମାନ ଜଣାଇଲେ । ମାଉଣ୍ଟ ବେଟେନ କହିଲେ ଭାରତର ସର୍ବଶ୍ରେଷ୍ଠ ଚିନ୍ତା ନାୟକଙ୍କ ଶବାଧାରାକୁ ସାମରିକ ବାହିନୀ ଅତ୍ୟନ୍ତ ଶୃଙ୍ଖଳିତ ଭାବରେ ସମ୍ମାନର ସହ ପଟୁଆରରେ ନେବେ । ନେହୁରୁଙ୍କୁ କହିଲେ "you must make an address to the nation. The people will be looking to you for a lead now. ନେହେରୁ କହିଲେ, ସେ ବର୍ତ୍ତମାନ ବିଚଳିତ, ସେ ପ୍ରସ୍ତୁତ ନୁହଁନ୍ତି, କ'ଣ କହିବେ । ମାଉଣ୍ଟବେଟେନ କହିଲେ "Don't worry, God will tell you what to say" ତାହା ଥିଲା ଭାରତର ଅହିଂସା ଦେବଦୂତଙ୍କର ଶେଷ ଯାତ୍ରା । ମନେହେଲା ଭାରତର ସ୍ୱାଧୀନତା ପାଇଁ ଗାନ୍ଧି ଯେପରି ସାରା ଭାରତର ଲୋକଙ୍କୁ ସାଙ୍ଗରେ ନେଇ ହରତାଳ କରିଥିଲେ, ମୃତ୍ୟୁ ବେଳେ ସାରାଦେଶର ଲୋକେ ଶୋକର ହରତାଳ ପାଳନ କଲେ । ଏ ଘଟଣା କୋଟି କୋଟି ଭାରତୀୟ ମାନଙ୍କର ହୃଦୟକୁ ଶୋକ ସନ୍ତପ୍ତ କରିଦେଲା । କଲିକତାର ମଇଦାନ ଜନଶୂନ୍ୟ ହୋଇଗଲା । ପାକିସ୍ଥାନର ଲକ୍ଷ ଲକ୍ଷ ମହିଳା ଉଚ୍ଚସ୍ୱରରେ ବିଳାପ କରୁଥିଲେ । ସାରା ଦେଶର ସବୁ ସହରରେ ଆର୍ .ଏସ୍.ଏସ. ଓ ହିନ୍ଦୁ ମହାସଭାର ପ୍ରତିଷ୍ଠାନ ଗୁଡ଼ିକୁ ଲୋକେ ଭଙ୍ଗାରୁଜା କରି ଧ୍ୱସ୍ତ ବିଧ୍ୱସ୍ତ କରିଦେଲେ । ମାଉଣ୍ଟବେଟେନ ଯେପରି ଆଶା କରିଥିଲେ, ସେହିପରି ସକାଳୁ ସକାଳୁ ଲୋକଙ୍କର ସୁଅ ମାଡ଼ି ଆସିଲା ।

ଭାରତର ରାଜଧାନୀ ଦିଲ୍ଲୀକୁ ଗୋଲାପ ଓ ସୁଗନ୍ଧ ମଲ୍ଲୀ ଫୁଲର ପାହାଡ଼ ପରି ଗଦା ଭିତରେ ଗାନ୍ଧିଙ୍କର ସାରା ମରଶରୀର ପୋତିହୋଇ ପଡ଼ିଲା । ପୋଲିସ ପକ୍ଷରୁ ଯତ୍ନର ସହିତ ତାଙ୍କର ମୁଖ ମଣ୍ଡଳକୁ ଅନାବୃତ୍ତ କରି ବିରଳା ହାଉସ୍‌ର ଦ୍ୱିତଳ ବାରଣ୍ଡାରେ ରଖାଗଲା । ତଳେ ଅସଂଖ୍ୟ ଲୋକଙ୍କର ଭିଡ଼ । କାଚ ଝରକା ବାଟେ ତାଙ୍କର ଶେଷ ଦର୍ଶନ ପାଇଁ ଲୋକ ଥାଟପଟାଳି ଭାଙ୍ଗୁଥିଲେ । ବଗିଚାର ଯେଉଁ ସ୍ଥାନରେ ହତ୍ୟା କରାଯାଇଥିଲା, ସେଠାରେ ଅତ୍ୟଧିକ ଲୋକ ଭିଡ଼ ହେତୁ ପୋଲିସକୁ ଶୃଙ୍ଖଳା ରକ୍ଷା କରିବାକୁ ନାକେଦମ ହେବାକୁ ପଡ଼ିଲା । ବେଳକୁ ବେଳ ସବୁଆଡ଼େ ଜନସମୁଦ୍ର ଉଛୁଳି ଉଠୁଥିଲା । ତାଙ୍କ ଡ଼ାକରାରେ ହରତାଳ ବେଳେ ଲୋକେ ଯେପରି ପୋଲିସର ଲାଠି ଓ ବନ୍ଧୁକକୁ ନଡ଼ରି ସମୁଦ୍ର ଜୁଆର ପରି ମାଡ଼ି ଆସୁଥିଲେ, ଠିକ୍ ସେହିପରି ତାଙ୍କ ଶେଷ ଦର୍ଶନ କରିବାକୁ ଲୋକେ ମାଡ଼ି ଆସୁଥିଲେ । ସବୁଆଡ଼େ ଶୋକବାର୍ତ୍ତା ଦିଲ୍ଲୀରେ ଅଜାଡ଼ି ହୋଇ ପଡ଼ିଲା । ଖବର ପହଞ୍ଚିଲା ମାତ୍ରେ ଲଣ୍ଡନ ସହର ଜନଶୂନ୍ୟ ହୋଇଗଲା । ଲଣ୍ଡନର ବୁଦ୍ଧିଜୀବିମାନେ ଆଲୋଚନା କରୁଥିଲେ ପନ୍ଦର ବର୍ଷ ତଳେ ଯେଉଁ ଗାନ୍ଧି ଖଣ୍ଡେ ମୋଟା ଖଦଡ଼ ପିନ୍ଧି ସାଙ୍ଗରେ ଛେଳିଟିଏ ଧରି ଲଣ୍ଡନକୁ ଆସିଥିଲେ ବ୍ରିଟିଶ୍ ସମ୍ରାଟଙ୍କୁ କହିବା ପାଇଁ ମୁକୁଟ କାଢ଼ିଦିଅ । ସେଇ ଗାନ୍ଧିଙ୍କର ଆଜି ମୃତ୍ୟୁ ହୋଇଛି ସମ୍ରାଟଙ୍କର ମୁକୁଟ କାଢ଼ିନେଲା ପରେ । ବିଲାତର ପ୍ରଧାନମନ୍ତ୍ରୀ A clement Attlee, ଗାନ୍ଧିଙ୍କ ପୁରୁଣା ଶତ୍ରୁ winston charchill, stafford crips, Conterburyର Archbishop ଏବଂ ଅନ୍ୟ ହଜାର ହଜାର ଲୋକ ଦିଲ୍ଲୀକୁ ସେମାନଙ୍କର ଗଭୀର ଶୋକବାର୍ତ୍ତା ପଠାଇଲେ । ୧୯୩୧ ମସିହାରେ ଯେଉଁ ପ୍ରଖ୍ୟାତ ନାଟ୍ୟକାର bernad Shawକୁ ଗାନ୍ଧି ଲଣ୍ଡନରେ ସାକ୍ଷାତ୍ କରିଥିଲେ, ସେ ମଧ୍ୟ ପଠାଇଥିଲେ ଗଭୀର ଶୋକବାର୍ତ୍ତା, ଚୀନ, ଜାପାନ ଓ ଇଣ୍ଡୋନେସିଆ ଆଦି ଦେଶରୁ ଯେଉଁ ଶୋକବାର୍ତ୍ତା ମାନ ଆସିଥିଲା, ସେଥିରେ ତାଙ୍କୁ ଏସିଆ ମହାଦେଶର ମୁକ୍ତିଦାତା ବୋଲି ବର୍ଣ୍ଣନା କରାଯାଇଥିଲା । ସେସବୁ ଥିଲା ଅତ୍ୟନ୍ତ ମର୍ମସ୍ପର୍ଶୀ । ପୃଥିବୀର କୌଣସି ସଂବାଦ ପତ୍ର ନଥିଲା ଯେଉଁଥିରେ ତାଙ୍କ ମୃତ୍ୟୁ ଖବର ପ୍ରଚାରିତ ହୋଇ ନଥିଲା କିମ୍ବା ଶୋକ ପ୍ରକାଶ

କରାଯାଇ ନଥିଲା । ସେମାନେ ଗାନ୍ଧିଙ୍କର ଭୂୟସୀ ପ୍ରସଂଶା କରି ଲେଖିଥିଲେ "ସଂଯମ, ଶୃଙ୍ଖଳା, ସତ୍ୟ, ନିଷ୍ଠା, ତ୍ୟାଗ, ବିପ୍ଳବ, ସ୍ୱାଧୀନଚେତା, ସ୍ୱାଭିମାନ, ସମୟାନୁ ବର୍ତ୍ତିତା, ଚତୁରତା, ପ୍ରେମ ଓ ଅହିଂସା ସ୍ୱାବଲମ୍ବନଶୀଳତା ଓ ଈଶ୍ୱର ବିଶ୍ୱାସ କ୍ଷେତ୍ରରେ ପୃଥିବୀର ଅନନ୍ୟ ଜନନେତା ଓ ତାଙ୍କ ବିୟୋଗରେ ଯେଉଁ ଶୂନ୍ୟସ୍ଥାନ ସୃଷ୍ଟି ହେଲା ତାହା ପୂରଣ ହେବା ଅସମ୍ଭବ।" ଜବାହର ଲାଲଙ୍କ ଭଗିନୀ ବିଜୟଲକ୍ଷ୍ମୀ ନେହେରୁ ନୂଆକରି ନିଯୁକ୍ତି ପାଇଥିବା ରୁଷିଆର ଆମ୍ବାସାଡ଼ାର ଭାବେ ତାଙ୍କ ପ୍ରତି ଗଭୀର ଶୋକପ୍ରକାଶ କରିଥିଲେ । ତାଙ୍କୁ ଶତୃ ବୋଲି ଭାବୁଥିବା ମହମ୍ମଦ ଅଲ୍ଲୀ ଜିନା ମଧ୍ୟ ତାଙ୍କର ଭୂୟସୀ ପ୍ରଶଂସା କରି ତାଙ୍କ ଶୋକବାର୍ତ୍ତାରେ ଲେଖିଥିଲେ: Great Hindu has gone. ମଧ୍ୟ ରାତ୍ର ପରେ ମହାତ୍ମାଙ୍କ ମର ଶରୀରକୁ ବିରଳା ହାଉସ୍ ବାଲକୋନୀରୁ ତଳକୁ ଅଣାଗଲା । ସାଙ୍ଗରେ ଥିଲେ ମନୁ, ଆଭା, ତାଙ୍କ ସେକ୍ରେଟାରୀ ପ୍ୟାରିଲାଲ, ଦୁଇ ପୁଅ ଦେବଦାସ ଓ ରାମଦାସ ଏବଂ ଆଉ କେତେ ଜଣ । ମର ଶରୀରକୁ ରଖିବା ପାଇଁ ବିରଳା ହାଉସ୍‌ର ମାର୍ବଲ ଚଟାଣକୁ ମନୁ ଓ ଆଭା ସଜ ଗୋବରରେ ଲିପିପୋଛି ଶୁଦ୍ଧ ପବିତ୍ର କଲେ । ତାଙ୍କର ପୁଅମାନେ ତାଙ୍କୁ ଗାଧୋଇ ଦେଇ ଘର ତିଆରି ଧଳା ଖଦଡ଼ ଘୋଡ଼ାଇ ଦେଲା ପରେ ତାଙ୍କୁ ଏକ କାଠ ପଟା ଉପରେ ରଖିଲେ । ଜଣେ ବ୍ରାହ୍ମଣ ପୂଜକ ତାଙ୍କ ଛାତିରେ ଚନ୍ଦନର ଲେପଦେଲା ପରେ ମନୁ ତାଙ୍କ କପାଳରେ ସିନ୍ଦୁର ଟିକାଟିଏ ଲଗାଇ ଦେଲା । ତା ପରେ ସେ ଦୁଇ ବାଳିକା ଅତି ଯତ୍ନରେ ତାଙ୍କ ମଥାରେ 'ହେ ରାମ' ଲେଖି ପାଦକୁ ଗୋଲାପ ଫୁଲରେ ସଜାଇ ଦେଲେ । ଗାନ୍ଧି ପ୍ରାର୍ଥନା ପାଇଁ ପ୍ରତିଦିନ ରାତି ୨.୩୦ମି.ରେ ଉଠନ୍ତି । ସେମାନେ ଏ କାର୍ଯ୍ୟ କଲେ ଠିକ୍ ସେଇ ସମୟରେ । ଏହାପରେ ତାଙ୍କର ପୁତ୍ର ଓ ଅନ୍ୟମାନେ କ୍ଷୀଣ ଓ କୋମଳ କଣ୍ଠରେ ପ୍ରାର୍ଥନା କଲେ । ପରେ ତାଙ୍କୁ ଫୁଲରେ ସଜାଇ ଦିଆଗଲା ଏବଂ ତା ପୂର୍ବଦିନ ଶେଷଥର ପାଇଁ ଯେଉଁ ସୁତା ନିଜେ କାଟିଥିଲେ ତାହାର ଏକ ମାଳ ତାଙ୍କ ଗଳାରେ ପିନ୍ଧାଇ ଦେଲେ ତାଙ୍କ ପୁତ୍ର । ଏହାପରେ ବହୁ ଉଚ୍ଚ ପଦାଧିକାରୀ, ମାନ୍ୟଗଣ୍ୟ ଅସଂଖ୍ୟ ବୁଦ୍ଧିଜୀବି, ମନ୍ତ୍ରୀ, ଅଫିସର, ଗଭର୍ଣ୍ଣର, ମେହେନ୍ତର ତଥା ସବୁ ଜାତି, ଧର୍ମ, ବର୍ଣ୍ଣ ନିର୍ବିଶେଷରେ ବିଶାଳ ପଟୁଆର ପ୍ରସ୍ତୁତ ହେଲା ।

ଶବାଧାର ସାଙ୍ଗରେ ଯାତ୍ରା କରିବାକୁ ଗଭର୍ଣ୍ଣର ଜେନେରାଲ ପୂର୍ବତନ ଭାଇସ୍ ରାୟ ମାଉଣ୍ଟବେଟେନଙ୍କ ସ୍ୱତନ୍ତ୍ର ଅଙ୍ଗରକ୍ଷୀ ବାହିନୀ ସମେତ ନିଜେ ମାଉଣ୍ଟବେଟେନ, ପଟେଲ, ନେହେରୁ, ମନ୍ତ୍ରୀମଣ୍ଡଳର ସଦସ୍ୟମାନେ ବିଶାଳ ଏକ ଶୋକସନ୍ତପ୍ତ ପଟୁଆର ବାହାରିଲା। ତାଙ୍କ ଅନ୍ତେଷ୍ଟିକ୍ରିୟା ସ୍ଥାନ ରାଜଘାଟକୁ ନେବାପାଇଁ ବିରଲା ହାଉସ୍‌ଠାରୁ ରାଜଘାଟ ପର୍ଯ୍ୟନ୍ତ ପାଞ୍ଚମାଇଲ ବ୍ୟାପୀ ରାସ୍ତାରେ ଗୋଲାପ ଓ ଅନ୍ୟ ଅସଂଖ୍ୟ ଜାତିର ଫୁଲର ଗାଲିଚା ପଡ଼ିଥିଲା। ରାସ୍ତାର ଦୁଇ ପାର୍ଶ୍ୱ ଓ ସବୁ ଛାତରେ ଭରପୁର ହେ ବାପୁ ବାପୁ କହି ଶୋକରେ ବିଳାପ କରୁଥିଲେ। ଆଗେ ଆଗେ ଚାଲିଥିଲା ସାମରିକ ବାହିନୀ। ସବୁଆଡୁ ମାଡ଼ି ଆସୁଥିଲେ ଜନସମୁଦ୍ର। ମନେ ହେଉଥିଲା ସମଗ୍ର ଦିଲ୍ଲୀ ଆଉ ଯାଗା ନାହିଁ, ଲୋକସମୁଦ୍ରକୁ ଧରିବା ପାଇଁ। ସାମରିକ ବାହିନୀର ବିଗୁଲ ତାଳେ ତାଳେ କ୍ଷୀଣ ପାଦରେ ଆଗେଇ ଚାଲିଥିଲା ଶୋକସନ୍ତପ୍ତ ବିଶାଳ ଶବ ଶୋଭାଯାତ୍ରା। ଦୀର୍ଘ ପାଞ୍ଚ ମାଇଲ ଧରି ଯମୁନା ନଦୀକୂଳ ଅନ୍ତେଷ୍ଟି ସ୍ଥାନର ସଜଡ଼ା ଯୁଇ ପାଖକୁ। ଅପୂର୍ବ ସେ ଦୃଶ୍ୟ କେବେ କୌଣସି ସମ୍ରାଟଙ୍କ ମୃତ୍ୟୁରେ ଲୋକେ ଦେଖି ନଥିଲେ। ସେ ନଥିଲେ କୌଣସି ସମ୍ରାଟ, ଧନର କୁବେର ଅବା ନିର୍ବାଚିତ ରାଜନେତା। ସେଥିଲେ ଦୀନ ଦରିଦ୍ର ଜନତାର ସଖା ସହୋଦର, ସେଥିଲେ ଚାଳିଶ କୋଟି ଭାରତବାସୀଙ୍କ ମୁକ୍ତି ଦାତା, ସେ ଥିଲେ ସାରା ବିଶ୍ୱରେ ଗଣତାନ୍ତ୍ରିକ ଚେତନାର ଜନ୍ମଦାତା, ଆଉ ସେ ଥିଲେ ସର୍ବଶକ୍ତିମାନ ମୁକୁଟ ବିହିନ ସମ୍ରାଟ। ତଥାପି ତାଙ୍କ ଶବାଧାରର ପାଖେପାଖେ ଚାଲିଥିଲା ବିଶାଳ ସମୁଦ୍ର ପରି ଜନତାର ସୁଅ, ଯାହା ପୃଥିବୀର ମାନବ ଇତିହାସରେ କେହି କେବେ ଦେଖି ନଥିଲା। ଦୀର୍ଘ ପାଞ୍ଚ ଘଣ୍ଟାରେ ପାଞ୍ଚ ମାଇଲ ପଥ ଅତିକ୍ରମ କରି ବିଶାଳ ପଟୁଆର ପହଞ୍ଚିଲା ଯୁଇ ପାଖରେ। ପଶ୍ଚିମ ଦିଗ ଅସ୍ତଗାମୀ ସୂର୍ଯ୍ୟର ଅରୁଣିମା ଭିତରୁ ବୃଷ୍ଟି ହୋଇଥିଲା ଅମୃତର ଧାରା। ଯମୁନା କୂଳର ସେ ବିସ୍ତୀର୍ଣ୍ଣ ବେଳାଭୂମିକୁ ପ୍ରକମ୍ପିତ କରି ଉଚ୍ଛୁଳି ଉଠିଲା ଲକ୍ଷ ଲକ୍ଷ ଶୋକାକୁଳ କଣ୍ଠରୁ "ମହାତ୍ମା ଗାନ୍ଧୀ ଅମର ହୋ, ମହାତ୍ମା ଗାନ୍ଧି ଅମର ହୋଇଗଲେ"। ହେଲିକପ୍ଟର ସାହାଯ୍ୟରେ ଆକାଶ ଯାଏ ବୃଷ୍ଟି ହେଲା ଲକ୍ଷ ଲକ୍ଷ ଗୋଲାପର ସ୍ତବକ ଆଉ ସତଦଳର ଓ ନୀଳ କମଳର ସହସ୍ର

ପାଖୁଡ଼ା ସବୁ। ସାମରିକ ବାହିନୀ ଭିତରୁ ଅଭିବାଦନର କଣ୍ଠସ୍ୱର। ମନେ ହେଉଥିଲା ସ୍ୱର୍ଗ ରାଜ୍ୟର ଦେବତାମାନେ କୋଳାହଳ କରି ପୁଷ୍ପ ବୃଷ୍ଟି କରୁଥିଲେ, ବାହୁଡ଼ା ଆତ୍ମାର ସ୍ୱାଗତ ସମ୍ବର୍ଦ୍ଧନା ପାଇଁ। ହିନ୍ଦୁ ଧର୍ମର ସମସ୍ତ ରୀତିନୀତି କଠୋର ଶୃଙ୍ଖଳା ମଧ୍ୟରେ ସମାପନ କଲାପରେ ଚନ୍ଦନ କର୍ପୁର ଘୃତାହୁତୀରେ ନିମିଷକେ ଜଳି ପାଉଁଶ ହୋଇଗଲା ଗାନ୍ଧିଙ୍କର ଜଡ଼ ଶରୀର ପଞ୍ଚଭୂତରେ ମିଶିଗଲା। ପଞ୍ଚଭୂତର ଉପାଦାନ ସବୁ ଆକାଶ, ପାତାଳ ବିଶ୍ୱ, ବ୍ରହ୍ମାଣ୍ଡରେ ଭେଦି ରହିଥିବ। ଗାନ୍ଧିଙ୍କର ଅମର ଆତ୍ମା ଶବାଧାରରେ ଏପରି ବିଶାଳ ଜନସମୁଦ୍ର ଦେଖି ସ୍ତବ୍ଧ ହୋଇଗଲା ସମଗ୍ର ମେଦିନୀ। ସାରା ପୃଥିବୀର ସମସ୍ତ ସମ୍ବାଦ ପତ୍ରରେ ପ୍ରକାଶ ପାଇଲା କୋଟି କୋଟି କଣ୍ଠରୁ ଶୋକାକୁଳ ଆର୍ତ୍ତନାଦ। ଭାରତ ବର୍ଷର ଚାଳିଶ କୋଟି ଜନତାଙ୍କୁ ମୁକ୍ତିର ଅମୃତଦାନ କରି ନିଶ୍ୱ ହସ୍ତରେ ଫେରିଗଲେ ମହାପ୍ରାଣ ପୂଣ୍ୟଶ୍ଳୋକ ଗାନ୍ଧି । ପଛରେ କେବଳ ଛାଡ଼ିଗଲେ ଅନ୍ୟାୟର ବିରୋଧରେ ବିଶାଳ ସମୂଦ୍ର ଜୁଆର। ସେ ଥିଲେ ଏକ ଅନନ୍ୟ ପ୍ରତିଭା। ଯାହାଙ୍କର ହୃଦୟ ଦୟାରେ ବିଚଳିତ ହେଉଥିଲା। ଦୁର୍ଗତର ନିଃସ୍ୱାର୍ଥ ସେବା ଓ ତ୍ୟାଗ ପାଇଁ ଏହାହିଁ ଥିଲା ତାଙ୍କ ଉପାସନାର ବସ୍ତୁ। ତେଣୁ ଅନାସକ୍ତ ନିଷ୍କାମ କର୍ମଯୋଗୀ ମିଶିଗଲେ ଅନନ୍ତ ଭୂମୀରେ ଜନ୍ମ ମୃତ୍ୟୁ ଚକ୍ରକୁ ଅତିକ୍ରମ କରି । ଆପଣା ଆପଣା ସ୍ୱାର୍ଥ ପାଇଁ କଳହରେ ଲିପ୍ତରହି ହଜାର ହଜାର ବର୍ଷ ଧରି ଭାରତ ଥିଲା ବହୁଖଣ୍ଡରେ ବିଭକ୍ତ, ପରାଧୀନ, ଦୁର୍ବଳ ଓ ଦରିଦ୍ର। ଭାରତର ସାର୍ବଭୌମ ଅଖଣ୍ଡତା ଓ ସ୍ୱାଧୀନତାକୁ ରକ୍ଷା କରିବା ପାଇଁ ଗାନ୍ଧି ଦର୍ଶନହିଁ ଆମର ଆଶ୍ରୟ।

ଗାନ୍ଧୀଙ୍କ ହତ୍ୟାକାଣ୍ଡରେ ଅଭିଯୁକ୍ତ ଥିଲେ ୨୭ଜଣ। ପରେ ସେମାନଙ୍କ ସଂଖ୍ୟା ୮କୁ ଖସି ଆସି, ୮ଜଣଙ୍କୁ ବିଚାର ପାଇଁ ପଠାଯାଇ ଥିଲା। ସେମାନେ ହେଲେ ନାରାୟଣ ଆପ୍‌ଟେ, ନାଥୁରାମ ଗଡ଼ସେ, ଗୋପାଲ ଗଡ଼ସେ, ମଦନ ଲାଲ୍, କାର୍‌କାରେ, ସର୍ବକାର, ପାରଚୁର ଓ ଦିଗାମ୍ବର । ଶେଷରେ ଇଣ୍ଡିଆନ ପେନାଲ କୋଡ୍ ଅନୁସାରେ ନାରାୟଣ ଆପ୍‌ଟେ ଓ ନାଥୁରାମ ଗଡ଼ସେଙ୍କୁ ଅମ୍ବଲା ଜେଲରୁ ନିଆଯାଇ ୧୯୪୯ ନଭେମ୍ବର ମାସ ୧୫ ତାରିଖରେ ମୃତ୍ୟୁ ଦଣ୍ଡ

ଦିଆଯାଇଥିଲା । ଫୁସ୍‌ଫୁସ୍ Cancer ରୋଗରେ ପୀଡ଼ିତ Mhammad Ali zina ୧୯୪୮ ମସିହା ସେପ୍ଟେମ୍ବର ମାସରେ ଗାନ୍ଧିଙ୍କ ହତ୍ୟାର ଆଠ ମାସପରେ ମୃତ୍ୟୁ ବରଣ କଲେ । କିନ୍ତୁ ସେ ଜିନା ଜିଦ୍ ଧରି ଭାରତକୁ ବିଭାଜନ କରି ପାକିସ୍ଥାନକୁ ଜନ୍ମ ଦେଲେ, ମାତ୍ର ପାକିସ୍ଥାନକୁ ଦୁସ୍ଥ ଓ ଦରିଦ୍ର କରି ଚାଲିଗଲେ । ୧୯୬୫ ଓ ୧୯୭୧ ତାଙ୍କ ପାଇଁ ଯେଉଁ ଯୁଦ୍ଧ ହୋଇଥିଲା ତାହା ପାକିସ୍ଥାନ ଓ ବାଙ୍ଗଲା ଦେଶର ମେରୁଦଣ୍ଡକୁ ଏପରି ଭାଙ୍ଗିଦେଲା ଯେ, ସେ ଦୁଇ ଦେଶ ଏ ପର୍ଯ୍ୟନ୍ତ ଅଣ୍ଟାସଳଖ କରି ଠିଆହୋଇ ପାରୁ ନାହାଁନ୍ତି । ଆର୍ଥିକ ଦୁର୍ଗତି ସେ ଦୁଇ ଦେଶକୁ ଏ ପର୍ଯ୍ୟନ୍ତ ପେଷି ଦେଉଛି । ଭାରତର ବିଭାଜନ ପରେ ଖଣ୍ଡିତ ଭାରତ ଓ ନୂତନ ପାକିସ୍ଥାନ ଦୁଇଟି ସ୍ୱାଧୀନ ରାଷ୍ଟ୍ର ହେଲେ । ବ୍ରିଟିଶ୍ କବଳରୁ ମୁକ୍ତ ହେବା ପାଇଁ ମହାତ୍ମା ଗାନ୍ଧି କଂଗ୍ରେସର ନେତୃତ୍ୱ ନେଇ ଦୀର୍ଘ ତିରିଶ ବର୍ଷକାଳ ଦୁର୍ବାର ସଂଗ୍ରାମ କରି ଅଖଣ୍ଡ ଭାରତକୁ ସ୍ୱାଧୀନ କଲେ । ଏହା ଥିଲା ଗାନ୍ଧିଙ୍କର ଅହିଂସା ମନ୍ତ୍ରର ଅଦ୍ଭୁତ ଶକ୍ତି ଏବଂ ପୃଥିବୀର ଏକ ଆଶ୍ଚର୍ଯ୍ୟଜନକ ଏବଂ ଐତିହାସିକ ଘଟଣା । ମହମ୍ମଦ ଅଲ୍ଲୀ ଜିନାଙ୍କର ଏଥିରେ ସମାନ୍ୟତମ ଅବଦାନ ନଥିଲା । ଭାରତର ସ୍ୱାଧୀନ ସରକାର ଦେଶକୁ ସ୍ୱାବଲମ୍ବନଶୀଳ ରାଷ୍ଟ୍ରରେ ପରିଣତ କରିବା ପାଇଁ ଅପୂର୍ବ ସୁଯୋଗ ପାଇଲେ । କାରଣ ଭାରତର ଥିଲା ଅପର୍ଯ୍ୟାପ୍ତ ପ୍ରାକୃତିକ ଓ ମାନବ ସମ୍ବଳ । କିନ୍ତୁ ଗାନ୍ଧିଙ୍କୁ ଚରମ ରାଜନୈତିକ ଶତୃଭାବରେ ବିବେଚନା କରୁଥିବା ଜିନା, କ୍ରୋଧ, ଈର୍ଷା, କ୍ଷମତା ଲୋଭ ଓ ଅହଂକାରରେ ଜର୍ଜରିତ ହୋଇ ଭାରତଠାରୁ ବିଚ୍ଛିନ୍ନ କରି ନୂଆ ପାକିସ୍ଥାନ ରାଷ୍ଟ୍ର ଗଠନ କରିନେଲେ । କ୍ରୋଧ ଓ ଅହଂକାର ହେତୁ ଗ୍ରୀକ୍, ବେବିଲନ୍ ପରି ବହୁ ସାମ୍ରାଜ୍ୟ ଧ୍ୱଂସ ପାଇ ଯାଇଛି, ଜିନା ଏହି ଐତିହାସିକ ସତ୍ୟକୁ ବୁଝି ପାରିଲେ ନାହିଁ କିମ୍ବା କ୍ରୋଧ ତାଙ୍କୁ ଅନ୍ଧ କରିଦେଲା । କେବଳ ଉଗ୍ର ସାଂପ୍ରଦାୟିକ ଭାବପ୍ରବଣତା ତାଙ୍କୁ ଜଣେ ଛିନ୍ନମୂଳ ଜନନେତା କରିଥିଲା । ପାକିସ୍ଥାନକୁ ସେତେବେଳେ ସେ ଦେଖି ନଥିଲେ କି ପାକିସ୍ଥାନ ସହିତ କିଛି ସଂପର୍କ ନଥିଲା । ଗାନ୍ଧିଥିଲେ ଅଜାତ ଶତୃ । ତାଙ୍କସହ ଜିନାଙ୍କ ବିବାଦ ଥିଲା ପାହାଡ଼କୁ ଟେକା

ମାରିବା ସଙ୍ଗେ ସମାନ। ସ୍ୱାଧୀନତା ପରେ ଲୋକେ ଅନେକ କିଛି ଆଶା କରନ୍ତି। ସେ ସବୁ ଆଶା ପୁରଣ ନହେଲେ ଗଣତାନ୍ତ୍ରିକ ଅଧିକାର ବଳରେ ସେମାନେ ବିଦ୍ରୋହ କରି ଅଶାନ୍ତି ସୃଷ୍ଟି କରନ୍ତି। ଆଶା ତ ଅସୁମାରୀ, ଯେତେ ପାଇଲେ ବି ଆହୁରି ଅଧିକ ଚାହାନ୍ତି। ଏହା ହିଁ ପ୍ରଗତିର ଲକ୍ଷଣ। ସରକାର ଦୁର୍ବଳ ଥିଲେ କିମ୍ବା ପର୍ଯ୍ୟାପ୍ତ ସମ୍ବଳ ନଥିଲେ ଦେଶ ଅରାଜକତା ଆଡ଼କୁ ଚାଲିଯାଏ। ଏହାହିଁ ପାକିସ୍ଥାନର ଅବସ୍ଥା। ଭାରତ ପୃଥିବୀର ଏକ ବୃହତ ଶକ୍ତିଶାଳୀ ଓ ସ୍ୱାବଲମ୍ବନଶୀଳ ବିକଶିତ ରାଷ୍ଟ୍ରରେ ପରିଣତ ହେବାପାଇଁ ଦୃଢ ଗତିରେ ଆଗେଇ ଚାଲିଛି ଏବଂ ପୃଥିବୀର ଏକ ଶାନ୍ତିପ୍ରିୟ ରାଷ୍ଟ୍ରଭାବେ ପ୍ରତିଷ୍ଠା ଅର୍ଜନ କରିଛି। କିନ୍ତୁ ପାକିସ୍ଥାନରେ ଅଛି କ'ଣ ? କପା, ଝୋଟ, ଆଖୁ, ଖଜୁରୀ, ବନ୍ଦର ଛଡ଼ା ଆଉ ଅଛି କ'ଣ ସେଠାରେ ? ଲୋକଙ୍କ ପେଟକୁ ମୁଠାଏ ଦାନା ଦେବା ମଧ୍ୟ ଅସମ୍ଭବ। ଏପରି ଅବସ୍ଥାରେ କ୍ରୋଧ ବର୍ଜନ କରି ଅନ୍ୟ ସବୁ ଦେଶମାନଙ୍କ ସହ ବନ୍ଧୁତା ନ ରଖିଲେ ପାକିସ୍ଥାନ ତାର ଦାନାକନାର ଅଭାବ ମେଣ୍ଟାଇବ କିପରି ? କେବଳ ମୁସଲିମ୍ ଦେଶ ଗୁଡ଼ିକୁ ଛାଡିଦେଲେ ପାକିସ୍ଥାନର ଆଉ କିଏ ବନ୍ଧୁରାଷ୍ଟ୍ର ଅଛି ? ୧୯୬୫ ଓ ୧୯୭୧ ମସିହାରେ ଦୁଇ ଦୁଇଟା ଯୁଦ୍ଧ କରିବା ହେତୁ ଅର୍ଥନୈତିକ ଅଣ୍ଟା ତାର ଏପରି ଭାଙ୍ଗି ଯାଇଛି ଯେ, ଏ ପର୍ଯ୍ୟନ୍ତ ପାକିସ୍ଥାନ ଅଣ୍ଟା ସଳଖ କରିପାରୁ ନାହିଁ। କେତେବେଳେ ରୁଷିଆ ତ କେତେବେଳେ ଆମେରିକା ସାହାଯ୍ୟ ବିନା ଚଳିବା ତା ପାଇଁ କଷ୍ଟକର। ୧୯୫୮ ମସିହାରେ ସାମରିକ ବିଦ୍ରୋହ କରି Feeld maashd Ayub Khan କ୍ଷମତା ଦଖଲ କଲେ ସତ, କିନ୍ତୁ ତାଙ୍କ ବିରୁଦ୍ଧରେ ଅସଂଖ୍ୟ ଦୁର୍ନୀତି ତାଙ୍କୁ କ୍ଷମତାଚ୍ୟୁତ କଲା। ପ୍ରାୟ ଦଶବର୍ଷ ସେ Authoriteion ଶାସନ କଲାପରେ ଆଉ ଏକ Military Coup ତାଙ୍କୁ ଗାଦିଚ୍ୟୁତ କରି କ୍ଷମତା ଦଖଲ କଲା। ସେତେବେଳେ ଜୁଲି ଫିକର ଅଲ୍ଲୀ ଭୁଟ୍ଟୋ କ୍ଷମତାକୁ ଆସି ଗଣତାନ୍ତ୍ରିକ ଶାସନ ପୁନଃ ପ୍ରତିଷ୍ଠା କଲେ ଓ ୬ ବର୍ଷ ଶାସନ କରି ଜିଆ ଉଲ୍ ହକ୍ ଙ୍କ Military Coup ଦ୍ୱାରା ଗାଦିଚ୍ୟୁତ ହେଲେ

୧୯୭୭ ମସିହାରେ। ସେ ୧୯୮୮ ମସିହା ଅଗଷ୍ଟ ୧୭ ତାରିଖ ଦିନ ପ୍ଲେନ ଦୁର୍ଘଟଣାରେ ମୃତ୍ୟୁ ବରଣ କଲେ। ଜେନେରାଲ ମୁଶାରଫ ମଧ୍ୟ ମିଲିଟାର Coup ଦ୍ୱାରା କ୍ଷମତା ଦଖଲ କରି ଶେଷରେ ପ୍ରାଣ ଭୟରେ ସାଉଦି ଆରବିଆକୁ ପଳାଇଗଲେ। ଏହିପରି ପାକିସ୍ଥାନର ଅଶାନ୍ତି ଲାଗି ରହିଛି। ଦେଶର ପ୍ରଗତି ପାଇଁ ସେଠାରେ କେହି ପ୍ରତିଶ୍ରୁତିବଦ୍ଧ ପରି ମନେ ହୁଅନ୍ତି ନାହିଁ। କ୍ଷମତା ଦଖଲ ପାଇଁ ସମସ୍ତେ ବ୍ୟାକୁଳ।

ଗାନ୍ଧିଙ୍କ ବୈପ୍ଳବିକ ଦର୍ଶନର ଅନ୍ୟ ଏକ ଦିଗହେଲା ଭାରତକୁ ସ୍ୱାବଲମ୍ବନଶୀଳ କରିବା ପାଇଁ ତାଙ୍କର ଯେଉଁ ମୌଳିକ ବିଚାର ଥିଲା, ତାକୁ ଆଜି କେହି ଗ୍ରହଣ ନକଲେ ବି ସମସ୍ତେ ଦେହ ସର୍ବସ୍ୱ ଏବଂ ଆତ୍ମା ସେମାନଙ୍କର ଅଭୁକ୍ତ। ସେ ବିଚାର ପଛରେ ଯେଉଁ ନୈତିକ ମୂଲ୍ୟବୋଧ ନୀହିତ, ତାକୁ ଅସ୍ୱୀକାର କରି ହେବନାହିଁ । ସେ ବିଚାର ଥିଲା ଦେଶବ୍ୟାପୀ ଜାତୀୟ ସ୍ୱାଭିମାନ ଓ ଦେଶପ୍ରୀତି ଗଠନ ପାଇଁ ପ୍ରେରଣାର ଉତ୍ସ। ବିଦେଶୀ ବସ୍ତ୍ର ବର୍ଜନ, ସୁଦୃଢ଼ ଗ୍ରାମ୍ୟ ଅର୍ଥନୀତି ଓ ବ୍ୟାପକ କର୍ମ ନିଯୁକ୍ତିର କ୍ଷେତ୍ର ପ୍ରସାର ପାଇଁ ତାହା ଥିଲା ଏକ ସୁଚିନ୍ତିତ ବୈପ୍ଳବିକ ଯୋଜନା। ଏ ଯୋଜନା କାର୍ଯ୍ୟକାରୀ ହୋଇଥିଲେ ସାରାବିଶ୍ୱରେ ଭାରତକୁ ମିଳିଥାଆନ୍ତା ଏକ ସ୍ୱତନ୍ତ୍ର ଆଦର୍ଶଗତ ମର୍ଯ୍ୟାଦାର ମାନ୍ୟତା। ସ୍ୱାଧିନ ଭାରତର ନେହେରୁଙ୍କ ଭଳି ଦେଶର କର୍ଣ୍ଣଧାର ମାନଙ୍କର ପାଶ୍ଚ୍ୟାତାଭିମୁଖୀ ଦୃଷ୍ଟିଭଙ୍ଗି ହେତୁ ସେ ବିଚାର ଅକାଳରେ ମୃତ୍ୟୁବରଣ କଲା। ଫଳରେ ଶ୍ରମ ପ୍ରତି କୁଣ୍ଠା ଦେଶର ନୈତିକ ମେରୁଦଣ୍ଡକୁ ଭାଙ୍ଗିଦେଲା। ବର୍ତ୍ତମାନ ଦେଶର ଡ଼ାଇବେଟିକ ରିସର୍ଚ୍ଚ ସେଣ୍ଟର ଗବେଷଣା କରି ଜଣାଇ ଦେଲାଣି ଯେ, ଆଉ ଅଳ୍ପ କେତେ ବର୍ଷ ପରେ ଏହି ଶ୍ରମ କୁଣ୍ଠା ହେତୁ ସାରା ପୃଥିବୀର ମଧୁମେହ ରୋଗୀଙ୍କ ସଂଖ୍ୟାର ଶତକଡ଼ା ୮୦ଭାଗ କେବଳ ଭାରତରେ ଦେଖାଯିବ। ନେତାମାନଙ୍କ ଦୂର ଦୃଷ୍ଟିର ଅଭାବ ହେତୁ ଭାରତ ବର୍ତ୍ତମାନ ଏଇ ଦଶା ଭୋଗିବାକୁ ଯାଉଛି। ନେତାମାନଙ୍କର ଏଇ ବିଚାରହୀନତା ପାଇଁ ଅଧିକାଂଶ ଲୋକେ ଘରଦ୍ୱାର ଛାଡ଼ି କଲିକତା, ସୁରାଟ ଓ ବମ୍ବେ ପରି ଅନେକ ସହରକୁ ଯାଇ କଳ କାରଖାନାରେ କୁଲିଗିରି କିମ୍ବା ଆଉ କିଛି ଛୋଟ ମୋଟ କାମ

କରି ପେଟ ପୋଷିଲେ । ଜମିବାଡ଼ି ପଡ଼ିଆ ପଡ଼ିଲା । ଭେଳାଭେଳା ଲୋକ ବେକାର ହୋଇ ବୁଲିଲେ । ଫସଲ ଅମଳ କମିଗଲା । ସମସ୍ତେ କିଣିଖିଆ ହୋଇଗଲେ । ମୁନାଫାଖୋର ବେପାରୀମାନେ ଅବସ୍ଥାର ସୁଯୋଗ ନେଇ ଶୋଷଣ କଲେ । ଏବେ ସିନା ଜଗତିକରଣ ହେତୁ ଶିକ୍ଷା, ସ୍ୱାସ୍ଥ୍ୟ, ରାସ୍ତା ଘାଟ, ବାଣିଜ୍ୟ ବ୍ୟବସାୟ ଓ ଆଉ କେତେ ପ୍ରକାର ଆୟର ପନ୍ଥା ଖୋଲି ଯିବାରୁ ଦେଶର ଆର୍ଥିକ ଅଭିବୃଦ୍ଧି ଘଟିଛି । କିନ୍ତୁ ବିଂଶ ଶତାବ୍ଦିର ଶେଷ ପାଞ୍ଚ ଦଶନ୍ଧି ଧରି ଲୋକେ ଗୁରୁତର ଆର୍ଥିକ ଅନାଟନ ଭିତରେ କାଳ କାଟୁଥିଲେ । ଗାନ୍ଧିଙ୍କର ସ୍ୱଦେଶୀ ଭାବନାରେ ନେହେରୁଙ୍କ ନେତୃତ୍ୱରେ କଂଗ୍ରେସ ସରକାର ଦେଶର ସୁପରିଚାଳନା କରିଥିଲେ ଲୋକେ ଏପରି ଦୁର୍ଦ୍ଦଶା ଭୋଗି ନଥାନ୍ତେ ।

ସେହିପରି ଧର୍ମ କ୍ଷେତ୍ରରେ ଗାନ୍ଧିଙ୍କର ଏକ ସ୍ୱତନ୍ତ୍ର ବିଚାର ଥିଲା । ସେ କହୁଥିଲେ ସବୁ ଲୋକଙ୍କ ପାଇଁ ଧର୍ମ ସମାନ ହେବା ଆବଶ୍ୟକ । ଧର୍ମ ମଣିଷ ପଣିଆକୁ ଧାରଣ କରିବା ପାଇଁ ଉଦ୍ଦିଷ୍ଟ । ଯେଉଁମାନେ ଧର୍ମକୁ ବିଭିନ୍ନ ଭାବରେ ଉପସ୍ଥାପନ କରନ୍ତି ତାହା ଧର୍ମାନ୍ଧତା । ଏପରି ଧର୍ମାନ୍ଧତାକୁ ଶାନ୍ତିପୂର୍ଣ୍ଣ ଉପାୟରେ ବିରୋଧ କରିବା ଉଚିତ । ଯେଉଁମାନେ ଧର୍ମାନ୍ଧତାକୁ ଧର୍ମବୋଲି କହନ୍ତି ତାହା ସେମାନଙ୍କର ବ୍ୟକ୍ତି ପ୍ରତିଷ୍ଠା ପାଇଁ ଉଦ୍ଦିଷ୍ଟ । ପ୍ରକୃତରେ ସବୁଧର୍ମର ମୌଳିକ ବିଚାର ସମାନ ଏବଂ ତାହା ମଣିଷର କଲ୍ୟାଣ ପାଇଁ ଅଭିପ୍ରେତ । ଏହି କାରଣରୁ ବିଭିନ୍ନ ଜାତି ଓ ଗୋଷ୍ଠୀକୁ କେନ୍ଦ୍ର କରି ଯେଉଁ ସବୁ ଧର୍ମ ଦେଖାଯାଉଛି, ସେଥିରେ ସଂକୀର୍ଣ୍ଣ ସ୍ୱାର୍ଥପରତା ହେତୁ ଅନେକ କୁସଂସ୍କାର ପୁରି ରହିଛି । ସେ ସବୁର ସଂସ୍କାର ହେବା ଦରକାର । ତା ହେଲେ ବିଭିନ୍ନ ଧର୍ମ ମଧ୍ୟରେ ଯେଉଁ ବିବାଦ ରହିଛି ଓ ରକ୍ତାକ୍ତ ସଂଘର୍ଷ ଘଟି ବହୁ ଧନଜୀବନ ନଷ୍ଟ ହେବାରେ ଲାଗିଛି, ତାର ଅବସାନ ହେବ ଏବଂ ମଣିଷ ମଣିଷ ମଧ୍ୟରେ ଶାନ୍ତିପୂର୍ଣ୍ଣ ସହାବସ୍ଥାନ ସମ୍ଭବ ହେବ । ଧର୍ମ ବିଦ୍ୱେଷ ଓ ଧର୍ମାନ୍ଧତା ହେତୁ ବାରମ୍ବାର ଯେଉଁ ରକ୍ତପାତ ଓ ହତ୍ୟା ସବୁ କାଳକାଳ ଧରି ଘଟି ଚାଲିଛି ତାର ବିଷମୟ ପରିଣତି ପୃଥିବୀ ଇତିହାସରେ ଲିପିବଦ୍ଧ । ଏହି କାରଣରୁ

ଗାନ୍ଧି ଆଫ୍ରିକାରେ ବର୍ଣ୍ଣ ବୈଷମ୍ୟ ବିରୁଦ୍ଧରେ ସଂଗ୍ରାମ କରିଥିଲେ ଏବଂ ଅସ୍ପୃଶ୍ୟତା ପରି ସାମାଜିକ କଳଙ୍କ ବିରୁଦ୍ଧରେ ଜୀବନବ୍ୟାପୀ ସଂଗ୍ରାମ କରି ମହାମାନବର ପରିଚୟ ଦେଇଥିଲେ। ମହାଯୋଗୀ ଶ୍ରୀ ଅରବିନ୍ଦଙ୍କ ମତରେ ଅତିମାନସ ଶକ୍ତିର ଅବତରଣ ହେତୁ ମଣିଷର କ୍ରମବିକାଶ ପୂର୍ଣ୍ଣତା ଆଡକୁ ଦ୍ରୁତଗତିରେ ଅଗ୍ରସର ହେଉଛି। ଗାନ୍ଧିଙ୍କର ଆବିର୍ଭାବ ସେଇ ପୂର୍ଣ୍ଣତାର ଏକ ପୂର୍ବାଭାସ ବୋଲି ବୁଝିବାକୁ ହେବ। ମଣିଷ ହେବ ଦୟା, କ୍ଷମା ଓ ତ୍ୟାଗରେ ପରିପୂର୍ଣ୍ଣ ଏକ ନୂତନ ସଂସ୍କରଣ । ପୃଥିବୀ ହେବ ଶାନ୍ତିମୟ ସହାବସ୍ଥାନର ଏକ ଦିବ୍ୟ ମଧୁର ସ୍ୱର୍ଗରାଜ୍ୟ। ଏ ଅବସ୍ଥା ପ୍ରାପ୍ତ ହେବା ମଣିଷର କର୍ମ ଉପରେ ନିର୍ଭର କରେ। କାରଣ ଜନ୍ମ ଏବଂ ମୃତ୍ୟୁ ସିନା ଭଗବାନଙ୍କର ଇଚ୍ଛାଧିନ, କର୍ମ କିନ୍ତୁ ମଣିଷର ନିୟନ୍ତ୍ରଣାଧିନ। ଶାନ୍ତି ନିଷ୍କାମ କର୍ମର ପରିଣତି। ଏହି କାରଣରୁ ଅନାସକ୍ତ ଗାନ୍ଧିଥିଲେ ନିର୍ଭୟ ଚିତ୍ତ ଓ ସମସ୍ତ ଉତ୍ତେଜନା ପ୍ରବଣ ପରିବେଶ ମଧ୍ୟରେ ସଦାଶାନ୍ତ ଓ ନିରୁଦ୍‌ବିଗ୍ନ। ସେଥିଲେ ଅନାସକ୍ତ କର୍ମ ସନ୍ୟାସୀ। ସେଥିଲେ ସମସ୍ତ ଦୈବୀଶକ୍ତିର ମୂର୍ତ୍ତିମନ୍ତ ପ୍ରତୀକ ଏବଂ ସାରାପୃଥିବୀ ମଣିଷ ସମାଜର ଏକ ଅନନ୍ୟ ପ୍ରତିଭା। ପୃଥିବୀର ରାଜନୈତିକ ଦୃଶ୍ୟପଟରେ ତାଙ୍କର ସଂସ୍କାରତ୍ମକ ବିପ୍ଳବର ପଟାନ୍ତର ନାହିଁ। ବହୁବାଦ ପରି ଗାନ୍ଧିବାଦ ଏକ ବିଶିଷ୍ଟ ଭୂମିକା ଗ୍ରହଣ କରିଛି। ଗାନ୍ଧିଙ୍କର ସ୍ମରଣ ମାତ୍ରେ ଯାହା କିଛି ପବିତ୍ର ଓ ମଧୁର, ତାର ଏକ ଛବି ମନ ଭିତରେ ଆଙ୍କି ହୋଇଯାଇ ସ୍ୱତଃ ତାଙ୍କ ପ୍ରତି ଭକ୍ତିଜାତ ହୁଏ। ତେଣୁ ସେ ପ୍ରାତଃ ସ୍ମରଣୀୟ। ପ୍ରାର୍ଥନା ସଭାରେ ଗୁଳି ଚୋଟ ଖାଇ ସେ ଯେତେବେଳେ ଶେଷ ନିଃଶ୍ୱାସ ତ୍ୟାଗ କଲେ, ସେତେବେଳେ ଆପଣା ଛାଏଁ ତାଙ୍କ ତୁଣ୍ଡରୁ 'ହା ରାମ' ବାହାରି ଯାଇ ତାଙ୍କ ଅନ୍ତରରେ ସମସ୍ତ ଭାବନାର ଏକ ତରଙ୍ଗ ଖେଳେଇ ହୋଇଗଲା। କୁହାଯାଏ ମୃତ୍ୟୁବେଳେ ମଣିଷର ଇଛା ଆପଣା ଛାଏଁ ତୁଣ୍ଡରୁ ବାହାରି ଯାଏ। ଗାନ୍ଧିଙ୍କର ତୁଣ୍ଡରୁ 'ହା ରାମ' ଶବ୍ଦ ସେହିପରି ତାଙ୍କ ସମସ୍ତ ଚିନ୍ତା ଓ ଚେତାନାର ପରିପ୍ରକାଶ ବୋଲି ବୁଝିବାକୁ ହେବ। ରାମ୍ ଅର୍ଥ ସମସ୍ତ ସୌନ୍ଦର୍ଯ୍ୟବୋଧର ଏକ ଶକ୍ତିପୁଞ୍ଜ, ଯାହା ମଣିଷର ଗତିପଥକୁ ପବିତ୍ର ଓ ମଧୁର କରେ। ଯେଉଁ ପଥରେ

ଗତିକଲେ ମଣିଷର ଦୁର୍ଲଭ ଜୀବନ ସାର୍ଥକ ହୁଏ ତାହାହିଁ ରାମ। ସମସ୍ତ କର୍ମ, ଧର୍ମ, ଚିନ୍ତା, ଚେତନା ଓ ଆଚରଣ ଇତ୍ୟାଦିରେ ପବିତ୍ରତାର ଭାବ ହିଁ ରାମ। କେବଳ କୌଣସି ଏକଦେଶ ବା ଜାତିନୁହେଁ, ସାରାପୃଥିବୀର ସବୁ ମଣିଷର କଲ୍ୟାଣ କରିବା ତାଙ୍କ ପ୍ରତ୍ୟେକ ଶୀରା ପ୍ରଶୀରାରେ ଭେଦି ରହିଥିବାରୁ ଜୀବନର ଅନ୍ତିମକାଳରେ ତାଙ୍କ ତୁଣ୍ଡରୁ ଅଜାଣତରେ ବାହାରି ଗଲା 'ହେ ରାମ'। ଏହା ଦିବ୍ୟାତ୍ମାର ଲକ୍ଷଣ। ସାରା ମାନବଜାତିର କଲ୍ୟାଣ ପାଇଁ ତାଙ୍କ ଜୀବନ ଉତ୍ସର୍ଗୀକୃତ। ତେଣୁ ସେ ଆମର ନମସ୍ୟ।

ଯୁଗର ରୁଚି ବଦଳିବାରେ ଲାଗିଛି। ମାନବ ସଭ୍ୟତା କ୍ରମେ ମାର୍ଜିତ ହେଉଛି। ଜନ୍ମଗତ ହିଂସାତ୍ମକ ଆଚରଣ ବଦଳରେ ପ୍ରେମ, ଅହିଂସା, ସେବା ଓ ତ୍ୟାଗ ମନୋଭାବର ପ୍ରସାର ହେଉଛି। ଯୁଦ୍ଧ ବଦଳରେ ଗଣତାନ୍ତ୍ରିକ ଉପାୟରେ ସମସ୍ୟାର ଆପୋଷ ସମାଧାନ ପାଇଁ କାଳର ଆହ୍ୱାନ ଆସିଛି। ସାରା ବିଶ୍ୱରେ ଶାନ୍ତି ପ୍ରତିଷ୍ଠା ପାଇଁ ମଣିଷ ମନରେ ନୂତନ ଚେତନାର ଅଭ୍ୟୁଦୟ ଘଟିଛି, ଏହା ପଛରେ ରହିଛି ଗାନ୍ଧି ଦର୍ଶନର ବିପୁଳ ପ୍ରେରଣା ଏବଂ ଏହାହିଁ ମାନବ ସଭ୍ୟତାର ପୂର୍ଣ୍ଣ ବିକାଶ ପାଇଁ ଉପଯୁକ୍ତ ମାର୍ଗ। ସମ୍ଭବତଃ ଏହି ଉପାୟ ଦ୍ୱାରା ମଣିଷର କ୍ରମବିକାଶ ପୂର୍ଣ୍ଣତା ପ୍ରାପ୍ତ ହେବ। ତା' ହେଲେ ପୃଥିବୀ ହେବ ଶାନ୍ତିପୂର୍ଣ୍ଣ ସହାବସ୍ଥାନର ଗ୍ରହ।

ପୃଥିବୀ ଶାନ୍ତି
ବନସ୍ପତୟ ଶାନ୍ତି
ଶାନ୍ତି ରେବା, ଶାନ୍ତି ଶାନ୍ତିଃ।

************

